ମହାପୁରୁଷ ବଳରାମ ଦାସଙ୍କ

# ଜଗମୋହନ ରାମାୟଣ

## ଆଦି କାଣ୍ଡ

ସମ୍ପାଦନା—ଡକ୍ଟର କୃଷ୍ଣଚରଣ ସାହୁ
ରିଡର ଓଡ଼ିଆ, ଭାଷା ଓ ସାହିତ୍ୟ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର ଭୁବନେଶ୍ୱର-୪



ବୁକ୍ସ ଏଣ୍ଡ ବୁକ୍ସ
ବିନୋଦବିହାରୀ, କଟକ

Digitized by srujanika@gmail.com

ବଳରାମ ଦାସଙ୍କର

# ଜଗମୋହନ ରାମାୟଣ

ସମ୍ପାଦନା—ଡକ୍ଟର କୃଷ୍ଣଚରଣ ସାହୁ



ପ୍ରକାଶକ :

କୃଷ୍ଣଚନ୍ଦ୍ର ବେହେରା

ବୁକ୍ସ ଆଣ୍ଡ ବୁକ୍ସ

ବିନୋଦ ବିହାରୀ, କଟକ-୨



ପ୍ରଥମ ଶୁଦ୍ଧ ସଂସ୍କରଣ – ୧୯୮୦



ମୁଦ୍ରଣ :

ବିମଳା ଲ' ପ୍ରିଣ୍ଟର୍ସ

ଅଲିଶା ବଜାର, କଟକ-୨



ମୂଲ୍ୟ—ଚାଳିଶ ଟଙ୍କା ମାତ୍ର

Digitized by srujanika@gmail.com

# ନିବେଦନ

ଜଗମୋହନ ରାମାୟଣକୁ କବି ବଳରାମ ଦାସ ଷୋଡ଼ଶ ଶତାବ୍ଦୀରେ 'ଜଗତର ହିତେ' ରଚନା କରିଥିଲେ । ସେହି ସମୟରୁ ଏପର୍ଯ୍ୟନ୍ତ ଏହି ମହାନ୍ ଗ୍ରନ୍ଥ ଓଡ଼ିଶାର ପୁରପଲ୍ଲୀର ଅଗଣିତ ନରନାରୀଙ୍କର ଅବାରିତଭାବେ ମଙ୍ଗଳ ବିଧାନକରି ଆସିଅଛି ।

ଏହି ଗ୍ରନ୍ଥ ପ୍ରତି ମୁଁ କିପରି ଆକୃଷ୍ଟ ହେଲି, ମନେ ନାହିଁ । ତେବେ ଗତ ପନ୍ଦର ବର୍ଷ ହେଲା ମୁଁ ଏହି ରାମାୟଣ ସାଗରରେ ନିମଜ୍ଜିତ ହୋଇରହିଛି । ମନ୍ଥନ କରିବାର ଶକ୍ତି ନାହିଁ । ଭଗବାନଙ୍କୁ ସବୁବେଳେ ସ୍ମରଣ କରୁଛି, ଏହି ସାଗରରୁ ଉଦ୍ଧାର କରିବା ପାଇଁ ।

ଜଗମୋହନ ରାମାୟଣର ପ୍ରକାଶନ ଭାର ଗ୍ରହଣ କରିଥିବାରୁ ମୁଁ କାହିଁକି, ସମସ୍ତ ଓଡ଼ିଆ ଜାତି 'ବୁକ୍‌ସ ଆଣ୍ଡ ବୁକ୍‌ସ'ର ସ୍ୱତ୍ୱାଧିକାରୀ ଶ୍ରୀମାନ୍ କୃଷ୍ଣଚରଣ ବେହେରାଙ୍କ ନିକଟରେ କୃତଜ୍ଞ ରହିବେ । ମତେ ବିଭିନ୍ନ ଦିଗରୁ ସାହାଯ୍ୟ ସହାନୁଭୂତି ଦେଖାଇବାପାଇଁ ବାନର ସେନା ସାଜି ଆଗେଇ ଆସିଥିବାରୁ ଶ୍ରଦ୍ଧାସ୍ପଦ ବୈଷ୍ଣବଚରଣ ସାମଲ ଓ ରତ୍ନାକର ଚଇନିଙ୍କୁ ଧନ୍ୟବାଦ ଜଣାଉଛି । ଭଗବାନ ତାଙ୍କର ମଙ୍ଗଳ କରନ୍ତୁ ।

ଶ୍ରୀ କୃଷ୍ଣଚରଣ ସାହୁ
୨୨-୧୧-୮୦
କାର୍ତ୍ତିକ ପୂର୍ଣ୍ଣିମା

Digitized by srujanika@gmail.com

# ସୂଚୀପତ୍ର

## ମୁଖବନ୍ଧ



Digitized by srujanika@gmail.com

ବିଷୟବସ୍ତୁ — ପଦସଂଖ୍ୟା



—୦—

Digitized by srujanika@gmail.com

# ମୁଖବନ୍ଧ

କବି ବଳରାମ ଦାସ ଓଡ଼ିଶାର କେଉଁ ପୁର ବା ପଲ୍ଲୀରେ ଜନ୍ମଗ୍ରହଣ କରିଥିଲେ ତାହା ଜାଣିବା ସହଜ ନ ହେଲେ ବି—ଭକ୍ତକବିରେ ତାଙ୍କର ଖ୍ୟାତି, ପୁଣି କବି ଭାବେ ତାଙ୍କର ପ୍ରସିଦ୍ଧି ଓ ଲୋକପ୍ରିୟତା ଯୋଗୁଁ ଓଡ଼ିଶାର ଏକାଧିକ ସ୍ଥାନର ଲୋକେ କବିଙ୍କୁ ଆପଣାର କରିବାପାଇଁ ଲାଳାୟିତ ହୋଇ ଉଠିଥିଲେ । ବିଭିନ୍ନ ଗ୍ରନ୍ଥ ତଥା କିମ୍ବଦନ୍ତୀରୁ ଯେଉଁସବୁ ସୂଚନା ମିଳିଥାଏ, ସେହିସବୁ ଉପାଦାନକୁ ନିମ୍ନରେ ବିଶ୍ଳେଷଣ କରି କବିଙ୍କ ପ୍ରକୃତ ବାସସ୍ଥାନକୁ ଜାଣିବା ପାଇଁ ପ୍ରଚେଷ୍ଟା କରାଯାଇଛି । ସେଥିମଧ୍ୟରୁ (କ) କବି ନିଜେ ଜଗମୋହନ ରାମାୟଣର ଉତ୍ତର କାଣ୍ଡ (ପୃ—୨୫୧) ରେ ପୁରୁଷୋତ୍ତମ କ୍ଷେତ୍ର ବା ପୁରୀରେ ପରିବାରସହ ବାସ କରୁଥିବା ବର୍ଣ୍ଣନା କରିଛନ୍ତି ।

"ଜନ୍ମରୁ ମୂରୁଖ ମୋର ଅଳପ ବୟସ
ଗ୍ରନ୍ଥ କଲି କାଳେ ମୋତେ ବରଷ ବତିଶ ।
ଦାରା ସୁତ ଧନ ଜନ ସୁଖ ଭୋଗ ଶିରୀ
ଆପେ ଆପଣେ ଦେଇଅଛନ୍ତି ତା ହରି ।
ଏ ମର୍ତ୍ତ୍ୟଲୋକେ ଯେ ମୁହିଁ ଜଗନ୍ନାଥ ସେବି
ଇଚ୍ଛା ହୋଇଲେ ମୁଁ ବଇକୁଣ୍ଠକୁ ଯେ ଯିବି ।
ସ୍ୱାମୀର ସେବକ ମୁଁ ସନ୍ନିଧ୍ୟେ ରହିଥାଇ
ଏ ଭବ ସାଗରେ ମୋତେ କିଛି ଚିନ୍ତା ନାହିଁ ।"

କବିଙ୍କର ଏହି ଉକ୍ତି 'ଭବ ସମୁଦ୍ର' ରେ ମଧ୍ୟ ସମର୍ଥିତ ।

(୧) ନୀଳକନ୍ଦରେ ମୋତେ ବୁହାଇଲ
ଯେତେ ସୁଖ ମୋତେ ପ୍ରଥମେ ଦେଲ
ନାଥ ମୁଁ ସେହିମତି ଜାଣିଥିଲି
ତୋର ପାଦ ପଦ୍ମେ ସେବା ମୁଁ କଲି । (ପୃ—୨୪)

(୨) ତୋ ତୀର୍ଥଂ କ୍ଷେତ୍ର ଶଏ ଗୁଣେ ବଡ଼
ଉନ ନଗଲୋକେ ଅଛଇ ଗାଢ଼ ।
ନାଥ ତୁମ୍ଭେ ଯେ କ୍ଷେତ୍ର ଦୁହେଁ ସର
ସାନ ବଡ଼ ଯେ ତୋଳିଣ ନ ପାରି ।
ତେଣୁକରି କ୍ଷେତ୍ରେ ରହିଲି ମୁହିଁ
ବଳି ଦାସକୁ ଘଉଡ଼ାଣ ଦେଇ । (ପୃ—୨୮)

Digitized by srujanika@gmail.com

କବି ବଳରାମଙ୍କ ପ୍ରଥମ ଜୀବନୀ ଲେଖକ ରାମଦାସ "ଦାର୍ଢ଼୍ୟତା ଭକ୍ତି" ରେ କବିଙ୍କୁ ପୁରୀବାସୀ ରୂପେ ଗ୍ରହଣ କରିଛନ୍ତି ।

"ପୁରୁଷୋତ୍ତମେ ତାର ଘର
କୁଟୁମ୍ବ ଘେନି ସଙ୍ଗତର
ଉତ୍ତମ ଜନେ ଆଶ୍ରା କରି
ନିତି ବୁଲଇ ଭିକ୍ଷା କରି ।" (ପୃ—୧୧୧)

ବାଲିଗାଁ ଦାସଙ୍କ ରଚିତ ଅପ୍ରକାଶିତ "ଭକ୍ତମାଳିକା" ରେ କବି ବଳରାମ ଅନ୍ୟାନ୍ୟ ପ୍ରଭୁର ସଖାଙ୍କ ସହ ପୁରୀରେ ବାସ କରୁଥିବାର ସୂଚନା ମିଳେ ।

"ବୋଲେ ମହାପ୍ରଭୁ ଶୁଣେ ନାରାୟଣ
କାଲି ଗଲି ବାଙ୍କି ମୁହାଣକୁ ଶ୍ରୀଗୁରୁଙ୍କୁ ଦର୍ଶନ କରିଣ ।
ବାହୁଡ଼ି ଆଇଲି ମୁହିଁ ଅର୍ଥ ଯୋସେନକ ଯାଏ
ଦେଖିଲି ଚଉଷଠି ଭକ୍ତଗଣ ବିହାର କରନ୍ତି ଥୋକାଏ ।
ସମସ୍ତଙ୍କୁ ସେବିଲି ବହୁତ କଲି ନମସ୍କାର
ବଳରାମ, ଅନନ୍ତ ଶିଶୁ ଗୁହିଁଲେ ଆଦର
ମୋତେ ବଳରାମ ଦାସେ ବୋଇଲେ ତୁମ୍ଭର ନାମ କିସ
ମୁହିଁ କହିଲି ମୋର ନାମ ମା ବାଧ ଦେଲେ ବାଲିଗା ଦାସ ।"

ଏହିସବୁ ଉଲ୍ଲେଖ ବଳରେ ପୁରୁଷୋତ୍ତମ କ୍ଷେତ୍ରକୁ କବିଙ୍କ ମୁଖ୍ୟ ବାସସ୍ଥାନ ଭାବରେ ଗ୍ରହଣ କରାଯାଇପାରେ; କିନ୍ତୁ ପୁରୀ ତାଙ୍କର ଏକମାତ୍ର ବାସସ୍ଥାନ ନ ଥିବା ଜଗମୋହନ ରାମାୟଣ ଓ ଅନ୍ୟାନ୍ୟ ଗ୍ରନ୍ଥ ତଥା ଲୋକଶ୍ରୁତିରୁ ଉପଲବ୍ଧ ହୁଏ ।

ଜଗମୋହନ ରାମାୟଣରେ ଲଙ୍କାକାଣ୍ଡର ପ୍ରାରମ୍ଭ ଅଂଶରେ ଜଗନ୍ନାଥଙ୍କୁ ବନ୍ଦନା କଲାବେଳେ କବି ଏହିପରି ଏକ ସୂଚନା ପ୍ରଦାନକରି ଲେଖିଛନ୍ତି— ଲଙ୍କା କାଣ୍ଡର ବିଷୟବସ୍ତୁ ଅତ୍ୟନ୍ତ ଗହନ । ଦେଖିବା ଲୋକ ପକ୍ଷରେ କହିବା ସହଜ ନୁହେଁ । ଭଗବାନଙ୍କ କୃପା ନ ହେଲେ ମାନବ ତନୁଧାରୀ କବି ଏହାକୁ ବର୍ଣ୍ଣନା କରି ପାରେ ନାହିଁ । ସେଥିପାଇଁ କବି ତାଙ୍କ ଆରାଧ୍ୟ ଦେବତା ଜଗନ୍ନାଥଙ୍କର ସାହାଯ୍ୟ କାମନାକରି ରଥଯାତ୍ରାବେଳେ ପୁରୀ କ୍ଷେତ୍ରକୁ ଆସି ଜଗନ୍ନାଥଙ୍କର ଦର୍ଶନ କରିଛନ୍ତି । ଜୀବନର ଏହି ବିଶିଷ୍ଟ ଘଟଣାକୁ ଲକ୍ଷ୍ୟକରି କବି ଲେଖିଛନ୍ତି—

"ପୁଣି ବିସ୍ତରଇ ଜଣାଉଛି ଜଗନ୍ନାଥ
ତେବେ ସେ କହିବି ଲଙ୍କା କାଣ୍ଡ ଅର୍ଥ ।
ଯେତେକ ବିସ୍ତରିଣ ଶ୍ରୀ ପୁରୁଷୋତ୍ତମ ଗଲି
ଗୁଣ୍ଡିଚା ବିଜେ ଯାଇ ରଥରେ ଦେଖିଲି ।"

Digitized by srujanika@gmail.com

ଜଗମୋହନ ଗମାସ୍ତ୍ରଣରେ କବି ଦୃଷ୍ଟିରୁ ବାହାରେ ରହୁଥିବା ଜଣା ଯ ଉଥିଲେ ହେଁ, କୌଣସି ନିର୍ଦ୍ଦିଷ୍ଟ ସ୍ଥାନର ସୂଚନା ଏଥିରେ ନାହିଁ । ଶିଶୁ ଅନନ୍ତ ଦାସଙ୍କ ରଚିତ 'ଗରୁଡ଼ ସମ୍ବାଦ'ରେ ଓଡ଼ିଶାର କେତେକ ବିଶିଷ୍ଟ ଭକ୍ତକବି ଓ ସେମାନଙ୍କ ବାସସ୍ଥାନର ସୂଚନା ମିଳେ । ସେଥିରେ ବଳରାମ ଦାସଙ୍କ ବାସସ୍ଥାନ ହେଉଛି "ସୁଆଙ୍ଗ ମୃଣୋଇ" ।

ଏହାପରେ ଜଗନ୍ନାଥ ଦାସ "ଭକ୍ତ ଚନ୍ଦ୍ରିକା" ଶୀର୍ଷକ ଗ୍ରନ୍ଥରେ ଓଡ଼ିଶାର ବହୁ ଭକ୍ତକବି, ସେମାନଙ୍କ ଲୀଳାସ୍ଥଳୀ ଓ ଶିଷ୍ୟ ପରମ୍ପରା ସମ୍ପର୍କରେ କେତେକ ସୂଚନା ପ୍ରଦାନ କରିଛନ୍ତି । ସେଥିରେ କବି ବଳରାମଙ୍କ ବାସସ୍ଥାନ ହେଉଛି "ସମଗରା ଗ୍ରାମ" ।

"ସମଗରା ଗ୍ରାମ                    ଦାସ ବଳରାମ
ନିମାନନ୍ଦ ମଠେ ଖେଳ
ଷୋଳ ଶିଷ୍ୟ ଘେନ                    ରସ ଭାବରେ ସେ
ମୋତେ ଦେଉଥିବ ଗାଳ ।"

କବିଙ୍କର ବାସସ୍ଥାନ ସମ୍ପର୍କରେ ଅନ୍ୟ ଏକ ସୂଚନା ଈଶ୍ୱର ଦାସଙ୍କ "ଚୈତନ୍ୟ ଭାଗବତ"ରୁ ମିଳିଥାଏ । ଏଥିରୁ ଜଣାଯାଏ କବି ବଳରାମ ଯାଜପୁର ନିକଟବର୍ତ୍ତୀ ଚନ୍ଦ୍ରପୁରର ଅଧିବାସୀ ଓ ସେ ଏହି ସ୍ଥାନରେ ଶ୍ରୀଚୈତନ୍ୟଙ୍କ ସହ ମିଳିତ ହୋଇଥିଲେ ।

ଏହିସବୁ ଉଲ୍ଲେଖ ବ୍ୟତୀତ ଜନଶ୍ରୁତିରୁ ଆଉ ତିନୋଟି ସ୍ଥାନର ସୂଚନା ମିଳେ ।

(୧) ବକୁଗ୍ରାମ (୨) ଏରବଙ୍ଗ (୩) ଚେଂଢ଼ଣ ଗ୍ରାମ ।

(୧) ବକୁଗ୍ରାମ :—ଏହି ଗ୍ରାମ ନିଗିକାରପୁରଠାରୁ ପାଞ୍ଚ କିଲୋମିଟର ପୂର୍ବରେ ଅବସ୍ଥିତ । ଏହି ସ୍ଥାନରେ ବଳରାମଙ୍କ ପ୍ରତିଷ୍ଠିତ ସିଦ୍ଧ ବଳଦେବ ମନ୍ଦିର ବିଦ୍ୟମାନ । କଥିତ ଅଛି କବି ଏହି ଗ୍ରାମର ଜମିଦାରଙ୍କଦ୍ୱାରା ନିମନ୍ତ୍ରିତହୋଇ ସେଠାରେ କିଛିକାଳ ବାସ କରିଥିଲେ ଏବଂ କବିଙ୍କ ପୂଜା ଅର୍ଚ୍ଚନାର ସୁବିଧାପାଇଁ ଏହି ମନ୍ଦିର ନିର୍ମିତ ହୋଇଥିଲା ।

(୨) ଏରବଙ୍ଗ :—ବକୁଗ୍ରାମ ପରି କୋଣାର୍କ ନିକଟବର୍ତ୍ତୀ ଏରବଙ୍ଗ ଗ୍ରାମ କବିଙ୍କ ବାସସ୍ଥାନ ରୂପେ ପ୍ରସିଦ୍ଧ । ଏଠାରେ ବକୁଗ୍ରାମ ସଦୃଶ ଏକ ସିଦ୍ଧ ବଳଦେବ ମନ୍ଦିର ପ୍ରତିଷ୍ଠିତ । କବି ନିଜର ଶେଷ ଜୀବନ ଏହିଠାରେ ଅତିବାହିତ କରିଥିଲେ । ଏହାର ଅନତି ଦୂରରେ ବେଗୁନିଆ ଗ୍ରାମରେ ଥିବା ବଳରାମଙ୍କ ସମାଧି, ଏହାର ପ୍ରମାଣ । ଏରବଙ୍ଗ ଗ୍ରାମ ସହ ସମ୍ପୃକ୍ତ ଲୋକକଥାକୁ ଶ୍ରୀ ଜଗବନ୍ଧୁ ସିଂହ ନିମ୍ନଭାବେ ବର୍ଣ୍ଣନା କରିଛନ୍ତି ।

Digitized by srujanika@gmail.com

"ଆନ୍ଧ୍ରର ଗୋଟିଏ ମ୍ବାଦ ଅଛି ଯେ, ଦାସେ ଲକ୍ଷ୍ମୀଙ୍କୁ 'ଭାଣୀ ବୋଲି କହୁଥିଲେ। ଏହାଶୁଣି ଲକ୍ଷ୍ମୀଙ୍କ ମନରେ ବଡ଼ କ୍ରୋଧ ହୋଇଥିଲା ଏବଂ ଲକ୍ଷ୍ମୀ ଶାପ ଦେଲେ ଯେ ଦାସେ କ୍ଷେତ୍ର ଲାଭ କରିପାରିବେ ନାହିଁ। ଦାସେ ଶେଷ ଜୀବନ ପୁରୀ ଜିଲାନ୍ତର୍ଗତ ଏରବଙ୍ଗ ନାମକ ଗ୍ରାମରେ କଟାଉଥିଲେ। ସେଠାରେ ମୃତ୍ୟୁକାଳରେ ଜଗନ୍ନାଥଙ୍କୁ ସ୍ମରଣ କରିବାରୁ ଲକ୍ଷ୍ମୀ ସହିତ ପ୍ରଭୁ ସେ ସ୍ଥାନକୁ ବିଜେ କଲେ। ଦାସେ କହିଲେ— "କଲେ ଭାଣି ! ଏବେ କ'ଣ ହେଲା ?"

ଲକ୍ଷ୍ମୀ ଉତ୍ତର ଦେଲେ, କ'ଣ ହେଲା, ଏ କ'ଣ କ୍ଷେତ୍ର କି ? ଦାସେ କହିଲେ, "କଲେ ! କ୍ଷେତ୍ର ଆଉ କାହାକୁ କହନ୍ତି ? ତୁ ଯେଉଁଠି ସେ ଯେଉଁଠି, କ୍ଷେତ୍ର ତ ସେହି। କ୍ଷେତ୍ର ଆଉ କେଉଁଠି ? ଲକ୍ଷ୍ମୀ ନିରୁତ୍ତର ହେଲେ।"

ଲକ୍ଷ୍ମୀ ଓ ବଳରାମଙ୍କ ଏହି କୌତୂହଳପୂର୍ଣ୍ଣ କଥାବାର୍ତ୍ତା ପରେ କବି ଏରବଙ୍ଗ ଗ୍ରାମର ଅନତି ଦୂରରେ ଶେଷନିଶ୍ୱାସ ତ୍ୟାଗ କରିଥିଲେ। ଏରବଙ୍ଗ ଗ୍ରାମର କନେକ ଅଧିବାସୀ ଏହି କେଳକଥାକୁ କିଞ୍ଚିତ ପରିବର୍ତ୍ତନକରି କୁହନ୍ତି ଯେ କବି ଶେଷ ବୟସରେ ପୁରୀ ଯାଇ ନ ପାରିବାରୁ ନିଜ ବଳଦେବ ମନ୍ଦିର ପ୍ରତିଷ୍ଠାକରି ସେଠାରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ପ୍ରତ୍ୟହ ଦର୍ଶନ ଲାଭ କରିବାର ସୌଭାଗ୍ୟପ୍ରାପ୍ତ ହୋଇଥିଲେ। ହଠାତ୍ ପୁରୀ ଯିବାକୁ ମନସ୍ଥ କରି କିଛି ପଥ ଯିବାପରେ ତାଙ୍କର ଶେଷ ସମୟ ଉପସ୍ଥିତ ହେଲା ଓ ସେ ଜଗନ୍ନାଥଙ୍କୁ ସ୍ମରଣ କରିଥିଲେ। ଜଗନ୍ନାଥ ଲକ୍ଷ୍ମୀଙ୍କ ସହ ସେଠାରେ ଉପସ୍ଥିତହୋଇ କବିଙ୍କୁ ଶେଷଦର୍ଶନ ଦାନ କଲେ। ସେହିଠାରେ ଲକ୍ଷ୍ମୀ ଓ କବି ବଳରାମଙ୍କ ମଧ୍ୟରେ ଉପରୋକ୍ତ କଥାବାର୍ତ୍ତା ସମାହିତ ହୋଇଥିଲା।

(ଗ) ଢେଙ୍ଗଡ଼ଣ ଗ୍ରାମ :— ଢେଙ୍କାନାଳ ନିକଟବର୍ତ୍ତୀ ଢେଙ୍ଗଡ଼ଣ ଗ୍ରାମରେ ଥିବା ବଳରାମଙ୍କ ପ୍ରତିଷ୍ଠିତ ମଠ ପ୍ରସିଦ୍ଧ। ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ମତରେ ଏହା ହେଉଛି ଦ୍ୱିତୀୟ ବଳରାମଙ୍କ ମଠ।

ଉପରେ ପ୍ରଦତ୍ତ ସ୍ଥାନସବୁ ମଧ୍ୟରୁ ଚନ୍ଦ୍ରପୁର ଓ ଢେଙ୍ଗଡ଼ଣ ଗ୍ରାମ ବ୍ୟତୀତ, ଅନ୍ୟ ସମସ୍ତ ସ୍ଥାନ ପୁରୀର ନିକଟବର୍ତ୍ତୀ। ଚନ୍ଦ୍ରପୁର ଓ ଢେଙ୍ଗଡ଼ଣ ଗ୍ରାମ କେବଳ ଯେ ପୁରୀଠାରୁ ଦୂରରେ ଅବସ୍ଥିତ, ତାହା ନୁହେଁ; ଚନ୍ଦ୍ରପୁର ବୋଧହୁଏ ବଙ୍ଗୀୟ ବୈଷ୍ଣବ ବଳରାମଙ୍କ ଜନ୍ମସ୍ଥାନ "ଗୁପ୍ତିପୁର"। ଉଭୟେ ଶ୍ରୀଚୈତନ୍ୟଙ୍କ ସମକାଳୀନ ଥିବାରୁ ଏବଂ ଉତ୍କଳୀୟ ବଳରାମଙ୍କ ଜନ୍ମସ୍ଥାନ ସମ୍ପର୍କରେ ଈଶ୍ୱରଦାସ କୌଣସି ଠିକ୍ ସମ୍ବାଦ ଜାଣିନଥିବାରୁ, ଗୁପ୍ତିପୁରକୁ ଚନ୍ଦ୍ରପୁର କହି ଉତ୍କଳୀୟ ବଳରାମଙ୍କ ଜନ୍ମସ୍ଥାନ ରୂପେ ଭ୍ରମକ୍ରମେ ବର୍ଣ୍ଣନା କରିଛନ୍ତି। ପୁରୀ ଓ ଏହାର ନିକଟବର୍ତ୍ତୀ ସ୍ଥାନସବୁକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ। (୧) ଜନ୍ମସ୍ଥାନ (୨) ବାସସ୍ଥାନ। ଦାର୍ଢ୍ୟତାଭକ୍ତିର ଲେଖକ ରାମଦାସଙ୍କ "ସ୍ୱର୍ଗଦ୍ୱାରେ ତା'ର ଘର" ଉକ୍ତିରୁ କବି ପୁରୀରେ ଜନ୍ମଲାଭ କରିଥିବା

Digitized by srujanika@gmail.com

ଅନୁମାନ କରାଯାଇପାରେ । କବିଙ୍କ ଜୀବନର ବହୁ ବିଶିଷ୍ଟ ଘଟଣା ପୁରୀ ସହ ସଂପୃକ୍ତ । ପୁରୀରେ ଥିବା "ସମାଧି ଗମ୍ଭୁଜ" କୁ ମଧ୍ୟ କେହି କେହି ବଳରାମଙ୍କ "ସାଧନା ସ୍ଥଳ" ରୂପେ ବର୍ଣ୍ଣନା କରିଥାନ୍ତି । ଗୀତାବକାଶ, ବେଦାନ୍ତସାର ଗୁପ୍ତଗୀତା, ଓ ବ୍ରହ୍ମଗୀତା ପ୍ରଭୃତିରେ ବର୍ଣ୍ଣିତ ଆଖ୍ୟାୟିକା ସବୁ ମୁକ୍ତିମଣ୍ଡପ ସହ ସଂପୃକ୍ତ 'ଭାବ ସମୁଦ୍ର'ର ଘଟଣାସ୍ଥଳ ହେଉଛି ବାଙ୍କିମୁହାଣ । ଏ ସବୁରୁ କବି ତାଙ୍କ ଜୀବନର ଅଧିକାଂଶ କାଳ ପୁରୀରେ ଅତିବାହିତ କରିଥିବା ଜଣାଯାଏ । ବଳି, ଏରବଙ୍ଗ, ସମଗରା ଓ ସୁଆଙ୍ଗ ମୁଣୋହି ଉଲ୍ଲେଖରୁ କବି ସମସ୍ତ ସମୟରେ ଏସବୁ ସ୍ଥାନରେ ରହି ଶେଷ ବୟସରେ ଏରବଙ୍ଗ ନିକଟବର୍ତ୍ତୀ ବେଗୁନିଆ ଗ୍ରାମରେ ସମାଧିସ୍ଥ ହୋଇଥିବା ଆପାତତଃ ଗ୍ରହଣ କରାଯାଇପାରେ ।

## ପିତାମାତା ଓ ପରିବାର :

ଜଗମୋହନ ରାମାୟଣ, ଶ୍ରୀମଦ୍‌ଭଗବତ୍ ଗୀତା, ବଟଅବକାଶ, ଭାବ ସମୁଦ୍ର ଓ ବ୍ରହ୍ମାଣ୍ଡ ଭୂଗୋଳ ପ୍ରଭୃତି ଗ୍ରନ୍ଥରେ କବି ନିଜକୁ ସୋମନାଥ, ବା ସୋମନାଥ ମହାପାଙ୍ଗଙ୍କ ପୁତ୍ରରୂପେ ବର୍ଣ୍ଣନା କରିଛନ୍ତି । ନିଜ ପିତାଙ୍କ ସଂପର୍କରେ ସେ ଯେତିକି ସୂଚନା ଦେଇଛନ୍ତି, ସେଥିରୁ ତାଙ୍କ ପିତା କୌଣସି ରାଜାଙ୍କର ମନ୍ତ୍ରୀ ଓ ବିଶିଷ୍ଟ ବିଷ୍ଣୁଭକ୍ତ ଥିବା ଜଣାଯାଏ । କବିଙ୍କର ଏତିକି ସୂଚନାରୁ ପଣ୍ଡିତ ବିନାୟକ ମିଶ୍ର ସୋମନାଥମହାପାତ୍ରଙ୍କୁ ସୂର୍ଯ୍ୟବଂଶୀୟ ରାଜା କପିଳେନ୍ଦ୍ର ଦେବଙ୍କ ମନ୍ତ୍ରୀ ତଥା ଗୋପୀନାଥ ପୁରର ପ୍ରତିଷ୍ଠାତା ଗୋପୀନାଥ ମହାପାତ୍ରଙ୍କ ବଂଶଧର ରୂପେ ପରିକଳ୍ପନା କରିଛନ୍ତି । ଶ୍ରୀ ନଗେନ୍ଦ୍ରନାଥ ବସୁ ସୋମନାଥଙ୍କୁ ମନ୍ତ୍ରୀ ଭାବରେ ସ୍ୱୀକାର କରୁଥିଲେ ହେଁ, ତାଙ୍କୁ ବାଉରୀ ଜାତୀୟ ମନ୍ତ୍ରୀଭାବରେ ଗ୍ରହଣ କରିଛନ୍ତି । ମୟୂରଭଞ୍ଜରେ ବସବାସ କରୁଥିବା ବାଉରୀ ମହାପାତ୍ରମାନଙ୍କର ବିଶ୍ୱାସ ଯେ ସେମାନଙ୍କର ପୂର୍ବପୁରୁଷମାନେ ରାଜମନ୍ତ୍ରୀ ହୋଇ ପାରୁଥିଲେ । ପ୍ରତାପରୁଦ୍ର ହିଁ ଏହି ଅଧିକାରରୁ ସେମାନଙ୍କୁ ବଂଚିତ କରିଥିଲେ ।

'ମହାମନ୍ତ୍ରୀ' ଉଲ୍ଲେଖରୁ ଏସବୁ ଅନୁମାନ ହେବାପରି "ବିଷ୍ଣୁଭକ୍ତ" ରୁ ସୋମନାଥ ପରେ 'ମହନ୍ତ' ରୂପେ 'ମହାପାଙ୍ଗ' ରୁ ରାଜାଙ୍କର ପାତ୍ରଭାବରେ ପରିଚିତ ହେଲେ ।

ସୋମନାଥଙ୍କର ପ୍ରତ୍ୟେକ ଉପାଧି ଅର୍ଥାତ୍ ମହାମନ୍ତ୍ରୀ, ମହନ୍ତ, ମହାପାଙ୍ଗ ଓ ପାଙ୍ଗ ରାଜ ଦରବାର, ବିଶେଷକରି ପୁରୀର ରାଜଦରବାର ସହ ସଂପୃକ୍ତ । ସୋମନାଥଙ୍କ ପୁତ୍ରଭାବେ ବଳରାମ ମଧ୍ୟ ପ୍ରତାପରୁଦ୍ରଙ୍କ ରାଜସଭା ସହ ଜଡ଼ିତଥିବା ଉଚିତ ଥିଲା । ପୁରୀର ଲୋକେ ଅନ୍ତତଃ ଏତିକି ଆଶା କରିଥିଲେ । ଲୋକଙ୍କର ଆଶା-ଭରସାକୁ ଭ୍ରୂକ୍ଷେପ ନକରି ବଳରାମ ରାଜସଭାର ସ୍ତାବକହେବା ପରିବର୍ତ୍ତେ ରାଜସଭାର

Digitized by srujanika@gmail.com

ଆଲୋଚନା କଲେ । ରାଜାଙ୍କୁ ସାହାଯ୍ୟ କରୁଥିବା ପଣ୍ଡା ଓ ପଣ୍ଡିତମାନଙ୍କର ସେ ଥିଲେ କଠୋର ବିରୋଧୀ । ଜଗମୋହନ ରାମାୟଣରେ ସେମାନଙ୍କୁ ଭର୍ତ୍ସନା କରିବା ସଙ୍ଗେ ସଙ୍ଗେ ସମାଜରେ ଅବହେଳିତ, ନିର୍ଯ୍ୟାତିତ ଜନତାକୁ ସାମାଜିକ ସମ୍ମାନ ଓ ଅଧିକାର ଦେବାପାଇଁ ସେ ତାଙ୍କ ଜୀବନର ବ୍ରତ ରୂପେ ଗ୍ରହଣ କରିଥିଲେ । ଫଳରେ ଓଡ଼ିଶାର ରାଜା ଓ କର୍ମଗୁରୁ, ପୁରୀର ପଣ୍ଡା ଓ ପଣ୍ଡିତ କବିଙ୍କ ବିରୋଧୀ ହୋଇଗଲେ । ବୋଧହୁଏ ସେହି ଯୋଗୁଁ କବିଙ୍କୁ ବାରମ୍ବାର ରାଜଦରବାରରେ ପରୀକ୍ଷାର ସମ୍ମୁଖୀନ ହେବାକୁ ହୋଇଥିଲା ଓ ପରବର୍ତ୍ତୀ ଜୀବନରେ ପୈତୃକ ସମ୍ପତ୍ତିରୁ ବଞ୍ଚିତହୋଇ ସେ ଭିକ୍ଷାକୁ ଜୀବନ-ଧାରଣର ଏକମାତ୍ର ସମ୍ବଳ ରୂପେ ଗ୍ରହଣ କରିବାକୁ ବାଧ୍ୟ ହେଲେ । କବି ପ୍ରଥମ ଜୀବନରେ ସୁଖରେ କାଳାତିପାତ କରିଥିଲେ ହେଁ ପରବର୍ତ୍ତୀ ଜୀବନରେ କୁଟୁମ୍ବ ଜଞ୍ଜାଳରେ ନିବ୍ରତ ହୋଇ ପଡ଼ିଥିଲେ ।

'ଜଗମୋହନ ରାମାୟଣ'ରେ କବି ନିଜ ମାତାଙ୍କ ନାମ ମନମାସ୍ତ ? ବୋଲି କହିଛନ୍ତି । 'ଛତ୍ରିଶ ଗୁପ୍ତଗୀତା' ରେ ଜମ୍ବୁଦେବୀଙ୍କର ଉଲ୍ଲେଖ ମିଳୁଥିଲେ ହେଁ ଏହି ନାମ ଉପରେ ନିର୍ଭର କରିହୁଏ ନାହିଁ । କାରଣ କବିଙ୍କର 'ମନମାସ୍ତା' ନାମ ପ୍ରତି ବିଶେଷ ଦୁର୍ବଳତା ଥିବା ପରି ଜଣାଯାଏ । ସେଥିପାଇଁ କବି ସୀତାଙ୍କର ପରମପ୍ରିୟ ସଖୀର ନାମ ଦେଲେ "ମନମାସ୍ତା" ।

କବି ଉତ୍ତର କାଣ୍ଡରେ 'ଦାରସୁତ ଧନ ଜନ' କଥା ସ୍ପଷ୍ଟଭାବରେ ଉଲ୍ଲେଖ କରିଥିଲେ ହେଁ ଓ ଅନ୍ୟସ୍ଥଳରେ 'କୁଟୁମ୍ବ ଜଞ୍ଜାଳ' ର ସୂଚନା ଦେଇଛନ୍ତି । ମାତ୍ର 'ଦାରୁ ସାର ଗୀତା' 'ବ୍ରହ୍ମକୁଣ୍ଡଳୀ' ଓ 'ଭାବ ସମୁଦ୍ର' ପ୍ରଭୃତି କବିଙ୍କ ରଚିତ ଥିବା ଗ୍ରନ୍ଥରୁ କବି ଜନୈକା ବେଶ୍ୟା ସହ ସଂପୃକ୍ତ ଥିବା ଜଣାଯାଏ । 'ଦାରୁ ସାର ଗୀତା' ରେ ଏହି ବେଶ୍ୟାର ନାମ 'ଗୁରୁ' ଥିବା କୁହାଯାଇଛି । ଏହାର ସତ୍ୟତା ଜାଣିବା ସହଜ ନୁହେଁ । ତେବେ ସେ ଯୁଗରେ ପ୍ରସିଦ୍ଧ ଲାଭ କରିଥିବା ପ୍ରତ୍ୟେକ ସାଧକ ସାଧନା-ସଙ୍ଗିନୀ ରଖିଥିବା ଶୁଣାଯାଏ । ଜଗନ୍ନାଥ ଦାସ, ଶ୍ରୀଚୈତନ୍ୟ, ରାମାନନ୍ଦ, ରୂପ ଗୋସ୍ୱାମୀ, ଜୀବ ଗୋସ୍ୱାମୀ ପ୍ରଭୃତି ପ୍ରସିଦ୍ଧ ବୈଷ୍ଣବମାନେ ଏହି ଅପବାଦରୁ ମୁକ୍ତ ନୁହନ୍ତି । ହୋଇପାରେ ବଳରାମଙ୍କ 'ଗୁରୁ' ଏହି ଉଦ୍ଭଟ ପରିକଳ୍ପନାର ଏକ ପରିପ୍ରକାଶ । ଅନ୍ୟ ଗୋଟିଏ କାରଣ ବି ଅଛି । ଜଗମୋହନ ରାମାୟଣରେ କବି ରମ୍ଭା, ଉର୍ବଶୀ, ମେନକା, ଜରତା, ଓ କାମମୋହିନୀ ପ୍ରଭୃତି ବେଶ୍ୟାଙ୍କର ସୁନ୍ଦର ବର୍ଣ୍ଣନା ଦେଇଛନ୍ତି । କୌଣସି ରୂପସୀ ବେଶ୍ୟାଙ୍କର ସାନ୍ନିଧ୍ୟରୁ ଏ ପ୍ରକାର ବର୍ଣ୍ଣନାର ସୃଷ୍ଟି ହୋଇଥିବା ଅନୁମାନ କରାଯାଇପାରେ । ଯେପରିକି କବି କେଶବ ଦାସଙ୍କ 'କବି ପ୍ରିୟା' ଓ 'ରସିକ ପ୍ରିୟା' ଆଦି ରଚନା । ତୁଳସୀ ଦାସ,

Digitized by srujanika@gmail.com

ସୁରଦାସ ପ୍ରଭୃତି ପ୍ରସିଦ୍ଧ ଭକ୍ତ କବିଙ୍କୁ ମଧ୍ୟ ଲୋକେ ଏହି ଦୁର୍ନାମରୁ ମୁକ୍ତ କରି ନାହାନ୍ତି । ଏସବୁରୁ ଏତିକି ବୁଝାଯାଇପାରେ ଯେ ରସିକ ଓ ଭକ୍ତକବିମାନଙ୍କୁ ବେଶ୍ୟାସହ ସଂପୃକ୍ତ କରିବା ଥିଲା ଏକ ମଧ୍ୟକାଳୀନ ଭାରତୀୟ ପରଂପରା । ବଳରାମଙ୍କ 'ଚୁଲି' ଏହି ପରଂପରାର ପ୍ରତୀକ ।

## ରାମାୟଣର ନାମ ଜଗମୋହନ :

"ତିନିଲୋକ ବଶ ହୁଅଇ ଯାହାକୁ ଚାହିଁ
ସେହି ସେ ଜଗନ୍ନାଥ ଜଗମୋହନ ଗୋସାଇଁ ।"

ଆଦି ୧—୧୩

ଭକ୍ତକବି ବଳରାମ ଦାସଙ୍କ ଏହି ଉକ୍ତିରେ ଜଗମୋହନ ନାମର ମୂଳ ଆଦର୍ଶ ନିହିତ । ଜଗନ୍ନାଥଙ୍କର ଅନ୍ୟ ନାମ ଜଗମୋହନ । ଜଗନ୍ନାଥ ନାମରେ ଜଗତର ନାଥ ଭାବନା ଥିବା ପରି ଜଗମୋହନ ନାମରେ ଜଗତକୁ ମୁଗ୍ଧ କରିବା, ଅନ୍ୟଭାବରେ ତ୍ରୈଲୋକ୍ୟକୁ ବଶକରିବା କଥା ରହିଛି । କବି ଭଗବାନଙ୍କ ପ୍ରଭୁ ପଦ ଅପେକ୍ଷା ତାଙ୍କ ମୋହନ ରୂପକୁ ହିଁ ବେଶୀ ପ୍ରାଧାନ୍ୟ ଦେଇଛନ୍ତି । ସେଥିପାଇଁ ତେଲୁଗୁ ରଙ୍ଗନାଥ ରାମାୟଣ ପରି ନିଜ ରାମାୟଣକୁ 'ଜଗନ୍ନାଥ ରାମାୟଣ' ନାମ ନ ଦେଇ ଏହାର ନାମ ଦେଲେ 'ଜଗମୋହନ ରାମାୟଣ' । ଏଥିରେ ଜଗନ୍ନାଥ ତତ୍ତ୍ୱର ମୂଳ ଆଦର୍ଶ 'ବଶ' ସାଙ୍ଗକୁ 'ଜଗନ୍ନାଥ' ନାମ ବି ରହିଲା ।

କବି ମନର ଏହିକଥା ଆଦି କାଣ୍ଡର ଆଉ ଗୋଟିଏ ଉକ୍ତି ତାଂଶରୁ ଆହୁରି ସ୍ପଷ୍ଟ ହୁଏ । ଜନକଙ୍କ ରାଜସଭାରେ ରାମ ଉପସ୍ଥିତ ହେବାକ୍ଷଣି ସେଠାରେ ଥିବା ସବୁ ଲୋକଙ୍କ ଦୃଷ୍ଟି ତାଙ୍କ ଆଡକୁ ସ୍ୱତଃ ଟାଣି ହୋଇଗଲା । ରାଜସଭାର ଅନ୍ୟ ସବୁ ସୁନ୍ଦର ଜିନିଷକୁ ଛାଡ଼ି ସମସ୍ତେ ରାମଙ୍କୁ ଦେଖିବାରେ ଲାଗିଲେ । ଲୋକମାନଙ୍କ ମନର ଏହି ଭାବନାକୁ ସଖୀ ମନମାୟା ସୀତାଙ୍କ ସମ୍ମୁଖରେ ଅତି ସୁନ୍ଦରଭାବରେ ବିଶ୍ଳେଷଣ କରିଛି । କାରଣ ସେ ବିଷ୍ଣୁ, ସେ ଚକ୍ରପାଣି, ସେ ହରି, ସେ ଜଗତ ଅଧିକାରୀ, ସେ ଜଗନ୍ନାଥ, ସେ ପୁରୁଷୋତ୍ତମ, ସର୍ବୋପରି ସେ ଜଗମୋହନ । ପ୍ରଭୁଙ୍କ ହରି, ପୁରୁଷୋତ୍ତମ, ଜଗମୋହନ ପ୍ରଭୃତି ନାମରେ ସେହି ଗୋଟିଏ ମହନୀୟ ଗୁଣ, 'ସର୍ବଜନ ମୋହିବା'; ମନମାୟା ଏହି ଗୋଟିଏ ଗୁଣକୁ ବାରମ୍ବାର ପ୍ରକାଶ କରିଛି ।

(୧) ସର୍ବଜନ ମୋହି ପାରନ୍ତି ସେ ହରି ।
(୨) ଯାହାକଇ ଝଟଇ ସର୍ବଜନ ମନ ।
(୩) ତାହାକୁ ଦେଖିଲେ ସର୍ବଜନ ମୋହିଂ ହୋଇ ।
(୪) ଯାହାକୁ ସକଳ ଜନ ମୋହି ହୋଇ ।
(୫) ଯେ ଜଗମୋହନ ତାହାକୁ ଦେଖିଲେ ସେ ବଶ୍ୟ ହୋଇ ।
(୬) ଯାହାକୁ ବଶ୍ୟ ହୋଇ ତାହାକୁ ଭଲ କହି ।

Digitized by srujanika@gmail.com

ଉପରେ ଉଦ୍ଧୃତ ହୋଇଥିବା ପଂକ୍ତି ପର ଏଥିରେ ମଧ୍ୟ ସେହି ଦୁଇଟି କଥା- ଭଗବାନଙ୍କ ମୋହନ ରୂପ ଓ ଜଗତକୁ ବଶକରିବାର କ୍ଷମତା । ଏହି ଦୁଇଟି ଗୁଣ ମଧ୍ୟରେ ଜଗମୋହନ ରାମାୟଣର ନାମକରଣର ତାତ୍ପର୍ଯ୍ୟ ନିହିତ ।

କବିଙ୍କ ଭାଷାରେ—

"ଯାହାକୁ ସକଳ ଜନ ମୋହି ହୋନ୍ତି
ଜଗତ ମୋହୋନ ସେ ତାହାକୁ ବୋଲନ୍ତି । ୪୮୨ ।
ଯେ ଜଗତ ମୋହନ ତାହାଙ୍କୁ ଦେଖିଲେ ସେ ବଶ୍ୟ ହୋଇ
ଯାହାକୁ ବଶ୍ୟ ହୋଇ ତାହାକୁ ଭଲ କହି" । ୪୮୩ ।

ଜଗତକୁ ମୁଗ୍ଧକରିପାରୁଥିବାରୁ ଏହି ରାମାୟଣ ଯେ ଜଗତମୋହନ ରାମାୟଣ, ତାହା ନୁହେଁ, କିନ୍ତୁ ଜଗନ୍ନାଥ ବା ଜଗମୋହନ ଏହାର କବି । ଉତ୍ତର କାଣ୍ଡରେ କବି ଏହାକୁ ଦୃଢ଼ କଣ୍ଠରେ ଘୋଷଣାକରି କହିଛନ୍ତି—

"ଜଗମୋହନ ରାମାୟଣ ଯେଥି କବି ଜଗନ୍ନାଥ
ତାହାର ଆଂଶ୍ୟାରେ ଲହିଲି ମୋହୋର ହାଥ ।"

ଜଗନ୍ନାଥଙ୍କୁ କବି ରୂପେ ଘୋଷଣାକରିବା ଉପକର କଥା ନୁହେଁ । କବିଙ୍କର ଏହି ସାହସ ମୂଳରେ ଦୀର୍ଘଦିନର ଇତିହାସ ନିହିତ । ଆଦି କାଣ୍ଡରୁ ଏହାର ଆରମ୍ଭ । ଯେତେବେଳେ ରାମାୟଣ ରଚନା କରିବାକୁ ମନସ୍ଥକରି କବି ଲେଖିଛନ୍ତି—

"ଶ୍ରୀରାମ ରୂପ ଜାନକୀପତି ମୂର୍ତ୍ତି
ସପ୍ତମ ଅବତାରେ ହୋଇଲେ ଶ୍ରୀପତି । ୭୯ ।
ରାବଣର ଦର୍ପ ଧ୍ୱଂସିଲେ ଯେବଣ କୃତ୍ୟେ ।
ତାହା ମୁଁ ବର୍ଣ୍ଣିବ ରଚବଇଂ ଗୀତେ" । ୮୦ ।

କବି ସ୍ପଷ୍ଟଭାବରେ ଅନୁଭବ କଲେ ଭଗବାନଙ୍କର କରୁଣା । ଜଗନ୍ନାଥ ତାଙ୍କ ହୃଦୟରେ ପ୍ରବେଶ କରିଗଲେ । ଭଗବାନ ଓ ଭକ୍ତ ମଧ୍ୟରେ ପାର୍ଥକ୍ୟ ଲୋପ ପାଇଗଲା ଏବଂ ରାମ କଥା ଅମୃତ ଧାରା ସଦୃଶ ଝରିବାକୁ ଲାଗିଲା ।

ଜଗନ୍ନାଥଙ୍କ ବଳରେ ବଳୀୟାନ୍ ହୋଇ କବି ଅନବରତ ଭାବେ ଲେଖିଗଲେ ଆଦ୍ୟ ଅଯୋଧ୍ୟା, ଆରଣ୍ୟକ, କିଷ୍କିନ୍ଧା ଓ ସୁନ୍ଦର । ଲଙ୍କାକାଣ୍ଡ ଲେଖିଲା ବେଳକୁ କବିଙ୍କ ସାହସ କୁଳେଇଲା ନାହିଁ । ନୂଆ ଶକ୍ତିର ସନ୍ଧାନପାଇଁ ସେ ଗଲେ ପୁରୁଷୋତ୍ତମ କ୍ଷେତ୍ରକୁ । ସେଦିନ ଜଗତ ପ୍ରସିଦ୍ଧ ରଥଯାତ୍ରା । ହଜାର ହଜାର ଲୋକଙ୍କ ସମାଗମରେ ବଡ଼ଦାଣ୍ଡ ମୁଖରିତ । କବି ବଡ଼ଦାଣ୍ଡରେ ପହଞ୍ଚି ଦେଖିଲେ, ଆଗରେ ବଳଭଦ୍ର, ମଝିରେ ସୁଭଦ୍ରାଙ୍କୁ ରଖି ପଛରେ ଜଗନ୍ନାଥଙ୍କ ନନ୍ଦିଘୋଷ ରଥ ଘୋର ଘଘର

Digitized by srujanika@gmail.com

ନାଦରେ ଗତ କରୁଛୁ । ଲେକ ହଲ ଭେଦକର କବ ନରେଖି ଗୁହିଁଲେ ଜଗନ୍ନାଥଙ୍କୁ; ଜଗନ୍ନାଥ ବ ଗୁହିଁଲେ ଭକ୍ତଙ୍କୁ । ପରମପ୍ରିୟ ଭକ୍ତୀକୁ ଦେଖି ଭଗବାନଙ୍କ ଆଖି ନଶ୍ଚଳ ହୋଇଗଲ ଓ ଅଧରରେ ଫୁଟି ଉଠଲ ସୀମାଶ୍ୱିନ କରୁଣାର ହସ ।

"ଆଖି ନ ପିଛୁଡ଼ନ୍ତ ଭକ୍ତୀଜନ ଗ୍ନଦ୍ଧଂ
ଅଧର ବକାଶଇ ହସି କଥା କହ୍ନ୍ତଂ ।"

ଭକ୍ତଙ୍କର ଆଉ କୁଟିବା ବାକ ରହଲ ନାହିଁ । ଜଗନ୍ନାଥଙ୍କ ଅନୁଗ୍ରହ ପାଇ ସେ ଫେରି ଆସିଲେ ନଜ ସାଧନା ପୀଠକୁ । ଲଙ୍କାକାଣ୍ଡ ଲେଖା ଆରମ୍ଭ ହେଲ । ରାମ ଓ ରାବଣଙ୍କର ଅସଂଖ୍ୟ ସମରର ବର୍ଣ୍ଣନା ବନା ବାଧାରେ ସମାପ୍ତ ବ ହୋଇଗଲ । ପୁଣିଥରେ ଏହପର ଏକ ଘଡ଼ସନ୍ଧି ସମସ୍ୟ ଆସେ ଉତ୍ତରକାଣ୍ଡରେ, ସୀତା ନର୍ବାସନ ପରେ । ଏହା ଥିଲ ଲକ୍ଷ୍ମୀଙ୍କ କଥା । କବ ଏଥର ଜଗନ୍ନାଥଙ୍କୁ ବନ୍ଦନା ନ କର ସ୍ୱୟଂ ଲକ୍ଷ୍ମୀଙ୍କୁ ସ୍ତୁତ କଲେ । କବ ବଳରାମଙ୍କ କରୁଣ ଆବେଦନ ଶ୍ରବଣକର ନଜେ ଜଗନ୍ନାଥ ଲକ୍ଷ୍ମୀଙ୍କ ହାତ ଧର ତାଙ୍କୁ ମନେଇଲେ । ବଳରାମଙ୍କ ମନୋବାଞ୍ଛା ପୂର୍ଣ୍ଣ ହୋଇଗଲ । କବ ଲେଖିଲେ ସୀତା କପାଳରେ କରୁଣ କଥା ।

ଏସବୁ ଘଟଣା ବ୍ୟତୀତ ବନ୍ଦନା ବ ଅଛ । ଏହପର ଦେଖିଲେ କବ ବଳରାମ ରାମାୟଣରେ ପ୍ରକୃତ କବ ଭାବେ ଜଗନ୍ନାଥଙ୍କୁ ଗ୍ରହଣ କରଛନ୍ତ । କବଙ୍କ କଣ୍ଠରୁ ଯେଉଁ ସ୍ୱର ନଃସୃତ ହେଉଥିଲ, ତାହା ଥିଲ ଜଗନ୍ନାଥଙ୍କ ସ୍ୱର । ତେଣୁ କବ ତାଙ୍କ ରାମାୟଣର ନାମ ଦେଲେ ଜଗମୋହନ ରାମାୟଣ ।

ଏହ ନାମର ସାର୍ଥକତା ଅନ୍ୟ ଦୃଷ୍ଟିରୁ ମଧ ଦେଖିହୁଏ । ଶ୍ରୀରାମ କେବଳ ଜଗନ୍ନାଥଙ୍କ ସପ୍ତମ ଅବତାର ନୁହଁନ୍ତ, ସେ ସ୍ୱୟଂ ଜଗନ୍ନାଥ । ଶ୍ରୀରାମଙ୍କ ବଭିନ୍ନ ନାମ ମଧ୍ୟରେ କବ ଜଗନ୍ନାଥଙ୍କ ନାମ ଗଣନା କରଛନ୍ତ ବୋଲ ନୁହେଁ, ଶ୍ରୀରାମ ଜୀବନର ବଭିନ୍ନ ପ୍ରସିଦ୍ଧ ଘଟଣାକୁ ସେ ଜଗନ୍ନାଥଙ୍କ ବଶିଷ୍ଟ ପର୍ବ ସହ ସମ୍ପୃକ୍ତ କରଛନ୍ତ । ଶ୍ରୀରାମଙ୍କ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ରଥଯାତ୍ରାର ଶୋଭା ପ୍ରଦାନ କରୁଥିବାବେଳେ ଅଯୋଧ୍ୟା ପ୍ରବେଶ ବାହୁଡ଼ା ଯାତ୍ରାର ସ୍ମୃତ ଜାଗ୍ରତ କରଛ । ସେହପର ଶ୍ରୀରାମଙ୍କ ବୈକୁଣ୍ଠ ବଶ୍ରାମ ବେଳେ କବ ତୁଳନାରେ ହର-ଶୟନ ଏକାଦଶୀକୁ ଆଣିଛନ୍ତ । ଶ୍ରୀରାମ ଓ ଜଗନ୍ନାଥଙ୍କ ଅଭିନ୍ନତା ପ୍ରତପାଦନ କରବାପାଇଁ କବ ଗୋଟିଏ ସୁନ୍ଦର ଦୃଶ୍ୟର ଅବତାରଣା କରଛନ୍ତ । ଶ୍ରୀରାମ, ସୀତା ଓ ଲକ୍ଷ୍ମଣ ନର୍ବାସନ ପରେ ବଭିନ୍ନ ତୀର୍ଥ ପର୍ଯ୍ୟଟନ କର ଓଡ଼ିଶାରେ ପୁରୁଷୋତ୍ତମରେ ପହଞ୍ଚିଲେ । ଜଗନ୍ନାଥ ମନ୍ଦିରରେ ପ୍ରବେଶକର ଶ୍ରୀରାମ, ସୀତା ଓ ଲକ୍ଷ୍ମଣ ଯଥାକ୍ରମେ ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ରଙ୍କ ସମ୍ମୁଖରେ ଠିଆ ହୋଇଯିବା ଫଳରେ ଜଗନ୍ନାଥ ଓ ରାମ, ସୁଭଦ୍ରା ଓ ସୀତା, ବଳଭଦ୍ର ଓ ଲକ୍ଷ୍ମଣ ମିଶି ଏକାକାର ହୋଇଗଲେ । ସୁଭଦ୍ରା, ସୀତା ହେବା

Digitized by srujanika@gmail.com

ଫଳରେ ଭଉଣୀ ସ୍ତ୍ରୀରେ ପରିଣତ ହୋଇଗଲେ । ଏହି କଥାର ମୂଳ ହେଉଛି ବୌଦ୍ଧ ଦଶରଥ ଜାତକ । ସେଥିରୁ ଜଣାଯାଏ ରାମ ଓ ସୀତା ପ୍ରଥମେ ଭାଇ ଓ ଭଉଣୀ ଭାବରେ ବନବାସ କରିଥିଲେ । ବନବାସରୁ ଫେରିବା ବେଳକୁ ସେମାନେ ହୋଇଥିଲେ ସ୍ୱାମୀ ଓ ସ୍ତ୍ରୀ । ବଳରାମଙ୍କ ଉପରେ ଦଶରଥ ଜାତକର ପ୍ରଭାବ କେତେଦୂର ଥିଲା, କହିବା ସହଜ ନୁହେଁ, ତେବେ ପରିଣାମରେ ତାହାହିଁ ହୋଇଥିଲା । ଜଗନ୍ନାଥ ଓ ରାମ ଅଭିନ୍ନ ଥିବାରୁ ରାମାୟଣ ହେଲା ଜଗମୋହନ ରାମାୟଣ ।

ରାମାୟଣର ଜଗମୋହନ ରୂପ କେବଳ ଜଗତକୁ ମୁଗ୍ଧ କରିବାପାଇଁ ଅଭିପ୍ରେତ ନୁହେଁ, ଏହାର ଅନ୍ୟ ଲକ୍ଷ୍ୟ ହେଲା, ଭକ୍ତଙ୍କର ପାପ ଧ୍ୱଂସକରିବା ସଙ୍ଗେ ସଙ୍ଗେ ଜଗତର ମଙ୍ଗଳ ସାଧନ । ସେଥିପାଇଁ କବି ବାରମ୍ବାର 'ଜଗତର ହିତେ'' କଥା କହିଛନ୍ତି । ଧର୍ମ, ଅର୍ଥ, କାମ, ମୋକ୍ଷ ପ୍ରଦାନକରି ସାଧାରଣ ଲୋକଙ୍କୁ ଅଲୌକିକ ଗୁଣସମ୍ପନ୍ନ କରିବା ଏହାର ଆଦର୍ଶ । ଭାମହ ''କାବ୍ୟାଲଙ୍କାର''ରେ ଚତୁର୍ବର୍ଗ ସାଧନ ବ୍ୟତୀତ କଳା-ବୈଲକ୍ଷଣ, ପ୍ରୀତି ଓ କୀର୍ତ୍ତିକୁ କଳାର ପ୍ରୟୋଜନଭାବେ ଗ୍ରହଣକରି ଲେଖିଛନ୍ତି—

''ଧର୍ମାର୍ଥ କାମ ମୋକ୍ଷେଷୁ ବୈଚକ୍ଷଣ୍ୟଂ କଳାସୁ ଚ
ପ୍ରୀତିଂ କରୋତି କୀର୍ତ୍ତିଂ ଚ ସାଧୁକାବ୍ୟ ନିବନ୍ଧନମ୍ ।''

ମମ୍ମଟ ମଧ୍ୟ ପ୍ରକାରାନ୍ତରେ ସେହିସବୁ ଗୁଣ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ।

''କାବ୍ୟଂ ଯଶସେଽର୍ଥକୃତେ ବ୍ୟବହାର ବିଦେ ଶିବେତରକ୍ଷତୟେ ।
ସଦ୍ୟଃ ପରନିର୍ବୃତୟେ କାନ୍ତା ସମ୍ମିତତୟୋପଦେଶଯୁଜେ ।''

ବଳରାମଙ୍କ ରଚିତ ରାମାୟଣର ଜଗମୋହନ ନାମରେ ତେଣୁ ଦୁଇଟି ମାଧୁରୀ । ଏହା ଲୋକଙ୍କୁ ମୁଗ୍ଧକରେ କେବଳ ବାହାରେ ନୁହେଁ, ଭିତରେ ମଧ୍ୟ । କବିଙ୍କ ଉଦ୍ଦେଶ୍ୟରୁ ହିଁ ଜଗମୋହନ ନାମର ସାର୍ଥକତା ଦେଖି ହୁଏ ।

ଗ୍ରନ୍ଥ ମଧ୍ୟରୁ ଜଗମୋହନ ନାମର ଏହିସବୁ ପ୍ରମାଣ ସଂଗ୍ରହ କରିବାପରେ ଆଉ ଦୁଇଟି ଉଦ୍ଭଟ ଅନୁମାନର କଥା ମନ ମଧ୍ୟରେ ଉଦୟ ହୁଏ । ପ୍ରଥମଟି ହେଉଛି, ଜଗମୋହନରେ ରଚିତ ହେତୁ ଜଗମୋହନ ରାମାୟଣ । ଏ କଥା କବି ଗ୍ରନ୍ଥ ମଧ୍ୟରେ କେଉଁଠି ଲେଖି ନାହାନ୍ତି । ବରଂ ଲଙ୍କାକାଣ୍ଡ ରଚନା ଆରମ୍ଭ କଲାବେଳକୁ କବି ପୁରୀରେ ନ ଥିବା ହିଁ ଜଣାଯାଏ । ତେଣୁ ଜଗମୋହନରେ ବସି ରାମାୟଣ ରଚନା କରିବା ଏକ କନିଷ୍ଠ ବ୍ୟତୀତ ଆଉ କିଛି ନୁହେଁ ।

Digitized by srujanika@gmail.com

ପ୍ରତାପରୁଦ୍ରଙ୍କ ଜନୈକ ଜଗନ୍ନୋହନଙ୍କର ଜଗମୋହନ ରାମାୟଣ ରଚନାସହ ସମ୍ବନ୍ଧଥିବା କେହି କେହି ଅନୁମାନ କରିଥାନ୍ତି । ଏଥିରେ ମଧ୍ୟ ସତ୍ୟତା ନାହିଁ । ଏହା କେବଳ ଅନୁମାନ ।

ବାଲ୍ମୀକି ରାମାୟଣ ପରେ ଏ ଦେଶରେ ବହୁ ରାମାୟଣ ରଚିତହୋଇ ପ୍ରସିଦ୍ଧ ଲାଭ କରିଥିଲା । ସେସବୁ ରାମାୟଣର ନାମକରଣକୁ ଅନୁଧ୍ୟାନ କଲେ ଦୁଇଟି ଧାରା ଦେଖିବାକୁ ମିଳେ । କବିଙ୍କ ନାମାନୁସାରୀ ଓ ରାମକଥାନୁସାରୀ ରାମାୟଣରେ ନାମ । ପ୍ରଥମ ପର୍ଯ୍ୟାୟରେ ଆସେ ହନୁମାନ ନାଟକ, କମ୍ବନ୍ ରାମାୟଣ, କୃତ୍ତିବାସ ରାମାୟଣ, କନ୍ଦଳୀ ରାମାୟଣ,ରଙ୍ଗନାଥ ରାମାୟଣ ଓ ଦ୍ୱିତୀୟ ପର୍ଯ୍ୟାୟରେ ଆସେ ଉତ୍ତର ରାମଚରିତ, ରାମଚରିତ, ଅନର୍ଘ ରାଘବ, ପ୍ରସନ୍ନ ରାଘବ, ରାମଚରିତ ମାନସ, ଓ ଭାବାର୍ଥ ରାମାୟଣ । ଏହି ଦୁଇଟି ପ୍ରସିଦ୍ଧ ପରଂପରା ବ୍ୟତୀତ ଅନ୍ୟ ଗୋଟିଏ ଧାରା ବି ମିଳେ । ଆରାଧ୍ୟ ଦେବତାର ନାମ ଦେଇ ରାମାୟଣ ରଚନା ପଦ୍ଧତି, ଯେପରି ଓଡ଼ିଆର ଜଗମୋହନ ରାମାୟଣ । ନିଜ ରାମାୟଣର ସ୍ୱତନ୍ତ୍ର ସ୍ଥିତି ନିର୍ଣ୍ଣୟ କରିବା ସଙ୍ଗେ ଭଗବାନଙ୍କ ସହ ସଂପୃକ୍ତ କରିବାର ବାସନା ଏଥିରେ ନିହିତ । ଏ ଦୃଷ୍ଟିରୁ ବଳରାମ ତେଲୁଗୁ ଭାଷାର ଅତି ନିକଟବର୍ତ୍ତୀ । ଓଡ଼ିଶାକୁ, ଓଡ଼ିଶାର ଆରାଧ୍ୟ ଜଗନ୍ନାଥଙ୍କୁ ରାମାୟଣ ସହ ମିଶାଇବାର ଥିଲା, ସେ ସମୟର ନିଜସ୍ୱ ଦୃଷ୍ଟିଭଙ୍ଗୀ ।

## ଜଗନ୍ନାଥ ମୁଗ୍ଧ କବି ବଳରାମ :

ରାମାୟଣ ରଚନା କରିବାକୁ ସ୍ଥିର କଲାପରେ କବି ତାଙ୍କ ପାଖରେ ଥିବା ଉପାଦାନ ସବୁକୁ ପରୀକ୍ଷାକରି ଦୁଇଟି ମୂଳସ୍ରୋତର ସନ୍ଧାନ ଦେଲେ ।

୧—ବାଲ୍ମୀକୀୟ ରାମକଥା

୨— ପଣ୍ଡିତ ଜନଙ୍କଠାରୁ ଶୁଣିଥିବା କଥା

ଲେଖିବାର କାରଣ ବିଷୟରେ ସୂଚନାଦେଇ କବି ଲେଖିଲେ,

"ମୋ ଜନ୍ମ ମୋହର ସାର୍ଥକ କରିବି ତୋତେ ସେବି"

ପୁଣି, "ତାହା ମୁଂ ସ୍ମରଣ ଧ୍ୱଂସିବ ପାପରାଶି" ।

ସବୁ ତ ହେଲା, ତେବେ ବି ରାମାୟଣ ଲେଖିବା ସହଜ ହେଲା ନାହିଁ । କବି ଦେଖିଲେ ଏ ସ୍ଥଳରେ ଏକମାତ୍ର ଜଗନ୍ନାଥ ହିଁ ଭରସା । ସେଥିପାଇଁ କବି କହିଲେ—

"ତୁ ସେ ନାରାୟଣେ ଶରଣ ରଖନ୍ତା
ଜାଣୁଂ ବ୍ରହ୍ମ ସବୁହିଂ ହୋଇ ଦେଖନ୍ତା । ୬୫ ।
ଧନ୍ୟ ଜଗନ୍ନାଥ ଅବଳ ବଳ ନାହିଂ
ତୋହୋର ଆଗେ ସ୍ୱାମୀ ଜପ ମନ୍ତ୍ର କାହିଂ । ୬୬ ।

Digitized by srujanika@gmail.com

ଭଗବାନଙ୍କର 'ଶରଣ ରଖନ୍ତା' ଓ 'ସବୁ ଦୁଂ ସ୍ନେହରେ ଦେଖନ୍ତା' ଗୁଣ ଯୋଗୁଁ ହିଁ କବି ଜଗନ୍ନାଥଙ୍କର ଶରଣ ନେଲେ ।

"ମୁହିଂ ତୋହୋର ଶରଣ ପଶିଲି ଜଗନ୍ନାଥ
ହୁଙ୍କରି ଧରି ମୋତେ ଶଙ୍ଖ ଚକ୍ର ହସ୍ତ । ୭୦ ।

ତୁ ଦେବ ଉଦ୍ଧାରଣ ବୋଲଣ ଭଜିଲି
ଭବ୍ୟେ ନ ଜାଣଣ ତୋରେ ଶରଣ ପଶିଲି" । ୭୧ ।

ବ୍ରହ୍ମା ଯେଉଁ ନାରାୟଣଙ୍କ ସମ୍ମୁଖରେ ଭୟରେ ଥରହର ହୁଅନ୍ତି, ଯୋଗ ପାଇଁ ତ୍ରିପିଙ୍କ ଶିବ ଯାହାଙ୍କ ନିକଟରେ ଯୋଗ ସାଧନାରେ ହାଣପାଁନ୍ତି, ଦେବତାମାନେ ବିପଦ ପଡ଼ିଲେ ନିସ୍ତାର ପାଇବାପାଇଁ ଯାହାଙ୍କ ପାଖରେ ଶରଣ ପଶନ୍ତି, ସେହି ଭଗବାନ ବଳରାମଙ୍କର ନିଜ ଲୋକ ହୋଇଗଲେ । ଏହା ଥିଲା ଭଗବାନଙ୍କର ବଳରାମଙ୍କ ପ୍ରତି ଅସୀମ ଦୟା । ଭଗବାନଙ୍କ ଦୟା ନ ହେଲେ ଶରଣ ପଶିବା ଏତେ ସହଜ ନୁହେଁ । କବି ଲେଖିଛନ୍ତି—

"ଯାହାକଇ ସ୍ୱଦୟା କରୁ ବ୍ରହ୍ମଋଷି
ସେ ତୋହୋର ଚରଣେ ଶରଣ ପଶଇ ଆସି" । ୭୩ ।

ଭଗବାନଙ୍କ ଦୟା ଓ କବିଙ୍କ ସମ୍ପୂର୍ଣ୍ଣ ଆତ୍ମସମର୍ପଣ ଫଳରେ ଦାରୁବ୍ରହ୍ମ ଜଗନ୍ନାଥ ବଶୀଭୂତ ହୋଇଗଲେ । କବିଙ୍କ ନିବେଦନ ସଫଳ ହେଲା । କବି ସ୍ପଷ୍ଟ ଭାବରେ ଦେଖିଲେ ଜଗନ୍ନାଥ ଅଛ ରତ୍ନ ସିଂହାସନ ଉପରେ ନୀରବରେ ବସି ନାହାନ୍ତି; ତାଙ୍କର ପ୍ରତ୍ୟେକ ଅଙ୍ଗରେ ଜଗତ-ଉଦ୍ଧାରଣର ସଙ୍କେତ ।

"ଦୁଇବାହୁ ଟେକିଣ ଯାଚନ୍ତି ଶରଣ
ଯେବଣ ନାମ ଗୋଟି ଜଗତ ଉଦ୍ଧାରଣ । ୮୨ ।

ଦାସ ଜନକଇ ଦେଖିଲେ ହସନ୍ତି
ତେଣୁ ସେ ସୁରଙ୍ଗ ଅଧର ବିଗସନ୍ତି । ୮୩ ।

ଚକ୍ଷୁ ନିଚଳ ଭଣଣ ଦେବ ସ୍ନେହେଂ
ନ ପୁଣ ମୋହର ଭଗତ ଦୁଃଖ ପାୟେ" । ୮୪ ।

### ଜଗମୋହନ ରାମାୟଣର ଆଧାର ଭୂମି :

ବଳରାମ ଦାସ ଜଗମୋହନ ରାମାୟଣ ରଚନା କଲାବେଳକୁ ତାଙ୍କ ଆଗରେ ସଂସ୍କୃତ, ପ୍ରାକୃତ ଓ ଅପଭ୍ରଂଶର ବହୁ ଗ୍ରନ୍ଥ ଥିଲା, କିନ୍ତୁ ଓଡ଼ିଆରେ ଥିଲା କେବଳ ସାରଳା ଦାସଙ୍କ ମହାଭାରତ ଓ ବିଚିତ୍ର ରାମାୟଣ । ଉଭୟ ମହାଭାରତ ଓ ରାମାୟଣରେ ସାରଳାଦାସ ଶାସ୍ତ୍ରୀୟ କଥାକୁ ଛାଡ଼ି ନିଆ କଥା ସୃଷ୍ଟି କରୁଥିଲେ । ତାଙ୍କ ଅଲୌକିକ

Digitized by srujanika@gmail.com

ପ୍ରତଭା ବଳରେ ସେ କଥାସବୁକୁ ଏପରି ସଜେଇ ଦେଉଥିଲେ ଯେ ତାହା ଓଡ଼ିଆ ସମାଜ ସହ ଖାପଖାଇ ଯାଉଥିଲା ।

ନୂଆକଥା ସୃଷ୍ଟି କଲାବେଳେ ସେ ନିଜ ସମାଜକୁ ଦେଖୁଥିଲେ, ଗ୍ରାମପଞ୍ଚରେ ଥିବା ଲୋକଙ୍କ କଥା ଶୁଣୁଥିଲେ । ସେଥିରେ ନିଜ ଆଦର୍ଶ ଓ କଳ୍ପନା ମିଶାଇ କଥାର ନବକଳେବର ଗଠନ କରୁଥିଲେ । ଅନ୍ୟ ଶାସ୍ତ୍ର ଓ ପୁରାଣ ସହ ତାଙ୍କର ସାଦୃଶ୍ୟ ବେଶୀଭାବେ ଲୋକମୁଖରୁ ହିଁ ଆସିଥିଲା ।

ଲୋକଙ୍କ ସହ ମିଶି ଲୋକକଥା କହିବାର ସୁବିଧା ସାରଳା ଦାସଙ୍କ ପରି ବଳରାମଙ୍କର ବୋଧହୁଏ ନ ଥିଲା । ପ୍ରଥମ କଥା ହେଲା, ସେ ଥିଲେ ପୁରୀବାସୀ ଓ ମନ୍ତ୍ରୀ ପୁଅ । ଗାଁ ଲୋକଙ୍କ ଅପେକ୍ଷା ସେନା, ସାମନ୍ତ, ପଣ୍ଡା, ପଣ୍ଡିତ, ପଢ଼ିଆରି, ଓ ବୈଷ୍ଣବଙ୍କ ସହ ମିଶିବାର ସୁବିଧା ବେଶୀ ଥିଲା । ଏମାନେ ସମସ୍ତେ ପ୍ରାକୃତ ଭାଷା ଅପେକ୍ଷା ସଂସ୍କୃତକୁ ବିଶେଷ ଆଦର କରୁଥିଲେ ; ସେଥିପାଇଁ ବଳରାମ ଜଗନ୍ନାଥ ଦାସଙ୍କ ପରି ସଂସ୍କୃତ ଶାସ୍ତ୍ରସବୁ ପଢ଼ିଥିବା ସ୍ୱାଭାବିକ । ତାଙ୍କର ବ୍ରହ୍ମଗୀତା ଓ ଶ୍ରୀମଦ୍ ଭଗବତ୍ ଗୀତା ଏହାର ଜ୍ୱଳନ୍ତ ପ୍ରମାଣ । ସେ ଯେଉଁଭାବେ ଏସବୁର ସଫଳ ଅନୁବାଦ କରିଛନ୍ତି, ସେଥିରୁ ସେ ସଂସ୍କୃତ ଭାଷାରେ ବିଶେଷ ପାରଙ୍ଗମ ଥିବା ଜଣାଯାଏ । ସେ ଚାହିଁଥିଲେ ରାମାୟଣକୁ ଓଡ଼ିଆରେ ଅନୁବାଦ ବି କରିପାରିଥାନ୍ତେ । କିନ୍ତୁ ଏଇଠି ସାରଳା ଦାସ ହେଲେ ତାଙ୍କର ଆଦର୍ଶ । ଲୋକଙ୍କୁ ନୂଆକଥା ଶୁଣାଇବାର ମୋହ ଯୋଗୁଁ ସେ ଅନୁବାଦ ନ କରି ସ୍ୱତନ୍ତ୍ରଭାବେ ରାମାୟଣ ରଚନା କରିବାପାଇଁ ମନସ୍ଥ କଲେ । ସାରଳାଦାସଙ୍କ ଆଦର୍ଶକୁ ଗ୍ରହଣ କଲେ ହେଁ, ସାରଳା ଦାସଙ୍କ ପରି ସେ ସ୍ୱାଧୀନ ନଥିଲେ । ପିଲାଦିନୁ ପଣ୍ଡିତଙ୍କ ପାଖରେ ବସି ବସି ସେ ଲୋକ ମୁଖ ଅପେକ୍ଷା ଶାସ୍ତ୍ରକୁ ବେଶୀ ପ୍ରାମାଣିକ ରୂପେ ଗ୍ରହଣ କଲେ । ସଂସ୍କୃତ ଭାଷାରେ ରଚିତ ବିଭିନ୍ନ ଶାସ୍ତ୍ର ଓ ପୁରାଣର ଅଗାଧ ଜ୍ଞାନ-ସାଗର ତାଙ୍କ ଅଜାଣତରେ ତାଙ୍କୁ ଗ୍ରାସ କରିସାରିଥିଲା । ସେ କଥାର ଯେଉଁ ନୂଆ ରୂପ ଦେଲେ, ତାହା ଲୋକ ମୁହଁରୁ ନ ଆସି, ଆସିଲା ବିଭିନ୍ନ ଶାସ୍ତ୍ର ଓ ପୁରାଣରୁ । ଜଗମୋହନ ରାମାୟଣ ପ୍ରତ୍ୟେକ ଉପାଖ୍ୟାନ ଏହାର ପ୍ରମାଣ । ବାଲ୍ମୀକି ରାମାୟଣର ମୂଳକଥାରେ ବିଭିନ୍ନ ପୁରାଣର କଥା ମିଶି କଥାର ଏକ ନୂଆ ରୂପ ହେଉଥିଲା ।

ନିମ୍ନରେ ଆଦିକାଣ୍ଡରୁ ବାଛିକରି ଚାରୋଟି ଉପାଖ୍ୟାନ ଦିଆଗଲା ।

(କ) ଋଷ୍ୟଶୃଙ୍ଗ ଉପାଖ୍ୟାନ
(ଖ) ସତ୍ୟବ୍ରତ କଥା
(ଗ) ଗାଲ୍ୟବ ଉପାଖ୍ୟାନ
(ଘ) ଅହଲ୍ୟା ଉଦ୍ଧାର

Digitized by srujanika@gmail.com

(ଙ) ସୀତା ବିବାହ ।
(ଚ) ସୀ ।ଙ୍କ ସମ୍ପତଣୀ ସ୍ତବ ।

(କ) ଋଷ୍ୟଶୃଙ୍ଗ ଉପାଖ୍ୟାନ :—

ବାଲ୍ମୀକି ରାମାୟଣର ବାଲକାଣ୍ଡର ନବମ ଓ ଦଶମ ସର୍ଗରେ ଋଷ୍ୟଶୃଙ୍ଗ କଥା ବର୍ଣ୍ଣିତ । ନବମ ସର୍ଗରେ ଏହା ସଂକ୍ଷିପ୍ତ ଅଥଚ ଦଶମ ସର୍ଗରେ ଏହାର ବର୍ଣ୍ଣନା ବିସ୍ତୃତ । ଏହି ଉପାଖ୍ୟାନର ସାରକଥା ହେଲା—ଅଙ୍ଗ ଦେଶର ରାଜା ଲୋମପାଦ ଧର୍ମର ବ୍ୟତିକ୍ରମ କରିବାରୁ ରାଜ୍ୟରେ ଘୋର ଅନାବୃଷ୍ଟି ହେଲା । ବ୍ରାହ୍ମଣମାନଙ୍କ ପରାମର୍ଶ କ୍ରମେ ବେଶ୍ୟାମାନେ ବିଭାଣ୍ଡକଙ୍କ ଆଶ୍ରମକୁ ଯାଇ ଋଷ୍ୟଶୃଙ୍ଗଙ୍କୁ ଭୁଲାଇ ନିଜ ରାଜ୍ୟକୁ ନେଇ ଆସିଲେ । ରାଜ୍ୟରେ ବର୍ଷାହୋଇ ଅନାବୃଷ୍ଟି ଦୂର ହେଲା । ରାଜା ଆନନ୍ଦରେ ନିଜ କନ୍ୟା ଶାନ୍ତାଙ୍କୁ ଋଷ୍ୟଶୃଙ୍ଗଙ୍କୁ ପ୍ରଦାନ କଲେ ।

ବଳରାମ ଦାସ କଥାର ଏହି ରୂପକୁ ପ୍ରାୟ ଗ୍ରହଣ କରିଥିଲେ ହେଁ ଏହାର ପ୍ରତ୍ୟେକ ଅଂଶରେ ନୂଆ କଥାର ସଂଯୋଜନ କରିଛନ୍ତି । ବିଶେଷ ଅନୁଶୀଳନ ପାଇଁ କଥାକୁ ନିମ୍ନଭାବରେ ବିଭାଜନ କରାଯାଇ ଆଲୋଚନା କରାଯାଇଛି ।

(୧) ଋଷ୍ୟ ଶୃଙ୍ଗଙ୍କ ଜନ୍ମ
(୨) ଅଙ୍ଗ ଦେଶରେ ଅନାବୃଷ୍ଟିର କାରଣ
(୩) ଜରତା, କାମମୋହିନୀ ପ୍ରଭୃତି ବେଶ୍ୟାଙ୍କ ନୌକାଯାତ୍ରା ଓ ଋଷ୍ୟଶୃଙ୍ଗଙ୍କ ପ୍ରଲୋଭନ,
(୪) ଶାନ୍ତା ଓ ଋଷ୍ୟଶୃଙ୍ଗଙ୍କ ବିବାହ ।

(୧) ଋଷ୍ୟ ଶୃଙ୍ଗଙ୍କ ଜନ୍ମ :— ଋଷି ବିଭାଣ୍ଡକ ତପସ୍ୟା ରତ ଥିବାବେଳେ ଉର୍ବଶୀ ସ୍ନାନ ଉଦ୍ଦେଶ୍ୟରେ ନିକଟସ୍ଥ ପୁଷ୍କରିଣୀରେ ପ୍ରବେଶ କରେ । ସ୍ନାନରତା ଉର୍ବଶୀର ଅପରୂପ ସୌନ୍ଦର୍ଯ୍ୟରେ ମୁଗ୍ଧହୋଇ ବିଭାଣ୍ଡକଙ୍କର ରେତ ସ୍ଖଳନ ହୁଏ । ଋଷି ସେହି ରେତକୁ ସରୋବର ଜଳରେ ନିକ୍ଷେପ କରନ୍ତି । ଅଭିଶପ୍ତା ମଦନିକା ଅପ୍ସରା ମୃଗୁଣୀ ରୂପରେ ସେହି ରେତପାନକରି ଗର୍ଭବତୀ ହୁଏ ଓ ଋଷ୍ୟଶୃଙ୍ଗ ମୁନିଙ୍କୁ ଜନ୍ମ ପ୍ରଦାନ କରେ । ଦେବତାମାନଙ୍କଦ୍ୱାରା ଆଦିଷ୍ଟହୋଇ ବିଭାଣ୍ଡକ ସେହି ପୁତ୍ରକୁ ପ୍ରତିପାଳନ କରନ୍ତି ।

ବାଲ୍ମୀକି ରାମାୟଣରେ ଏହି ଉପାଖ୍ୟାନ ନାହିଁ । ସଂସ୍କୃତ ମହାଭାରତଦ୍ୱାରା ପ୍ରଭାବିତହୋଇ ସାରଳାଦାସ ପ୍ରଥମେ ଏହି ଉପାଖ୍ୟାନର ଅବତାରଣା କରିଛନ୍ତି । ବଳରାମ ମଧ୍ୟ ଏ ବିଷୟରେ ସଂସ୍କୃତ ମହାଭାରତଦ୍ୱାରା ପ୍ରଭାବିତ । ବଙ୍ଗଳା ରାମାୟଣର

Digitized by srujanika@gmail.com

ରଚୟିତା କୃତ୍ତିବାସ ମଧ୍ୟ ଉର୍ବଶୀ ଉପାଖ୍ୟାନର ସଂଯୋଜନା କରିଛନ୍ତି । ତେବେ ବଳରାମ ଅପରୂପ ସୁନ୍ଦରୀ ଉର୍ବଶୀର ଯେଉଁ ବିସ୍ତୃତ ବର୍ଣ୍ଣନା କରିଛନ୍ତି, ତାହା ତାଙ୍କର ନିଜସ୍ୱ । ଉର୍ବଶୀ ଦର୍ଶନରେ ବିଭାଣ୍ଡକ ଋଷିଙ୍କ ମାନସିକ ଅବସ୍ଥା ମଧ୍ୟ ସଂସ୍କୃତ, ଓଡ଼ିଆ ମହାଭାରତ ଓ କୃତ୍ତିବାସ ରାମାୟଣରେ ଦେଖିବାକୁ ମିଳେ ନାହିଁ । ମହାଭାରତରୁ କଥାକୁ ଗ୍ରହଣ କରିଥିଲେ ହେଁ ବର୍ଣ୍ଣନାରେ ବଳରାମ ସ୍ୱତନ୍ତ୍ର । ଏହି ପ୍ରସଙ୍ଗରେ ଇନ୍ଦ୍ରଙ୍କର ଋଷ୍ୟଶୃଙ୍ଗଙ୍କୁ ବରଦାନ ସଂସ୍କୃତରେ ନାହିଁ । ସାରଳା ଦାସଙ୍କ ମତରେ ଋଷ୍ୟଶୃଙ୍ଗଙ୍କ ତପସ୍ୟାରେ ସନ୍ତୁଷ୍ଟହୋଇ, ତାଙ୍କର ରୁକ୍ଷ୍ୟ ଶରୀରକୁ ରକ୍ଷାକରିବାପାଇଁ ଇନ୍ଦ୍ର ସ୍ୱର୍ଗମେଘଙ୍କୁ ଆଦେଶ ଦେଲେ । ଇନ୍ଦ୍ରଙ୍କ ଆଦେଶରେ ସେମାନେ ଖଣ୍ଡାକାରରେ ଋଷ୍ୟଶୃଙ୍ଗଙ୍କ ଉପରେ ରହି, ତାଙ୍କ ରୁକ୍ଷ ଶରୀରକୁ ଶାନ୍ତକଲେ । ବଳରାମ ଏହାର ଉଲ୍ଲେଖକରି ଲେଖିଛନ୍ତି—

> "ଶରୀର ରୁକ୍ଷ ମୋର ଅଟଇ ସୁରପତି
> ମେଘଦଲେ ବୃଷ୍ଟି ତୁ କରିବୁ ଉତ୍ପତି । ୪୦୪ ।
> ଅସ୍ତୁ ହୋଇ ବୋଲି ଗଲେକ ବଜ୍ରଧର
> ଆନନ୍ଦ ହୋଇଲେକ ଶୁଣି ଋଷଶୃଙ୍ଗ କୁମର" । ୪୦୫ ।

(୨) ଅଙ୍ଗଦେଶରେ ଅନାବୃଷ୍ଟିର କାରଣ :—ବାଲ୍ମୀକି ଏହି ପ୍ରସଂଗରେ ଉଲ୍ଲେଖକରି କୁହନ୍ତି, "ତସ୍ୟ ବ୍ୟତିକ୍ରମାଦ୍ ରାଜ୍ଞୋ ଭବିଷ୍ୟତି ସୁଦାରୁଣା" । ୧୧—୮ ।

ଧର୍ମର ବ୍ୟତିକ୍ରମକୁ ବୁଝାଇବାକୁ ଯାଇ ବଳରାମ ବ୍ରାହ୍ମଣଙ୍କ ଅବମାନନା କଥା କହିଛନ୍ତି । ଏକଦା ଲୋମପାଦ ନୃପତି ବ୍ରାହ୍ମଣମାନଙ୍କୁ ଦାନଦେବା ସମୟରେ ଜଣେ ବ୍ରାହ୍ମଣ ଲୋଭ ପରବଶହୋଇ ଆହୁରି ମାଗିବାରୁ ରାଜା କ୍ରୋଧାନ୍ୱିତହୋଇ ତାକୁ ବିତାଡ଼ିତ କରିଥିଲେ । ଏଥିରେ ବ୍ରାହ୍ମଣ ସମାଜ ରାଜାଙ୍କ ଉପରେ ରାଗି ତାଙ୍କୁ ଅଭିଶାପ ଦେଲେ । ଫଳରେ ରାଜ୍ୟରେ ଅନାବୃଷ୍ଟି ହେଲା । ଯେତେ ଯାଗ ଯଜ୍ଞ କଲେ ବି ଏହାର ନିବାରଣ ହୋଇପାରିଲା ନାହିଁ । କୃତ୍ତିବାସ ଏହି ଅନାବୃଷ୍ଟିର କାରଣ ରୂପେ କନ୍ୟା ଶାନ୍ତାର ଅବିବାହିତା ଅବସ୍ଥାରେ ରଜୋମତୀ ହେବାକଥା କହିଛନ୍ତି । ଏ କ୍ଷେତ୍ରରେ ମଧ୍ୟ ବଳରାମ ବାଲ୍ମୀକିଙ୍କୁ ଅନୁସରଣ କରିନାହାନ୍ତି ।

(୩) ଜରତା ଓ କାମମୋହିନୀ ପ୍ରମୁଖ ବେଶ୍ୟାମାନଙ୍କର ନୌକା ଯାତ୍ରା ଓ ଋଷ୍ୟଶୃଙ୍ଗଙ୍କ ପ୍ରଲୋଭନ :—ବାଲ୍ମୀକି ଏହି ପ୍ରସଂଗକୁ ଅତି ସଂକ୍ଷିପ୍ତ ଭାବରେ ବର୍ଣ୍ଣନା କରି ଲେଖିଛନ୍ତି—

> "ଶ୍ରୁତ୍ୱା ତୁ ବଚନଂ ତାସାଂ ସର୍ବାସାଂ ହୃଦୟଙ୍ଗମମ୍
> ଗମନାୟ ମତିଂଚକ୍ରେ ତଂ ଚ ନିନ୍ୟୁସ୍ତଥା ସ୍ତ୍ରିୟଃ" । ୧—୧୦—୨୮ ।

Digitized by srujanika@gmail.com

ଅର୍ଥାତ୍ ସେମାନଙ୍କର (ବେଶ୍ୟାମାନଙ୍କର) ମଧୁର ବଚନ ଶୁଣି ଋଷ୍ୟଶୃଙ୍ଗ ସେମାନଙ୍କ ସହ ଯିବାକୁ ପ୍ରସ୍ତୁତ ହୋଇଗଲେ ଓ ସେମାନେ ତାଙ୍କୁ ଅଙ୍ଗ ଦେଶକୁ ନେଇ ଆସିଲେ ।

ବଳରାମଙ୍କ ବର୍ଣ୍ଣନା ଏହାଠାରୁ କେବଳ ଯେ ବିସ୍ତୃତ, ତାହା ନୁହେ, ଏଥିରେ ଥିବା ଜରତା, କାମମୋହନୀ ନାମ, ନୌକାଯାତ୍ରା, ଋଷ୍ୟଶୃଙ୍ଗଙ୍କ ସହ ବେଶ୍ୟା-ମାନଙ୍କ ସହବାସ ପ୍ରସଙ୍ଗ ବାଲ୍ମୀକରେ ନାହିଁ । ସଂସ୍କୃତ ମହାଭାରତରେ ଏହି ବେଶ୍ୟାର ନାମ "ଜରତକନ୍ୟା" ସାରଳା ଦାସ ଏହାକୁ ଜରତା କୋଣା ଓ ଜରତାରେ ପରିଣତ କଲେ । କୃତ୍ତିବାସ ରାମାୟଣରେ ବେଶ୍ୟାମାନଙ୍କ ଅଧିନ ନାୟିକା ଥିଲା ଜଣେ ବୃଦ୍ଧା । ଏହାର ମୂଳସୂତ୍ର ମଧ୍ୟ ଜରତା ଶବ୍ଦରେ ଖୋଜା ଯାଇପାରେ ।

ନୌକାଯାତ୍ରା ପ୍ରସଙ୍ଗ ମଧ୍ୟ ସଂସ୍କୃତ ମହାଭାରତରୁ ଗୃହୀତ । ସେଥିରେ ଏହା "ନାବ୍ୟାଶ୍ରମ" । ଉଭୟ ବଳରାମ ଓ କୃତ୍ତିବାସ ଏହି ଯାତ୍ରାର ବର୍ଣ୍ଣନା କରିଥିଲେ ହେଁ, ବଳରାମଙ୍କ ବର୍ଣ୍ଣନା ଅତ୍ୟନ୍ତ ଜୀବନ୍ତ ଓ ବାସ୍ତବ । ବେଶ୍ୟାମାନଙ୍କ ସହ ସହବାସ କଥା ମଧ୍ୟ ବାଲ୍ମୀକୀ ରାମାୟଣରେ ନାହିଁ । ସେମାନେ କେବଳ ଋଷ୍ୟଶୃଙ୍ଗଙ୍କୁ ସେମାନଙ୍କର ସୁନ୍ଦର ରୂପ, ମଧୁର ବଚନ ଓ ବ୍ୟବହାରଦ୍ୱାରା ଭୁଲାଇ ଅଙ୍ଗ ଦେଶକୁ ନେଇ ଆସିଥିଲେ । ସଂସ୍କୃତ ମହାଭାରତରୁ ସହବାସ ପ୍ରସଙ୍ଗ ଆଣି ବଳରାମ ଏହାର ବିସ୍ତୃତ ବର୍ଣ୍ଣନା ଦେଇଛନ୍ତି । ଜରତା, କାମମୋହନୀ ସମେତ ବାରହ ବନିତାଙ୍କ ସହ ସହବାସରେ ରତ ହୋଇ ଋଷ୍ୟଶୃଙ୍ଗ ନିଜର ଅଜ୍ଞାତସାରରେ ଅଙ୍ଗଦେଶରେ ପ୍ରବେଶ କରିଥିଲେ । ଅଙ୍ଗଦେଶରେ ପହଞ୍ଚିବା ପରେ ଜରତା ପ୍ରମୁଖ ବେଶ୍ୟାମାନେ ସେମାନଙ୍କର ପ୍ରକୃତ ପରିଚୟ ପ୍ରଦାନକରି ଋଷିଙ୍କଠାରୁ କ୍ଷମା ମାଗିନେଲେ ।

ବାଲ୍ମୀକ ରାମାୟଣରେ ଦାକ୍ଷିଣାତ୍ୟ ପାଠରେ ଶାନ୍ତା ହେଉଛନ୍ତି ଲୋମପାଦଙ୍କ କନ୍ୟା । ଅଥଚ ପୂର୍ବ ଓ ପଶ୍ଚିମୋତ୍ତର ପାଠରେ ସେ ହେଲେ ଦଶରଥଙ୍କ ପୁତ୍ରୀ ଓ ଲୋମପାଦଙ୍କ ପାଳିତା କନ୍ୟା । ବଳରାମ ଦାସ ପୂର୍ବ ପାଠରୁ ଲୋମପାଦ ନାମ ଓ ଶାନ୍ତା ଉପାଖ୍ୟାନ ଗ୍ରହଣ କରିଛନ୍ତି । ଋଷ୍ୟଶୃଙ୍ଗ ଓ ଶାନ୍ତାଙ୍କ ବିବାହ ବର୍ଣ୍ଣନାରେ ବିଧି ଓ ଚଳଣିଗତ ପାର୍ଥକ୍ୟ ଦେଖିବାକୁ ମିଳୁଥିଲେ ହେଁ କଥା ପରିବର୍ତ୍ତିତ ହୋଇ ନାହିଁ ।

ଋଷ୍ୟଶୃଙ୍ଗ ଉପାଖ୍ୟାନକୁ ବିଶ୍ଳେଷଣ କରି ଦେଖିଲେ ବଳରାମଙ୍କ ରାମାୟଣ ରଚନାର ଦୃଷ୍ଟିକୋଣ କେତେକ ପରିମାଣରେ ସ୍ପଷ୍ଟ ହୁଏ । ବଳରାମ ଦାସଙ୍କ ସମୟକୁ ଋଷ୍ୟଶୃଙ୍ଗ ଉପାଖ୍ୟାନ ବହୁଳଭାବେ ଲୋକପ୍ରିୟ ହୋଇ ସାରିଥିଲା । ବିଭିନ୍ନ ରାମାୟଣ ବ୍ୟତୀତ, ମହାଭାରତ, ହରିବଂଶ, ବାୟୁପୁରାଣ, ବୌଦ୍ଧ ଜାତକ, ଏପରିକି ଲୋକକଥା ମାଧ୍ୟମରେ ଏହା ପ୍ରଚଳିତ ହୋଇଥିଲା । ସାରଳା ଦାସ ଓ ବଳରାମ ଦାସ ଉଭୟେ

Digitized by srujanika@gmail.com

ବାଲ୍ମୀକି ରାମାୟଣର କଥାକୁ ପରିତ୍ୟାଗ କରିଛନ୍ତି । ସାରଳା ଦାସଙ୍କ ମୁଖ୍ୟ ସ୍ରୋତ ହେଲା ଲୋକକଥା, ଅଥଚ ବଳରାମ ଦାସଙ୍କ ଲକ୍ଷ୍ୟ ହେଲା ମହାଭାରତ ।

ସେ ମହାଭାରତ ଓ ବାଲ୍ମୀକି ରାମାୟଣରୁ କଥା ଆଣି ନିଜସ୍ୱ କଳ୍ପନାଦ୍ୱାରା ଏହାକୁ ପରିପୁଷ୍ଟ କରିଛନ୍ତି । ହଂଶୀ ଓ ଶାନ୍ତାର ରୂପ, ବିଭଣ୍ଡକଙ୍କ ବଚ୍ୟନ, ନୌକା ଯାତ୍ରା, ବେଶ୍ୟାମାନଙ୍କର ପ୍ରଲୋଭନ ପ୍ରକ୍ରିୟା ଏବଂ ଶାନ୍ତା ଓ ଋଷ୍ୟଶୃଙ୍ଗ ବିବାହ ପ୍ରଭୃତି ଘଟଣା ବର୍ଣ୍ଣନା କଲାବେଳେ ବଳରାମ ସାଧାରଣ ଲୋକଙ୍କ ଜିଜ୍ଞାସା ପ୍ରବୃତ୍ତିକୁ ମନରେ ରଖି ସେମାନଙ୍କ କୌତୂହଳ ନିବାରଣ କରିବା ଉଦ୍ଦେଶ୍ୟରେ ବିଭିନ୍ନ ବର୍ଣ୍ଣନା ସନ୍ନିବେଶିତ କରିଛନ୍ତି । କଥା ଦୃଷ୍ଟିରୁ ବାଲ୍ମୀକି ରାମାୟଣ ଅପେକ୍ଷା ସଂସ୍କୃତ ମହାଭାରତକୁ ସେ ବିଶେଷ ଭାବରେ ଅନୁସରଣ କଲାବେଳେ ବର୍ଣ୍ଣନାରେ ନିଜର ବ୍ୟକ୍ତିଗତ ଅନୁଭୂତିକୁ ପ୍ରାଧାନ୍ୟ ଦେଇଛନ୍ତି ।

## (ଖ) ସତ୍ୟବ୍ରତ କଥା

ଋଷ୍ୟଶୃଙ୍ଗ ଉପାଖ୍ୟାନ ପରେ ସତ୍ୟବ୍ରତ କଥା କହିବାବେଳେ ସେ ବାଲ୍ମୀକି ରାମାୟଣକୁ ପରିତ୍ୟାଗକରି ମୁଖ୍ୟ ସ୍ରୋତ ରୂପେ ହରିବଂଶକୁ ଗ୍ରହଣ କରିଛନ୍ତି । ସଂସ୍କୃତ ମହାଭାରତ ଓ ବିଷ୍ଣୁପୁରାଣର କଥା କବିଙ୍କୁ ଏ ବିଷୟରେ ସାହାଯ୍ୟ କରିଛି ।

ହରିବଂଶର ସତ୍ୟବ୍ରତ ତିନୋଟି ମହାପାପ ଯୋଗୁଁ ତ୍ରିଶଙ୍କୁରେ ପରିଣତ ହେଲେ । ସେ ତିନୋଟି ମହାପାପ ହେଲା —

୧—ବ୍ରାହ୍ମଣ କନ୍ୟା ହରଣ

୨—ଗୋହତ୍ୟା

୩—ଗୋମାଂସ ଭକ୍ଷଣ

ଜଗମୋହନ ରାମାୟଣରେ ଏସବୁ ଥିଲେ ହେଁ କଥା ପରିବର୍ତ୍ତିତ ହୋଇଛି । ସତ୍ୟବ୍ରତ ଦ୍ୱାରା ବଳତ୍କାରରେ ବ୍ରାହ୍ମଣ କନ୍ୟା ହରଣ କଥା କବିଙ୍କୁ ଭଲ ଲାଗିନାହିଁ । ଉଭୟେ ଉଭୟଙ୍କ ପ୍ରତି ଆକୃଷ୍ଟ ହେବାଦ୍ୱାରା ଏହି ବିବାହ ସଂଘଟିତ ହୋଇଛି । କଥାରେ ଏତିକି ପରିବର୍ତ୍ତନକରି କବି ସତ୍ୟବ୍ରତ ନାରୀର ମର୍ଯ୍ୟାଦା ରକ୍ଷା କରିଛନ୍ତି । ବିବାହ ପରେ ସତ୍ୟବ୍ରତ ପିତା, ମାତା, ଗୁରୁଜନ ଓ ସମାଜକୁ ଭ୍ରୂକ୍ଷେପ କରିନାହିଁ । ସେ ନିଜର ସତ୍ୟକୁ ରକ୍ଷା କରିବାପାଇଁ ସମସ୍ତଙ୍କୁ ଅମାନ୍ୟ କରିଛି । ସତ୍ୟରକ୍ଷା ସତ୍ତ୍ୱେ ସାମାଜିକ ଅପରାଧରୁ ସେ ମୁକ୍ତ ନୁହେଁ ।

କ୍ଷତ୍ରିୟ ପକ୍ଷେ ବ୍ରାହ୍ମଣ କନ୍ୟା ଗ୍ରହଣକରିବା ସେତେବେଳେ ଗୁରୁତର ମହାପାପ ରୂପେ ବିବେଚିତ ହେଉଥିଲା । ସେଥିପାଇଁ ରାଜା ସତ୍ୟବ୍ରତଙ୍କୁ ରାଜ୍ୟରୁ ନିର୍ବାସିତ କରିଛନ୍ତି ।

Digitized by srujanika@gmail.com

ବିଶ୍ୱାମିତ୍ରଙ୍କ କୃତ୍ରିମୁକ୍ତି ଶରଣ ଦେବାପରେ ସତ୍ୟବ୍ରତଙ୍କ ଜୀବନର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭହୁଏ । ଏହା ଫଳରେ ସେ ବ୍ରାହ୍ମଣ ବଶିଷ୍ଠଙ୍କ ବିରାଗଭାଜନ ହୋଇଛନ୍ତି । ଏକପକ୍ଷରେ ପରୋପକାର ସଦୃଶ ମହାବ୍ରତ ଓ ଅନ୍ୟପକ୍ଷରେ ବ୍ରାହ୍ମଣ ବଶିଷ୍ଠଙ୍କ କ୍ରୋଧ ।

ବିଶ୍ୱାମିତ୍ରଙ୍କ ପରିବାର ଦାୟିତ୍ୱ ନେବାପରେ ଦେଶରେ ଭୟଙ୍କର ଦୁର୍ଭିକ୍ଷ ଉପସ୍ଥିତ ହୁଏ । ବହୁଚେଷ୍ଟା ସତ୍ତ୍ୱେ ସତ୍ୟବ୍ରତ ସେମାନଙ୍କପାଇଁ ଖାଦ୍ୟ ଯୋଗାଡ଼ କରିପାରନ୍ତି ନାହିଁ । ଶେଷକୁ ବାଧ୍ୟହୋଇ ଗୋମାତାକୁ ବଧ କରେ । ସମାଜ ଦୃଷ୍ଟିରେ ଏହାଠାରୁ ବଳପାପ ହୁଏତ ଆଉ ନାହିଁ ।

ଏହିପରି ଗୋଟିଏ ପରେ ଗୋଟିଏ ପାପ କରିଥିଲେ ହେଁ ସତ୍ୟବ୍ରତ ଏ ସବୁର ଭାଗୀ ହୋଇନାହିଁ । ବ୍ରାହ୍ମଣକନ୍ୟା ବିବାହ, ବ୍ରାହ୍ମଣଙ୍କର କ୍ରୋଧ, ଓ ଗୋହତ୍ୟା ପ୍ରଭୃତି ହିନ୍ଦୁଧର୍ମରେ ବିବେଚିତ ହେଉଥିବା ପାପ କର୍ମସବୁ ସତ୍ୟ ଓ ପରୋପକାର ରୂପୀ ମହାନ କର୍ମର ପରିଣମରେ ବିଦୂରିତ ହୋଇଯାଇଛି । ଏହାହିଁ ଥିଲା ଯୁଗର ନିର୍ଦ୍ଦେଶ ।

(ଗ) ଗାଲବ ଉପାଖ୍ୟାନ

ସେହିପରି ଆଉ ଗୋଟିଏ ଦୃଷ୍ଟାନ୍ତ ଗାଲବ ଉପାଖ୍ୟାନ । ଏହି କଥା ବର୍ଣ୍ଣନା କଲାବେଳେ ଜବିଙ୍କ ଉପରେ ବାଲ୍ମୀକି ରାମାୟଣ ଅପେକ୍ଷା ହରିବଂଶର ପ୍ରଭାବ ମଧ୍ୟ ବେଶୀ । ହରିବଂଶରେ ଗାଲବ ହେଉଛନ୍ତି ବିଶ୍ୱାମିତ୍ରଙ୍କ ଶିଷ୍ୟ ଶିକ୍ଷା ସମାପ୍ତପରେ ଗାଲବ ଗୁରୁଙ୍କୁ ଦକ୍ଷିଣାଦାନ କରିଛନ୍ତି । ଦକ୍ଷିଣାରୂପେ ପ୍ରଦତ୍ତ ଦ୍ରବ୍ୟରେ ସେ ନିଜେ ସନ୍ତୁଷ୍ଟ ହୋଇପାରି ନାହାନ୍ତି । ଗୁରୁଙ୍କୁ ସମ୍ପୂର୍ଣ୍ଣଭାବେ ସନ୍ତୁଷ୍ଟ କରିବାପାଇଁ ସେ ବିଶ୍ୱାମିତ୍ରଙ୍କୁ ଇଚ୍ଛାମତେ ଦ୍ରବ୍ୟ ମାଗିବାପାଇଁ ବାରମ୍ବାର ଅନୁରୋଧ କରିଛନ୍ତି । ଏଥିରେ ବିଶ୍ୱାମିତ୍ର ବିରକ୍ତହୋଇ ଶ୍ୱେତବର୍ଣ୍ଣ ଓ ଶ୍ୟାମବର୍ଣ୍ଣ ଅଶ୍ୱ ଦାବୀ କରିଛନ୍ତି । ଏପରି ଅଶ୍ୱ ଏତେ ସଂଖ୍ୟାରେ ମିଳିବା ସହଜକଥା ନଥିଲା । ସେଥିପାଇଁ ଗାଲବ ଗୁରୁଙ୍କୁ ପ୍ରାର୍ଥନା କରିଛନ୍ତି । ଗୁରୁ ନିଜର ଅସାମର୍ଥ ଜଣାଇ ଯଯାତିଙ୍କ ପାଖକୁ ଯେନଗଲେ । ଯଯାତି ଅଶ୍ୱପରିବର୍ତ୍ତେ ଗାଲବଙ୍କୁ ମାଧବୀ ନାମ୍ନୀ ଚିରକୁମାରୀ କନ୍ୟା ପ୍ରଦାନ କଲେ । ଗାଲବ ଅଶ୍ୱ ପାଇବା ଉଦ୍ଦେଶ୍ୟରେ ସେହି କନ୍ୟାକୁ କ୍ରମ ନୁସାରେ ଅଯୋଧ୍ୟାର ରାଜା ହର୍ଯ୍ୟଶ୍ୱ, କାଶୀର ରାଜା ଦିବୋ-ଦାସ ଏବଂ ଭୋଜନଗରର ରାଜା ସହ ବିବାହ କରାଇ ପ୍ରତ୍ୟେକଙ୍କଠାରୁ ଦୁଇଶ କରି ଅଶ୍ୱ ଗ୍ରହଣକଲେ । ଶେଷକୁ ନିରୁପାୟହୋଇ ଛଅଶ ଅଶ୍ୱ ସହ ମାଧବୀ କନ୍ୟାକୁ ନିଜ ଗୁରୁଙ୍କୁ ସମର୍ପଣକରି ସେ ଋଣମୁକ୍ତ ହୋଇଥିଲେ । ତିନିଜଣ ରାଜା ଓ ବିଶ୍ୱାମିତ୍ରଙ୍କୁ ବିବାହକରି ସନ୍ତାନ ଜାତ କରିଥିଲେ ହେଁ ମାଧବୀଙ୍କ କୁମାରୀତ୍ୱ ନଷ୍ଟ ହୋଇ ନଥିଲା । ନିଜ କାର୍ଯ୍ୟ ପୂର୍ଣ୍ଣ ହେବାପରେ, ଗାଲବ ମାଧବୀ କନ୍ୟାକୁ ନେଇ ତାଙ୍କ

Digitized by srujanika@gmail.com

ପିତାଙ୍କୁ ପ୍ରତ୍ୟର୍ପଣ କରି ଦେଇଥିଲେ । କଥାରେ ଅଲୌକିକତା ଥିଲେ ହେଁ, ବଳରାମଙ୍କୁ ଏହାର ପସନ୍ଦହୋଇ ନଥିଲା । ସେଥିପାଇଁ ସେ ଅଷ୍ଟ ଚତୁରଚାର ସନ୍ତ ଆଠଶ ଶ୍ୱେତ ଅଶ୍ୱ କଥା ରଖି ପରବର୍ତ୍ତୀ ଉପାଂଶକୁ ପରିତ୍ୟାଗ କଲେ । ଗାଲ୍ୟବ ନିଜର ଭୁଲ୍ ବୁଝିପାରି ଗୁରୁଙ୍କ ପାଖରେ ଶରଣ ପଶି, କ୍ଷମାମାଗି ବିଶ୍ୱାମିତ୍ରଙ୍କ ସଦୃଶ କ୍ରୋଧୀ ଗୁରୁଙ୍କୁ ସନ୍ତୁଷ୍ଟ କରିପାରିଥିଲେ । ସତ୍ୟବ୍ରତ ଉପାଖ୍ୟାନ ପରି ଏଥିରେ ମଧ୍ୟ ବୈଷ୍ଣବଧର୍ମର ମୂଳତତ୍ତ୍ୱ 'କ୍ଷମା' କୁ ପ୍ରାଧାନ୍ୟ ଦିଆଯାଇଛି । ଏହା ହୁଏତ ସେ ଯୁଗର ଆଉ ଗୋଟିଏ କଥା ଅଛି । ରଜାମାନଙ୍କ ଅହଙ୍କାର ଓ ସାର୍ବଭୌମତ୍ୱ ଉପରେ ଏହା ଏକ ନୀରବ ଆକ୍ରମଣ । ରାଜା ଗୁରୁଲେଖ ସବୁକିଛି କରିପାରିବେ ନାହିଁ । ସେମାନଙ୍କ ଶକ୍ତିର ସୀମା ଅଛି । ସେଥିପାଇଁ ଗାଲ୍ୟବ ବିଶ୍ୱାମିତ୍ରଙ୍କ ପାଦତଳେ ପଡ଼ି କହୁଛି—

"ମୁହିଂ କଷ୍ଟ ରାଜା କେତେକ ମୋହର ମହୀ
ସେ ଦୁର୍ଲଭ କଥା କି ପାରିବି ଭିଆଇ । ୭୪ ।

ସେତେ ବୋଲି ଗାଲ୍ଲଭ ମୁନିର ପାଦେ ପଡ଼ି
କାରୁଣ୍ୟ ହୋଇଣ ବେନି କର ଯୋଡ଼ି ।
ହେ ମହାମୁନି ମୋତେ ପ୍ରତିକାର କର
ସେ ମହାକଷ୍ଟରୁ ବାରେକ ଉଧର ।
ମୁହିଂ ଅଜ୍ଞାନ ଯେ ନ ଜାଣି ଗର୍ବ କଲି
ତହିଂର ଫଳ ମୁନି ସେବେ ସେ ପାଇଲି"

ଗାଲ୍ୟବ ରାଜାଙ୍କ ଅନୁଶୋଚନା ପରେ ବିଶ୍ୱାମିତ୍ର ପ୍ରସନ୍ନ ହୋଇ ଗାଲ୍ଲବଙ୍କୁ ସ୍ୱର୍ଗରେ ସ୍ଥାନ ଦେଇଛନ୍ତି ।

## (ଘ) ଅହଲ୍ୟା ଉଦ୍ଧାର

ଦୃଷ୍ଟାନ୍ତ ହେଲା, ବିଭିନ୍ନ ପୁରାଣରୁ ଆହରଣ କରିବାର ଆଉ ଗୋଟିଏ— ଅହଲ୍ୟା ଉପାଖ୍ୟାନ ।

ବଳରାମ ଏକଥାକୁ ପୁରାଣରୁ ଆଣିଥିଲେ ହେଁ ( ପୁରାଣେ କଥା ରୁ ଶୁଣ ହେ ଶ୍ରୀରାମ ) କଥାର ପ୍ରଥମ ପର୍ଯ୍ୟାୟ ଅର୍ଥାତ ଅହଲ୍ୟା ଜନ୍ମ ବୃତ୍ତାନ୍ତରେ ସେ ବାଲ୍ମୀକିଙ୍କୁ ଅନୁସରଣ କରିଛନ୍ତି । ବାଲ୍ମୀକିଙ୍କ ଅନୁଯାୟୀ ବ୍ରହ୍ମା ଅନ୍ୟପ୍ରାଣୀଙ୍କର ସର୍ବଶ୍ରେଷ୍ଠ ଅଙ୍ଗରୁ "ହଲ" ( ଅସୁନ୍ଦରତା ) ନଥିବା ଏକ କନ୍ୟା ସୃଷ୍ଟି କରି ତା'ର ନାମ ଅହଲ୍ୟା ରଖିଥିଲେ । ବଳରାମଙ୍କ କଥାରେ ଅନ୍ୟ ପ୍ରାଣୀଙ୍କର ସର୍ବଶ୍ରେଷ୍ଠ ଅଙ୍ଗ ପ୍ରସଙ୍ଗର ସ୍ପଷ୍ଟ ଉଲ୍ଲେଖ ନଥିଲେ ହେଁ, ପ୍ରକାରାନ୍ତରରେ ଏହାର ସୂଚନା ମିଳିଥାଏ ।

Digitized by srujanika@gmail.com

ବଳରାମଙ୍କ ଉକ୍ତି ହେଉଛି—
"ପୂର୍ବେ ବିଧାତା ଯେ ମନରେ ବିଚାରି
ସକଳ ରୂପଗୁଣ ଏକ ଠାବ କରି
ଲବଣ୍ୟ ମଧ୍ୟେ କରି କନ୍ୟାଏକ କଲା
ଅହଲ୍ୟା ରୂପ ତା'ର ଅହଲ୍ୟା ନାମ ଦେଲା ।"

ଏହି ଉକ୍ତିରେ ସକଳ ରୂପ ଗୁଣ ଏକ ଠାବକରି, ଅଂଶ ଅନ୍ୟ ପ୍ରାଣୀଙ୍କର ସର୍ବଶ୍ରେଷ୍ଠ ଅଙ୍ଗର ହିଁ ରୂପାନ୍ତର । ସେହିପରି 'ଅହଲ୍ୟା ରୂପ ତା'ର' କହିବା ବେଳେ କବିଙ୍କ ମନରେ "ହଲ୍" ନଥିବା ଅର୍ଥାତ୍ ଅସୁନ୍ଦରତା ନଥିବା ରୂପର ଆଭାସ ମିଳେ ।

ଜନ୍ମ କଥାକୁ କବି ବାଲ୍ମୀକି ରାମାୟଣରୁ ଆରମ୍ଭ କରିଥିଲେ ହେଁ, ବିବାହ ବେଳକୁ ସେ ବ୍ରହ୍ମପୁରାଣକୁ ଅନୁସରଣ କରିଛନ୍ତି । ବାଲ୍ମୀକି ରାମାୟଣ ଅନୁଯାୟୀ ଅହଲ୍ୟାଙ୍କୁ ସୃଷ୍ଟି କରି ସାରିବାପରେ ବ୍ରହ୍ମା ତାଙ୍କୁ 'ଧରୋହର' ଗୌତମଙ୍କ ସ୍ୱଭାବେ ପାଖରେ ରଖିଥିଲେ । ବହୁବର୍ଷପରେ ଗୌତମ ତାଙ୍କୁ ଆଣି ଫେରାଇଦେଲେ ଓ ବ୍ରହ୍ମା ସିଦ୍ଧିରେ ଖୁସି ହୋଇ ଅହଲ୍ୟାକୁ ପତ୍ନୀଭାବେ ପ୍ରଦାନ କଲେ । ବ୍ରହ୍ମପୁରାଣରେ ମଧ୍ୟ ବ୍ରହ୍ମା ଅହଲ୍ୟାଙ୍କୁ ଗୌତମଙ୍କ ନିକଟରେ ରଖିଥିଲେ । ଯୌବନ ପ୍ରାପ୍ତି ପରେ ସବୁଦେବତା, ଦାନବ, ମୁନି, ଯକ୍ଷ ତଥା ରାକ୍ଷସ ଅହଲ୍ୟାକୁ ବିବାହ କରିବାପାଇଁ ଆଗ୍ରହ ପ୍ରକାଶ କଲେ । ଏହା ଦେଖି ବ୍ରହ୍ମା ବିବାହର ଏକ ସର୍ତ୍ତ ସ୍ଥିର କଲେ । ସର୍ତ୍ତ ହେଲା—ପୃଥିବୀକୁ ପ୍ରଥମେ ପର୍ଯ୍ୟଟନକରି ଫେରି ଆସିବା ବ୍ୟକ୍ତି ହିଁ ଅହଲ୍ୟାକୁ ବିବାହ କରିପାରିବ। ବ୍ରହ୍ମାଙ୍କ ସର୍ତ୍ତରେ ସମସ୍ତେ ରାଜିହୋଇ ପୃଥିବୀ ପ୍ରଦକ୍ଷିଣ କରିବାପାଇଁ ବାହାରିଗଲେ । ସେଠାରେ ଉପସ୍ଥିତ ଥିବା ଗୌତମ ଅର୍ଦ୍ଧପ୍ରସୂତା ସୁରଭି ତଥା ଶିବଲିଙ୍ଗଙ୍କୁ ପ୍ରଦକ୍ଷିଣକରି ବ୍ରହ୍ମାଙ୍କ ପାଖକୁ ଫେରି ଆସିଲେ ଏବଂ ଅହଲ୍ୟାଙ୍କୁ ବିବାହ କଲେ ।

ବଳରାମଙ୍କ କଥା କେତେକ ପରିମାଣରେ ବ୍ରହ୍ମ ପୁରାଣରୁ ମଧ୍ୟ ଅଲଗା । ଏଥିରେ ଅହଲ୍ୟାଙ୍କ ଜନ୍ମ ଓ ବିବାହ ମଧ୍ୟରେ ଆଦୌ ପାର୍ଥକ୍ୟ ନାହିଁ । ବ୍ରହ୍ମାଙ୍କ ସୃଷ୍ଟ ଅହଲ୍ୟା, ଜଣେ ଅପରୂପା ସୁନ୍ଦରୀ ଯୁବତୀ । ସେ ସୃଷ୍ଟି ହେବାର ପରକ୍ଷଣରେ ହିଁ ସକଳ ସୁରମୁନି ତାଙ୍କ ପ୍ରତି ଆକୃଷ୍ଟହୋଇ ତାଙ୍କୁ ବିବାହ କରିବାପାଇଁ ଆଗ୍ରହ ପ୍ରକାଶ କରିଥିଲେ । ଏପରି ସମସ୍ୟାର ସମାଧାନ କରିବାପାଇଁ ସେ ବିଶ୍ୱ ପ୍ରଦକ୍ଷିଣ ସର୍ତ୍ତର ଘୋଷଣା କଲେ । ସମସ୍ତେ ବିଶ୍ୱ ପ୍ରଦକ୍ଷିଣ କରିବାପାଇଁ ଚାଲିଯିବା ପରେ ବ୍ରହ୍ମାଙ୍କ ଦ୍ୱାରା ଆଦିଷ୍ଟହୋଇ ଗୌତମ ଏହି ପ୍ରତିଯୋଗିତାରେ ଯୋଗଦାନ କଲେ ଓ ବ୍ରହ୍ମ ପୁରାଣ ପରି ସୁରଭୀଙ୍କୁ ଚାରିପଟେ ବୁଲିଆସି ଅହଲ୍ୟାଙ୍କୁ ବିବାହ କରିବାର ହକ୍‌ଦାର ହୋଇଗଲେ । ବ୍ରହ୍ମ ପୁରାଣର ଅର୍ଦ୍ଧପ୍ରସୂତ ସୁରଭୀ ଓ ଶିବଲିଙ୍ଗ ସ୍ଥାନରେ କେବଳ ସୁରଭୀର ଉଲ୍ଲେଖ ଏବଂ ଅନ୍ୟ କେତେକ ଗୌଣ ପରିବର୍ତ୍ତନ ସତ୍ତ୍ୱେ ବଳରାମଙ୍କ ଉପରେ

Digitized by srujanika@gmail.com

ବ୍ରହ୍ମ ପୁରାଣର ପ୍ରଭାବ ସହଜରେ ଦେଖାଯାଇପାରେ । ଅହଲ୍ୟା ହରଣର ମୂଳରୂପ ମଧ୍ୟ ବ୍ରହ୍ମ ପୁରାଣରୁ ଗୃହୀତ । ଗୌତମ ବେଶରେ ଇନ୍ଦ୍ରଙ୍କର ଅହଲ୍ୟା ହରଣ ଓ ମାର୍ଜାର ବେଶରେ ପଳାୟନ କଥା ବ୍ରହ୍ମପୁରାଣରେ ଅନୁରୂପ । ପାର୍ଥକ୍ୟ ଭିତରେ ବ୍ରହ୍ମ-ପୁରାଣରେ କେବଳ ଇନ୍ଦ୍ରଙ୍କର ଗୌତମ ବେଶ କଥା ଥିବାବେଳେ ବଳରାମ ଇନ୍ଦ୍ରଙ୍କର ଦୁଇଟି ରୂପକଥା କହିଛନ୍ତି । ଇନ୍ଦ୍ରଙ୍କ ନିଜବେଶ ଓ ଗୌତମ ବେଶ । ଇନ୍ଦ୍ର ବେଶରେ ସେ ସଫଳ କାମ ହେଲେ ନାହିଁ । ବରଂ ଅହଲ୍ୟାଙ୍କଦ୍ୱାରା ଭର୍ତ୍ସିତ ହୋଇ ଫେରିଗଲେ । ଦ୍ୱିତୀୟ ଥର ସେ ଆସିଲେ ଗୌତମ ବେଶରେ । ଏଥର ଅହଲ୍ୟା ଇନ୍ଦ୍ରଙ୍କୁ ଚିହ୍ନି ନ ପାରି ଅଙ୍ଗଦାନ କଲେ ।

ଇନ୍ଦ୍ରଙ୍କର ଦୁଇବେଶରେ ଦୁଇଥର ଆସିବା ବ୍ରହ୍ମବୈବର୍ତ୍ତ ପୁରାଣରେ କଥା ।

ଗୌତମ ବେଶରେ ଇନ୍ଦ୍ରଙ୍କର ଅହଲ୍ୟା ହରଣ କଥା ବାଲ୍ମୀକି ରାମାୟଣରେ ଥିଲେବି ସେଥିରେ ଅହଲ୍ୟା ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ନଥିଲେ । ସେ ଗୌତମ ରୂପଧାରୀ ଇନ୍ଦ୍ରଙ୍କୁ ଚିହ୍ନିକରି ମଧ୍ୟ ନିଜ ରୂପର ଅହଂକାରରେ ଅଂଗଦାନ କରିଥିଲେ । ପରବର୍ତ୍ତୀ ଯୁଗରେ ବିଶେଷକରି ମହାଭାରତଠାରୁ ଅହଲ୍ୟାଙ୍କୁ ନିର୍ଦ୍ଦୋଷୀ ରୂପେ ଗ୍ରହଣ କରାଯାଇଛି । ଏଥିରେ ମଧ୍ୟ ବଳରାମ ବାଲ୍ମୀକିଙ୍କୁ ଅନୁସରଣ ନ କରି ପରବର୍ତ୍ତୀ କଥାକୁହିଁ ଗ୍ରହଣ କରିଛନ୍ତି । ବଳରାମଙ୍କ ଅହଲ୍ୟା ନିଜର ନିର୍ଦ୍ଦୋଷତା ଦର୍ଶାଇ ନିବେଦନ କରିଛି—

"ଶୁଣିଣ ମୁନିଙ୍କ ଯୋଡ଼ଇ ବେନି କର
ମୁନି ଦୋଷ ଯେ ନାହିଂ ନା ମୋହୋର । ୪୦୫ ।

ମାୟା ହୋଇ ଅଇଲା ତୁମ ରୂପ ଧରି
ମୁହିଂ କେହ୍ନେ ଜାଣିମି ସେ ଅଟଇ ବଜ୍ରଧାରୀ । ୪୦୬ ।
ପୂର୍ବେ କାହାର ମୁଂ ଛୁନାଇଥିଲି ଆରି
ତେଣୁ ସେ ଘର ବରେ ହୋଇଲି ନିରାରି । ୪୦୭ ।

ଅହଲ୍ୟାଙ୍କର ଏପ୍ରକାର ସଫେଇ ସତ୍ତ୍ୱେ, ଦୋଷ ନଥିଲେ ଦଣ୍ଡ ମିଳେ ନାହିଁ—ବଳରାମ ଏ ବିଷୟରେ ସଚେତନ ଥିବା ପରି ଜଣାଯାଏ । ସେଥିପାଇଁ ଇନ୍ଦ୍ରଙ୍କ ପ୍ରଥମ ଆଗମନ ଓ ପ୍ରେମ ନିବେଦନ ବିଷୟରେ ଅହଲ୍ୟା ଗୌତମଙ୍କୁ କିଛି କହି ନାହାନ୍ତି । ତେହିପରି ଯେତେବେଳେ ସେ ମାୟା ଚରିତ କଥା ସ୍ପଷ୍ଟଭାବେ ଜାଣି ପାରିଥିଲେ ସେତେବେଳେ ମଧ୍ୟ ସତ୍ୟକଥା ନ କହି ଋଷିଙ୍କୁ ଭୁଲାଇବାକୁ ଚେଷ୍ଟାକରି କହିଥିଲେ । ଗଉତମ ଯେତେବେଳେ ପଚାରିଲେ—"କାହାର ବାଟେକେ ହୋଇଲା ବାହାରେ" ଅହଲ୍ୟା ଉତ୍ତର ଦେଲେ—"ଅନ୍ଧାର ବୋଇଲି ସେ ଅଟଇ ମାର୍ଜାର"

Digitized by srujanika@gmail.com

ସେଥିପାଇଁ ଗୌତମମୁନି ଉଭୟଙ୍କୁ ଅଭିଶାପ ଦେଲେ । ଇନ୍ଦ୍ର ହେଲେ ନପୁଂସକ ଓ ସହସ୍ର ଭଗ ଓ ଅହଲ୍ୟା ହେଲେ ପଥର ।

ଇନ୍ଦ୍ରଙ୍କ ନପୁଂସକ ହେବାକଥା ବାଲ୍ମୀକଙ୍କ ବାଲକାଣ୍ଡର ବୃତ୍ତାନ୍ତ ଉପରେ ଆଧାରିତ । ଗୌତମଙ୍କ ଅଭିଶାପ ଫଳରେ ଇନ୍ଦ୍ରଙ୍କ ବୃଷଣ ଛିଣ୍ଡି ପଡ଼ିଥିଲା । (ସର୍ଗ—୪୮) ଓ ପରେ ଦେବତାମାନେ ତାଙ୍କୁ ମେଷର ବୃଷଣ ପ୍ରଦାନ କରିଥିଲେ । ଇନ୍ଦ୍ରଙ୍କ ସହସ୍ର ଭଗହେବା ବ୍ରହ୍ମପୁରାଣ (୮୭, ୫୯), ସ୍କନ୍ଦ ପୁରାଣ (ନାଗର ଖଣ୍ଡାଅ—୨୦୭), କଥା ସରିତ ସାଗର (୩, ୧୭), ପଦ୍ମ ପୁରାଣ (୫, ୫୧, ୨୮) ଓ ଅଧ୍ୟାତ୍ମ ରାମାୟଣ (୧, ୫, ୨୬ ପ୍ରଭୃତିରେ ମିଳୁଥିଲେ ହେଁ ବାଲ୍ମୀକରେ ନାହିଁ । ସହସ୍ର ଭଗରୁ ବ୍ରହ୍ମାଙ୍କ ଅନୁରୋଧକ୍ରମେ ଗୌତମଙ୍କଦ୍ୱାରା ଇନ୍ଦ୍ର ସହସ୍ର ନୟନରେ ପରିଣତ ହେବା ପ୍ରସଂଗ ବଳରାମଙ୍କ ବ୍ୟତୀତ କେବଳ କମ୍ବନ ରାମାୟଣରେ ଦେଖିବାକୁ ମିଳେ । ଇନ୍ଦ୍ର ସହସ୍ରଭଗ ହେବା ଯୋଗୁଁ ଲଜ୍ଜାବଶତଃ ମାନସରୋବରରେ ଯାଇ ଲୁଚି ରହିଥିଲେ । ଏହାର ଅନୁରୂପ ପ୍ରସଂଗ ଆସାମୀ ରାମାୟଣରେ ମିଳୁଥିଲେ ହେଁ ଅନ୍ୟତ୍ର ଦେଖିବାକୁ ମିଳେ ନାହିଁ ।

ଅହଲ୍ୟାଙ୍କ ପଥର ରୂପକଥା ପ୍ରଥମେ ରଘୁବଂଶରେ ଦେଖିବାକୁ ମିଳେ । ପରବର୍ତ୍ତୀ ବହୁ ପୁରାଣରେ ଏହି ପ୍ରସଂଗ ଥିଲେ ହେଁ ଏହା ବାଲ୍ମୀକରେ ନାହିଁ । ରାମଙ୍କ ଚରଣ ସ୍ପର୍ଶରେ ପଥର ରୂପପାଇ ଅହଲ୍ୟାରେ ପରିଣତ ହେବା ଓ ଅହଲ୍ୟା ରାମଙ୍କୁ ସ୍ତୁତିକରି ନିଜ ସ୍ୱାମୀଙ୍କ ପାଖକୁ ଫେରିଯିବା ପ୍ରସଂଗ ମଧ୍ୟ ବାଲ୍ମୀକୀରେ ନାହିଁ । ବଳରାମ ଏ କଥାକୁ ଅଧ୍ୟାତ୍ମ ରାମାୟଣରୁ ଆଣିଥିବାପରି ମନେହୁଏ ।

ଏହିପରି ଦେଖିଲେ ବଳରାମ ନିଜର ଆଧାର ଗ୍ରନ୍ଥଭାବେ କେବଳ ବାଲ୍ମୀକି ରାମାୟଣକୁ ଗ୍ରହଣ ନକରି ଆବଶ୍ୟକସ୍ଥଳେ ବହୁ ପୁରାଣରୁ ଘଟଣାସବୁକୁ ଆଣି ନିଜ ରାମ-କଥାର ରୂପ ପ୍ରଦାନ କରିଥିଲେ । ଏହାଦ୍ୱାରା ବଳରାମଙ୍କ ପାଣ୍ଡିତ୍ୟ ଓ ବହୁଶାସ୍ତ୍ରଦର୍ଶିତା ପ୍ରକାଶ ପାଇବା ସଂଗେ ସଙ୍ଗେ ତାଙ୍କ ଦୃଷ୍ଟିକୋଣର ବୈଶିଷ୍ଟ୍ୟ ପ୍ରତିଭାତ ହୁଏ । ଅହଲ୍ୟା ଉଦ୍ଧାରପରି ଅନ୍ୟ କଥାରେ ମଧ୍ୟ ବଳରାମ ବହୁ ପୁରାଣର ଆଶ୍ରୟ ଗ୍ରହଣ କରିଥିଲେ ।

(ଙ) ସୀତା ବିବାହ

କବିଙ୍କ ବହୁ ଶାସ୍ତ୍ରଦର୍ଶିତାର ଅନ୍ୟ ଗୋଟିଏ ଉଦାହରଣ ହେଉଛି ସୀତ ବିବାହ । ଅନ୍ୟ ଉପାଖ୍ୟାନପରି ଏଥିରେ ମଧ୍ୟ କବି ବାଲ୍ମୀକି ରାମାୟଣ ସହିତ ଅନ୍ୟ ପୁରାଣର କଥାକୁ ସଂଯୋଜିତ କରିଛନ୍ତି ।

ଏଥିରେ ଥିବା ଅବାଲ୍ମୀକୀୟ କଥାସବୁକୁ ବିଶ୍ଳେଷଣ କଲେ, ଏହାହିଁ ପ୍ରତିପାଦିତ ହୁଏ । ଧନୁଭଙ୍ଗ ପୂର୍ବରୁ ଆୟୋଜିତ ହୋଇଥିବା ସୀତା ସ୍ୱୟମ୍ବରରେ

Digitized by srujanika@gmail.com

ବିଭିନ୍ନ ରାକ୍ଷସ ବିଶେଷକରି ରାବଣ ଓ ବାଣାସୁର ଏବଂ ବିଭିନ୍ନ ଦେବତା ବିଶେଷକରି ଇନ୍ଦ୍ର, ପବନ ଓ ଗଣେଶଙ୍କ କଥାକୁ ଗ୍ରହଣ କରାଯାଇପାରେ । ବାଲ୍ମୀକିଙ୍କ ରାମାୟଣରେ ଏସବୁ ରାକ୍ଷସ ଓ ଦେବତାଙ୍କର ଉଲ୍ଲେଖ ନଥିଲେ ହେଁ, ଶ୍ରୀ ରାମଙ୍କ ଶକ୍ତି, ପରାକ୍ରମ ଓ ମହିମାକୁ ପ୍ରକାଶ କରିବାପାଇଁ ପରବର୍ତ୍ତୀ ଲେଖକମାନେ ଏହାର ସଂଯୋଜନା କଲେ । ଏହି କଥାର ପ୍ରଥମ ସଂଯୋଜନକର୍ତ୍ତା ହେଲେ, ପ୍ରସନ୍ନ ରାଘବ ରଚୟିତା "ଜୟଦେବ" । ପଦ୍ମପୁରାଣର ପାତାଳଖଣ୍ଡ (ଅଧ୍ୟାୟ-୧୧୨)ରେ ମଧ୍ୟ ଏହାର ବର୍ଣ୍ଣନା ଦେଖିବାକୁ ମିଳେ । ବଳରାମ ଦାସ ରାବଣ ଓ ବାଣାସୁରର ଅସଫଳ ପ୍ରଚେଷ୍ଟା ବର୍ଣ୍ଣନାକରି କେବଳ ଯେ ପ୍ରସନ୍ନ ରାଘବ ବା ପଦ୍ମପୁରାଣର ଅନୁସରଣ କରିଛନ୍ତି, ତାହା ନୁହେଁ, କଥାରେ ହାସ୍ୟରସର ସୃଷ୍ଟି କରିଛନ୍ତି । କବି ବାଣାସୁର ଦୁର୍ଦ୍ଦଶା ବର୍ଣ୍ଣନା କରି ଲେଖିଛନ୍ତି—

"ସହସ୍ରେକ ଭୁଜ ବାଣାସୁର ରାଜା
ତୋଳି ନ ପାରଣ ପାଇଲାକ ଲଜ୍ୟା ।
ଅଗ୍ୟାନ ହୋଇଣ ବସିଲା ନୃପବର
ରୁଧିର ବାହାର ହୋଇଲା ମୁଖର ।" ପୃ-୧୬୬-୧୬୭

ରାବଣର ଦୁର୍ଦ୍ଦଶା ବାଣାସୁରକୁ ବଳିଯାଇଛି—

"ଯେତେ ବୋଲି ଧନୁ ଛୁଇଁଲାକ ସନ୍ଧି
ଅଗ୍ୟାନ ହୋଇଣ ସେ ପଡ଼ିଲାକ ଡନ୍ଧି ।
ଦଶ ବଦନରୁ ବାହାର ରୋଧିର
କ୍ଷଣକେ ଚେତନା ପାଇଲା ମହାବୀର ।
ନାଜେଣ ନ କହି ଗଲା ଦଶମାଥ
ଉପହାସ କଲେ ନୃପଣ ସମସ୍ତ ।
ଦେଖିଣ ବାଣାସୁର ଉପହାସ କଲା
ଦେବଧନୁ ବୋଲି ସେ ବାହୁଡ଼ିଣ ଗଲା ।" ପୃ-୧୬୭

ରାବଣ ଓ ବାଣାସୁରଙ୍କପରି ଇନ୍ଦ୍ର, ପବନ ଓ ଗଣେଶ ଆସି ନିଜ ପରାକ୍ରମର ନିଷ୍ଫଳ ପରୀକ୍ଷା କରିଥିଲେ । ଏକଥାର ମୂଳସୂତ୍ର ମଧ୍ୟ ସେହି ପଦ୍ମପୁରାଣ, ପାତାଳଖଣ୍ଡ (ଅଧ୍ୟାୟ-୧୧୨, ୯୯-୧୦୩) । ଏଥିରେ ଆସିଥିଲେ ମହେନ୍ଦ୍ର, ସୂର୍ଯ୍ୟ ଓ ବାୟୁ । ବଳରାମଙ୍କ ରାମାୟଣରେ ଆସିଲେ, ଇନ୍ଦ୍ର, ପବନ ଓ ଗଣେଶ । ପବନ ନିଜେ ଧନୁ ଉଠାଇ ନାହାନ୍ତି ଇନ୍ଦ୍ରଙ୍କ ଦୁର୍ଦ୍ଦଶାର ସେ ଥିଲେ ସାକ୍ଷୀ । ଏହି ପ୍ରସଙ୍ଗରେ ବ୍ରହ୍ମାଙ୍କ ପରିହାସ ଅତ୍ୟନ୍ତ ଉପଭୋଗ୍ୟ । କବି ଲେଖିଛନ୍ତି—

Digitized by srujanika@gmail.com

“ପବନ ଭର ଧରି ସେ ବାହୁଡ଼ିଲା ଧାଇ
ଦେଖିଣ ତାହାକଇଂ ପଚାରିଲେ ବେଦପତି ।
ବୃଦ୍ଧ ଅଙ୍ଗାର କି ମାଡ଼ିଲୁ ବଜ୍ରପାଣି
ବିଶ୍ୱନାଥ ଧନୁ କି ଛୁଇଁଲୁ ନ ଜାଣି । ପୃ-୨୭୮

ପଦ୍ମପୁରାଣରୁ ମୂଳସୂତ୍ର ଗ୍ରହଣ କରିବାପରେ ବଳରାମ ସେଥିରେ ଯୋଗକଲେ ସହସ୍ରାର୍ଜ୍ଜୁନ, ନ ରାୟଣ ଋଷି, ଗଣେଶ ଓ କାର୍ତ୍ତିକେଶ୍ୱରଙ୍କପରି ପରାକ୍ରମ ବ୍ୟକ୍ତିଙ୍କ କଥା । ଗଣେଶଙ୍କ ଶୋଚନୀୟ ଅବସ୍ଥା ବର୍ଣ୍ଣନାକରି କବି ହାସ୍ୟରସର ସୃଷ୍ଟି କରିଛନ୍ତି—

‘ ଧୋର ହସ୍ତେ ଧରି ତୋଳିତ ମନ କଲା
ହୁଙ୍କାର ଧ୍ୱନି କରି ରାଗେଣ ଉଚ୍ଛୁଳିଲା ।
ପେଟେ ପଶିଲା ତାର କର ଚରଣ ବୁଲୁ
ଲୋକେ ଉପହାସ୍ୟ କରନ୍ତି ତାହାଙ୍କୁ” । ପୃ-୩୧୮

ବଳରାମଙ୍କ ସଦୃଶ କାମ୍ବୋଡ଼ିଆର ରାମାୟଣ ରାମକେର୍ତ୍ତିରେ ବ୍ରହ୍ମା, ଇନ୍ଦ୍ର, ଶିବ, ବାୟୁ, ଅଗ୍ନି ଆଦି ତେତିରିଶ ଦେବତାଙ୍କର ଉଲ୍ଲେଖ ମିଳେ । ସେମାନେ ଜଣକପରେ ଜଣେ ଆସି ଧନୁ ପରୀକ୍ଷାରେ ଅସଫଳହୋଇ ଫେରି ଯାଇଛନ୍ତି ।

ସୀତା ସ୍ୱୟମ୍ବରରେ ବିଭିନ୍ନ ରାଜା, ଦେବତା, ଋଷି ଓ ରାକ୍ଷସଙ୍କ ଯୋଗଦାନ କଥାପରି ସୀତାଙ୍କ ପୂର୍ବାନୁରାଗ ଅନ୍ୟ ଏକ ନୂତନ ସଂଯୋଜନା । ରାଜସଭାରେ ରାମଙ୍କୁ ଦେଖି ପ୍ରେମବିହ୍ୱଳା ସୀତାଙ୍କର ବ୍ରହ୍ମାଙ୍କୁ ପ୍ରାର୍ଥନାକରିବା ଏବଂ ବରଣମାଳା ପ୍ରଦାନ କଲାବେଳେ ଚାରିଚକ୍ଷୁର ମିଳନହେବା ଏହାର ଦୁଇଟି ଦୃଶ୍ୟ । ବରଣମାଳା ପ୍ରଦାନ ଓ ଚାରିଚକ୍ଷୁମିଳନ କଥା କବି ଯଥାକ୍ରମେ ଅଧ୍ୟାତ୍ମ ରାମାୟଣ ଓ ଆନନ୍ଦ ରାମାୟଣରୁ ଗ୍ରହଣ କରିଛନ୍ତି । ଅନ୍ୟ ପ୍ରସଙ୍ଗଟି ଆସିଛି ମହାନାଟକ ତଥା ଆନନ୍ଦ ରାମାୟଣ (୧, ୮, ୧୧-୧୨) ରୁ । ରାମଙ୍କ ପ୍ରଥମ ଦର୍ଶନକାଳରେ ସୀତା ସଖୀସମାବୃତା ହୋଇ ଜଗତୀଉପରେ ଉପବେଶନ କରିଛନ୍ତି । ଏହି ଦୃଶ୍ୟକୁ ବଳରାମଙ୍କ ନିଜସ୍ୱ ଭଙ୍ଗୀଟିକୁ ଦେଖିବାପାଇଁ—ତୁଳନାରେ କୃତ୍ତିବାସ ରାମାୟଣକୁ ରଖାଯାଇପାରେ ।

“ଏଇକାଳେ ସୀତା ଦେବୀ ୧ ହ ସଖୀଗଣ
ଅଟ୍ଟାଳିକା ପରେ ଉଠି କରେ ନିରୀକ୍ଷଣ ।”

ବଳରାମ ଅଟ୍ଟାଳିକା ସ୍ଥାନରେ ରଖିଛନ୍ତି, କନକ ମଣ୍ଡପ, ସେହି ମଣ୍ଡପର ସ୍ଥଳ ଚନ୍ଦ୍ରନିର୍ମିତ । ଏହାର ଚତୁର୍ଦ୍ଦିଗର ମାଳ ମାଳ ମୁକ୍ତାର ତୋରଣ, ଗଜମୋତିର ଝରା ଓ ବିବିଧ କୁସୁମରେ ଶୋଭା ପାଉଛି । ଏହିପରି ଏକ ଆଡ଼ମ୍ବରପୂର୍ଣ୍ଣ ରାଜକୀୟ ପରିବେଶ ।

Digitized by srujanika@gmail.com

"ମଧ୍ୟରେ ପଲଙ୍କ ଯେ ଗଜଦନ୍ତ ଖୁରା
ସୁବର୍ଣ୍ଣର ପିଢ଼ୁଲ ନବାଣର ଝଡ଼ା ।
ତଥିର ଉପରେ ଦେବାଙ୍ଗ ପାଟଭୂଲ
ନାଗେଶ୍ୱର କେଶର ଗୁଣ୍ଡି ର ମୂଚୁଲ ।
"ଶେଜ ସେଜାଇଲ ପଡଲ ପାଗ୍ଲେଣ୍ଡ
କର୍ପୂରର ଧୂଳ ଉପରେ ସିଂଧାଡ଼ ।
ତହିଂ ବିଜେ କରିଅଛନ୍ତି ଦେଖି ସୀତା
ଲଲାଟେ ସିନ୍ଦୂର କପାଳେ ଗନ୍ଧଚିତା ।"

କେବଳ ସେତିକି ନୁହେଁ, ତାଙ୍କ ହାତରେ ଅଛି ଏକ ନାଗେଶ୍ୱର ଫୁଲ । ପରିଚାରିମାନେ ଆଲଟ ଓ ଚାମର ସେବା କରୁଛନ୍ତି ଏବଂ ଆଗରେ ଉଭାହୋଇ ହାତଯୋଡ଼ି ବିଭିନ୍ନ କଥା ବୁଝାଇବାରେ ଲାଗିଛନ୍ତି ।

ବାଲ୍ମୀକି ଓ ଅନ୍ୟାନ୍ୟ ପ୍ରଚଳିତ ରାମାୟଣରେ ଏହି ଦୃଶ୍ୟଟି ନ ଥିବାର ମନେହୁଏ । ଏହା ଥିଲା ଷୋଡ଼ଶ ଶତାବ୍ଦୀ ଓଡ଼ିଶାର ରାଜକୀୟ ଚଳଣି । କୋଣାର୍କ ମନ୍ଦିରରେ ବିବାହର ଦୃଶ୍ୟ ଅଛି, ପଲଙ୍କ ଉପରେ ଆସୀନା ରାଜରମଣୀଙ୍କ ଦୃଶ୍ୟ ବି ରହିଛି । ପରିଚାରିଙ୍କ ସେବାକଥା ବି ଅଛି ।

ହିନ୍ଦୁ ପୁରାଣ ସବୁରେ ଲକ୍ଷ୍ମୀଙ୍କ ହାତରେ ପଦ୍ମଫୁଲ ଶୋଭା ପାଇଥାଏ । ଅଗ୍ନି ପୁରାଣରେ ସରସ୍ୱତୀ ପଦ୍ମପୁଷ୍ପ ଧାରଣ କରିଥିବା ବର୍ଣ୍ଣିତ । ସୀତା କମଳାଙ୍କ ଅବତାର । ତେଣୁ ତାଙ୍କ ହାତରେ ପଦ୍ମଫୁଲ ହିଁ ଏଠି ଶୋଭାପାଇଥାନ୍ତା ; ତା ହୋଇ ନାହିଁ । ପଦ୍ମଫୁଲ ସ୍ଥାନରେ ଅଛି ନାଗେଶ୍ୱର ଫୁଲ । ବୋଧହୁଏ ନାଗରଶ୍ରେଷ୍ଠ ଶ୍ରୀରାମଙ୍କ ପ୍ରତୀକଭାବେ । ସେଥିପାଇଁ ହିଁ ଏଠି ନାଗରୀ ସୀତା ନାଗେଶ୍ୱର ଫୁଲ ଧରି ରାମଙ୍କୁ ଚାହିଁଛନ୍ତି । ଏକଥା ମଧ୍ୟ ମନକୁ ଯାଏ ନାହିଁ, ମୁସଲମାନ ରମଣୀ ରେଜିଆ, ମମତାଜ ଓ ନୁରଜାହାନଙ୍କ ଚିତ୍ରରେ ତାଙ୍କ ହାତରେ ଥିବା ଫୁଲ କଥା ମନେପଡ଼େ । ବଳରାମ ରାମାୟଣ ଲେଖିଲାବେଳକୁ ଏ ଦେଶକୁ ମୁସଲମାନ ରାଜତ୍ୱ ଆସି ନ ଥିଲା । ମୁସଲମାନ ସୁଲତାନମାନେ ବାରମ୍ବାର ଓଡ଼ିଶା ଆକ୍ରମଣକରି ଫେରି ଯାଇଥିଲେ । ଇତିହାସରୁ ଏତିକି ସୂଚନା ମିଳୁଥିଲେ ହେଁ ମୁସଲମାନମାନଙ୍କ ସହ ସମ୍ପର୍କ ବହୁଭାବେ ବୃଦ୍ଧି ପାଇସାରିଥିଲା । ମୁସଲମାନ କବିମାନେ ଓଡ଼ିଶା ବିଷୟରେ ବିଶେଷକରି ପୁରୀର ମହାପ୍ରସାଦସେବା ବିଷୟରେ ସଚେତନ ଥିଲେ । ମହମ୍ମଦ ଜାୟସୀକୃତ "ପଦ୍ମାବତ" କାବ୍ୟରେ ଜଗନ୍ନାଥ କ୍ଷେତ୍ରର ନିମ୍ନୋକ୍ତ ଛନ୍ଦ ମିଳିଥାଏ ।

"ଜଗରନାଥ ଜୋ ଦେଖେକହି ଆଇ
ଭୋଜନ ରନ୍ଧା ହାଟ ବିକାଇ ।" ୪୨୦ । ୧

ଜଗନ୍ନାଥ କ୍ଷେତ୍ରର ଏହି ବୈଶିଷ୍ଟ୍ୟ ମୁସଲମାନ କବିଙ୍କୁ ଆଶ୍ଚର୍ଯ୍ୟଚକିତ କରିପାରି ହିନ୍ଦୁ କବିମାନେ ଶୁଣାଶୁଣିରୁ ମୁସଲମାନ ଜାତିର ବୈଶିଷ୍ଟ୍ୟକୁ ସ୍ଥାନ ଦେଇଥିବେ । ଏହି ଆଦାନପ୍ରଦାନର ଫଳସ୍ୱରୂପ ସୀତାଙ୍କ ଚରିତ୍ରରେ ବହୁ ପରିବର୍ତ୍ତନ ଦେଖାଗଲା । ସ୍ୱାମୀଙ୍କ ସାଙ୍ଗରେ ବନକୁ ଯିବା କଥା ତ ବାଲ୍ମୀକିରେ ଥିଲା । କିନ୍ତୁ ସେଥିରେ ଥିବା ସୀତାଙ୍କ ତଟସ୍ଥଭାବ ବଳରାମଙ୍କୁ ଭଲ ଲାଗି ନଥିଲା । ସେଥିପାଇଁ ସୀତା ବନର ଶୋଭା ଦର୍ଶନରେ କେବଳ ଜଣେ ନୀରବଦ୍ରଷ୍ଟା ନ ହୋଇ ରାମଙ୍କ ସହ ବିଳାସ-କ୍ରୀଡ଼ା କଲେ । ଏଥିରେ ତାଙ୍କର ବଧୂତ୍ୱ ଅପେକ୍ଷା ନାରୀତ୍ୱ ବିଶେଷଭାବରେ ଆତ୍ମପ୍ରକାଶ କଲା । ଘନଜଙ୍ଗଲ ପରିବେଷ୍ଟିତ ଚିତ୍ରକୂଟରେ ରାମ ଓ ସୀତା ହାତ ଧରାଧରିହୋଇ ସ୍ୱଚ୍ଛନ୍ଦରେ ବିଚରଣକଲେ । ବନପଥରେ, ପୁଣି ପର୍ବତ ଉପରେ । ଗୋଦାବରୀର ସ୍ନାନ ସୁଖ ଉଭୟଙ୍କୁ ବିମୋହିତ କଲା । ନାଗେଶ୍ୱର ଫୁଲର ଡ଼ାଳଧରି ରାମ ଓ ସୀତା ପରସ୍ପରକୁ ଆଘାତକରି ଆନନ୍ଦ ପାଇଲେ । ନିର୍ଜନ ବନ ମଧ୍ୟରେ ରାମ ଓ ସୀତାଙ୍କର ଏହି ବିଳାସ ଆଉ ବାଲ୍ମୀକିଙ୍କ ବର୍ଣ୍ଣନାକୁ ଅନୁସରଣ କରୁ ନଥିଲା । ବାଲ୍ମୀକିରେ ଶ୍ରୀରାମ ସୀତାଙ୍କ ସମ୍ମୁଖରେ ଚିତ୍ରକୂଟର ଓ ଗୋଦାବରୀର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଥିଲେ । ସେହି ଅପରୂପ ସୌନ୍ଦର୍ଯ୍ୟକୁ ଦୂରରୁ ଦର୍ଶନକରି ତୃପ୍ତ ହେବାର ଅଭିପ୍ରାୟ ବଳରାମଙ୍କ ବର୍ଣ୍ଣନାରେ ଆଉ ନାହିଁ । ଚିତ୍ରକୂଟର ଭୀଷଣତାକୁ ଦୂରେଇଦେଇ ନଗରୀର ସୁସଜ୍ଜିତ ଉଦ୍ୟାନରେ କ୍ରୀଡ଼ା କଲାପରି ରାମ ଓ ସୀତା ଦୁର୍ଗମ ଅରଣ୍ୟରେ ନିଜର ଉଦ୍ଦାମ ଯୌବନକୁ ସାର୍ଥକ କରିଥିଲେ । ଏହି ପରିକଳ୍ପନାକୁ ଆହୁରି ମୂର୍ତ୍ତିବନ୍ତକରି ପ୍ରକାଶକରେ ରାଜ୍ୟାଭିଷେକ ପରେ ଅଯୋଧ୍ୟା ନିକଟବର୍ତ୍ତୀ ରାଜ-ଉଦ୍ୟାନ ଓ ସେଥିରେ ଥିବା ବିଳାସ-ଭବନ । ସଂସ୍କୃତ ସାହିତ୍ୟରେ ଉପବନର ବର୍ଣ୍ଣନା, ରାଜା ଓ ରାଣୀଙ୍କର ବିନୋଦ ପ୍ରଚୁର ପରିମାଣରେ ଦେଖିବାକୁ ମିଳୁଥିଲେ ହେଁ, ମୋଗଲମାନଙ୍କ ବିଳାସ-ଉଦ୍ୟାନର ପରିକଳ୍ପନା ବଳରାମ ଦାସଙ୍କୁ ନୂଆ ଉତ୍ସାହ ଓ ନୂଆ ଉଦ୍ଦୀପନା ଦେଇଥିବ । ହିନ୍ଦୀ କବି କେଶବ ଦାସଙ୍କ ପ୍ରମୋଦ ବନ ଓ ସେଥିରେ ଥିବା କୃତ୍ରିମ ପର୍ବତ, କୃତ୍ରିମ ସରିତ ଓ ଜଳାଶୟର ବର୍ଣ୍ଣନା ଦେଖି ହିନ୍ଦୀ ସାହିତ୍ୟର ଆଲୋଚକମାନେ ମଧ୍ୟ ମୋଗଲ ଉଦ୍ୟାନର ସ୍ମରଣ କରିଛନ୍ତି । ଏହା ସ୍ୱାଭାବିକ ; ସଂସ୍କୃତ ସାହିତ୍ୟ ବିଶେଷକରି ହନୁମାନ ନାଟକ ଓ ପ୍ରସନ୍ନ ରାଘବ ପ୍ରଭୃତିରେ ରାମ ଓ ସୀତାଙ୍କ ବିଳାସପୂର୍ଣ୍ଣ ଜୀବନର ସଜୀବ ଚିତ୍ର ଥିଲେ ହେଁ ଓ ବଳରାମ, କେଶବ ପ୍ରମୁଖ କବି ଏସବୁ ଗ୍ରନ୍ଥଦ୍ୱାରା ବିଶେଷଭାବେ ପ୍ରଭାବିତ ହୋଇଥିଲେ ହେଁ, ମୋଗଲ ଦରବାର ମାଧ୍ୟମରେ ଦେଶରେ ନୂଆକରି ପ୍ରବେଶ କରୁଥିବା ସଭ୍ୟତା ସେମାନଙ୍କୁ ଯେ ଆକୃଷ୍ଟ କରିନଥିବ, ଏକଥା କହିହେବ ନାହିଁ ।

ନୂଆହୋଇ ଦେଶରେ ପ୍ରବେଶ କରୁଥିବା ସଭ୍ୟତା ପ୍ରତି ବଳରାମ ଯେତିକି ସଚେତନ, ନିଜର ପ୍ରାଚୀନ ପରଂପରାର ସୁରକ୍ଷାପାଇଁ ସେତିକି ସତର୍କ । ଗ୍ୱେଲିଗଙ୍କୁ

Digitized by srujanika@gmail.com

ଠାରୁ ପ୍ରତାପରୁଦ୍ରଙ୍କ ପର୍ଯ୍ୟନ୍ତ ଓଡ଼ିଶା ବେଶୀଭାବେ ଦକ୍ଷିଣ ଭାରତସହ ସଂପୃକ୍ତ ଥିଲା । ରାଜ୍ୟଜୟ, ରାଜ୍ୟବିସ୍ତାର ସବୁ ଥିଲା ଦକ୍ଷିଣରେ । ସେଥିପାଇଁ ଦକ୍ଷିଣର ବହୁକଥା ଜଗମୋହନ ରାମାୟଣରେ ଦେଖିବାକୁ ମିଳେ । ସେଥିମଧ୍ୟରୁ ରାମଙ୍କ ବରଯାତ୍ରୀ ବର୍ଣ୍ଣନା ଅନ୍ୟତମ । ଦଶରଥଙ୍କ ସାଙ୍ଗରେ ବାହାରିଲେ ହାତୀ, ଘୋଡ଼ା, ସେନା, ସାମନ୍ତ, ମନ୍ତ୍ରୀ, ପୁରୋହିତ, ଭାଟ, କନ୍ୟେବର, ଜଉହମ୍ପ, ଘଣ୍ଟଂକାଣ୍ଡ ବାଲୀ, ଓ ବ୍ରାହ୍ମଣ । ଶୁଭ ଅନୁକୂଳବେଳର ବିବିଧ ବିଧାନ ବିଧିମତେ ଅନୁଷ୍ଠାନ କଲେ । ଅଗିଆଣି ଆଟରେ ରହିଲେ ସୁମନ୍ତ । ପଛ ପଟୁଆରରେ ରହିଲେ ଭରତ ଓ ଶତ୍ରୁଘ୍ନ । ତେବେ ବି ପଟୁଆର ପୂର୍ଣ୍ଣ ହେଲା ନାହିଁ । ଦଶରଥଙ୍କ ଆଜ୍ଞାରେ କୌଶଲ୍ୟା, କୈକେୟୀ ଓ ଅନ୍ୟାନ୍ୟ ରାଣୀମାନେ ପଟୁଆରରେ ଯୋଗଦେଲେ । ବଶିଷ୍ଠ ହେଲେ ଚଳାଣ । ଆଗରେ ଶହେ ଓ ପଛରେ ଶହେ ହାତୀ । ଦୁଇପାଖରେ ଦୁଇ ସହସ୍ର ଅଶ୍ୱାରୋହୀ ସେନା । ବିଭିନ୍ନ ବର୍ଣ୍ଣରେ ହାନ୍ଦୋଳାସବୁ ସୁସଜ୍ଜିତ । ରାଣୀମାନଙ୍କ ହାନ୍ଦୋଳା ପଛକୁ ବଶିଷ୍ଠ ମହର୍ଷି ଓ ସମସ୍ତଙ୍କ ପଛରେ ରାଜା ଦଶରଥ । ଜଗମୋହନ ରାମାୟଣର ଏହି ବର୍ଣ୍ଣନା କେବଳ ଯେ ବାଲ୍ମୀକରେ ନଥିଲା ତାହା ନୁହେଁ, ଏହାଦ୍ୱାରା ଦକ୍ଷିଣାତ୍ୟସହ ଓଡ଼ିଶାର ସମ୍ପର୍କ ଥିବା ପ୍ରମାଣିତ ହୋଇପାରୁଛି । ସଂସ୍କୃତ ଭାଷାରେ ରଚିତ ଉଦାର ରାଘବ ( ୩, ୧୦୩ ) ଓ ତାମିଲ୍ ଭାଷାର ପ୍ରସିଦ୍ଧ କମ୍ବନ୍ ରାମାୟଣରେ (୧, ୧୩) ଅନୁରୂପ ବର୍ଣ୍ଣନା ମିଳେ । ବଳରାମଙ୍କଦ୍ୱାରା ପ୍ରଭାବିତହୋଇ ଧନଞ୍ଜୟ ଓ ଉପେନ୍ଦ୍ର ଭଞ୍ଜ ମଧ୍ୟ ଅଯୋଧ୍ୟାର ରାଣୀମାନଙ୍କୁ ମିଥିଳା ନେଇଯାଇଛନ୍ତି । ଏହିପରି ଆଉ କେତେକ ଉପାଖ୍ୟାନରେ ବଳରାମ ଓ କମ୍ବ ରାମାୟଣର ସମାନତା ଦେଖିବାକୁ ମିଳେ । ସେସବୁ ଉପାଖ୍ୟାନ ହେଲା, (୧) ଇନ୍ଦ୍ରଙ୍କ ମାର୍ଜାର ରୂପ ଧାରଣ, (୨) ଇନ୍ଦ୍ର ଓ ଅହଲ୍ୟାଙ୍କ ପ୍ରତି ଗୌତମଙ୍କର ଅଭିଶାପ (୩) ରାମଙ୍କପ୍ରତି ମନ୍ଥରାଙ୍କ ଶତ୍ରୁତାର କାରଣ (୪) ରାମଙ୍କଦ୍ୱାରା ହନୁମାନଙ୍କ ଆଭୂଷଣ ଦର୍ଶନ (୫) ରାମ ଓ ସୀତାଙ୍କ ପ୍ରଦତ୍ତ ଅଭିଜ୍ଞାନ (୬) ବିଭୀଷଣ ପୁତ୍ରୀଭାବେ ତ୍ରିଜଟାର ଉଲ୍ଲେଖ । ତେଲୁଗୁ ଭାଷା ରଚିତ ରଙ୍ଗନାଥକୃତ ଦ୍ୱିପଦ ରାମାୟଣ ସହ ଓଡ଼ିଆ ଜଗମୋହନ ରାମାୟଣର ମଧ୍ୟ ବହୁ ସାଦୃଶ୍ୟ ପରିଲକ୍ଷିତ ହୁଏ । ରାମଙ୍କ ପ୍ରତି ମନ୍ଥରାର ଶତ୍ରୁତାର କାରଣ, ରାମଙ୍କଦ୍ୱାରା ହନୁମାନଙ୍କ ଗୁପ୍ତ ଆଭୂଷଣ ଦର୍ଶନ, ନଳ ଓ ହନୁମାନ ସଂଘର୍ଷ, ଘୃଣ୍ଟିମ୍ୱଷା ଉପାଖ୍ୟାନ, ଶ୍ରୀରାମଙ୍କଦ୍ୱାରା ରାବଣର ଛତ୍ର-ଚାମର ଛେଦନ ପ୍ରଭୃତି କଥା ଏହାର ଉଦାହରଣ ।

ନୂଆ ନୂଆ ରାମକଥା ଆହରଣ କଲାବେଳେ ବଳରାମଙ୍କ ଦୃଷ୍ଟି କେବଳ ଦକ୍ଷିଣ ଭାରତରେ ଅବଦ୍ଧନଥିଲା । ସେ ପୂର୍ବ ତଥା ଉତ୍ତର ଭାରତରେ ପ୍ରଚଳିତ ବହୁକଥା ଆଣି ନିଜ ରାମାୟଣକୁ ପୁଷ୍ଟ କରିଥିଲେ । ସୀତା ବିବାହ ବର୍ଣ୍ଣନା ପ୍ରସଙ୍ଗରେ ଏହିପରି ଗୋଟିଏ କଥାର ଉଲ୍ଲେଖ ମିଳେ । ତାହା ହେଉଛି ରତ୍ନଚୂଡ଼ରେ ଶ୍ରୀରାମ ଦର୍ଶନ ।

Digitized by srujanika@gmail.com

ପଞ୍ଚରାଗୀ କଲାବେଳେ ବର ଓ କନ୍ୟା ଏକତ୍ର ଭୋଜନ କରିବାର ବିଧି । ସେତିକ ବେଳେ ଶ୍ରୀରାମଙ୍କ ରୂପ ସୀତାଙ୍କ ରତ୍ନଚୂଡ଼ରେ ପ୍ରତିବିମ୍ବିତ ହୁଏ । ସୀତା ସେ ରୂପ ଦେଖିବାକ୍ଷଣି ଏତେ ବିମୋହିତ ହେଲେ ଯେ ରତ୍ନଚୂଡ଼କୁ ସଞ୍ଚାଳନ ନ କରି ଶ୍ରୀରାମଙ୍କ ରୂପସୁଧା ପାନ କରିବାକୁ ଲାଗିଲେ । ସୀତାଙ୍କର ଏତାଦୃଶ ଅବସ୍ଥା ସଖୀମାନଙ୍କ ମନରେ କୌତୁହଳ ସୃଷ୍ଟି କରିଥିଲା ଓ ସେମାନେ ଏହାର ବିଭିନ୍ନ ପ୍ରକାର ବାଖ୍ୟା କରିବାକୁ ଲାଗିଲେ । ଜଣେ ସଖୀ ମନ୍ତବ୍ୟଦେଇ କହିଲା—

"କେ ବୋଲଇ କମା ଗୋ ନ ଭୁଞ୍ଜଇ ସଖି
କେ ବୋଲଇ ଆଗ ଭୁଞ୍ଜିଲେ ବୋଲି ପତି ।
ଉଚିଷ୍ଟ ବୋଲି ଅବା ନ କଲେ ଆହାର
କବାର କାଳେ ମାଗୋ ଏସେକେ ବେଭାର ।"

ଅନ୍ୟ ଜଣେ କହିଲା, ସେ କଥା ନୁହେଁ, ସୀତା ଏତେ ଲୋକ ଦେଖି ଲାଜରେ ଖାଉ ନାହିଁ ।

"କେ ବୋଲଇ ଅବା ଆମ୍ଭକୁ ଲାଜକଲା
ବହୁତ ଲୋକ ଦେଖି ଅନ୍ନ ନ ଭୁଞ୍ଜିଲା ।
ଚାଲ ଏହାଙ୍କ ଆଗୁଁ ଆମ୍ଭେ ଉଠିଯିବା
ଜନକ ଉପାସିଏ ସ୍ୱାଙ୍କ ସନ୍ନିଧେ ନ ଥିବା ।"

ଏହିପରି ତର୍କ ବିତର୍କ ଚାଲିଥିବାବେଳେ, କେତେକ ସିହାଣୀ ପ୍ରକୃତ ରହସ୍ୟ ପ୍ରକାଶ କରି କହିଲେ—

"କପ୍ଟରି ବୋଲନ୍ତି ସେ ଥୋକାଏ ସ୍ତ୍ରୀଜନ
ଆମ୍ଭେ ମଣିଲୁଁ ନ ସୀତାଙ୍କର ମନ ।
ଅନ୍ନ ଭୁଞ୍ଜିତ ସେ ବଢ଼ାଇଲା ହସ୍ତ
ରତ୍ନ ବାହାରେ ଯେ ଦିଶିଲେ ପ୍ରାଣନାଥ ।
ସ୍ୱାମୀର ବଦନ ଦେଖିଣ ସୁକେଶୀ
ଅନ୍ନ ନ ଭୁଞ୍ଜି ସେ ଅଛୁ ଲଯ୍ୟେକରି ।
ହସ୍ତ କାଢ଼ିଦେଲେ ନ ଦିଶିବେ ନାହା
ତେଣୁକରି ଦେବୀ ନ ଚାଳଇ ତାହା ।"

ମନର ଗୁପ୍ତକଥା ସମସ୍ତେ ଜାଣିଯିବାରୁ ସୀତା ଆଉ ଅପେକ୍ଷା ନ କରି ଭୋଜନ କରିବାକୁ ଲାଗିଲେ । କଥା ଅତି ସାମାନ୍ୟ ହେଲେ ହେଁ, ପୀତବସନ ତଥା ମୁକୁଟ-କୁଣ୍ଡଳ-ହାର ସୁଶୋଭିତ ଶିଖୀକଣ୍ଠ ସଦୃଶ ଶ୍ରୀରାମଙ୍କ ସର୍ବାଙ୍ଗସୁନ୍ଦର ରୂପ ସୀତାଙ୍କ ମନ ମଧ୍ୟରେ ଯେଉଁ ଆଲୋଡ଼ନ ସୃଷ୍ଟି କରିଥିଲା, ତାହାର ଏହା ହେଉଛି

Digitized by srujanika@gmail.com

ଏକ ରସପୂର୍ଣ୍ଣ ଚିତ୍ର । ତେଣୁ ରାମ ଓ ସୀତାଙ୍କ ନିବିଡ଼ ପ୍ରେମର ଏହା ପ୍ରଥମ ସୂଚନା । ଲୋକମନରେ ଏହାର ପ୍ରଭାବ ଲକ୍ଷ୍ୟକରି ତୁଳସୀ ଦାସ ମଧ୍ୟ ଏହି ଦୃଶ୍ୟଟିକୁ ନିଜ ରାମାୟଣରେ ଲିପିବଦ୍ଧ କରିଛନ୍ତି । ଲହକୌର ( ପରସ୍ପରକୁ ଗ୍ରାସଦେବା ) ରୂପୀ ଲୌକିକ ରୀତି ପାଳିତ ହେଉଛି । ରାମଙ୍କୁ ପାର୍ବତୀ ଓ ସୀତାଙ୍କୁ ସତସ୍ୱତୀ ଗ୍ରାସଦେବା ଶିକ୍ଷା ଦେଉଛନ୍ତି । ସଖୀମାନଙ୍କର କୌତୁକ ବିନୋଦ ହାସ-ପରିହାସରେ ଅନ୍ତଃପୁର ଆନନ୍ଦ ମଗ୍ନ । ସେହି ଉତ୍ସବବେଳେ ସୀତା ନିଜ ହାତର ମଣିରେ ଶ୍ରୀରାମଙ୍କ ପ୍ରତିବିମ୍ବ ଦେଖି ବିମୋହିତ ହୋଇଗଲେ । ଦର୍ଶନ-ବିୟୋଗ ଭୟରେ ବାହୁ ଓ ଦୃଷ୍ଟିକୁ ସ୍ଥିର ରଖି ଶ୍ରୀରାମଙ୍କ ଅନନ୍ୟ ରୂପକୁ ଦେଖିବାରେ ଲାଗିଲେ—

ନିଜ ପାନି ମନି ମହୁଁ ଦେଖି ପ୍ରତିମୂରତି ସୁରୂପ ନିଧାନକି
ଚାଲତି ନ ଭୁଜବଲ୍ଲୀ ବିଲୋକନି ବିରହ ଭୟ ବସ ଜାନକୀ ।"
( ବାଲକାଣ୍ଡ )

ଧନୁଭଙ୍ଗର ପରବର୍ତ୍ତୀ କଥା । ଦଶରଥଙ୍କୁ ଖବର ଯିବ; ରାମ ବିଭା ହେବେ । ଖବର ଯିବାକଥା ବର୍ଣ୍ଣନା କଲାବେଳେ ଏକପକ୍ଷରେ ବାଲ୍ମୀକି ଓ ଅନ୍ୟପକ୍ଷରେ ବ୍ୟାସ, ବଳରାମ, କୃତ୍ତିବାସ ଓ ତୁଳସୀ ଦାସ ।

ବାଲ୍ମୀକି ରାମାୟଣରେ ଜନକ କହୁଛନ୍ତି—

"କୁଶିକ ନନ୍ଦନ ! ମୁଁ ସୀତାକୁ ବୀର୍ଯ୍ୟଶୁଳ୍କା'ରୂପେ ଘୋଷଣା କରିଥିଲି । ସେ ସତ୍ୟ ଆଜି ପୂର୍ଣ୍ଣ ହେଲା । ସୀତା ମୋର ପ୍ରାଣସମ । ମୁଁ ମୋର ଏହି କନ୍ୟାକୁ ଶ୍ରୀରାମଙ୍କୁ ସମର୍ପଣ କରିବି ( ସର୍ଗ ୬୭ । ୨୩ ପଦ ) । ଯଦି ଆପଣଙ୍କର ଆଜ୍ଞା ହୁଏ ତାହାହେଲେ ମୋର ମନ୍ତ୍ରୀ ଅଯୋଧ୍ୟାକୁ ଯିବେ ଏବଂ ଏସବୁ ଘଟଣା କହି ଦଶରଥଙ୍କୁ ମିଥିଳାକୁ ନେଇ ଆସିବେ ।" ବିଶ୍ୱାମିତ୍ରଙ୍କ ସମ୍ମତିପ୍ରାପ୍ତ ହୋଇ "ଜନକ" ଅଯୋଧ୍ୟାକୁ ଦୂତ ପ୍ରେରଣ କରିଥିଲେ । ବଳରାମ ଦାସଙ୍କ ରାମାୟଣରେ ଧନୁଭଙ୍ଗ ପରେ ବିଶ୍ୱାମିତ୍ର ପ୍ରଥମେ ରାମ-ସୀତାଙ୍କ ବିବାହର ପ୍ରସ୍ତାବ ଆଣିଛନ୍ତି । ଏହାପରେ ଜନକ କହୁଛନ୍ତି ରାମଙ୍କୁ । ଜନକଙ୍କ ପ୍ରସ୍ତାବରେ ଶ୍ରୀରାମ ନିଶ୍ଚିତଭାବେ ଆନନ୍ଦିତ ହେଲେ; ଅଥଚ ପିତାଙ୍କ ଅଜାଣତରେ ବିଭାହେବା କଥାକୁ ସେ ପସନ୍ଦକରିପାରି ନଥିଲେ । ସେଥିପାଇଁ ସେ କହିଲେ—

"ପିତା ଦଶରଥ ଅଛନ୍ତି ମୋର ଦେଖା
ପ୍ରାଣର ଅଧିକାରୀ ପିତା ସେ ଅଟଇ ।
ତାହାଙ୍କୁ ନ କହିଣ ହୋଇବି କେମନ୍ତେ ବିଭା
ପିତା ଅସନମତ ସେ ହୋଇବ ଅଶୋଭା ।"

Digitized by srujanika@gmail.com

ଶ୍ରୀରାମଙ୍କ ପ୍ରସ୍ତାବ ସମସ୍ତଙ୍କ ମନକୁ ପାଇଗଲା ଓ ସତ୍ୟାନନ୍ଦ ଶ୍ରୀରାମଙ୍କ ଲେଖା ନେଇ ଅଯୋଧ୍ୟାକୁ ଯାତ୍ରାକଲେ । ତୁଳସୀ ରାମାୟଣରେ ଧନୁର୍ଭଙ୍ଗ ପରେ ବିଶ୍ୱାମିତ୍ର କହୁଛନ୍ତି—"ହେ ବୁଦ୍ଧିମାନ ରାଜା ! ଶୁଣ ! ବିବାହହେବା ଧନୁର ଅଧୀନ ଥିଲା । ଧନୁଭଙ୍ଗ ପରେ ବିବାହ ହୋଇଗଲା । ଦେବତା, ନର ଓ ନାଗ ଏହାର ସାକ୍ଷୀ । ତଥାପି କୁଳରୀତି ଅନୁଯାୟୀ ବ୍ରାହ୍ମଣ, ଗୁରୁ ଓ କୁଳବୃଦ୍ଧ ଲୋକଙ୍କସହ ପରାମର୍ଶକରି ବେଦବର୍ଣ୍ଣିତ ଆଚାର ଅନୁଯାୟୀ ବିବାହ ସମ୍ପନ୍ନ କର । ତାଙ୍କର ପରାମର୍ଶ ଅନୁଯାୟୀ ଜନକ ଚିଠିଲେଖି ଅଯୋଧ୍ୟାକୁ ଦୂତ ପ୍ରେରଣ କରିଥିଲେ । କୃତ୍ତିବାସ ରାମାୟଣରେ ବିଶ୍ୱାମିତ୍ର ଶ୍ରୀରାମ ଓ ଲକ୍ଷ୍ମଣଙ୍କ ବିବାହ କରିବାପାଇଁ ନିବେଦନ କରିବାରୁ ଶ୍ରୀରାମ କହୁଛନ୍ତି —

"ଶ୍ରୀରାମ କହେନ୍ ପ୍ରଭୁ ନିବେଦ ତୋମାରେ,
ଆମା ଦୋହେଁ ଲୟେ ଚଲ ଅଯୋଧ୍ୟା-ନଗରେ
ବନ୍ଧୁଜନ ଆସିୟାଛୁ ତୋମାର ସହିତ
ବିଲମ୍ବ ହୋଇଲେ ପିତା ହବେନ୍ ଚିନ୍ତିତ
ଚାରିଭାଇ ଜନ୍ମ ଲୟେଛି ଏକ ଦିନେ
ସେ ସବାର ଛାଡ଼ିକରି ବିବାହ କେମନେ
ସେ ଚାରି ଭ୍ରାତାକେ ଯେଇ କନ୍ୟା ଦିବେ ଚାରି
ଚାରିଭାଇ ବିବାହ କରିବ ଘରେ ତାରି ।"

ଏ ପ୍ରସ୍ତାବ ଶୁଣିବାକ୍ଷଣି କୌଶିକଙ୍କ ମସ୍ତକରେ ସତେ ଅବା ଆକାଶ ଖସି ପଡ଼ିଲା । ସେ ଅତ୍ୟନ୍ତ ଦୁଃଖରେ ଜନକଙ୍କ ପାଖରେ ପହଞ୍ଚିଲେ ଓ ଶ୍ରୀରାମଙ୍କ ମନକଥା ପ୍ରକାଶକଲେ । ଶ୍ରୀରାମଙ୍କ କଥା ଶୁଣି ଜନକ ଋଷି ମଧ୍ୟ ଚିନ୍ତାଗ୍ରସ୍ତହୋଇ କହିଲେ—

"ସୀତା ବିନା କନ୍ୟା ନାହିଁ ଆର ପାବ କୋଥା ।"
ଜନକଙ୍କୁ ଚିନ୍ତିତ ଦେଖି ସତ୍ୟାନନ୍ଦ ଆଶ୍ୱାସନା ଦେଇଛନ୍ତି—
"ତବେ ଘରେ ଚାରି କନ୍ୟା ହଇବେ ଘଟନ ।"

କୁଶଧ୍ୱଜର ଦୁଇକନ୍ୟା ଏବଂ "ତୋମାର ଦୁହିତା ଦୁଇ ପରମା ସୁନ୍ଦରୀ" । ଏହାପରେ ବିଶ୍ୱାମିତ୍ର ନିଜେ ଘଟକଭାବରେ ଅଯୋଧ୍ୟାପୁରକୁ ଯାଇ ଦଶରଥଙ୍କ ସମ୍ମୁଖରେ ସମସ୍ତ ସମାଚାର ବର୍ଣ୍ଣନା କରିଛନ୍ତି ।

ଅଧ୍ୟାତ୍ମ ରାମାୟଣରେ ଧନୁର୍ଭଙ୍ଗ ପରେ ଜନକ ବିଶ୍ୱାମିତ୍ରଙ୍କୁ ଦଶରଥଙ୍କ ପାଖକୁ ପତ୍ର ଦେବାପାଇଁ ଅନୁରୋଧ କରିଛନ୍ତି । ତଦନୁଯାୟୀ ବିଶ୍ୱାମିତ୍ର ଷଫଲେଖି ପୁନ,

Digitized by srujanika@gmail.com

ମହର୍ଷୀ ଓ ମନ୍ତ୍ରୀମାନଙ୍କ ସହିତ ମିଥିଳାକୁ ଆସିବାପାଇଁ ଦଶରଥଙ୍କୁ ଅନୁରୋଧ କରିଛନ୍ତି । ଶୀଘ୍ରଗାମୀ ଦୂତମାନଙ୍କଦ୍ଵାରା ଏହି ପତ୍ର ପ୍ରେରିତ ହୋଇଥିଲା । ବିବାହ ପ୍ରସ୍ତାବ ବର୍ଣ୍ଣନା କଲାବେଳେ ବାଲ୍ମୀକି, ତୁଳସୀ ଦାସ ଏବଂ ଅଧ୍ୟାତ୍ମ ରାମାୟଣର ଲେଖକ, ଜନକ ଓ ବିଶ୍ବାମିତ୍ରଙ୍କ ପରାମର୍ଶ ମଧ୍ୟରେ ଏ କଥାକୁ ସୀମିତ କରିଥିବା ବେଳେ ବଳରାମ ଓ କୃତ୍ତିବାସ ରାମଙ୍କ ପରାମର୍ଶ ଗ୍ରହିଛନ୍ତି । ବଳରାମଙ୍କ ରାମାୟଣରେ ଶ୍ରୀରାମଙ୍କ ପିତୃଭକ୍ତି ପ୍ରକାଶ ପାଉଥିବାବେଳେ କୃତ୍ତିବାସ ରାମାୟଣରେ ଭ୍ରାତୃ ପ୍ରେମ-ପ୍ରକାଶ ପାଇଛି ; ବାଲ୍ମୀକି, ତୁଳସୀ ଦାସ ଓ ଅଧ୍ୟାତ୍ମ ରାମାୟଣରେ ଜନୈକ ଦୂତ ପ୍ରେରିତ ହୋଇଥିବାବେଳେ ବଳରାମ ଦାସଙ୍କ ଦୂତ ହୋଇଛନ୍ତି ରାଜ ପୁରୋହିତ ସତ୍ୟାନନ୍ଦ ଏବଂ କୃତ୍ତିବାସ ରାମାୟଣରେ ବିଶ୍ବାମିତ୍ର ଏହି ସୁସମ୍ବାଦ ନେଇ ଅଯୋଧ୍ୟାକୁ ଗମନ କରିଛନ୍ତି ।

ଚିଠି ଦେବାକଥା ଅଧ୍ୟାତ୍ମ ରାମାୟଣରୁ ଆରମ୍ଭ ହୁଏ । ଏଥିରେ ଚିଠି ଲେଖିଲେ ବିଶ୍ବାମିତ୍ର । ତୁଳସୀ ରାମାୟଣରେ ନିଜେ ଜନକ ଏହି ଚିଠି ଲେଖିଥିଲେ । ଅଥଚ ଜଗମୋହନ ରାମାୟଣରେ ଶ୍ରୀରାମ ସ୍ବହସ୍ତରେ ଚିଠି ଲେଖି ପିତା ଦଶରଥଙ୍କୁ ସମସ୍ତ ସମାଚାର ଜଣାଇଥିଲେ । ଚିଠି ଲେଖକଙ୍କର ଭିନ୍ନତା ସତ୍ତ୍ୱେ ଅଧ୍ୟାତ୍ମ ରାମାୟଣର ଚିଠି କଥା ଉତ୍ତର ଭାରତ ତଥା ଓଡ଼ିଶାର କବିଙ୍କୁ ସମାନଭାବରେ ପ୍ରଭାବିତ କରିଥିଲା ।

ପର୍ଶୁରାମ ଉପାଖ୍ୟାନର କେତେକ ଅଂଶ ପୁଣିଥରେ ଉତ୍ତର ଭାରତ, ବଙ୍ଗ ଓ ଓଡ଼ିଶାକୁ ଏକ ସୂତ୍ରରେ ବନ୍ଧନକରେ ।

### (ଚ) ସୀତାଙ୍କ ସପତ୍ନୀ ଭୟ

ବିବାହକରି ଅଯୋଧ୍ୟା ଫେରୁଥିବାବେଳେ ପର୍ଶୁରାମ ଶ୍ରୀରାମଙ୍କ ଶକ୍ତି ପରୀକ୍ଷା କରିବାପାଇଁ ବୈଷ୍ଣବଧନୁ ସମର୍ପଣ କରିଛନ୍ତି । ଏ ଘଟଣାରେ ସୀତା କେବଳ ଯେ ବିବ୍ରତ ହୋଇଛନ୍ତି ତାହା ନୁହେଁ, ସପତ୍ନୀ ଭୟରେ ତାଙ୍କ ହୃଦୟ ଥରି ଉଠିଛି । ସେ ଭାବିବାରେ ଲାଗିଛନ୍ତି, "ମିଥିଳାରେ ଧନୁଭାଙ୍ଗି ଶ୍ରୀରାମ ମୋ ସଙ୍ଗେ ବନ୍ଧା ହେଲେ । ଅଗ୍ନିକୁ ସାକ୍ଷୀରଖି ଆଉ ବିଭା ନ ହେବାପାଇଁ ଶପଥକଲେ । ଅଥଚ ଶପଥ କରିବାର ମାସେ, ପକ୍ଷେ ନ ଯାଉଣୁ ପୁଣି ଧନୁଭାଙ୍ଗି ବୋଧହୁଏ ଅନ୍ୟ କନ୍ୟା ଗ୍ରହଣ କରିବାପାଇଁ ତତ୍ପର ହେଲେ । ବିଧାତା ବିଧାନ କେ ଖଣ୍ଡିବ ଆନ । ପୁରୁଷ-ମାନଙ୍କ କଥାରେ ଠିକଣା ନାହିଁ । ଶେଷରେ ସେ ସ୍ଥିରକରି ନେଇଛନ୍ତି—

"ପୁଣକି ସପତ୍ନୀ ହୋଇଲା ମୋତେ ଆସି" ।

Digitized by srujanika@gmail.com

ବାଲ୍ମୀକ ରାମାୟଣରେ ସୀତାଙ୍କ ସପତ୍ନୀ ଖବର କୌଣସି ସୂଚନା ଦେଖିବାକୁ ମିଳେ ନାହିଁ । ଅଥଚ ଏହି ରଚନା ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ ଉତ୍ତର-ଭାରତର ଏକ ବିଶିଷ୍ଟ ପ୍ରବୃତ୍ତି । କୃତ୍ତିବାସ ଏହାର ଉଲ୍ଲେଖକରି ଲେଖିଛନ୍ତି—

"ଏକବାର ଧନୁକ ଭାଙ୍ଗିସ୍ଥା ଅକସ୍ମାତ୍,
ବିବାହ କରିଲେନ ଆମାରେ ରଘୁନାଥ
ଆରବାର ଧନୁକ୍ ଆଣିଲେ ଭୃଗୁମଣି
ନାହି ଜାନି ହବେ ମୋରେ କେତେକ ସତିନୀ ।"

(ଆଦିକାଣ୍ଡ, ୧/୬୩)

ଉତ୍ତର-ଭାରତରେ ପ୍ରସିଦ୍ଧ ତୁଳସୀ ରାମାୟଣରେ ଏହାର ସୂଚନା ନଥିଲେ ହେଁ, ଗୋବିନ୍ଦ ରାମାୟଣକାର ଏହାର ଉଲ୍ଲେଖ କରିଛନ୍ତି ।

"ତୋର ସଉାସନ ସଙ୍କର କୋ ଜମି
ମୋହି ବରସ୍ଯୋ ତମି ଔର ବରେମି ।"

(ପୃ—୩୪)

ଏହିପରି ଆଉ ଗୋଟିଏ ଉପାଖ୍ୟାନ ହେଉଛି, ନାରଦ ମୋହ। ତୁଳସୀ ଦାସ ବିଷ୍ଣୁଙ୍କ ଅବତାରର ଅନ୍ୟତମ ହେତୁରୂପେ ଏହାକୁ ଗ୍ରହଣ କରିଥିବା ବେଳେ, ବଳରାମ ଦାସ ନର ଅବତାରରେ ଶ୍ରୀରାମଙ୍କ ଦୁଃଖର କାରଣ ରୂପେ ଏହି କଥାର ଅବତାରଣା କରିଛନ୍ତି ।

ତୁଳସୀ ଦାସଙ୍କ ପ୍ରତାପଭାନୁ ଉପଖ୍ୟାନ ପରୋକ୍ଷରେ ସୂର୍ଯ୍ୟବଂଶୀୟ ପ୍ରତାପରୁଦ୍ରଙ୍କ କଥା । ତୁଳସୀ ରାମାୟଣରେ ନୀଳାଚଳର ପ୍ରଶଂସା ଓଡ଼ିଶା ଓ ଉତ୍ତର-ଭାରତର ସମ୍ପର୍କର ଅନ୍ୟ ଏକ ଦୃଷ୍ଟାନ୍ତ ! ବଳରାମ ଦାସଙ୍କ ପରି ତୁଳସୀଦାସ ରାମାୟଣର ବକ୍ତା ଓ ଶ୍ରୋତାରୂପେ ଶିବ ଓ ପାର୍ବତୀଙ୍କୁ ଉପସ୍ଥାପିତ କରିଛନ୍ତି । ଉଭୟ ରାମାୟଣର ଆତ୍ମା ହେଉଛି ରାମ-ଭକ୍ତି । ତୁଳସୀ ଦାସଙ୍କ ଅପେକ୍ଷା ବଳରାମ କେତେକ ବର୍ଣ୍ଣନାରେ ଅଧିକ ଶୃଙ୍ଗାରିକ ହେଲେ ହେଁ, ଶ୍ରୀରାମଙ୍କ ଭଗବାନତ୍ୱ ପ୍ରତିପାଦନ କରିବାରେ ଏହା ବାଧା ସୃଷ୍ଟି କରିନାହିଁ ।

ଜଗମୋହନ ରାମାୟଣର ଉପାଖ୍ୟାନ ସବୁର ମୂଳସ୍ରୋତ ସନ୍ଧାନ କଲାବେଳେ ଏହିପରି କେତେକ କଥା ଆସେ, ଯାହା ଭାରତବର୍ଷର ସୀମା ସରହଦ ଟପି ସୁଦୂର ପୂର୍ବଭାରତୀୟ ଦ୍ୱୀପପୁଞ୍ଜ ସହ ଓଡ଼ିଶାକୁ ସଂଯୁକ୍ତ କରିଦିଏ । ବଳରାମ ଦାସଙ୍କ ବେଳକୁ ଓଡ଼ିଶାରେ ସୂର୍ଯ୍ୟବଂଶୀୟ ଗଜପତି ପ୍ରତାପରୁଦ୍ର ରାଜତ୍ୱ କରୁଥିଲେ ଓ ଏହିସବୁ ଦ୍ୱୀପପୁଞ୍ଜସହ ଓଡ଼ିଶାର ସମ୍ପର୍କ ବୋଧହୁଏ ଅବ୍ୟାହତ ଥିଲା । ସେଥିପାଇଁ ରାମକଥାର

Digitized by srujanika@gmail.com

ରୂପଦାନ କଲାବେଳେ ଦୁଇ ଦେଶର କବି ସ୍ୱତନ୍ତ୍ରଭାବେ କେତେକ ଅବାଲ୍ମୀକୀୟ ଉପାଖ୍ୟାନର ଉଲ୍ଲେଖ କରିଛନ୍ତି । ବଳରାମଙ୍କ ଠିକେ ଆଗରୁ ରଚିତ ସାରଳାଦାସଙ୍କ ମହାଭାରତରେ ଥିବା ବାଳୀ, ସୁଗ୍ରୀବ ଓ ହନୁମାନ ଜନ୍ମକଥା ଏହାର ଏକ ପ୍ରକୃଷ୍ଟ ଉଦାହରଣ । ଜଗମୋହନ ରାମାୟଣରେ ଥିବା ବୃତ୍ତାନ୍ତସବୁ ମଧ୍ୟରୁ ଅହଲ୍ୟାଙ୍କ ସନ୍ତାନ-ଭାବେ ବାଳୀ ଓ ସୁଗ୍ରୀବଙ୍କ ଉଲ୍ଲେଖ, ମାୟାଶୀର୍ଷ ଓ ରାମାୟାସୀତା କଥା ବକ ଓ ଚକ୍ରବାକ ଉପାଖ୍ୟାନ, ବିଭୀଷଣ ପତ୍ନୀଭାବେ ତ୍ରିଜଟାର ଉଲ୍ଲେଖ, ପ୍ରଭୃତି କଥା ଭାରତର ଅନ୍ୟାନ୍ୟ ଅଞ୍ଚଳରେ ମିଳୁଥିଲେ ହେଁ ପୂର୍ବଭାରତୀୟ ଦ୍ୱୀପପୁଞ୍ଜରେ ପ୍ରଚଳିତ-ଥିବା ରାମକଥା ସହ ଏହା ଘନିଷ୍ଠଭାବେ ସମ୍ପୃକ୍ତଥିବା ଜଣାଯାଏ ।

ବିଗତ କଥାନକ ସମୂହର ଆଲୋଚନାରୁ ଏକଥା ସ୍ପଷ୍ଟ ଯେ, ବଳରାମ ଜଗମୋହନ ରାମାୟଣର ରୂପଦାନ କଲାବେଳେ ବିଭିନ୍ନ ପୁରାଣ, କାବ୍ୟ, ନାଟକ ଓ ଲୋକକଥାରୁ ସାହାଯ୍ୟ ଗ୍ରହଣ କରିଥିଲେ । ପୁରାଣ, କାବ୍ୟ ଓ ନାଟକରୁ କଥା ନେବାବେଳେ ସେ ଶବ୍ଦଶଃ ଅନୁବାଦ କରିନାହାନ୍ତି । କେବଳ ଭାବରାଜିକୁ ଗ୍ରହଣକରି ନିଜ ଭାଷାରେ ରୂପାନ୍ତରିତ କରିଛନ୍ତି । ବେଳେବେଳେ ଭାବକୁ ପରିମାର୍ଜିତକରି ଯୁଗରୁଚିର ଅନୁକୂଳକରି ପ୍ରକାଶ କରିଛନ୍ତି । ଏହି ପ୍ରକାଶ ପ୍ରକ୍ରିୟାରେ ହିଁ କବିଙ୍କ ମୌଳିକତା ନିହିତ । ସେ ଯୁଗର ପ୍ରତ୍ୟେକ ଭାରତୀୟ କବିଙ୍କ ରଚନାରେ ଏହି ହିଁ ଥିଲା ବୈଶିଷ୍ଟ୍ୟ । ସେମାନେ ନିଜ କଳ୍ପନାରୁ ଏକ ମୌଳିକ କାବ୍ୟ ରଚନା ନ କରି ପ୍ରାଚୀନ ସାମଗ୍ରୀକୁ ନୂଆରୂପ ପ୍ରଦାନ କରୁଥିଲେ । ପ୍ରାଚୀନ ସଂସ୍କୃତିକୁ ନିଜ ସମାଜର ଚଳଣିରେ ଢାଳି ନୂଆରୂପ ଦେବାରେ ହିଁ ସେମାନଙ୍କର ମୌଳିକତା ପରିସ୍ଫୁଟ ହେଉଥିଲା । ବଙ୍ଗ ସାହିତ୍ୟର କୃତ୍ତିବାସ ଓ ହିନ୍ଦୀ ସାହିତ୍ୟର ତୁଳସୀ ଓ କେଶବଙ୍କ ରଚନାବଳୀରେ ମଧ୍ୟ ଏହି ପ୍ରଚେଷ୍ଟା ଦେଖିବାକୁ ମିଳେ । ସେମାନେ ସମସ୍ତେ ପ୍ରାଚୀନ ସାମଗ୍ରୀରେ ନୂତନତାର ସମାବେଶକରି ସେ ଯୁଗର ଜନସମାଜପାଇଁ ସଂସ୍କୃତିର ଏକ ନୂଆ ଆଦର୍ଶ ପ୍ରତିଷ୍ଠାକରିବା ସଙ୍ଗେ ସଙ୍ଗେ, ପ୍ରାଚୀନ କାବ୍ୟର ପ୍ରକାଶ-ଶୈଳୀ ଅଳଙ୍କାର ଯୋଜନା ଓ ବର୍ଣ୍ଣନା ପଦ୍ଧତିସହ ସାଧାରଣ ଜନତାକୁ ପରିଚିତ କରାଇ ପାରିଥିଲେ । ଏହି ଯୁଗୋଚିତ କାର୍ଯ୍ୟଦ୍ୱାରା ହିଁ ସେମାନଙ୍କ ମହାନତା ପରିସ୍ଫୁଟ ହୋଇଥିଲା ।

ପ୍ରାଚୀନ କଥାନକକୁ କେବଳ ନୂଆ ରୂପ ପ୍ରଦାନ କରିବାରେ ବଳରାମଙ୍କ ପ୍ରତିଭା ଶେଷ ହୋଇଯାଇ ନଥିଲା । ସେ ଆବଶ୍ୟକସ୍ଥଳେ ନୂତନ କଥାର ସଂଯୋଜନାକରି ନିଜ ଉଦ୍ଦେଶ୍ୟକୁ, ଆଦର୍ଶକୁ ପ୍ରଚାର କରିବାକୁ ଚାହିଁଥିଲେ । ରାମଙ୍କୁ ଜଗନ୍ନାଥଙ୍କ ସହ ଅଭିନ୍ନରୂପ ପ୍ରଦାନକରି ସେ ଓଡ଼ିଆ ଜାତିପାଇଁ ଏକ ନୂଆ

Digitized by srujanika@gmail.com

ଆଦର୍ଶର ପ୍ରତିଷ୍ଠା କରିଥିଲେ । ରାମକଥାର ତୁଳନାତ୍ମକ ଅଧ୍ୟୟନରୁ ବଳରାମଙ୍କ ପ୍ରତିଭା ତଥା ଜଗମୋହନ ନାମକରଣର ସାର୍ଥକତା ବିଶେଷଭାବରେ ସ୍ପଷ୍ଟହୁଏ ।

ବଳରାମ ନିଜ ରାମାୟଣର "ଜଗମୋହନ" ନାମକୁ ସାର୍ଥକ କରିବାପାଇଁ ଭାରତର ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣଭାଗ, ପୂର୍ବଭାରତୀୟ ଦ୍ୱୀପପୁଞ୍ଜ ଏପରିକି ଭାରତୀୟ ଆଦିବାସୀମାନଙ୍କ ମଧ୍ୟରେ ପ୍ରଚଳିତ ଲୋକକଥାକୁ ଗ୍ରହଣ କରିଥିଲେ । ଓଡ଼ିଆ ଲିପି ଓ ଭାଷାରେ ଲିପିବଦ୍ଧ ହୋଇଥିଲେ ହେଁ ଜଗମୋହନ ରାମାୟଣ କେବଳ ଓଡ଼ିଆର ରାମାୟଣ ନୁହେଁ, ଏହା ସମସ୍ତ ଜଗତର ରାମାୟଣ ଓ ଭାରତ ତଥା ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜରେ ପ୍ରଚଳିତ ବହୁ ଜନସମାଜର ରାମକଥା ଏହାର ଆଧାର ଭୂମି ।



Digitized by srujanika@gmail.com

## ବର୍ଣ୍ଣନା ସୌଷ୍ଠବ :

କଥା କହିବା ବଳରାମଙ୍କ ମୁଖ୍ୟ ଲକ୍ଷ୍ୟ ଥିଲେ ବି କଥା ମଝିରେ ବୋଧହୁଏ କଥାକୁ ସୁନ୍ଦର କରିବାପାଇଁ ସେ ସ୍ଥାନ ଦେଖି ବିଭିନ୍ନ ପ୍ରକାର ବର୍ଣ୍ଣନାର ସଂଯୋଜନା କରୁଥିଲେ । ରାଜକୀୟ ବିଭବ ବର୍ଣ୍ଣନା ସେଥିମଧ୍ୟରୁ ଅନ୍ୟତମ । ବଳରାମଙ୍କ ପିତା ମନ୍ତ୍ରୀ ଥିଲେ । ଅଥଚ ରାଜଦରବାରରେ ବଳରାମଙ୍କ କାର୍ଯ୍ୟ ସମ୍ବନ୍ଧରେ କୌଣସି ସୂଚନା ମିଳେନାହିଁ । ତେବେ ସେ ଯେ ରାଜଦରବାର ସହ ନିବିଡ଼ଭାବରେ ଜଡ଼ିତ ଥିଲେ ଓ ରାଜକୀୟ ପରିବେଶରେ ପାଳିତ ହୋଇଥିଲେ ତାହା ଜଗମୋହନ ରାମାୟଣର ବିଭିନ୍ନ ବର୍ଣ୍ଣନା ପାଠକଲେ ଅନୁମାନ କରି ହୁଏ ।

ରାମାୟଣରେ ବିଷୟବସ୍ତୁ ଦୃଷ୍ଟିରୁ ଏଥିରେ ଅଯୋଧ୍ୟା, ଲଙ୍କା ଓ କିଷ୍କିନ୍ଧ୍ୟା ନଗରୀ ତଥା ରାମ, ରାବଣ, ବାଳୀ ଓ ସୁଗ୍ରୀବଙ୍କ ପରି ରାଜାଙ୍କ ରାଜକୀୟ ବିଭବ ବର୍ଣ୍ଣନା କରିବା ଆବଶ୍ୟକ ଥିଲା । ଏସବୁ ବର୍ଣ୍ଣନା କଲାବେଳେ ସେ ବିଶେଷ ଭାବେ ପରଂପରା ଦ୍ୱାରା ପ୍ରଭାବିତ ହୋଇଥିଲେ । ସେଥିପାଇଁ ସବୁ ନଗରୀର ଗଠନ ଶୈଳୀ ଓ ଐଶ୍ୱର୍ଯ୍ୟ ବର୍ଣ୍ଣନାରେ ସେ ଗୋଟିଏ ପଦ୍ଧତି ଗ୍ରହଣ କରିଛନ୍ତି । ସବୁ ନଗରୀ ମେଢ଼, ମଣ୍ଡପ, ଅଟ୍ଟାଳି, ଜଗତୀ, କୂପ, ବାପି, ପୋଖରୀଦ୍ୱାରା ସୁଶୋଭିତ । ସବୁଠାରେ ରାଜା, ମନ୍ତ୍ରୀ ଓ ସାମନ୍ତଙ୍କପାଇଁ ଅଲଗା ଅଲଗା ଆବାସ ବା ଘର । ଅଷ୍ଟାଦଶ ଜାତିର ଲୋକଙ୍କପାଇଁ ସ୍ୱତନ୍ତ୍ର ସ୍ୱତନ୍ତ୍ର ବ୍ୟବସ୍ଥା । ନଗର ସବୁ ଧନଧାନ୍ୟରେ ପୂର୍ଣ୍ଣ । ସବୁଘର ଉପରେ କଳସ ଓ ଚାଳିଲ । ସତେ ଅବା, ସବୁଘରେ ଲକ୍ଷ୍ମୀ ବିରାଜିତ । ଲୋକେ ମଧ୍ୟ ସ୍ୱର୍ଗର ନରନାରୀ ପରି ସୁନ୍ଦର । ନଗର ସବୁର ସୌନ୍ଦର୍ଯ୍ୟ ପରିକଳ୍ପନା କଲାବେଳେ ତାଙ୍କୁ କେବଳ ସୁନା, ରୁପା, ହୀରା, ନୀଳା, ମୋତି ଓ ମାଣିକ୍ୟ ହିଁ ଦେଖାଯାଇଥିଲା ।

ଅଯୋଧ୍ୟା ନଗରୀର ବର୍ଣ୍ଣନା କରି କବି ଲେଖିଛନ୍ତି :—

"ରାଜାର ମନ୍ଦିର ଦିବ୍ୟରତ୍ନ କାନ୍ତି
ମେଢ଼ ମଣ୍ଡପ ଅଟ୍ଟାଳି ଜଗତୀ । ୧୯୩ ।
ଅଗର ଚନ୍ଦନ ଖମ୍ବ ରୁଅ ସେଣି
ଉପରେ ତେଜପଟ୍ଟ ଗୁଲ୍ଲାଇ ଗୁହ୍ମଶ୍ରେଣୀ । ୧୯୪ ।
ମୁକୁତାର ଝରା ନୀଳାରତ୍ନ ଜଡ଼ି
ସୁବର୍ଣ୍ଣର ପ୍ରତିମା ପିତୁଳି ଚମକଡ଼ି । ୧୯୫ ।
ମର୍କତର କଳସ ନେତର ଚାଳିଲ
ଚନ୍ଦ୍ରାତପ ତେଜ ଆଦିତ୍ୟ ପ୍ରବାଳ" । ୧୯୬ ।

ଜରତା ବେଶ୍ୟାର 'ନାବ୍ୟାଶ୍ରମ'ରେ ମଧ୍ୟ ସେହି ରାଜକୀୟ ଆଡ଼ମ୍ବର । ଅଗୁରୁ, ଚନ୍ଦନ, କର୍ପୂର, କସ୍ତୁରୀ ଓ ସୁଗନ୍ଧିତ ପୁଷ୍ପର ସୁବାସରେ ଏହା ସୁରଭିତ । ମୁକ୍ତା, ମଣି

Digitized by srujanika@gmail.com

ଓ ସ୍ୱର୍ଣ୍ଣନିର୍ମିତ ଦ୍ରବ୍ୟ ସମୂହରେ ଏହା ସୁସଜ୍ଜିତ । ଅଳଟ, ଚାମର, ମୁକ୍ତାନିର୍ମିତ ଦର୍ପଣ, ସୁବର୍ଣ୍ଣନିର୍ମିତ ବଜ୍ରୁ, ଖୋଳ ଓ ଢୋଲ ପ୍ରଭୃତି ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥରେ ମଧ୍ୟ ସେହି ଆଭିଜାତ୍ୟ ଓ ଆଡ଼ମ୍ବର ।

ରାଜଦରବାର ଦେଇ ବଳରାମଙ୍କ ବିଶଦ ପରିଚୟ ତାଙ୍କ ପ୍ରଦତ୍ତ ନିଯୋଗକାରୀଙ୍କ ନାମାବଳୀରୁ ଜଣାଯାଇଥାଏ । ସେତେବେଳେ ରାଜଦରବାର କହିଲେ ରାଉତ, ଭଣ୍ଡାରୀଙ୍କ, ମାହୁନ୍ତ, ହୋଙ୍ଗା, ପଟ୍ଟେକାର ରଥୀ, ମହାରଥୀ, ପାଇକ, ସଇନ, ସେନାପତି, ଦ୍ୱାରୀ, ପାହାରୀ, ଡଗର, ଦ୍ୱାରପାଳ, ଦୋସାଧୁ, ଟମକିଆ, ମୁକୁଟବନ୍ଧା, ଯୋଦ୍ଧା, ଖେଣ୍ଡକିଆ ପାଇକ, ଦେହେରୀ, ବାରିକ, ନଟ, ଭାଟ, କଏବାର, ଅଗଚ୍ଛମୁଆ, ବାଢେଢିଆ, ଦାଣ୍ଡ ଆଗୁର, ସାରଥି, ସେବାଇତ, ବନୋଦିଆ, ଗଣିକା, ବାଳାସୁଣୀ, ଲେଙ୍କା, ଲମ୍ବହତା, ଖଣ୍ଡିଆ, ପଣ୍ଡା, ପଢ଼ିହାରୀ, ଭଣ୍ଡାର ଅଧିକାରୀ ଓ ଅନ୍ୟାନ୍ୟ ବିଶ୍ୱାସୀ ଲୋକଙ୍କୁ ବୁଝାଉଥିଲା । ରାଜା ଏମାନଙ୍କୁ ଧରି ରାଜକାର୍ଯ୍ୟ ପରିଚାଳନା କରୁଥିଲେ । ରାଜ କର୍ମଚାରୀଙ୍କ ପରି ରାଜାଙ୍କ ସେବାରେ ଥିବା ବିଭିନ୍ନ ଢଙ୍ଗର ଘୋଡ଼ା, ବିଭିନ୍ନ ପ୍ରକାର ବାଦ୍ୟ ଓ ବିଭିନ୍ନ ପ୍ରକାର ଅସ୍ତ୍ର, ଶସ୍ତ୍ର ରାଜାଙ୍କ ଦଆସରେ ଥିବା ବିଭିନ୍ନ ପ୍ରକାର ନବର (ଆସ୍ଥାନ, ନବର, ନୃତ୍ୟ ରଙ୍ଗସ୍ଥାନ, ଦେବାର୍ଚ୍ଚନା ଘର, ଦୋହରି ଘର, ରାଣୀହଂସପୁର, ଚୋଟାପୁର, ଉଦ୍ୟାନ, ଜଗତୀ, ହାତୀ ଘୋଡ଼ାଶାଳ, ଭଣ୍ଡାରଘର ବିଭିନ୍ନ ପ୍ରକାର ବାହାନ, (ଯାନ, ସୁଖାସନ, ଖଟଦୋଳ, ଚଉଦୋଳ, ବାଙ୍କିଆ, ହସ୍ତୀ, ଗଜ, ରଥ) ବିଭିନ୍ନ ପ୍ରକାର ରାଜକୀୟ ସଙ୍କେତ (ଛତ୍ର, ଚମର, ଆଲମ୍ବ, ବିଲମ୍ବ, ଉଲଖ, ବୀରକେତର ବାରମ୍ବାର ବର୍ଣ୍ଣନା କରି ସେ ରାଜକୀୟ ଐଶ୍ୱର୍ଯ୍ୟ ପ୍ରତି ଶ୍ରୋତାଙ୍କ ଦୃଷ୍ଟି ଆକୃଷ୍ଟ କରିଛନ୍ତି ।

ଜଗମୋହନ ରାମାୟଣର ବହୁସ୍ଥଳରେ ବଳରାମ ରାଜକୀୟ ବିଭବ ପ୍ରଦର୍ଶନର ଆୟୋଜନ କରିଥିଲେ ହେଁ ଲଙ୍କାକାଣ୍ଡରେ ରାବଣରେ ଯୁଦ୍ଧଯାତ୍ରାବେଳେ ଏହାପାଇଁ ଆହୁରି ଏକ ଅପୂର୍ବ ସୁଯୋଗ ଉପସ୍ଥିତ ହୁଏ । ଯୁଦ୍ଧରେ ବାରମ୍ବାର ପରାସ୍ତହେବା ପରେ ରାବଣ ହତାଶ ହୋଇପଡ଼େ । ଏହି ହତାଶ ଭାବକୁ ଦୂରକରିବାପାଇଁ ସେ ଆୟୋଜନ କରେ, ଅଳଙ୍କାର ଓ ବସ୍ତ୍ରର ଏକ ପ୍ରଦର୍ଶନୀ । ସେତେବେଳେ ସେ କହେ :

"ଏ ମୋହର ଅର୍ଜିଲା ଅଟଇ ଯେତେ ଧନ
ଚଉଦଭୁବନରୁ ବାଛି ଆଣିଲି ଏ ମାନ ।
ଏଥିକୁହିଁ ଦେବଙ୍କ ଭଣ୍ଡାର ନୋହେ ସରି
ସମ୍ପତ୍ତି ନିଧି ମୁଁ ପୂରାଇଲି ଯତ୍ନକରି
ଏବେ ଏହା ବିଧ୍ୱଂସିବ ଶ୍ରୀରାମ ନିମନ୍ତେ
ଦେହ ଥିଲେ ପୁଣି ତାହା ଅର୍ଜିବ କେଉଁତେ ।"

Digitized by srujanika@gmail.com

ଏବଂ ଆଦେଶ ହଏ—

"ସେ ନାହାର ଅନୁରୂପେ ହଅ ଆସ୍ମେମାନ
ବଚନ ବସ୍ତ୍ରମାନ ବଳସ ଅନୁକ୍ଷଣ ।
ସେତେଜେଣ ସଂଗ୍ରାମକୁ ଯିବେ ଯୋଦ୍ଧ ସଙ୍ଗେ ।
ଅଳଙ୍କାର ମଣ୍ଡି ହୋଇଥିବେ ସେ ସର୍ବାଙ୍ଗେ ।
ଦେଖିବା ମାନବେ ଶତ୍ରୁ ହୋଇବ ଅଜ୍ଞାନ
ବୋଲିବ ଅର୍ଜିଲେ ଏ କେମନ୍ତେ ଏତେ ଧନ ।"

ସେବରେ ଏହି ଆଦେଶ ପରେ ଲଙ୍କାପୁରର ଭଣ୍ଡାର ଶୂନ୍ୟ ହୋଇଗଲା । ଯୋଦ୍ଧାମାନେ ନେତ, ପାଟ, ପତନୀ, ସିନ୍ଧୁଆ, ବସନ, ପାଟ, ପାଗ୍ଗେଟି, ଦୋସର, ଶାଢ଼ୀ ଓ ଦେଦୀ ପରିଧାନକରି ମୁକୁଟ, କୁଣ୍ଡଳ, ବାହୁଟି, ଜଗବଳା, ତୋଡ଼ର, ନେପୁର, ମୁକ୍ତା, ରତ୍ନମାଳା, ହାର, ତାଟଙ୍କ, କଣ୍ଠି, ଖଦ, ମୃନାସୂତ, କଙ୍କଣ, ମୁଦି, ସୁବର୍ଣ୍ଣ ପଇତା, ତାଡ଼, ସରଳ, ଶିକୁଳି, ସୁନା ଓ ଚଉସରୀ ପ୍ରଭୃତି ଅଳଙ୍କାରରେ ମଣ୍ଡିତ ହୋଇ ଯୁଦ୍ଧକ୍ଷେତ୍ରକୁ ବାହାରିଲେ । ପ୍ରତ୍ୟେକ ଅଳଙ୍କାରରେ ପୁଣି ଚନ୍ଦ୍ରକାନ୍ତ ହୀର, ମର୍କତମଣି, ପ୍ରବାଳ, ମାଣିକ୍ୟ, ପଦ୍ମ ପୁଷ୍ପରାଗ ଓ କ୍ରୁରୁବନ୍ଦ ପ୍ରଭୃତି ବହୁମୂଲ୍ୟ ରତ୍ନ ଖଚିତ । ଶ୍ରେଷ୍ଠ ଯୋଦ୍ଧାଙ୍କ ପାଇଁ କନକ ସ୍ନାନ, ମୁକ୍ତାସ୍ନାନ, କର୍ପୂର ଚୂର୍ଣ୍ଣ ସ୍ନାନର ବ୍ୟବସ୍ଥା ଥିଲା । ଚିହ୍ନିତ ଯୋଦ୍ଧାମାନଙ୍କୁ କପାଳରେ କସ୍ତୁରୀ କଳେବରରେ ଗନ୍ଧ, ଯୁଆଦ ଓ ଚତୁଃସମ ଲେପନଦ୍ୱାରା ସମ୍ମାନିତକରି ଯୁଦ୍ଧକ୍ଷେତ୍ରକୁ ପ୍ରେରଣ କରାଯାଉଥିଲା ।

କେବଳ ବସ୍ତ୍ର ଓ ଅଳଙ୍କାର ନୁହେଁ, ଖାଦ୍ୟପେୟରେ ମଧ୍ୟ ରାଜାଘରର ଠାଣି ସମ୍ପୂର୍ଣ୍ଣଭାବେ ଦେଖିହୁଏ । ଭରଦ୍ୱାଜ ଓ ବଶିଷ୍ଠଙ୍କ ଆଶ୍ରମ ପୁଣି, ଅଯୋଧ୍ୟାର ଭୋଜରେ ବଳରାମ ଯେଉଁ ଖାଦ୍ୟ ସାମଗ୍ରୀର ଉଲ୍ଲେଖ କରିଛନ୍ତି ସେସବୁକୁ ଜଗନ୍ନାଥ ମନ୍ଦିରରେ ନଚେତ୍ ବା ଗଜପତିଙ୍କ ରାଜପ୍ରାସାଦରେ ସେ ଦେଖିଥିବେ । ସାଧାରଣ ଲୋକଙ୍କ ଘରେ ଏସବୁ ମିଳିବା ତ ଦୂରର କଥା ଅନେକ ହୁଏତ ନାଁ ଶୁଣି ନଥିବେ । ପୁରାଣ ମାଧ୍ୟମରେ ସେ ସବୁ ଖାଦ୍ୟପେୟର ନାଁ ଶୁଣି କୃତାର୍ଥ ହେବା ବ୍ୟତୀତ ଗରିବ ଓଡ଼ିଆ ପକ୍ଷରେ ଆଉ ଉପାୟ ବା କ'ଣ ଥିଲା ?

ସହସ୍ରାର୍ଜ୍ଜୁନଙ୍କ ମୁଖରେ କବି ସେହି କଥା ହିଁ କହିଛନ୍ତି—

"ଦେଖି ନଥିଲୁ ଯେ ପୁଣି ଖାଇ ଯେ ନଥିଲୁ
ଅପୂର୍ବ ପଦାର୍ଥମାନ ନୟନେ ଦେଖିଲୁ
ବସ୍ତ୍ର ଅଳଙ୍କାର ଦେଖି ହେଲୁ ଆଚମ୍ବିତ
କାହୁଁ ଏହା ଭିଆଇଲ କହ ମୁନି ସତ୍ୟ ।"

( ଅଯୋଧ୍ୟା—ପୃ ୧୧ )

Digitized by srujanika@gmail.com

ଏହା କେବଳ ସହସ୍ରାର୍ଜୁନର କଥା ନୁହେଁ ଏହା ହେଉଛି ସମସ୍ତ ଓଡ଼ିଆ ସମାଜର ହୃଦୟର ବାଣୀ ।

ରାଜଦରବାର ସହ ନିକଟ ସମ୍ପର୍କରୁ ରାଜ ଐଶ୍ୱର୍ଯ୍ୟ ବର୍ଣ୍ଣନା କରିବାପାଇଁ କବି ବଳରାମ ଯେ ପ୍ରୋତ୍ସାହିତ ହୋଇଥିଲେ ତାହା ନୁହେଁ; ଏହାଥିଲା ସେ ଯୁଗର ଏକ ସ୍ୱାଭାବିକ ପ୍ରବୃତ୍ତି । ନିଜର ନଥିଲେ ବି ଅନ୍ୟର ଐଶ୍ୱର୍ଯ୍ୟରେ ଲୋକେ ଈର୍ଷାନ୍ୱିତ ହେଉ ନଥିଲେ । ବରଂ ଅନ୍ୟର ସୁଖ ଦେଖି ସୁଖୀ ହେଉଥିଲେ । ଭାଗ୍ୟବାଦୀ ଭାରତୀୟ ଜନତା ନିଜ ଭାଗ୍ୟକୁ ଆଦରି ସୁଖୀ ହେବାରେ ଅଭ୍ୟସ୍ତ ଥିଲେ । ସେମାନଙ୍କ ଚକ୍ଷୁରେ ରାଜା ଓ ଦେବତାଙ୍କ ମଧ୍ୟରେ ପାର୍ଥକ୍ୟ ନଥିଲା । ପୁରୀର ରାଜପଣ୍ଡା ଥିଲେ ଚଳନ୍ତି ବିଷ୍ଣୁ । ଯେପରି ଦିଲ୍ଲୀର ସମ୍ରାଟ ଥିଲେ ଦିଲ୍ଲୀଶ୍ୱରୋବା ଜଗଦୀଶ୍ୱରୋବା । ପୁଣି ପୁରାଣରୁ ସେଇତ ନିଜକଥା ଶୁଣୁ ନଥିଲେ । ଶୁଣୁଥିଲେ ବିଷ୍ଣୁଙ୍କ ଅବତାର ଶ୍ରୀରାମ ବା ପରମବ୍ରହ୍ମଙ୍କ କଥା । ସେ ଜଗତର ମାଲିକ । ହୀରା, ନୀଳା, ମୋତି, ମାଣିକ୍ୟ ସବୁତ ତାଙ୍କର ସୃଷ୍ଟି । ସେଥିପାଇଁ ସେମାନେ ଭଲଭାବରେ ଜାଣିଥିଲେ ଯେ ହୀରା, ନୀଳା, ମୋତି, ମାଣିକ୍ୟ ରାଜ ବା ଦେବଭୋଗ୍ୟ ପଦାର୍ଥ । ଜଗମୋହନ ରାମାୟଣର ଗୋପାଳ ପରି ଏ ଦେଶର ସାଧାରଣ ଜନତା; କେବଳ ଏସବୁ ବହୁମୂଲ୍ୟ ପଦାର୍ଥକୁ ଦେଖି ନଥିଲେ ତାହା ନୁହେଁ; ସାଧାରଣ ଜୀବନ ନିର୍ବାହ ପାଇଁ ଏ ସବୁର ଅସାରତା ମଧ୍ୟ ଭଲଭାବେ ବୁଝୁଥିଲେ ।

"ଶୁଣିଣ ଉପହାସ୍ୟ କରନ୍ତି ଗୋପାଳେ
କେ ଜାଣଇ ମଣି କେଉଣ ଗଛେ ଫଳେ ।
ଆମ୍ଭେ ତୋତେ କମ୍ପା ମାଗଣା ଦୁଧ ଦେବୁ
ସେହିଟା ବିକ ଆମ୍ଭେ କୁଟୁମ୍ବ ପୋଷିବୁ ।"

ସାଧାରଣ ଜୀବନରେ ମଣିମାଣିକ୍ୟର ଆବଶ୍ୟକତା ନ ଥିଲେ ବି କାବ୍ୟ ପୁରାଣରୁ ଶୁଣି ଆନନ୍ଦ ନେବାରେ ଆପତ୍ତି ନଥିଲା । ସେଥିପାଇଁ ସେ ଯୁଗର ପ୍ରାୟ ସବୁ କବି ହୀରା, ନୀଳା, ମୋତି ମାଣିକ୍ୟର କଥାକୁ ଅବାଧରେ ବ୍ୟବହାର କରୁଥିଲେ । ବାହାରକୁ ବାହାରିବାବେଳେ ସଜେଇ ହୋଇ ଯିବାକୁ ହୁଏ । ଏହା ମଧ୍ୟ ଥିଲା କାବ୍ୟର ପରମ୍ପରା । ପାଠକ ବା ଶ୍ରୋତାମାନେ ମଧ୍ୟ ଏହି ପରମ୍ପରା ସହ ନିବିଡ଼ଭାବେ ପରିଚିତ ଥିଲେ । କେବଳ ଦେଶ ଓ କାଳ ଭେଦରେ କବି ନିଜର ବ୍ୟକ୍ତିଗତ ମୁଦ୍ରାଙ୍କ ଏହା ଉପରେ ଅଙ୍କିତକରି ନିଜ ପ୍ରତିଭାର ପରିଚୟ ଦେଉଥିଲେ । ସେଇଥିରୁ ପରୀକ୍ଷିତ ହେଉଥିଲା କବିଙ୍କ ପାଇଲାପଣ । ଏକଦିଗରେ ରାଜକୀୟ ବିଭବର ଆଡ଼ମ୍ବର-ପୂର୍ଣ୍ଣ ବର୍ଣ୍ଣନା ଓ ଅନ୍ୟପକ୍ଷରେ ସହସ୍ରାର୍ଜୁନ ଓ ଗୋପାଳଙ୍କ ପରି ଆଶ୍ଚର୍ଯ୍ୟ, ଚକିତ ଓ

Digitized by srujanika@gmail.com

ଅଚର୍ଚ୍ଚିତ ହୋଇଥିବା ସାଧାରଣଲୋକଙ୍କ ମଧ୍ୟ ଦେଇ ଜଗମୋହନ ରାମାୟଣର କଥା ଓ ବର୍ଣ୍ଣନା ଗତି କରିଛି । ବଳରାମ ଯେ ସବୁବେଳେ ରାଜକୀୟ ବିଭବର ବର୍ଣ୍ଣନା କରୁଥିଲେ ତାହା ନୁହେଁ, ବେଳେବେଳେ ଗୁହ ଶବର ଓ ମନ୍ଥରା ପରି ସାଧାରଣ ଚରିତ୍ର ମଧ୍ୟ କବିଙ୍କ ଦୃଷ୍ଟିକୁ ଆକୃଷ୍ଟ କରିଥିଲା । ବାଲ୍ମୀକି ରାମାୟଣରେ କନ୍ଦକାଦିସ୍ଥ ଗୁହ ହେଲା ବଳରାମଙ୍କ ଗୁହଶବର । ଶବରଣୀର ରାମଭକ୍ତି ଓ ଶବର ଜାତିର ଜଗନ୍ନାଥ ପୂଜା ବିଷୟରେ କବି ସଚେତନ ଥିଲେ । ସେଥିପାଇଁ ଜଗମୋହନ ରାମାୟଣରେ ଗୁହ ଶବର ପ୍ରସଙ୍ଗ ଆସିବାକ୍ଷଣି କବି ବଳରାମ ଗୁହ ଓ ସେହି ଜାତିସ୍ଥ ଲୋକଙ୍କ ପାଇଁ ଏକ ସ୍ୱତନ୍ତ୍ର ସ୍ଥାନ ଖୋଜିନେଲେ । ଗୃହର ପ୍ରତିନିଧିତ୍ୱରେ ସମସ୍ତ ଶବର ଜାତି ହେଲେ ଶ୍ରୀରାମଙ୍କ ମିତ୍ର । କବି ଶ୍ରୀରାମ ଓ ଶବର ଜାତିର ମିତ୍ରତା ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସେମାନଙ୍କ ବେଶଭୂଷା, ଖାଦ୍ୟପେୟର ବିସ୍ତୃତ ବର୍ଣ୍ଣନା ଦେଇଛନ୍ତି, ଅଯୋଧ୍ୟାକାଣ୍ଡରେ ପୁଣି ଲଙ୍କାକାଣ୍ଡରେ । ଏହି ବର୍ଣ୍ଣନାରେ ଶବର ଜାତିପ୍ରତି କବିଙ୍କ ସହାନୁଭୂତି ଯେ କେବଳ ପ୍ରକାଶ ପାଇଛି ତାହା ନୁହେଁ, ଏ ଯୁଗର ନୃତତ୍ତ୍ୱବିତ୍‌ମାନଙ୍କ ପରି ସେ ସେମାନଙ୍କ ସଂସ୍କୃତି ଓ ଚଳଣିକୁ ନିବିଡ଼ଭାବେ ପରୀକ୍ଷା କରି ଦେଖିଛନ୍ତି ।

ବଳରାମଙ୍କ ବାସ୍ତବ ଦୃଷ୍ଟିଭଙ୍ଗୀ ଦାସୀମାନଙ୍କ ବର୍ଣ୍ଣନାରେ ଆହୁରି ସ୍ପଷ୍ଟ । ବୃଦ୍ଧ ରାଜା ଦଶରଥଙ୍କ ପୁତ୍ର ଜନ୍ମୋତ୍ସବରେ ସବୁଠାରୁ ବେଶି ଖୁସି ହୋଇଥିଲେ ଅଯୋଧ୍ୟାର ଦାସୀମାନେ । ସେମାନଙ୍କ ଆନନ୍ଦ ଆଉ ଅନ୍ତଃପୁର ମଧ୍ୟରେ ଆବଦ୍ଧ ହୋଇ ରହିପାରି ନଥିଲା । ସେମାନେ ଅଯୋଧ୍ୟାର ରାଜଦାଣ୍ଡରେ ତୁଣ୍ଡରେ ପାନ ଓ ମୁଣ୍ଡରେ ଫୁଲ ଖୋସି ମୃଗୀହସା ଦେଇ, ଆଡ଼କରି ଗୁହିଁ ଲମ୍ବ ପଣନ୍ତ ହଡ଼ାଇ ଗାଲରେ ହଳଦୀ ଓ ଆଖିରେ କଜ୍ଜ୍ୱଳ ବୋଲି ଖୋସାର ଫୁଲମାନଙ୍କୁ ବାରମ୍ବାର ଖୋଲି, ହାଥର ପଣନ୍ତକୁ ଆଡ଼କରି, ଖଣେ ଶୂନ୍ୟ ଖଣେ ଦଉଡ଼ି କରି ଆନନ୍ଦ ଉଲ୍ଲାସ ପ୍ରକାଶ କରିଥିଲେ । ମନ୍ଥରାର ବର୍ଣ୍ଣନା କଲାବେଳେ ମଧ୍ୟ କବି ସେହିକଥା ଲେଖିଛନ୍ତି—

"ତୁଣ୍ଡେ ତାର ପାନ ଯେ ମଥାରେ ଫୁଲ ଖୋସା
ଲୋକଙ୍କୁ ଦେଖିଣ ସେ ଦଅଇ ମୁକି ହସା ।
ଗାଲରେ ହଳଦୀ ଚୂନ ଯେ ନୟନେ କଜ୍ଜଳ,
× × ×
ଶାଢ଼ୀର ଅଞ୍ଚଳ ତାର ଭୂମିରେ ଲୋଟଇ
ଫରହର ହୋଇ ଭୂମିରେ ସାଉଣ୍ଟଇ ।"

ନଗରରେ ଦାନଧର୍ମ ହେଲାବେଳେ ବିଭିନ୍ନ ଲୋକ ବିଭିନ୍ନ ପ୍ରକାର ଜିନିଷ ପ୍ରତି ଆକୃଷ୍ଟ ହୋଇଥାନ୍ତି ଅଥଚ ଦାସୀମାନେ ନିଅନ୍ତି, ଧନ, ବସ୍ତ୍ର, ଥାଳି, ଘର ଓ ଡାବରି ।

Digitized by srujanika@gmail.com

ମିଥିଳା ନଗରର ନାଗରୀମାନଙ୍କ ବିଭ୍ରମ ବର୍ଣ୍ଣନା କଲାବେଳେ ମଧ୍ୟ କବିଙ୍କ ଦୃଷ୍ଟି ରାଜପୁରରେ ସୀମିତ ହୋଇ ରହିନାହିଁ । ଏ ବର୍ଣ୍ଣନାରୁ କବିଙ୍କ ରସିକତାକୁ ମୁକ୍ତ କରିଦେଲେ, ଓଡ଼ିଆ ଗାଁର ଏକ ସାଧାରଣ ଦୃଶ୍ୟ ଆଖିଆଗରେ ଝଲସିଉଠେ । ବର ଦେଖିବା ପାଇଁ ଆବାଳ ବୃଦ୍ଧ ବନିତାଙ୍କର ଅସୀମ ଆଗ୍ରହ ଏଥିରେ ପ୍ରତିଫଳିତ । ମଲାଶୁର, ଦେଢ଼ଶୁର, ଶ୍ୱଶୁର ଓ ଅନ୍ୟାନ୍ୟ ଗୁରୁଜନମାନଙ୍କ ଉପସ୍ଥିତିକୁ ଉପେକ୍ଷା କରି ଓଡ଼ିଆ ନାରୀ ଯେଉଁଭଳି ବର ଦେଖିବାପାଇଁ ବାହାରି ଆସେ, ଏହା ହେଉଛି ତାହାର ଏକ ଜୀବନ୍ତ ଦୃଶ୍ୟ । ଦେହ ଘୋଡ଼ାଇବା ପାଇଁ ସେଇ ଖଣ୍ଡିଏ ଶାଢ଼ୀ । ଦଉଡ଼ିବା ବେଳେ ସେଥିରୁ ଅଧେ ଦେହରୁ ଖସିଯାଇ ମାଟିରେ ଘୁସୁରୁଥାଏ । ରସିକ ବଳରାମ ଯୁବତୀମାନଙ୍କର ଠାଣି ଓ ଶୃଙ୍ଗାରରେ ବିମୋହିତ ହୋଇ ରସସିକ୍ତ ପଦ-ସବୁ ରଚନା କରୁଥିଲେ ହେଁ, ସେଥିରୁ ବାସ୍ତବତାକୁ ଠାବରେଇବାରେ ଅସୁବିଧା ହୁଏ ନାହିଁ ।

ପ୍ରକୃତି ବର୍ଣ୍ଣନା :

ଅଯୋଧ୍ୟା ନଗରୀର ରାଜପୁତ୍ର ଶ୍ରୀରାମଙ୍କର ଜନ୍ମ, ବିବାହ, ରାଜ୍ୟାଭିଷେକ ଓ ରାଜ୍ୟ ନାଶ ପ୍ରଭୃତି ଘଟଣା କବିଙ୍କୁ ରାଜପୁରର ବିଭବ ପ୍ରତି ଆକୃଷ୍ଟ କରିଥିବା ପରି ଶ୍ରୀରାମଙ୍କର ବନବାସକାଳୀନ ଜୀବନ କବିଙ୍କୁ ପ୍ରକୃତି-ବର୍ଣ୍ଣନା କରିବା ପାଇଁ ଅପୂର୍ବ ସୁଯୋଗ ପ୍ରଦାନ କରିଥିଲା । ଆଦିକାଣ୍ଡରେ ଜରତାର ବନପ୍ରବେଶ, ବିଶ୍ୱାମିତ୍ରଙ୍କ ଆଶ୍ରମ ପଥରେ ଥିବା ବିପୁଳ ବନ, ଅଯୋଧ୍ୟା କାଣ୍ଡର ଚିତ୍ରକୂଟ, ଆରଣ୍ୟକର ଦଣ୍ଡ-କାରଣ୍ୟ ଓ କିଷ୍କିନ୍ଧ୍ୟା କାଣ୍ଡରେ ମାଲ୍ୟବନ୍ତର ଶୋଭା ଏହାର ଉଦାହରଣ । ଏହି ସବୁ ସ୍ଥାନରେ ବନ ବର୍ଣ୍ଣନା କଲାବେଳେ କବି ପରିଗଣନାତ୍ମକ ଶୈଳୀରେ ବୃକ୍ଷ, ପୁଷ୍ପ, ପଶୁ ଓ ପକ୍ଷୀର ଉଲ୍ଲେଖ ଗୋଟିକ ପରେ ଗୋଟିଏ କରିଅଛନ୍ତି । ଏଥିରୁ କବି ଓଡ଼ିଶାର ବନ ଜଙ୍ଗଲ ସହ ସମ୍ପୂର୍ଣ୍ଣଭାବେ ପରିଚିତ ଥିବା ଜଣାଯାଏ । ବନ ବର୍ଣ୍ଣନାର ଏହାହିଁ ଥିଲା ପ୍ରାଚୀନ ପରଂପରା ବାଲ୍ମୀକି କାଳିଦାସ ପରି ସଂସ୍କୃତ ସାହିତ୍ୟର ବରିଷ୍ଠ କବିଙ୍କ ରଚନାବଳୀରୁ ଏହାର ଉଦାହରଣ ସଂଗ୍ରହ କରାଯାଇପାରେ । ବାଲ୍ମୀକି ଚିତ୍ରକୂଟର ବର୍ଣ୍ଣନା ଦେଇ ଲେଖିଛନ୍ତି—

"ଆମ୍ର ଜମ୍ବୁବ ଅସନୈର୍ଲୋଧ୍ରୈଃ ପ୍ରିୟାଳୈଃ ପନସୈର୍ଧବୈଃ
ଅଙ୍କୋଲୈର୍ଭବ୍ୟ ତିନ ଶୈବିଲୁ ତିନ୍ଦୁକ ବେଣୁଭିଃ । ୮ ।
କାଶ୍ମର୍ଯ୍ୟାରିଷ୍ଟବରଣୈର୍ମଧୁକୈସ୍ତିଲ କୈରପି
ବଦର୍ଯ୍ୟାମଲ୍କ କୈର୍ନୀପୈର୍ବେତ୍ର ଧନ୍ୱନ ବୀଜ କୈଃ । ୯ ।" ଅଯୋଧ୍ୟା-୮-୯-

Digitized by srujanika@gmail.com

ବୃକ୍ଷ ଓ ଫୁଲଠାରୁ ପଶୁପକ୍ଷୀଙ୍କ ବର୍ଣ୍ଣନାରେ ପାର୍ଥକ୍ୟ ଦେଖିବାକୁ ମିଳେ । କବି ବେଳେବେଳେ ପକ୍ଷୀ ସବୁଙ୍କ ନାଁ କହିଯାଇଛନ୍ତି । ଉଦାହରଣୀ ପାଇଁ ଆଦିକାଣ୍ଡରୁ ଗୋଟିଏ ପଦ ଉଦ୍ଧାର କରାଯାଇପାରେ,

“କାଠକଣ୍ଠା, ବାସ୍ୱା, କପୋତ, ଗେଣ୍ଡ୍ରାଳିଆ
ପିକ, ପାରୁଆ, ନୀଳକଣ୍ଠ, ବକ, ଭରଥିଆ ।”

କେବଳ ଆଦିକାଣ୍ଡ ନୁହେଁ, ଅନ୍ୟସ୍ଥଳରେ ମଧ୍ୟ କବି ଏହିପ୍ରକାର ବର୍ଣ୍ଣନା ଦେବାକୁ ଭୁଲିନାହାନ୍ତି । ବାରମ୍ବାର ଏକପ୍ରକାର ବର୍ଣ୍ଣନା ପାଠକ ବା ଶ୍ରୋତାଙ୍କ ପାଇଁ ନିଶ୍ଚିତଭାବେ କ୍ଳାନ୍ତିକାରକ । କିନ୍ତୁ ଜଗମୋହନ ରାମାୟଣ ପରି ବିପୁଳକାୟ ଗ୍ରନ୍ଥ ମଧ୍ୟରେ ଏହା ଅନୁଭବ କରିହୁଏ ନାହିଁ । ସଚେତନ ଆଲୋଚକ ପକ୍ଷରେ ଏହା ପୁନରାବୃତ୍ତିର ଦ୍ୟୋତକ ହେଲେ ହେଁ ପୁରାଣର ଶ୍ରୋତା ନିକଟରେ ଏହା ଥିଲା ଜ୍ଞାନ ଓ ଗରିମାର ପରିମାପକ । କବି କିନ୍ତୁ ସବୁବେଳେ ପରିଗଣନାତ୍ମକ ଶୈଳୀ ମଧ୍ୟରେ ଆବଦ୍ଧ ନଥିଲେ । ପଶୁ ଓ ପକ୍ଷୀଙ୍କର ବିଚିତ୍ର ଲୀଳା ବର୍ଣ୍ଣନା କରି ଜଗମୋହନ ରାମାୟଣକୁ ସେ ରସସିକ୍ତ କରିଥିଲେ । ତାଙ୍କ ଗ୍ରନ୍ଥରୁ ମିଳୁଥିବା ଅଜସ୍ର ଉଦାହରଣ ମଧ୍ୟରୁ ଭରତାର ନୌକାଯାତ୍ରା ବର୍ଣ୍ଣନାକୁ ଦେଖାଯାଉ ।

ଭରତାର ନାବ୍ୟାଶ୍ରମ ଜଙ୍ଗଲର ପଶୁପକ୍ଷୀଙ୍କ ମଧ୍ୟରେ ସୃଷ୍ଟି କରିଛି ଏକ ଅପୂର୍ବ ଶିହରଣ । ସେମାନେ ଶଙ୍କିତ, ବିସ୍ମିତ ପୁଣି ଆନନ୍ଦିତ । ଅନୁଭବୀ ଯାତ୍ରୀପରି ବନଗ୍ରାମ ସେମାନଙ୍କର ସେହି ଆବେଗଭରା ମୁହୂର୍ତ୍ତଗୁଡ଼ିକୁ ରୂପ ଦେଲେ ଜଗମୋହନ ରାମାୟଣରେ । ଜଙ୍ଗଲର ବନ୍ୟ ପଶୁ ନଇକୂଳରେ ଯାଉଁ ଯାଉଁ ନାବକୁ ଦେଖି ଠିଆ ହୋଇଗଲେ । ନାବ ଚାଲିଗଲା ପରେ ନାଦଗର୍ଭର ଆଘାତରେ ସୃଷ୍ଟି ହେଉଥିବା ଅସଂଖ୍ୟ ତରଙ୍ଗମାଳା ମଧ୍ୟରେ ପଶୁମାନଙ୍କର ପ୍ରତିବିମ୍ବ ବହୁଗୁଣିତ ହୋଇ ପ୍ରକାଶ ପାଇଥିଲା । କବି ଏହି ଦୃଶ୍ୟଟିକୁ ନିମ୍ନଭାବେ ଲିପିବଦ୍ଧ କରିଛନ୍ତି—

“ଦେବଣ ଜୀବଜନ୍ତୁ ନଦୀକ ସ୍ନହାନ୍ତି
ନାବ ଚଳିଯାନ୍ତେ ଉଶନ୍ତି ପନ୍ତି ପନ୍ତି ।”

ଜୀବଜନ୍ତୁଙ୍କ ପରି ପକ୍ଷୀମାନଙ୍କ ମନରେ ମଧ୍ୟ ନାନା ଭାବାନ୍ତର ସୃଷ୍ଟି ହୁଏ । ନାବକୁ ଦେଖି କିଛି ପକ୍ଷୀ ବସା ଛାଡ଼ି ଉଡ଼ିଯାଆନ୍ତି ତ କିଛି ପକ୍ଷୀ ପାଣିରେ ବୁଡ଼ିଯାଇ ଆତ୍ମରକ୍ଷା କରନ୍ତି । ତଟ୍ଟ ପାଖରେ ବସିଥିବା ପକ୍ଷୀ ଭାଗ୍ୟକୁ ଆଦରି ସେହିଠାରେ ରହି ଯାଉଥିବାବେଳେ ଅନ୍ୟ କେତେକ ପକ୍ଷୀ ଉଡ଼ିଦେଇ ଆକାଶରେ ଉଡ଼ି ବୁଲୁଥାନ୍ତି ।

Digitized by srujanika@gmail.com

"କଣ୍ଠା ପାଣିକୁଆ ହଂସରାଜ ପକ୍ଷୀ
ବସା ଗୁଞ୍ଜରଣ ସ୍ୱେ ପଲାନ୍ତି ନାବ ଦେଖି ।
କେହୁ ତହିଂ ବୁଡ଼ି ରହନ୍ତି ବସା ଆଶେ
କେବଣ ଚଢ଼ାଇ ଯେ ରହିଲେ ଡିମ୍ବ ଆଶେ ।
କେହୁଂ ତହିଂ ପାରେ ଉଡ଼ନ୍ତି ରଡ଼ିଦେଇ
ନାବ ଗଲେଣ କେ ଦେଖନ୍ତି ବସା ଯାଇ ।"

ଅଯୋଧ୍ୟାକାଣ୍ଡରେ କବି ପୁଣି ଥରେ ଏହିସବୁ ପକ୍ଷୀଙ୍କର ଗଣନା କରିଥିଲେ ହେଁ ବର୍ଣ୍ଣନାରେ ପାର୍ଥକ୍ୟ ପରିଦୃଷ୍ଟ ହୁଏ । ପ୍ରତ୍ୟେକ ପ୍ରକାରର ପକ୍ଷୀ ନିଜର ସ୍ୱର, ଗତିବିଧି ଓ ପ୍ରକୃତି ଯୋଗୁଁ ଅନ୍ୟଠାରୁ ଅଲଗା । ସେ ସବୁକୁ ଦେଖି ଦେଖେଇବାରେ ବଳରାମ ଥିଲେ ଅତ୍ୟନ୍ତ ପାରଙ୍ଗମ ।

"ଡେଣ୍ଟାଇ, କାକର ଖାଇ, ଡାମରା ଯେ କୁଜି
ବୃକ୍ଷେ ବସି ରାବୁଛନ୍ତି ହୋଇ ପୁଞ୍ଜି ପୁଞ୍ଜି ।
ଚକୁଆ ଚକୋଇ ପକ୍ଷୀ ଜଳେ ଖେଳୁଛନ୍ତି ।
ନୀଳକଣ୍ଠ ଚଢ଼ାଇ ଯେ ଗଗନେ ଉଡ଼ନ୍ତି ।
ଦେଖ ବୃକ୍ଷେ ବସିଅଛି କଜଳପାତିଆ
ପାଣି ମଧ୍ୟେ ବୁଡ଼ି ଖେଳୁଛନ୍ତି ପାଣିକୁଆ ।"

ପ୍ରକୃତି ବର୍ଣ୍ଣନା କଲାବେଳେ କବି କେବଳ ବନ ସୌନ୍ଦର୍ଯ୍ୟର ବର୍ଣ୍ଣନା କରି ନାହାନ୍ତି ପ୍ରସଙ୍ଗର ଆବଶ୍ୟକତାନୁଯାୟୀ କେତେବେଳେ ଗ୍ରୀଷ୍ମାତପରେ ପ୍ରଭାବିତ ହୋଇଛି ତ କେତେବେଳେ ରାତ୍ରିର ଘନ ଅନ୍ଧକାରରେ ଖଦ୍ୟୋତ ସବୁର ଶୋଭା କବିଙ୍କୁ ବିମୁଗ୍ଧ କରିଅଛି । କେତେବେଳେ ମାଲ୍ୟବନ୍ତର ଶ୍ରାବଣକାଳୀନ ବର୍ଷା କବିଙ୍କୁ ଶିହରଣ ଓ ସ୍ପନ୍ଦନ ଦେଇଛି ତ କେତେବେଳେ ଶରତକାଳର ନିର୍ମଳ ରଜନୀ ଶୋଭାରେ ତାଙ୍କ ହୃଦୟ ନିର୍ମଳ ହୋଇଯାଇଛି ।

ବଳରାମଙ୍କ ବର୍ଷା ବର୍ଣ୍ଣନାରୁ ତାଙ୍କ ପ୍ରକୃତି—ସଚେତନତା ଦେଖାଯାଇପାରେ—

"ଶ୍ରାବଣ ପ୍ରବେଶ ହୁଏ ଏଥୁ ଅନନ୍ତରେ
ଘୋର ବୃଷ୍ଟି କରଣ ବରଷେ ଜଳଧରେ
ଅଖଣ୍ଡିତ ଧାର ଯେ ନ ଦିଶେ ଦଶ ଦିଶ
ବନ ପଲ୍ଲବତା ପୁଣି ହୁଅଇ ଅଦୃଶ୍ୟ ।

Digitized by srujanika@gmail.com

ନଦୀମାନେ ବଢ଼ନ୍ତି ଯେ ପୂରେ ପୁଷ୍କରଣୀ ।
ପର୍ବତ ଉପରୁ ଝର ପଡ଼ଇ ଯେ ପାଣି
ସୂର୍ଯ୍ୟଙ୍କ କିରଣ ତେଜ ନ ଦିଶେ ଗଗନେ
ବୃକ୍ଷେ କମ୍ପମାନ ହୋନ୍ତି ପ୍ରଚଣ୍ଡ ପବନେ ।"

ବର୍ଣ୍ଣନା ସଂକ୍ଷିପ୍ତ ହେଲେ ବି ଏଥିରେ ଶ୍ରାବଣମାସର ଏକ ଜୀବନଚିତ୍ର ମିଳିଥାଏ । ଶ୍ରୀରାମ ବର୍ଷାଋତୁର ଏହି ସୌନ୍ଦର୍ଯ୍ୟକୁ ଚକ୍ଷୁ ସମ୍ମୁଖରେ ଦେଖୁଥିଲେ ହେଁ ଏହା ତାଙ୍କ ହୃଦୟକୁ ଉଦ୍ଦୀପ୍ତ କରିନାହିଁ । ଏଥିରେ ଅଳଙ୍କାର ପ୍ରୟୋଗର ଚମତ୍କାରିତା ବି ନାହିଁ । ଏଠାରେ କବିଙ୍କର କେବଳ ଗୋଟିଏ ଉଦ୍ଦେଶ୍ୟ ଓ ତାହା ହେଉଛି ବର୍ଷାର ସ୍ୱାଭାବିକ ବର୍ଣ୍ଣନା । ବାଲ୍ମୀକି ଓ କାଳିଦାସଙ୍କ ପ୍ରକୃତି ବର୍ଣ୍ଣନାରେ ମଧ୍ୟ ଏହିପରି ଶୈଳୀ ଦେଖିବାକୁ ମିଳିଥାଏ । ବାଲ୍ମୀକି ବର୍ଷାର ବର୍ଣ୍ଣନା କରି ଲେଖିଛନ୍ତି—

"ବିଦ୍ୟୁତ୍ପତାକାଃ ସ ବଲାକମାଲାଃ ଶୈଳେନ୍ଦ୍ରକୂଟା କୃତିସନ୍ନିକାଶାଃ,
ଗର୍ଜନ୍ତି ମେଘାଃ ସମୁଦୀର୍ଣ୍ଣନାଦାଃ ମତ୍ତାଃ ଗଜେନ୍ଦ୍ରାଃ ଇବ ସଂଯୁଗସ୍ଥାଃ,
ବର୍ଷୋ ନ କାପ୍ୟାପ୍ୟିତ ଶାଦ୍ୱଲାନି ପ୍ରବୃତ୍ତ ନୃତ୍ତୋତ୍ସବ ବର୍ହିଣାନି,
ବନାନି ନିର୍ବୃଷ୍ଟବ ଲାହକାନି ପଶ୍ୟା ପରାହ୍ଣେ ସ୍ୱଧିକଂ ବିଭାନ୍ତି ।।"

ପ୍ରକୃତିର ଆଲମ୍ବନ ରୂପ ପରି ଏହାର ଉଦ୍ଦୀପନ ରୂପ ବର୍ଣ୍ଣନା କରିବା କବିଙ୍କର ଅତି ପ୍ରିୟ ଥିଲା । ସେ ବିରହ ଓ ମିଳନ ବେଳାର ଭାବରାଜିକୁ ଉଦ୍ଭାବିତ କରିବା ପାଇଁ ପାରମ୍ପରିକ ରୀତିରେ ବସନ୍ତ ବର୍ଣ୍ଣନା କରିଛନ୍ତି । ଏଥିରେ କବିଙ୍କ ସ୍ୱତନ୍ତ୍ର ପର୍ଯ୍ୟବେକ୍ଷଣ ଏବଂ ଅନୁଭବର ଅଭାବ ପରିଲକ୍ଷିତ ହୁଏ । କିନ୍ତୁ ସୀତାଙ୍କ ବିରହ-ବ୍ୟଥିତ ଶ୍ରୀରାମ ବୃନ୍ଦାବନ କଦମ୍ବ ପୁଷ୍ପକୁ ଦେଖି ପଞ୍ଚବଟୀ ପରିର ଦୁର୍ଦ୍ଦଶାକୁ ସ୍ମରଣ କରିଛନ୍ତି । ସେହିପରି ସୀତାଙ୍କ ସୌନ୍ଦର୍ଯ୍ୟ ସହ ତୁଳନା ଦିଆଯାଇଥିବା ଫୁଲ ସବୁକୁ ନିରୀକ୍ଷଣ କଲା ପରେ ଶ୍ରୀରାମଙ୍କ ବିରହ ବ୍ୟଥା ଦ୍ୱିଗୁଣିତ ହୋଇଯାଇଛି । ବୃନ୍ଦାବନ କଦମ୍ବକୁ ଦେଖି ଶ୍ରୀରାମ କହୁଛନ୍ତି —

"ଏଥିର ବେଣୀକୁ ଯେ ଛୁଣ୍ଡାଇ ପକାଇଲି
କେଉଁଠାରୁ ଛିଡ଼ିଲା ଯେ ଜାଣି ନ ପାରିଲି
ସୀତା ଅନୁକ୍ଷଣେ ମୋର ପାଶେ ଯେବେ ଥିଲା
ଖୋଜି ନ ପାଇଲି ମୁହିଁ କେଉଁଆଡ଼େ ଗଲା ।"

( ଅଯୋଧ୍ୟା—ପୃ ୫୯ )

Digitized by srujanika@gmail.com

ବଳରାମ ମନ୍ଦୁଳର ଭାବେ ପ୍ରସିଦ୍ଧି ଲାଭ କରିଥିଲେ । ଜୀବନର ଆଦ୍ୟ-ଭାଗରେ ରାଜପୁରର ସମୃଦ୍ଧ ବାତାବରଣ ସହ ତାଙ୍କର ନିବିଡ଼ ସମ୍ପର୍କ ଥିବା ଅନୁମାନ କରି ଯାଉଥିଲେ ହେଁ ପରବର୍ତ୍ତୀ ଜୀବନରେ ସେ ହେଲେ ଏକ ବିଶିଷ୍ଟ ବୈଷ୍ଣବ । ଓଡ଼ିଶାର ପୁରପଲ୍ଲୀ ସହ ମିଶି ପ୍ରକୃତିର ମୁକ୍ତ ବାତାବରଣକୁ ଭଲକରି ଦେଖିବାର ସୌଭାଗ୍ୟ ତାଙ୍କର ଥିଲା । ପ୍ରକୃତିର ନୈସର୍ଗିକ ବାତାବରଣଠାରୁ ସେ ଦୂରରେ ନଥିଲେ ବି ପରଂପରାକୁ ପରିତ୍ୟାଗ କରିପାରି ନଥିଲେ । ସେଥିପାଇଁ ତାଙ୍କ ପ୍ରକୃତି ବର୍ଣ୍ଣନାର କୌଣସି କୌଣସି ଅଂଶରେ ତାଙ୍କ ପର୍ଯ୍ୟବେକ୍ଷଣ ଶକ୍ତିର ପରିଚୟ ମିଳୁଥିଲେ ହେଁ ସେ ସବୁରେ ନୂତନତା ନାହିଁ ।

ବାଲ୍ମୀକି, ବ୍ୟାସ ଓ କାଳିଦାସଙ୍କୁ ହିଁ ସେ ଅନୁସରଣ କରିଛନ୍ତି । ତାଙ୍କ କାବ୍ୟର ପ୍ରକୃତି ଚିତ୍ର-ବର୍ଣ୍ଣା ନୁହେଁ । ଏଥିରେ ପ୍ରକୃତିର ଅଲଙ୍କୃତ ଓ ମାନବୀ-କରଣ ରୂପ ପ୍ରକାଶ ପାଇ ପାରିନାହିଁ । ତାଙ୍କ ପ୍ରକୃତି ନୀତି ଓ ଉପଦେଶ ମଧ୍ୟ ଦେଇ ଗତିକରି ନାହିଁ ବା ତାଙ୍କ ପ୍ରକୃତିରେ ସେ ପରମତତ୍ତ୍ୱଙ୍କ ଦର୍ଶନ ମଧ୍ୟ କରିନାହାନ୍ତି । ରାମାୟଣରେ କଥା ଭାଗରେ କଥାର ବିବିଧତା ଯେତେ ପରିମାଣରେ ଦେଖିବାକୁ ମିଳେ, ବର୍ଣ୍ଣନାରେ ତାହା ନାହିଁ । ବଳରାମ ଥିଲେ ପୁରାଣର କବି, ପରଂପରାର କବି । ସେ କଥାରେ ନୂତନତା ଆଣିଥିଲେ, ବର୍ଣ୍ଣନାରେ ନୁହେଁ ।

## ରଚନା ଶୈଳୀ :

ସାରଳା ଦାସଙ୍କ ପରି ବଳରାମ ଦାସ ତାଙ୍କ ରାମାୟଣରେ ଦାଣ୍ଡୀବୃତ୍ତ ବ୍ୟବହାର କରିଥିଲେ । କଥା କହିବା ପାଇଁ ଏହାହିଁ ଥିଲା ବୋଧହୁଏ ସେ କାଳର ଉପଯୁକ୍ତ ଛନ୍ଦ । କିନ୍ତୁ ନିରୀକ୍ଷଣ କଲେ ଜଣାଯିବ ଯେ ଉଭୟ କବିଙ୍କ ଦାଣ୍ଡୀବୃତ୍ତ ସମାନ ପ୍ରକୃତି-ବିଶିଷ୍ଟ ନଥିଲା । ସାରଳା ଦାସଙ୍କ ଦାଣ୍ଡୀବୃତ୍ତରେ ଯେଉଁ ଆକୁଞ୍ଚନ ଓ ପ୍ରସାରଣ କ୍ଷମତା ଥିଲା, ତାହା ବଳରାମ ଦାସଙ୍କ କବିତାରେ ପରିଦୃଷ୍ଟ ହୁଏ ନାହିଁ । ଏହା ବହୁ ପରିମାଣରେ ଚତୁର୍ଦ୍ଦଶାକ୍ଷରୀ ବୃତ୍ତର ନିକଟବର୍ତ୍ତୀ । ଏହାର ଆକୁଞ୍ଚନ ଓ ପ୍ରସାରଣର ସୀମା ୧୧ରୁ ୧୫ ଅକ୍ଷର ମଧ୍ୟରେ ସୀମିତ । ଅଧିକାଂଶ ତ୍ରୟୋଦଶ ଅକ୍ଷରବିଶିଷ୍ଟ । କେବଳ ଗୋଟିଏ 'ଯେ' ଯୋଗରେ ଏହା ଚତୁର୍ଦ୍ଦଶାକ୍ଷରୀ ଛନ୍ଦରେ ପରିଣତ ହୋଇଯାଏ । ବଳରାମ ଦାସଙ୍କ ପ୍ରଯୁକ୍ତ ଦାଣ୍ଡୀବୃତ୍ତର ଏହି ଶୈଳୀକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ସେ ତାଙ୍କ ଛନ୍ଦକୁ ଅଧିକାଧିକ ଢମନୀୟ ରୂପରେ ଉପସ୍ଥାପିତ କରିବାକୁ ଚାହିଁଥିଲେ । ଏହାଥିଲା ବୋଧହୁଏ ସେ ଯୁଗର ପ୍ରଭାବ । ପରବର୍ତ୍ତୀ ସଙ୍ଗୀତ ଯୁଗର ପୂର୍ବାଭାସ । ବୈଷ୍ଣବଧର୍ମର ଲୋକପ୍ରିୟତା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଜୟଦେବ, ବିଦ୍ୟାପତି ଓ ଚଣ୍ଡୀଦାସଙ୍କ କାନ୍ତ-କୋମଳ ପଦାବଳୀ ସମସ୍ତ ଭାରତୀୟ ସାହିତ୍ୟକୁ ପ୍ରଭାବିତ କଲା । ବଳରାମ ମଧ୍ୟ ବୈଷ୍ଣବ ଥିଲେ । ଜଗନ୍ନାଥଙ୍କୁ ରାମ ଓ କୃଷ୍ଣ ଭାବରେ

Digitized by srujanika@gmail.com

ସେ ଆରାଧନା କରୁଥିଲେ । ଏହିସବୁ କାରଣ ହେତୁ ତାଙ୍କ ରଚନା-ଶୈଳୀରେ କାନ୍ତିଗୁଣ ବିଶିଷ୍ଟ ଶବ୍ଦ ସବୁ ସଂଯୋଜିତ ହେଲା । ପରଂପରାକୁ ଅନୁସରଣ କରି ସେ ତତ୍ସମ, ତଦ୍ଭବ ଓ ଦେଶୀ ଶବ୍ଦର ସମ୍ମିଶ୍ରଣ କରିଥିଲେ ନହେଁ ଶବ୍ଦ ଚୟନରେ ସେ ସାରଳା ଦାସଙ୍କଠାରୁ ସ୍ୱତନ୍ତ୍ର ଥିଲେ । ବଳରାମ ଦାସଙ୍କ ଶବ୍ଦ-ପ୍ରୟୋଗ ବୈଶିଷ୍ଟ୍ୟକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ ।

୧—ପରମ୍ପରାନୁଗତ ବୈଶିଷ୍ଟ୍ୟ

୨—ସ୍ୱକୀୟ ବୈଶିଷ୍ଟ୍ୟ

କଥା ଓ ବର୍ଣ୍ଣନାର ସୌଷ୍ଠବ ଶବ୍ଦ ପ୍ରୟୋଗ ଉପରେ ସମ୍ପୂର୍ଣ୍ଣଭାବେ ନିର୍ଭର କରେ । ଯେଉଁ କବିର ଶବ୍ଦକୋଷ ଯେତେ ବିଶାଳ, ତାହାର ପ୍ରକାଶ କ୍ଷମତା ସେତିକି ସ୍ପଷ୍ଟ । ଭାବର ସ୍ପଷ୍ଟ ଅଭିବ୍ୟକ୍ତିପାଇଁ କବି ବା ଲେଖକକୁ ବିଭିନ୍ନ ସ୍ରୋତରୁ ଶବ୍ଦଚୟନ କରିବାକୁ ହୋଇଥାଏ ଏବଂ ଏହି ଶବ୍ଦ-ଚୟନ ପ୍ରବୃତ୍ତିରୁ କବିର ପାଣ୍ଡିତ୍ୟ ଯେପରି ପ୍ରକାଶ ପାଏ, ସେହିପରି ଶବ୍ଦ-ପ୍ରୟୋଗ ପଦ୍ଧତିରୁ କବିଙ୍କର କୁଶଳତା ମଧ୍ୟ ଜାଣିହୁଏ । ବଳରାମଙ୍କ ପୂର୍ବରୁ ଓଡ଼ିଆ ଭାଷାର ବିପୁଳ ବ୍ୟବହାର ହୁଏ, ସାରଳା-ଦାସଙ୍କ ମହାଭାରତରେ । ସାରଳାଦାସ ପ୍ରତିଭାବାନ କବି । ତାଙ୍କ ମହାଭାରତରେ କଥା ଓ ଭାବାଭିବ୍ୟକ୍ତି ପାଇଁ ବିସ୍ତୃତ କ୍ଷେତ୍ର ମଧ୍ୟ ଥିଲା । ଶିଳାଲେଖସର୍ବସ୍ୱ ଭାଷାକୁ ସେ ଦେଲେ ନୂଆ ରୂପ, ନୂଆ ଜୀବନ । ଚର୍ଯ୍ୟାପଦର ଅପଭ୍ରଂଶ ଭାଷା ବଦଳରେ ସେ ସଂସ୍କୃତ ଗର୍ଭିତ ଭାଷା ବ୍ୟବହାର କଲେ । ଫଳରୁ ସଂସ୍କୃତ ଭାଷାର ପ୍ରତ୍ୟେକ ଶବ୍ଦ ନୂଆ ପରିବେଶରେ ପ୍ରକାଶିତ ହୋଇ ନୂଆ ରୂପ ପରିଗ୍ରହ କଲା । ତତ୍ସମ, ତଦ୍ଭବ ଓ ଦେଶୀ ଶବ୍ଦର ସମ୍ମିଶ୍ରଣରେ ଏହାର ପ୍ରକୃତି ପରିବର୍ତ୍ତିତ ହୋଇ ଯେଉଁ ଭାଷାର ମୂଳଭିତ୍ତି ସ୍ଥାପିତ ହେଲା, ତାହାହିଁ ହେଉଛି, ଆଧୁନିକ ଓଡ଼ିଆ ଭାଷା । ବଳରାମ ଦାସ ସେହି ପଥର ପଥିକ ହେଲେ ହେଁ ତାଙ୍କ ବେଳକୁ ମୂର୍ତ୍ତୀସ୍ତ ରୁଚିରେ ନୂଆ ଦିଗ୍‌ବଳୟ ଉନ୍ମୋଚିତ ହୋଇଥିଲା । ଦେଶରେ ବୈଷ୍ଣବଧର୍ମ ଏକ ଲୋକପ୍ରିୟ ମତରୂପେ ପ୍ରତିଷ୍ଠିତ ହେଉଥିଲା । ମୁସଲମାନ ଶାସକଙ୍କ ପ୍ରଭାବରୁ ଦେଶରେ ଏକ ନୂଆ ସଭ୍ୟତାର ଆଲୋକ ପ୍ରବେଶ କରୁଥିଲା । ସାହିତ୍ୟର ଆଦର୍ଶ ରୂପେ କେବଳ ସଂସ୍କୃତ ସାହିତ୍ୟର ପୃଷ୍ଠପୋଷକମାନେ ସ୍ୱୀକୃତ ନ ହୋଇ ସୁଫୀମତ ପ୍ରଭାବିତ ପ୍ରେମାଖ୍ୟାନମୂଳକ କାବ୍ୟ ସବୁ ଲୋକପ୍ରିୟ ହେଲେ । ଜଗନ୍ନାଥ କ୍ଷେତ୍ରର ସମ୍ପର୍କ ବି ଲୋକପ୍ରିୟତା କବିମାନଙ୍କୁ ନୂଆ ଉତ୍ସାହ ଓ ଉଦ୍ଦୀପନା ଦେବାରେ କମ୍ ସାହାଯ୍ୟ ଦେଇ ନଥିଲା । ଏହିସବୁ କାରଣରୁ ବଳରାମ ଦାସଙ୍କ ରଚନାରେ ବହୁ ନୂଆ କଳ୍ପନା ଓ ଯୋଜନା ପ୍ରବେଶ କଲା, ଯାହାକି ପୂର୍ବ ସାହିତ୍ୟରେ ନଥିଲା ।

Digitized by srujanika@gmail.com

୧ । ପରଂପରାନୁଗତ ଶୈଳୀ

**ତତ୍ସମ ଶବ୍ଦବହୁଳ ପଦ :**

ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀ ବେଳକୁ ସମସ୍ତ ଭାରତୀୟ ଭାଷାରେ ତତ୍ସମ ଶବ୍ଦରାଜି ପ୍ରତି ଆଦର ବୃଦ୍ଧି ପାଇଥିଲା । କବିମାନେ ଅପଭ୍ରଂଶ ଭାଷାର ଶବ୍ଦରାଶି ଅପେକ୍ଷା ତତ୍ସମ ଶବ୍ଦ ସବୁର ପ୍ରୟୋଗ ପ୍ରତି ବିଶେଷ ସଚେତନ ଥିଲେ । ତେବେ ଈଶସ୍ତୁତି, ଅପ୍ରସ୍ତୁତ ଯୋଜନା ଓ ଦର୍ଶନର ବ୍ୟାଖ୍ୟା ପରି କେତେକ ନିର୍ଦ୍ଦିଷ୍ଟ ଅଂଶରେ ସେମାନେ ତତ୍ସମ ଶବ୍ଦର ବ୍ୟବହାର କରୁଥିଲେ । ବଳରାମ ଦାସ ମଧ୍ୟ ଜଗମୋହନ ରାମାୟଣରେ ଏହି ସାହିତ୍ୟିକ ପରମ୍ପରାକୁ ଅନୁସରଣ କରିଛନ୍ତି ।

**ସ୍ତୁତି ବା ବନ୍ଦନା ଅଂଶ :**

ବଳରାମ ଦାସ ପ୍ରତ୍ୟେକ କାଣ୍ଡକୁ ଈଶସ୍ତୁତି ବା ବନ୍ଦନାରେ ଆରମ୍ଭ କରିଛନ୍ତି । ଏହିସବୁ ବନ୍ଦନାରେ ତତ୍ସମ ଶବ୍ଦରାଜିର ବହୁଳତା ପରିଦୃଷ୍ଟ ହୁଏ । ଉଦାହରଣ ରୂପେ ଆଦିକାଣ୍ଡର ଜଗନ୍ନାଥ ବନ୍ଦନାକୁ ଗ୍ରହଣ କରାଯାଇପାରେ—

"ବନ୍ଦଇ ଜଗନ୍ନାଥ କମଳାଦେବୀ ପତି
ନୀଳଗିରି ଶିଖରେ ଅପୂର୍ବ ମୂରତି ।
ସୁନ୍ଦର ଶ୍ରୀମୁଖ ନୀଳମଣି ଆଭା
କି ଜାଣି ପଟାନ୍ତର କଳାମେଘ ପ୍ରଭା ।
ନୟନ ଯୁଗଳ କି ଶରଦର ଶଶୀ
ଜଗତଜନ ହୃଦେ ଅଛୁ ପ୍ରଭୁ ବସି ।"

**ଅପ୍ରସ୍ତୁତ ଯୋଜନା :**

ସ୍ତୁତି ବା ବନ୍ଦନା ପରି ଅପ୍ରସ୍ତୁତ ଯୋଜନାରେ ବହୁ ତତ୍ସମ ଶବ୍ଦର ବ୍ୟବହାର କରାଯାଇଛି । ରୂପବର୍ଣ୍ଣନା କଲାବେଳେ କବି ପରମ୍ପରାରୁ ଯେଉଁସବୁ ଉପମାନର ସଂଗ୍ରହ କରିଛନ୍ତି, ସେ ସବୁର ସମାବେଶରେ ବର୍ଣ୍ଣନା ପ୍ରାୟ ସଂସ୍କୃତମୁଖୀ ହୋଇଯାଇଛି । ଯେପରି—

"ନାଭି ଗମ୍ଭୀର କି ନଦୀର ଭଉଁରୀ
କଟିଭାଗ ଶୋଭା ନୁହଇ ପଟାନ୍ତରୀ ।
ମଦନ ମଣ୍ଡପତ ସିଂହାସନ କଷେ
ଜାନୁ ଉଲଟ କଦଳୀ ଜାଣି ଦିଶେ ।

Digitized by srujanika@gmail.com

ଚରଣ ଅଙ୍ଗୁଷ୍ଠି ଓଶେକ ବଢ଼ି ଆଖ
ପାଦ ପଦ୍ମ ତଳ ଅଲତା ରଙ୍ଗପ୍ରଖ ।"

**ତଦ୍‌ଭବ ଶବ୍ଦ :**

ଜଗମୋହନ ରାମାୟଣର କେତେକ ଅଂଶରେ ତତ୍ସମ ଶବ୍ଦର ବହୁଳତା ଥିଲେ ହେଁ, ତଦ୍‌ଭବ ଶବ୍ଦରାଜି ପ୍ରତି କବିଙ୍କର ମୋହ ଅଧିକ ଥିଲା । ଏହିସବୁ ଶବ୍ଦର ପ୍ରୟୋଗରେ ତାଙ୍କ ଭାଷା ଏକ ନୈସର୍ଗିକ ସୁଷମାଦ୍ୱାରା ବିମଣ୍ଡିତ ହୋଇଥିଲା । ସେ ସଂସ୍କୃତ ଶବ୍ଦ ସବୁକୁ ଓଡ଼ିଆ ଛାଞ୍ଚରେ ଢ଼ାଳିଦେଇ ଓଡ଼ିଆ ଭାଷାର ପରିବେଶରେ ପ୍ରକାଶ କଲେ । ତତ୍ସମ ଶବ୍ଦ ସବୁ ନିଜର ଆଡ଼ମ୍ବର ଲୋପକରି ସହଜ, ସରଳ, ସୁନ୍ଦର ଓ କର୍ଣ୍ଣପ୍ରିୟ ରୂପରେ ଆତ୍ମପ୍ରକାଶ କରି, ଓଡ଼ିଆ ଚଳଣିର ସମ୍ପୂର୍ଣ୍ଣ ଅନୁକୂଳ ହୋଇଗଲା । ଉଦାହରଣପାଇଁ ନିମ୍ନରେ କେତେକ ପଦ ଉଦ୍ଧାର କରାଯାଉଛି —

(୧) ଯେଣ୍ଠିର ମଧ୍ୟେ ତିନ ହେଁ **ମୋକ୍ଷପାନ**—ମୁଖ୍ୟ

(୨) ଘରେ ଘରେ ବଳଯୋଗ **ସାହେର କୁମାରୀ**—ସାଗର

(୩) କୂପ ବାମ୍ପି ବହୁତ ଅଛଇ **ପୋଖରୀ**—ପୁଷ୍କରଣୀ

(୪) **ସୁବନ୍ୟର** ପ୍ରତିମା ପିତୁଳି କମଗଢ଼ି—ସୁବର୍ଣ୍ଣ

(୫) ମେଢ଼ ମଣ୍ଡପ **ଅଟାଳ** ଜଗତ—ଅଟ୍ଟାଳିକା

ମୋକ୍ଷପାନ, ସାହେର, ପେଖଣ, ସୁବନ୍ୟ, ଅଟ୍ଟାଳ, ସରଗୁମୁ ( ସମ୍ମୁଖ ) ଆହୋଟ୍ଟଣ ( ଅବର୍ଷ ), ନଭାଇ ( ନବାହ ) ଆଛାନ (ଆଖ୍ୟାନ) ଖମ୍ବ (ସ୍ତମ୍ଭ) ମୁକୁତା (ମୁକ୍ତା), ହିଆ (ହୃଦୟ), ରାଉତ (ରାଜପୁତ୍ର), ପଡ଼ିହାରୀ (ପ୍ରତିହାରୀ),ଅପଛରୀ (ଅପ୍ସରୀ), ଜହ୍ନତପ (ଜ୍ୟୋତିଷ) ଇତ୍ୟାଦି ତଦ୍‌ଭବ ଶବ୍ଦ ସମାବେଶରେ ଜଗମୋହନ ରାମାୟଣ ସମୃଦ୍ଧ ।

**ଦେଶଜ ଶବ୍ଦ :**

ତତ୍ସମ ଓ ତଦ୍‌ଭବ ଶବ୍ଦର ପ୍ରଚୁରତା ମଧ୍ୟରେ ବଳରାମ କେତେକ ଦେଶଜ ଶବ୍ଦର ବ୍ୟବହାର କରିଛନ୍ତି । ସଂଖ୍ୟାରେ କମ୍ ହେଲେ ବି ସେ ସବୁରେ କବିଙ୍କ ବୈଶିଷ୍ଟ୍ୟ ଜାଣିହୁଏ । ତନ୍ମଧ୍ୟରୁ କେତେକ—

ଢେଣ୍ଡ କ, ଢେକୁ ଢେକୁ, ନାହାଇବେଲ, ଆଢ଼ା ଆଢ଼ୋ, ତଡ଼, ଝଡ଼ା ହୁଲହୁଲି, ଖୋରା, ଖୋଉ, ମଣ୍ଡା, ନାଳୁଆ, କଡକଡା, ଭୃଙ୍ଗିଆ, ହେଲୁଣି, ପରମୁଣ୍ଡା, ଗୁଳୁଗୁଞ୍ଚା, ଅଗୁଭୁଆ, ଢଭୁର, ଢଭୁର ।

Digitized by srujanika@gmail.com

## ବିଦେଶୀ ଶବ୍ଦ :

ସାରଳା ଦାସଙ୍କ ସଦୃଶ ବଳରାମଙ୍କ ରଚନାରେ କେତେକ ବିଦେଶୀ ଶବ୍ଦ ପରିଦୃଷ୍ଟ ହୋଇଥାଏ । ସେଥିମଧ୍ୟରୁ କେତେକ ଆରବୀ ଓ କେତେକ ପାର୍ସୀ । ସାଧାରଣତଃ ୧୬ଶ ଶତାବ୍ଦୀର ପ୍ରଥମ ଭାଗକୁ ଜଗନ୍ମୋହନ ରାମାୟଣର ରଚନାକାଳ ରୂପେ ଗ୍ରହଣ କରାଯାଇଥାଏ । ସେତେବେଳକୁ ଓଡ଼ିଶାରେ ମୁସଲମାନ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇ ନଥିଲେ ହେଁ ମୁସଲମାନ ନବାବଙ୍କ ରାଜକୀୟ ବିଭବ ଓ ମୁସଲମାନ ସଂସ୍କୃତିର ବିଭିନ୍ନ ଉପାଦାନ ବିଭିନ୍ନ ସୂତ୍ରରେ ଦେଶରେ ପ୍ରବେଶ କରି ସାରିଥିଲା । ମୁସଲମାନମାନେ ବହୁ ଭାବେ ଏ ଦେଶକୁ ଆସିଥିଲେ । କେହି ହୁଏତ ଆସିଥିଲେ ବେପାର ବାଣିଜ୍ୟ କରିବା ପାଇଁ, କେହି ହୁଏତ ଆସିଥିଲେ ଜୀବନ ନିର୍ବାହର ଅନ୍ୟପନ୍ଥା ଦେଖି । କପିଳେନ୍ଦ୍ରଙ୍କ ସେନାବାହିନୀରେ ଖାଁ ଉପାଧିଧାରୀ କେତେକ ସୈନିକଙ୍କୁ ଦେଖିବାକୁ ମିଳିଥାଏ । ଏହିପରି ଭାବେ ସେମାନଙ୍କ ସମାଜରେ ପ୍ରଚଳିତ କେତେକ ଶବ୍ଦ ଓଡ଼ିଆ, ସାମାଜିକ ଚଳଣୀକୁ ପ୍ରଭାବିତ କରିଥିଲା । ଦେଶରେ ଆବିର୍ଭୂତ ହୋଇଥିବା ଏହି ନୂଆ ଶକ୍ତି ପ୍ରତି ଜଣେ ସଚେତନ କବି ଭାବେ ବଳରାମ ମଧ୍ୟ ସଜାଗ ଥିଲେ । ସେଥିପାଇଁ ଦଶରଥଙ୍କ ପୁତ୍ରେଷ୍ଟି ଯାଗକୁ ଆସିଥିବା ହିନ୍ଦୁ ରାଜାମାନଙ୍କ ମଧ୍ୟରେ ସେ ଗଣନା କଲେ "ମୁଗଲ କୁଚରାୟ" ।

ବାବରଙ୍କ ମୋଗଲ ସାମ୍ରାଜ୍ୟ ୧୫୨୬ ରେ ପ୍ରତିଷ୍ଠିତ ହୋଇଥିଲେ ହେଁ ମୋଗଲ ଜାତିର କାହାଣୀ ତାଙ୍କର ବହୁ ପୂର୍ବରୁ ଏ ଦେଶରେ ପ୍ରଚାରିତ ହୋଇ ସାରିଥିଲା । ସେଥିପାଇଁ ଅସ୍ୱାଭାବିକ ହେଲେ ହେଁ ହିନ୍ଦୁ ରାଜାଙ୍କ ମଧ୍ୟରେ ମୁଗଲଙ୍କୁ ଗଣିବାରେ ବଳରାମଙ୍କୁ ଅସୁବିଧା ହୋଇନାହିଁ । କେବଳ "ମୁଗଲ"ଓ"କୁଚ" ନୁହେଁ ଦରହାସ ଅସଭାବ ଗଲମି (କୋମଳ), ତକସ, କମାଣ ପ୍ରଭୃତି ଶବ୍ଦ ଦେଖିବାକୁ ମିଳିଥାଏ । ଦରହାସ ଶବ୍ଦ ବ୍ୟତୀତ ଅନ୍ୟାନ୍ୟ ସବୁ ଶବ୍ଦ ଯୁଦ୍ଧ ସହିତ ସଂପୃକ୍ତ ।

## ଅନୁକରଣାତ୍ମକ ଶବ୍ଦ :

ବଳରାମଙ୍କ ଜୀବନ୍ତ ଭାଷାର ଏକ ବୈଶିଷ୍ଟ୍ୟ ହେଉଛି, ତାଙ୍କ ପ୍ରଯୁକ୍ତ ଅନୁକରଣାତ୍ମକ ଶବ୍ଦମାଳା । ଆଦି କି ଅଯୋଧ୍ୟାରେ ନୁହେଁ ଲଙ୍କା କାଣ୍ଡରେ ଏସବୁ ଶବ୍ଦର ହଟଗୋଳ ଶୁଣିବାକୁ ମିଳିଥାଏ । ବୀରମାନଙ୍କର ହୁଙ୍କାରରେ ରଣଭୂମି ଯେତେବେଳେ ମୁଖରିତ ହୋଇ ଉଠେ ସେତେବେଳେ ବିଭିନ୍ନ ବାଦ୍ୟର ସମବେତ ଧ୍ୱନି ଯୁଦ୍ଧର ଭୀଷଣତାକୁ ଆହୁରି ବୃଦ୍ଧି କରେ । କବି ରଣଭୂମିର ସେହି ଦୃଶ୍ୟକୁ ପାଠକ ସମ୍ମୁଖରେ ରଖିବାପାଇଁ ବ୍ୟବହାର କରନ୍ତି ଦମି ଦମି ଘୁମ୍ ଘୁମୁ ଦୁମ୍ ଦୁମ୍ କଣି କଣି, କପ କପ, ଝୁଣ୍ଟୁ ଝୁଣ୍ଟୁ, ଘୁମୁ ଘୁମୁ, ଝଣ ଝଣ, ଝମ ଝମ, ଟହ ଟହ, ଚଡ଼ଚଡ଼, ଭଡ଼ ଭଡ଼, ଘାଇ ଘାଇ, କଟ କଟ ପ୍ରଭୃତି କେତେକ ଶବ୍ଦ ।

Digitized by srujanika@gmail.com

**ବୀପ୍‌ସାତ୍ମକ ଶବ୍ଦ :**

ଅନୁକରଣାତ୍ମକ ଶବ୍ଦପରି ବୀପ୍‌ସାତ୍ମକ ଶବ୍ଦ ପ୍ରୟୋଗରେ ଭାଷାର ସୌନ୍ଦର୍ଯ୍ୟ ବୃଦ୍ଧି ପାଏ ତଥା ଭାଷାରେ ଗତିମୟତା ଆସେ । ରାମାୟଣର ଆଦି, ଅଯୋଧ୍ୟା, ଆରଣ୍ୟକ ଓ ସୁନ୍ଦର କାଣ୍ଡରେ ଏସବୁ ଶବ୍ଦ କେବଳ କେତେକ ସ୍ଥାନରେ ବ୍ୟବହୃତ ହୋଇଥିବା ବେଳେ ଲଙ୍କାକାଣ୍ଡର ସମର ବର୍ଣ୍ଣନାରେ ଏହାର ବହୁଳତା ପରିଦୃଷ୍ଟ ହୁଏ । ବୋଧହୁଏ ରଣଭୂମିକୁ ଅଧିକ ଗତିଶୀଳ ଓ ବର୍ଣ୍ଣନାକୁ ବୀରରସବ୍ୟଞ୍ଜିତ କରିବାପାଇଁ କବି ବଳରାମ ସଚେତନଭାବେ ଏସବୁ ଶବ୍ଦର ବ୍ୟବହାର କରିଛନ୍ତି । ଏସବୁ ଶବ୍ଦର ପ୍ରଭାବ ଆଦିକାଣ୍ଡରେ ନମ୍ର ଥିବାବେଳେ ଲଙ୍କାକାଣ୍ଡରେ ସ୍ପଷ୍ଟହୋଇ ଯାଇଛି । ଆସ ଆସ, ଧାଁଅ ଧାଁଅ, ଯାଅ ଯାଅ ପ୍ରଭୃତି ବୀପ୍‌ସାତ୍ମକ ଶବ୍ଦର ବାରମ୍ବାର ଉଚ୍ଚାରଣ ରଣଭୂମିର ଭୟାବହ ଦୃଶ୍ୟ ପାଠକକୁ ଉଦ୍‌ବୁଦ୍ଧ କରିଦିଏ । ଆଦିକାଣ୍ଡରୁ କେତେକ ଉଦାହରଣ ପ୍ରଦତ୍ତ ହେଲା ।

ଛନ ଛନ, ଡେକୁ ଡେକୁ, ଆସିବୁ ଆସିବୁ, ଦେଖ ଦେଖ, ମନେମନେ, ଦମ ଦମ, ତର ତର, ଉଠ ଉଠ, ଆସ ଆସ, ଗହଗହ, ଠାବେ ଠାବେ, ଚେଚେଚେଚେ, ଲକ ଲକ, ଘନ ଘନ, କମ୍ପେ କମ୍ପେ, ହେଳୁ ହେଳୁ, ପନ୍ତ ପନ୍ତ, ହସ ହସ, ଧର ଧର, ମାରମାର, ଗ୍ରାଲଗ୍ରାଲ, ଧାଁରଧାଁର, ସତ୍ୟସତ୍ୟ, ଆଣ ଆଣ, ଧନ୍ୟଧନ୍ୟ, ଯେବଣ ଯେବଣ ।

**ଯୁଗ୍ମ ଶବ୍ଦ :**

ଏହିପରି ଆଉ ଗୋଟିଏ ପ୍ରୟୋଗ ହେଉଛି ରାମାୟଣର ଯୁଗ୍ମ ଶବ୍ଦମାଳା । କ୍ରିୟାବାଚକ ବିଶେଷ୍ୟ ଓ ଅସମାପିକା କ୍ରିୟା ସଂଯୋଜିତହୋଇ ଏସବୁର ସୃଷ୍ଟି । ବୀପ୍‌ସାତ୍ମକ ଶବ୍ଦପରି ଏସବୁ ମଧ୍ୟ ବର୍ଣ୍ଣନାକୁ ଗତିଶୀଳ କରେ । ଜଗମୋହନ ରାମାୟଣରେ ବିଶେଷକରି ଲଙ୍କାକାଣ୍ଡରେ ଏପରି ଯୁଗ୍ମ ଶବ୍ଦର ବହୁଳତା ପରିଦୃଷ୍ଟ ହୁଏ ।

ଉଦ୍‌ଗାରଉଦ୍‌ଗାର, ଉଠାଉଠି, କୋହାକୋହ, କୋଡ଼ାକୋଡ଼ି, ଗଡ଼ାଗଡ଼, ଘଞ୍ଚାଘଞ୍ଚି, ଘଷାଘଷି, ଗୁହଁଗୁହିଁ, ଛଡ଼ାଛଡ଼ି; ଜଣାଜଣି, ଟାଣଟଣ, ଠେଲାଠେଲି, ଧରାଧରି, ପଶାପଶି, ପିଟାପିଟି, ପେଲାପେଲି, ପୁଚ୍ଛାପୁଚ୍ଛି, ବନ୍ଧାବନ୍ଧି, ଭେଟାଭେଟି ମଡ଼ାମଡ଼ି, ମରାମରି, ମିଶାମିଶି, ଯନ୍ତ୍ରାଯନ୍ତ୍ର, ହଣାହଣି, ହାବୋଡ଼ା ହାବୋଡ଼ି ।

**ପୁନରୁକ୍ତି ପ୍ରକାଶ :**

ବୀପ୍‌ସାରେ ପୁନରୁକ୍ତ ହୁଏ, ଏଥିରେ କେବଳ ଗୋଟିଏ ଶବ୍ଦ ଦୁଇଥର ବ୍ୟବହୃତ ହୋଇଥାଏ; ଅଥଚ ପୁନରୁକ୍ତିରେ ଗୋଟିଏ ଶବ୍ଦ ବହୁଥର ଆସେ । ଏହାକୁ

Digitized by srujanika@gmail.com

ସାଧାରଣତଃ କାବ୍ୟର ଦୋଷରୂପେ ପରିଗଣିତ ହୋଇଥିଲେ ହେଁ, କେତେକ ଆଲଙ୍କାରିକ ଏହାକୁ ଗୁଣରୂପେ ଗ୍ରହଣ କରିଛନ୍ତି । ହିନ୍ଦୀ କବି ଭିଖାରୀ ଦାସ ଏ ବିଷୟରେ ନିଜର ମନ୍ତବ୍ୟ ଦେଇ ଲେଖିଛନ୍ତି—

"ଏକ ଶବ୍ଦ ବହୁବାର ଜହଁ, ପରେ ରୁଚିରତା ଅର୍ଥ
ପୁନରୁକ୍ତି ପରକାଶ ଗୁନ, ବରନେ ବୁଦ୍ଧି ସମର୍ଥ ।"

ବଳରାମ ରାମାୟଣର ସୌନ୍ଦର୍ଯ୍ୟ ବୃଦ୍ଧି କରିବାପାଇଁ ଅନେକ ସ୍ଥଳରେ ଗୋଟିଏ ଶବ୍ଦକୁ ବାରମ୍ବାର ବ୍ୟବହାର କରିଛନ୍ତି । ଏହା କେତେବେଳେ ପଦର ଆଦ୍ୟରେ ଅଛି ଓ କେତେବେଳେ ମଧ୍ୟଭାଗରେ । ଆଦିକାଣ୍ଡରୁ ଏହି ପ୍ରକାର ପ୍ରୟୋଗର କେତୋଟି ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା ।

ସହସ୍ରକୁ ଆଦ୍ୟ ଓ ମଧ୍ୟଭାଗରେ ରଖି—

(୧) "ଅନନ୍ତ ପୁରୁଷୋତ୍ତମ ତୁ ସହସ୍ର ମୂରତି
ସହସ୍ରେ କର ସହସ୍ରେ ସୂର୍ଯ୍ୟ ଜ୍ୟୋତି ।
ସହସ୍ରେକ ଶିର ସହସ୍ରେ ଲୋଚନ
ସହସ୍ରେ କୋଟି ଯୁଗ କଳ୍ପକ ବିମୋଚନ ।
ସ୍ୱୟମ୍ଭୁ ମୂନି ସହସ୍ରେ ସୃଷ୍ଟି ଅନ୍ତେ ଯେ ଦଶ
ଦ୍ୱାଦଶ ଆଙ୍ଗୁଳି ସ୍ୱେ ବେଦାନ୍ତ ପୁରୁଷ ।"

(୨) "ଅପକ୍ତିକକୁ ଆଦ୍ୟରେ ରଖି—
ଅପୁତ୍ରିକ ମୁଖ ସ୍ୱପ୍ନେ ନ ଯୋଗାଇ
ଅପୁତ୍ରିକ ଲୋକର ଅନ୍ନହିଁ ନଖାଇ ।
ଅପୁତ୍ରିକ ସଙ୍ଗେ ନୋହିବ ସଦଗୋଷ୍ଠୀ
ଅପୁତ୍ରିକ ବାପୁଡ଼ା ଅଟଇ ପରମ କଷ୍ଟୀ ।"

ଏହିପରି 'ପୁତ୍ର', 'କାହାର', 'କେ', 'କେହୁ', 'କେବଣ', 'ଲକ୍ଷେକ', 'ଯେ', 'ପୁଣି', ଆମ୍ଭ ବା ଆମ୍ଭର, କାହିଁ, ଯାହାକୁ, ଯେ, ତାହା, କେ ବୋଲଇ, ପ୍ରଭୃତିକୁ ଆଦ୍ୟରେ ରଖି ବାରମ୍ବାର ବ୍ୟବହାର କରାଯାଇଛି ।

(୩) କୌଣସି ନିୟମ ନରଖି ସ୍ନାନର ବ୍ୟବହାର—
ସ୍ନାନ ବୋଲଣ କି ଅଭିରସ କର ।
ଅଗସ୍ତି ସ୍ନାନ ଶୋଷିଲେ ସିନ୍ଧୁ ସ୍ନାତ ।

Digitized by srujanika@gmail.com

ପ୍ରହ୍ଲାଦ ଯାକ ପ୍ରସନ୍ନ କଲ ପଦ୍ମନେତ୍ର ।
ବାମନ ଯେ ଯାକ ବଳିକ ଛଳିଲ ।
ଧ୍ରୁବ ଯାକ ପୂଅ ବିଷ୍ଣୁକୁ ତୋଷ କଲ ।
ଭଗୀରଥ ଯାକ ଗଙ୍ଗାକୁ ବୁହାଇଲ ।
କେମା ସେହାକୁ ହୋ କହ ତୁମ୍ଭେ ଯାକ ।
ଧାତା ଜାଣିଲଇଁ ଯେ ଯଦ୍ଧଂଜ ଷରଜନ ।

## ପଦଗଣନାତ୍ମକ ଶୈଳୀ :

କଥା କହିବାପାଇଁ ଏହା ଥିଲା କବି ବଳରାମଙ୍କର ଶ୍ରେଷ୍ଠ ଆୟୁଧ । କେବଳ କାନନ, ରାଜକୀୟ ବିଭବ, ନଗର ସ୍ତୁତି ଓ ଅପ୍ରସ୍ତୁତ ଯୋଜନା କଲାବେଳେ ନୁହେଁ, ସବୁପ୍ରକାର ବର୍ଣ୍ଣନାର ଏହା ଥିଲା ଏକ ସାଧାରଣ ପଦ୍ଧତି । ଜଣଙ୍କୁ ବା କେବଳ ଗୋଟିଏ ବସ୍ତୁର କଥା ନ କହି କବି ଏକାବେଳେକେ ସମସ୍ତଙ୍କୁ ସଜେଇକରି କହୁଥିଲେ । ଏହି ପ୍ରକାର ଶବ୍ଦଯୋଜନା ପାଠକକୁ ଘଟଣା ପ୍ରତି ବିଶେଷଭାବେ ଆକୃଷ୍ଟ କରୁଥିଲା ଏବଂ ପାଠକ ହୃଦୟରେ ଘଟଣାର ଏକ ସ୍ପଷ୍ଟ ରେଖା ଅଙ୍କିତ କରୁଥିଲା । ଉଦାହରଣପାଇଁ ନିମ୍ନରେ କେତେକ ପଦ୍ୟ ସଂଗୃହୀତ କରାଯାଇଛି ।

(୧) ମନୁଷ୍ୟ ସମାଜର ସଦ୍‌ଗୁଣାବଳୀ—

ଧାର୍ମିକ କୁଶଳ ହୋଇବେ ଶାନ୍ତଶୀଳ
ସୁଜନ ସୁବୁଦ୍ଧି ହୋଇ ଉଧରିବେ କୁଳ । ୧୬୫୭ ।

(୨) ଅଳଙ୍କାରର ଗଣନା—

କଟି ପାଟ ଡୋର ପାଘୁଡ଼ି ଘଣ୍ଟି ଗୁନ୍ଥା
ବାହେଣ ବାହୁଟି ଗଳାରେ ସୁନା ସୂତା । ଆଦ୍ୟ ପୃ—୧୦୮ ।

(୩) ବାଦ୍ୟ—

"ଢୋଲ ଦମା ଟମକ ବାଜଇ ବୀରତୂର
ଶଙ୍ଖ ମହୁରୀ ଭେରୀ ଯନ୍ତ୍ର ସପତ ସ୍ୱର । ୨୨୨ ।
କମ କାହାଳ ବଜ୍ରଘୋଷ ଶବ୍ଦ
ତାଳ ତାଳି ଘଣ୍ଟ କଂସାଳ ଶବଦ । ୨୨୩ ।
ବାଜନ୍ତି ମର୍ଦ୍ଦଳ ବଜନ୍ତି ବାଉଂଶୀ
ନାଚନ୍ତି ନାଚୁଣୀ ଅପଛରୀ ମିଶି । ୨୨୪ ।

## ନୀତିବାକ୍ୟ :

ନୀତିବାକ୍ୟର ସଂଯୋଜନା ପୁରାଣ ରଚନାର ଏକ ବଶିଷ୍ଟ ଶୈଳୀ । କଥା ମଝିରେ ନୀତିବାକ୍ୟ ସବୁକୁ ରଖିବାଦ୍ୱାରା କଥାର ଗାମ୍ଭୀର୍ଯ୍ୟ ବୃଦ୍ଧି ପାଇଥାଏ।

Digitized by srujanika@gmail.com

ସାଧାରଣତଃ ଅନ୍ୟକୁ ଉପଦେଶ ଦେବାବେଳେ ଏସବୁର ବ୍ୟବହାର ବଳରାମଙ୍କ ରଚନା ଶୈଳୀର ଏକ ସାଧାରଣ ସୂତ୍ର ।

(୧) ବାଦ ବିବାଦ ଯେ ବଢ଼ାଇଲେ ବଢ଼ଇ
ନାଶ କଥା ମାନ ଛଡ଼ାଇଲେ ଛାଡ଼ଇ ।

(୨) ରନ୍ଧ୍ର ମଧ୍ୟ କଲେ ଶତ୍ରୁକୁ ହୋଏ ଜିଣି ।

(୩) ବନ୍ଧୁ ଦୁଷ୍ଟ ଜନଙ୍କ ନାଶିଲେ ଧର୍ମ ଯାଇ ।

(୪) ସେତେବେଳେ ଯାହାକୁ ଅଛଇ ଯେଉଁ ଯୋଗ
କାଳ ପ୍ରାପତ ଜାଣି ବିଧାତା କରାଇ ଭୋଗ ।

(୫) ଧନ ମାଇଲେ ଭାତ ସିଧ୍ୟନ୍ତି ହାଦେ ମନ ।

(୬) ପରକୁ ବୁଦ୍ଧି ଦେଇ ଛଅରୁ ଅନେକ
ଏବେ ତୁ ଆପଣେ ଛାଡ଼ିଲୁ ବିବେକ ।

(୭) ମନ୍ଦହିଁ ଭଲ ହୋଇ କରାଇଲେ ଭୟେ ।

(୮) କର୍ମକୁ ଜିଣନ୍ତା ନାହିଁ ଯେ ନିଦେଶ ।

(୯) ନିଦ୍ରାଗଲା ପ୍ରାଣୀର କିସ ଅବା ବଳ ।

(୧୦) ଅମର ହୋଇଲା ଲୋକ ତାହାର ସୁଖେ ଥିବ
ସଂଗ୍ରାମ କଲେ କି ଅନ୍ୟାୟେ ପାର ଯିବ ।

(୧୧) ଯାଗ ଯଜ୍ଞ ଜପ ତପ ଦାନ ଧର୍ମ
ଯେହା ହିଂସାସନ୍ତେ ପାଇ ପାପକର୍ମ ।

(୧୨) ପୂର୍ବେ ଯାହା କର ଏବେ ତାହା ଭୁଞ୍ଜି ।

## ସ୍ୱକୀୟ ଶୈଳୀ :

ପରଂପରାକୁ ଅନୁସରଣକରି କବି ବଳରାମ ବିଭିନ୍ନ ପ୍ରକାରର ଶବ୍ଦକୁ ଭିନ୍ନ ଭାବେ ନିଜ ଗ୍ରନ୍ଥରେ ବ୍ୟବହାର କରିଥିଲେ ହେଁ ଏସବୁ ପ୍ରୟୋଗରୁ ତାଙ୍କ ନିଜସ୍ୱ ଶୈଳୀକୁ ଜାଣିହୁଏ ନାହିଁ । ତାଙ୍କ ସମସ୍ତର ଅନ୍ୟାନ୍ୟ ଓଡ଼ିଆ କବି ଏପରିକି ଉତ୍ତର ଭାରତର କବି ଜାୟସୀ, ସୁର ଓ ତୁଳସୀ ମଧ୍ୟ ଏହିସବୁ ପ୍ରୟୋଗ ପଦ୍ଧତିକୁ ନିଜ ଗ୍ରନ୍ଥରେ ଗ୍ରହଣ କରିଛନ୍ତି । ଶବ୍ଦ-ପ୍ରୟୋଗର ଏହି ପରଂପରାନୁଗତ ଶୈଳୀ ବ୍ୟତୀତ କାବ୍ୟ ମଧ୍ୟରେ ପ୍ରତ୍ୟେକ କବିଙ୍କର ଏକ ସ୍ୱକୀୟ ପ୍ରକାଶଭଙ୍ଗୀ ଥାଏ ଓ ସେଇଥିରୁ କବିଙ୍କ ବ୍ୟକ୍ତିତ୍ୱକୁ ଚିହ୍ନିହୁଏ । ନିମ୍ନରେ ବଳରାମଙ୍କ ଭାଷା-ପ୍ରୟୋଗ ମଧ୍ୟରୁ ତାଙ୍କର ସ୍ୱକୀୟତାକୁ ଜାଣିବାପାଇଁ ପ୍ରଚେଷ୍ଟା କରାଯାଇଛି ।

Digitized by srujanika@gmail.com

ସାରଳାଦାସଙ୍କ ମହାଭାରତର ଗ୍ରନ୍ଥପରି ବଳରାମଙ୍କ ରାମାୟଣର ଛନ୍ଦ ଥିଲା ଦାଣ୍ଡୀ । ବଳରାମଙ୍କ ଦାଣ୍ଡୀବୃତ୍ତ ୧୧ରୁ ୧୫ ଅକ୍ଷର ମଧ୍ୟରେ ସୀମିତ । ପ୍ରତ୍ୟେକ ପାଦରେ ଛନୋଟିରୁ ସାତୋଟି ପର୍ଯ୍ୟନ୍ତ ଶବ୍ଦ । ପୁଣି ଏହିସବୁ ଶବ୍ଦକୁ କବି ଏପରି ଭାବେ ସଜାଉଥିଲେ ଯେ ପ୍ରତ୍ୟେକ ପାଦକୁ ଭାବାଭିବ୍ୟକ୍ତି ଦୃଷ୍ଟିରୁ ଦୁଇଟି ସମାନ ଅଂଶରେ ବିଭକ୍ତ କରିଦେଲେ କିଛି ଅସୁବିଧା ହୁଏ ନାହିଁ । ପାଦର ମଝିରେ ବିରାମ ଦେଇ ପାଠକଲେ ପଦର ଭାବ ଅଧିକ ସ୍ପଷ୍ଟଭାବେ ଅଭିବ୍ୟକ୍ତ ହୁଏ । ଏହି ବିରାମ-ପ୍ରକ୍ରିୟାକୁ ଆହୁରି ସ୍ପଷ୍ଟ କରିବାପାଇଁ କବି ଅନୁପ୍ରାସର ସାହାଯ୍ୟ ନେଉଥିଲେ । ନିମ୍ନରେ ପ୍ରଦତ୍ତ କେତେକ ଉଦାହରଣରୁ ଏହା ଜାଣିହେବ ।

(କ) ବିଭଣ୍ଡେକ ବାଳ / ଚଣ୍ଡ ହମାକୁଳ ।

(ଖ) ନୁହଇ ପୁରୁଷ / ନୁହଇ ମୁହିଂ ଷଣ୍ଢ ।

(ଗ) ବାହାରକୁ ନ ଦିଶଇ / ଭିତରକୁ ଉହାଡ଼ ।

(ଘ) କେବଣ ବିଳାସୁଣୀ / ବିଚିତ୍ର ବଞ୍ଜଣୀ ।

(ଙ) ଦୁଧ ଶାକର / ବିବିଧ ପରକାର ।

(ଚ) କର ଅନୁଗ୍ରହ / ନ କର ଝଗଣ ।

(ଛ) ଟେଳା ମାଇଲେ କି / ଟଳଇ ପରବତ ।

ଜଗମୋହନ ରାମାୟଣରେ ଏହା ଏକ ବିଶିଷ୍ଟ ପ୍ରକାଶଭଙ୍ଗୀ ହେଲେହେଁ ବେଳେବେଳେ ଏଥିରେ ବ୍ୟତିକ୍ରମ ପରିଲକ୍ଷିତ ହୁଏ । ଅର୍ଥାତ ଅନୁପ୍ରାସ ନଥାଇ ମଧ୍ୟ ଭାବାଂଶ ଦୃଷ୍ଟିରୁ ପାଦମାନଙ୍କୁ ଦୁଇଭାଗରେ ବିଭକ୍ତ କଲେ ଅସୁବିଧା ହୁଏ ନାହିଁ ।

(କ) ପାଣି ଆଣନ୍ତେଣ ତାକୁ / ଦେଖିଲକ ବାଳୀ

(ଖ) ପାପ ଅନ୍ୱେଷିଲ / ମଦନ ମନେ ବ୍ୟାପି

ସାରଳା ମହାଭାରତର ଦାଣ୍ଡୀବୃତ୍ତକୁ ନିରୀକ୍ଷଣ କଲେ ବଳରାମଙ୍କ ବୈଶିଷ୍ଟ୍ୟ ଆହୁରି ସ୍ପଷ୍ଟ ହୋଇଯାଏ । 'ନର୍ବାତ କପଟର ପୃଥ୍ୱୀରଥ ପକାଇଲା ସର୍ବଚ୍ଛେଦ' ବା 'ବରଷନ୍ତି ମେଘେ ଯେ ମୂଷଳଧାରେ ପରମାଣେ' ବା 'ତାହା ଦେଖି ମେଘା ସହସ୍ରେକ ବାନ୍ଧିଲା ଶର ପାର୍ଥେ' । ମହାଭାରତର ଏହିସବୁ ପଂକ୍ତିରେ ବଳରାମଙ୍କ ସଦୃଶ ବିଭାଜନ ନାହିଁ ଏବଂ ପଂକ୍ତିକୁ ବିଭାଜନ କରିଦେଲେ ମଧ୍ୟ ତାହାର ମତା ନରହି ପାରୁଥିବାରୁ ଭାବାଭିବ୍ୟକ୍ତିରେ କୌଣସି ସୁବିଧା ହୁଏ ନାହିଁ । ବଳରାମଙ୍କ ରାମାୟଣରେ ବେଳେବେଳେ ଏହି ନିୟମରେ ବ୍ୟତିକ୍ରମ ପରିଲକ୍ଷିତ ହେଉଥିଲେହେଁ ଏହା ତାଙ୍କ ରଚନାଶୈଳୀର ସାଧାରଣ ନିୟମ ନୁହେଁ । ଏହାକୁ ବ୍ୟତିକ୍ରମ ଭାବରେହିଁ ଗ୍ରହଣ କରି ଯାଇପାରେ । ଯେପରି—

Digitized by srujanika@gmail.com

'ମର୍ତ୍ତ୍ୟ ଲୋକେ ଭୂଅ ଖଣ୍ଡେ ପୁର୍ବଦ୍ଦଗ ଶ୍ରେଷ୍ଠ' ଭାବାଭିବ୍ୟକ୍ତି ଦୃଷ୍ଟିରୁ ପ୍ରତ୍ୟେକ ପାଦକୁ ଦୁଇଭାଗରେ ବିଭକ୍ତ କଲାବେଳେ ବଳରାମ କେତେକ ନିୟମ ଅନୁସରଣ କରୁଥିଲେ । ଉଦାହରଣ ରୂପେ 'ଦୁଇ' ଓ 'ଚାରି' ଅକ୍ଷର ବିଶିଷ୍ଟ ଶବ୍ଦସବୁକୁ ଗ୍ରହଣ କରାଯାଇପାରେ ।

୨+୪–୨+୪ :

'ମାର ରାକ୍ଷସୀକି / ଶୁଣ ନୃପବର ।

୨+୪–୪+୨

(କ) ଶୁଣ ରଘୁନାଥ / ପଚାରିଲୁ ଯିସ

(ଖ) ଆଜ ସୁବଳକ / ପଶ୍ଚାନ୍ତର କର

(ଗ) ଶୁଣି ରଘୁନାଥ / ଋଷିଙ୍କର ବାଣୀ

୪+୨–୨+୪

ପ୍ରଣକଲ ଚନ୍ଦ୍ରା / କର ମହାଋଷି

୪+୨–୪+୨

ଅକାଶେଣ ଶିର / ଲଙ୍ଘିଲକ ଯାଇ

୪+୨–୨+୨+୨

(କ) ଅବକ୍ଷଣେ ଧାତା / ପାପ ପୁଣ୍ୟ ଧାମୀ

(ଖ) ଧରୁର୍ଯୋଣ ମେରୁ / ଦୁଃଖୀ ଜନ ବନ୍ଧୁ

(ଗ) ଦେବଙ୍କର ଭୂଲେ / ଯୁଗେ ଯୁଗେ ଆଇ

ସେହିପରି 'ତିନ' ଓ 'ଚାରି' ଅକ୍ଷର ବିଶିଷ୍ଟ ଶବ୍ଦ ମଧ୍ୟ କେତେକ ନିୟମ ଦେଇ ଗଢ଼ିକରିଛୁ ।

୩+୪—୩+୪

ଦେଖିଣ କୃତକୃତ / ହୋଇଲେ ତ୍ରିପୁରାର

ସେବକ ନମିଶେଷ / ଧାମନ୍ତ୍ର ଚନ୍ଦଧାସ୍ତି

ଏହି କ୍ରମ କେତେବେଳେ 'ଚାରି ତିନି ଚାରି ତିନ, ତିନ ଚାରିରେ ପରିବର୍ତ୍ତିତ ହୋଇଛି । ଏଥିମଧ୍ୟରୁ ବଳରାମଙ୍କର ପ୍ରିୟ ଥିଲା—ତିନ ତିନି ତିନ ଚାରି—

'ଦେବେଣ ଦୁର୍ଲଭ / ମାନବେ ଅଗୋଚର ।'

Digitized by srujanika@gmail.com

ଦେଖିତ ସୁଲଭ / ନୟନେ ଅଗୋଚର ।
ନୟନେ କଜ୍ଜଳ / ଶିରେଣ ଫୁଲଗଭା ।
କର୍ଣ୍ଣରେ ଫଡ଼କା / ମଥାରେ ମଥାମଣି ।

ଏହି ଦୁଇ ଅଂଶର କ୍ରମ ପରିବର୍ତ୍ତନକୁ ମଧ୍ୟ ସେ ବ୍ୟବହାର କରୁଥିଲେ ।

'ଗଳାରେ ଗୁପସରି ନାସାରେ ବସଣି ।'

ଏହିସବୁ କ୍ରମକୁ ଶୈଳୀ ମଧ୍ୟରେ ଅନୁସରଣ କଲାବେଳେ ସାଧାରଣତଃ ପାଦର ଆଦ୍ୟରେ ବ୍ୟବହୃତ ହୋଇଥିବା ଶବ୍ଦ ସମସ୍ତ ପାଦକୁ ପ୍ରଭାବିତ କରିଥାଏ । ଯେପରି 'ଦୁଇ' ଅକ୍ଷରବିଶିଷ୍ଟ ଶବ୍ଦ ପାଦର ଆଦ୍ୟରେ ରହିଲେ ଏହି ଜାତୀୟ ଶବ୍ଦ ପାଦ ମଧ୍ୟରେ ବହୁଳଭାବେ ବ୍ୟବହୃତ ହୁଏ ।

## ଦୁଇ ଅକ୍ଷରବିଶିଷ୍ଟ ଶବ୍ଦ :

'ଶଙ୍ଖ ଚକ୍ର ଗଦା ସାରଙ୍ଗ ଚତୁର୍ଭୁଜ ।'
'ସୃଷ୍ଟି ସିର୍ଜନ୍ତା ଦୁଃଖ ସୁଖ ଦାନେ ।'

ଦୁଇ ଅକ୍ଷରବିଶିଷ୍ଟ ଶବ୍ଦ ସହିତ ଚାରି ଅକ୍ଷରବିଶିଷ୍ଟ ଶବ୍ଦର ଉଚ୍ଚାରଣ ଦୃଷ୍ଟିରୁ ସାମଂଜସ୍ୟ ଥିବାରୁ ଆଦ୍ୟରେ ଦୁଇ ଅକ୍ଷରବିଶିଷ୍ଟ ଶବ୍ଦ ଥିଲେ ଚାରି ଅକ୍ଷରବିଶିଷ୍ଟ ଶବ୍ଦ ପାଇଁ ଅସୁବିଧା ହୁଏନାହିଁ । ସେହିପରି ଚାରିଅକ୍ଷର ବିଶିଷ୍ଟ ଶବ୍ଦ ଆଦ୍ୟରେ ରହିଲେ ଦୁଇ ଅକ୍ଷରବିଶିଷ୍ଟ ଶବ୍ଦମଧ୍ୟ ସହଜରେ ବ୍ୟବହୃତ ହୋଇଥାଏ ।

## ତିନି ଅକ୍ଷର ବିଶିଷ୍ଟ ଶବ୍ଦ :

ପାଦର ଆଦ୍ୟରେ ତିନି ଅକ୍ଷରବିଶିଷ୍ଟ ଶବ୍ଦ ରହିଲେ କବି ପାଦ ମଧ୍ୟରେ ପ୍ରାୟ ଏହି ଜାତୀୟ ଶବ୍ଦର ବହୁଳ ବ୍ୟବହାର କରିଥାନ୍ତି । ଯେପରି—

'ସର୍ବାଙ୍ଗେ ଚନ୍ଦନ ଲେପନ ମୃଗାକ୍ଷୀ ।'
'ନବୃତ୍ତି ବିଶ୍ରାମ ସେ କଳଙ୍କ ମହୀଧର' ।
'ଶୁଣିଣ ସନ୍ତୋଷ ଯେ ହୋଇଲା ମହୀଧର ।'

ବଳରାମଙ୍କ ଦାଣ୍ଡୀବୃତ୍ତ ୧୧ରୁ ୧୫ ଅକ୍ଷର ମଧ୍ୟରେ ସଙ୍କୁଚିତ ଓ ପ୍ରସାରିତ ହେଉଥିବାରୁ ଏହି ନିୟମ ବେଳେବେଳେ ଅନୁସୃତ ହେଉ ନ ଥିଲେ ହେଁ ପ୍ରତ୍ୟେକ ପାଦକୁ ଭାବାଭିବ୍ୟକ୍ତି ଦୃଷ୍ଟିରୁ ଦୁଇଭାଗରେ ବିଭକ୍ତକରି ପାଦର ଅକ୍ଷର ସଂଖ୍ୟାର ଆବଶ୍ୟକତା ଅନୁଯାୟୀ ସେ ଶବ୍ଦ ସଂଯୋଜନା କରୁଥିଲେ । ସାରଳା ମହାଭାରତ

Digitized by srujanika@gmail.com

ପର ସେ ତାଙ୍କର ସଂକ୍ରପବୃକୁ ଦୀର୍ଘ ନକରି ଗୋଟିଏ ନିର୍ଦ୍ଦିଷ୍ଟ ସୀମାମଧ୍ୟରେ ସୀମିତ ରଖୁଥିଲେ । ଫଳରେ ତାଙ୍କ ଦାଣ୍ଡୀବୃତ୍ତରୁ କଥାରସ ଅପେକ୍ଷା ସଙ୍ଗୀତର ସ୍ୱର ବେଶୀ ଶୁଣିବାକୁ ମିଳଥାଏ ।

ଶୈଳୀର ଏହି ବୈଶିଷ୍ଟ୍ୟ ମଧ୍ୟଦେଇ ଗଢ଼ କଲାବେଳେ କେତେକ ଶବ୍ଦ ବଳରାମଙ୍କର ଅତି ପ୍ରିୟ ହୋଇଯାଇଛି । ସେଥି ମଧ୍ୟରୁ ଦୁଇଟି ଶବ୍ଦ ହେଲେ, ଦ୍ରବ୍ୟ ଓ ସ୍ୱରୂ । କବି ଭଗବାନଙ୍କ କଥା କହିବା ବେଳେ 'ଦ୍ରବ୍ୟ' ଶବ୍ଦକୁ ଯେପରି ବାରମ୍ବାର ବ୍ୟବହାର କରିଛନ୍ତି ସେହିପରି ସୌନ୍ଦର୍ଯ୍ୟର ବର୍ଣ୍ଣନା କଲାବେଳେ 'ସ୍ୱରୂ' ଶବ୍ଦର ପ୍ରୟୋଗ କରିଛନ୍ତି । 'ସ୍ୱରୂ' ଶବ୍ଦର ପ୍ରୟୋଗରୁ କବିଙ୍କ ବ୍ୟକ୍ତିଗତ ଜୀବନର ସ୍ପର୍ଶ ମିଳୁଥିଲେ ହେଁ, ଏହା ଥିଲା ତାଙ୍କ ଜୀବନର ଆଦର୍ଶ । ସୁନ୍ଦର ମଧ୍ୟରେ ମଙ୍ଗଳର ସନ୍ଧାନକରିବା ଥିଲା ତାଙ୍କ ଜୀବନର ଶ୍ରେଷ୍ଠ ଲକ୍ଷ୍ୟ ।

—o—

Digitized by srujanika@gmail.com

# ସଂପାଦନାର ଉପାଦାନ

ଜଗମୋହନ ରାମାୟଣ ଓଡ଼ିଆ ସାହିତ୍ୟର ଏକ ଲୋକପ୍ରିୟ ଗ୍ରନ୍ଥ । ପ୍ରାୟ ପ୍ରତ୍ୟେକ ଗ୍ରାମରେ ଏହାର ଏକାଧିକ ପ୍ରତି ଉପଲବ୍ଧ ହୋଇଥାଏ । ପାଠର ଶୁଦ୍ଧତା ଓ ବୈଧତାପାଇଁ ଅପେକ୍ଷାକୃତ ପ୍ରାଚୀନ ଓ ଅଧିକାଧିକ ପୋଥିର ସଂଗ୍ରହ ଓ ସଙ୍କଳନ ଆବଶ୍ୟକ ଥିଲେହେଁ ଏହି ସଂପାଦନାପାଇଁ ନିମ୍ନୋକ୍ତ ପୋଥିସବୁର ସାହାଯ୍ୟ ଗ୍ରହଣ କରାଯାଇଛି ।

(କ) ପ୍ରାପ୍ତିସ୍ଥାନ—ପଟ୍ଟସର (କଟକ)

ପତ୍ର ସଂଖ୍ୟା—୧୩୮

ପୁଷ୍ପିକା—ସମସ୍ତ ଦିବ୍ୟସିଂହ ମହାରାଜାଙ୍କର ୧୧ଅଙ୍କରେ ସେ ପତ୍ରକ ସଂପୂର୍ଣ୍ଣ । ଅମ୍ବାପଡ଼ା ମୌଜେ ଗଡ଼ଜାତ ଶାସନ ଗଜାନନ୍ଦପୁର ମହାଜନ ଶିବରାଜ ମିଶ୍ରଙ୍କ ପୋସ୍ତକ ! ଲେଖକାର ପଦ୍ମଲଭ ମିଶ୍ରେ । ଶ୍ରୀରାମ ରକ୍ଷା କରିବେ ଅଧର୍ମ ଅବିବେକ ପଦ୍ମଲଭ ମିଶ୍ରକୁ । ଶ୍ରୀ ଗୋପାଳ ଶରଣ ।

ପୋଥିର ଲମ୍ବା—୧୦ ଇଞ୍ଚ

ପୋଥିର ଚଉଡ଼ା—୨·୬ ଇଞ୍ଚ

ପ୍ରତ୍ୟେକ ପୃଷ୍ଠାରେ ୪ ଧାଡ଼ି ଓ ୬୭ ଅକ୍ଷର ।

(ଖ) ପ୍ରାପ୍ତିସ୍ଥାନ—ଉତ୍କଳ ବିଶ୍ୱବିଦ୍ୟାଳୟ ପୋଥି ସଂଗ୍ରହାଳୟ,

cat No $\frac{\text{ol}}{125}$

ପତ୍ର ସଂଖ୍ୟା—୧୬୫

ପୁଷ୍ପିକା—ରାମଚନ୍ଦ୍ର ଦେବ ମହାରାଜାଙ୍କ...ବୁଧବାରେ ବେଳ ପ୍ରହରକ ମଧ୍ୟରେ ଏ ଗ୍ରନ୍ଥ ସମାପ୍ତ ହୋଇଲେ । ଶ୍ରୀ ମଧୁକେଶ୍ୱର ମହାପ୍ରଭୁଙ୍କ ପ୍ରଜାହାସ୍ତ ଅକ୍ଷ (ଅଧମ ?) ଅରକ୍ଷ ଶ୍ରୀ ରଥ ପଣ୍ଡା ଲେଖକାର । ଶ୍ରୀ ମହାଜନ ଜଗନ୍ନାଥ......ଗ୍ରନ୍ଥ ଲେଖାଇଲେ । ସେ ଗ୍ରନ୍ଥ ଅଧିକାରୀ ଶ୍ରୀ ଚକ୍ରଧର ରଥ ଓ ଶ୍ୟାମସୁନ୍ଦର ଉଥ । ଆଉ ଅନ୍ୟ ଏଥିରେ କାହାର ଦାବ ନାହିଁ । ଶ୍ରୀ ଦୁର୍ଗା ମାଧବ ଶରଣ ।

ପୋଥିର ଲମ୍ବା—୧୦ ଇଞ୍ଚ

ପୋଥିର ଚଉଡ଼ା—୨ ଇଞ୍ଚ

ପ୍ରତ୍ୟେକ ପତ୍ରରେ ୫ ଧାଡ଼ି ଓ ପ୍ରାୟ ୯୫ ଅକ୍ଷର ।

Digitized by srujanika@gmail.com

(ଗ) ପ୍ରାପ୍ତି ସ୍ଥାନ—ଉତ୍କଳ ବିଶ୍ୱବିଦ୍ୟାଳୟ, ପୋଥି ସଂଗ୍ରହାଳୟ,

cat No $\frac{\text{ol}}{113}$

ପତ୍ର ସଂଖ୍ୟା—୩୦୪

ପୁଷ୍ପିକା—ଶ୍ରୀ ବଟେଶ୍ୱର ଗୋସାଇ ଉଦ୍ଧାର କରିବେ ଅଧମ ଲେଖକାର ପଠାଣ ମହାପାତ୍ରଙ୍କୁ । ଶ୍ରୀ ରାଧାକାନ୍ତ ଶରଣ । ଗୁରୁଦେବ ଶ୍ରୀ ଚରଣେ ଶରଣ । ଶ୍ରୀ ଦିବ୍ୟ ସିଂହ ଦେବ ମହାରାଜାଙ୍କ ୪ ଅଙ୍କ କନ୍ୟା ୨ ଦିନେ ରବିବାରେ ଏ ପୋସ୍ତକ ଲେଖା ସମ୍ପୂର୍ଣ୍ଣ ହୋଇଲା । ଏ ପୋସ୍ତକ ତଥି ପଚ୍ଛିମା ଗେଲପୁର ଗ୍ରାମରେ ରହଣି ଅପ୍ରତି ବେହେରାର ।

ପୋଥିର ଲମ୍ବ—୧୬·୫ ଇଞ୍ଚ

ପୋଥିର ଚଉଡ଼ା—୧ ଇଞ୍ଚ

ପ୍ରତ୍ୟେକ ପତ୍ରରେ ୪ ବା ୫ ଧାଡ଼ି ଓ ପ୍ରାୟ ୭୮ ଅକ୍ଷର ।

(ଘ) ପ୍ରାପ୍ତି ସ୍ଥାନ—ଉତ୍କଳ ବିଶ୍ୱବିଦ୍ୟାଳୟ, ପୋଥି ସଂଗ୍ରହାଳୟ,

cat No $\frac{\text{ol}}{145}$

ପତ୍ର ସଂଖ୍ୟା—୩୦୦

ପୁଷ୍ପିକା—ନଷ୍ଟ ହୋଇଯାଇଛି ।

ପୋଥିର ଲମ୍ବ—୧୮ ଇଞ୍ଚ

ପୋଥିର ଚଉଡ଼ା—୧ ଇଞ୍ଚ

ପ୍ରତ୍ୟେକ ପତ୍ରରେ ୩ ବା ୪ ଧାଡ଼ି ଓ ପ୍ରାୟ ୮୮ ଅକ୍ଷର ।

(ଙ) ପ୍ରାପ୍ତି ସ୍ଥାନ—ଖରସୂଆଁ ଗଡ଼,

ପତ୍ର ସଂଖ୍ୟା—୨୬୭

ପୁଷ୍ପିକା—ଶ୍ରୀ ରାମଚନ୍ଦ୍ର ଦେବ ମହାରାଜାଙ୍କର ଶୁଭ—ସନ ୧୨୨୯ ସାଲେ ଅ ୯ ଙ୍କ ସିଂହ ମାସ ୨୬ ଦିନେ କୃଷ୍ଣପକ୍ଷ ଏକାଦଶୀ ଦିନ ବେଳ ୭ ଘଡ଼ିଠାରେ ନିଜ ଖରସୂଆଁ ଗଡ଼ ଗ୍ରାମରେ ଏ ପୁସ୍ତକ ସଂପୂର୍ଣ୍ଣ ହୋଇଲା । ଏ ପୁସ୍ତକ ବନମାଳୀ ମହାନ୍ତିଙ୍କର ।

ପୋଥିର ଲମ୍ବା—୨୨·୫ ଇଞ୍ଚ

ପୋଥିର ଚଉଡ଼ା—୧·୫ ଇଞ୍ଚ

ପ୍ରତ୍ୟେକ ପତ୍ରରେ ୪ ଧାଡ଼ି ଓ ପ୍ରାୟ ୯୨ ଅକ୍ଷର ।

Digitized by srujanika@gmail.com

(ଚ) ପ୍ରାପ୍ତି ସ୍ଥାନ—ଉତ୍କଳ ବିଶ୍ୱବିଦ୍ୟାଳୟ, ପୋଥି ସଂଗ୍ରହାଳୟ ।
କାଗଜ ନକଲ । ଏହି ଲେଖାକୁ ମିଳାଇଛନ୍ତି ବଛନ୍ଦଚରଣ ପଟ୍ଟନାୟକ । ନକଲ ୨୦-୧୧-୩୨ ରେ ଆରମ୍ଭହୋଇ ପ୍ରାୟ ୮-୧-୩୩ ରେ ସମାପ୍ତ ହୋଇଛି ।

ପୃଷ୍ଠା ସଂଖ୍ୟା—୩୭୭

ପୁଷ୍ପିକା—[ଏଥିରେ ଏକ ଦୀର୍ଘ ପୁଷ୍ପିକା ପଦ୍ୟାକାରରେ ରଚିତହୋଇ ସଂଯୋଜିତ ହୋଇଥିଲେହେଁ ମୂଳ ପୋଥିରେ ସମସ୍ତ ଦିଆଯାଇ ନାହିଁ । ଲେଖନ-କାରଙ୍କ ନାମ ଦାମୋଦର ଦାସ । ସେ ଜାତିରେ ଦୈବଜ୍ଞ ଗଣକ ଥିବା ମଧ୍ୟ ଜଣାଯାଏ ।

(ଛ) ପ୍ରାପ୍ତି ସ୍ଥାନ—ଜମାପଡ଼ା,

ପୃଷ୍ଠା ସଂଖା—୨୭୭

ପୁଷ୍ପିକା ଶ୍ରୀ ବୀରକେଶ୍ୱର ଦେବ ମହାରାଜାଙ୍କର ବିଜେ ଶୁଭ ରାଜ୍ୟେ । ସମସ୍ତ ୮ ଅଙ୍କ ୧୨୭୬ ସାଲ ତୁଳାର ୨୨ଦିନେ ମାର୍ଗଶିର ମାସ ଚତୁର୍ଥୀ ଦିବସରେ ଦସ ଘଡ଼ିଠାରେ ଏ ପୁସ୍ତକ ସମ୍ପୂର୍ଣ୍ଣ ହୋଇଲେ । ଶ୍ରୀ ଶୁଭମସ୍ତୁ ।

ପୋଥିର ଲମ୍ବା—୧୭ ୨ ଇଞ୍ଚ

ପୋଥିର ଚଉଡ଼ା—୧.୫ ଇଞ୍ଚ

ପ୍ରତ୍ୟେକ ପତ୍ରରେ ୪ ବା ୫ ଧାଡ଼ି ଓ ପ୍ରାୟ ୯୦ ଅକ୍ଷର ।

—o—

Digitized by srujanika@gmail.com

## ସଂପାଦିତ ସାମଗ୍ରୀର ବିଶ୍ଳେଷଣ :

ଉପରୋକ୍ତ ପୋଥିସବୁକୁ ସ୍ଥାନ ଓ ସମୟ ଦୃଷ୍ଟିରୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ଏଥିରୁ କେବଳ 'ଙ' ଅର୍ଥାତ୍ ଖରସୁଆଁ ଗଡ଼ ପୋଥି ବ୍ୟତୀତ ଅନ୍ୟ ସବୁ ପୋଥି କଟକ ଓ ପୁରୀ ଜିଲ୍ଲାର । କବିଙ୍କ ଜନ୍ମସ୍ଥାନ ପୁରୀ ଜିଲ୍ଲା ହୋଇଥିବାରୁ ଏସବୁ ପୋଥିର ପ୍ରାମାଣିକତା ବିଷୟରେ ସନ୍ଦେହ ଆସେ ନାହିଁ । ଅନ୍ୟ ପକ୍ଷରେ 'ଙ' ପୋଥିରେ କେବଳ ବହୁ ପ୍ରକ୍ଷେପ ଅଂଶର ସମାବେଶ ହୋଇଛି, ତାହା ନୁହେଁ, ଏଥିରେ ଶବ୍ଦପ୍ରୟୋଗ ଓ ବାକ୍ୟ ଗଠନ କ୍ଷେତ୍ରରେ ବହୁ ପରିବର୍ତ୍ତନ ସଂସାଧିତ ହୋଇଛି । 'ଙ' ପୋଥିରେ ସମୟ ଓ ଦୂରତ୍ୱର ବ୍ୟବଧାନ ହେତୁ ପାଠ ପରିବର୍ତ୍ତିତ ହୋଇଯାଇଛି । ପ୍ରାୟ ସେହି ସମୟରେ ଲିପିବଦ୍ଧ ହୋଇଥିବା 'ଛ' ପୋଥି କଟକ ଜିଲ୍ଲାର ହୋଇଥିବାରୁ ଏଥିରେ ପାଠ ବିଶେଷଭାବେ ପରିବର୍ତ୍ତିତ ହୋଇପାରି ନାହିଁ । ସମୟ ଦୃଷ୍ଟିରୁ 'ଗ' ପୋଥି ସବୁଠାରୁ ପ୍ରାଚୀନ । ଏହାର ଲିପିକାଳ ୧୬୯୩ ଖ୍ରୀଷ୍ଟାବ୍ଦ । କବିଙ୍କ ସ୍ୱହସ୍ତ ଲିଖିତ ପୋଥି ଓ 'ଗ' ପୋଥି ମଧ୍ୟରେ ଅନ୍ୟ ଗୋଟିଏ ପୋଥିର ସମ୍ଭାବନା କରାଯାଇପାରୁ ଥିଲେହେଁ, ଏହା ସ୍ୱହସ୍ତ ଲିଖିତ ପୋଥିର ପ୍ରତିଲିପି ମଧ୍ୟ ହୋଇପାରେ । ସେହିପରି 'କ' ପୋଥି । ଏହାର ଲିପିକାଳ ୧୭୦୫ ଖ୍ରୀଷ୍ଟାବ୍ଦ । 'କ' ଓ 'ଗ' ପୋଥି ପ୍ରାଚୀନ ହେଲେହେଁ 'କ' ପୋଥି ବହୁ ସ୍ଥଳରେ ଶୁଦ୍ଧ ପାଠ ଦେଇ-ଥିବାରୁ ଏହାକୁ ଆଦର୍ଶ ପୋଥି ରୂପେ ଗ୍ରହଣ କରାଯାଇଛି । ନିମ୍ନରେ ପାଠାଲୋଚନା ଦୃଷ୍ଟିରୁ ବିଭିନ୍ନ ପ୍ରତିଲିପିର ଏକ ତୁଳନାତ୍ମକ ବିବରଣ ପ୍ରଦାନ କରାଗଲା ।

(କ) ଦଶରଥଙ୍କ ପୁତ୍ରେଷ୍ଟି ଯାଗ ବେଳେ ବହୁ ଦେଶର ରାଜା ଏକତ୍ର ହୋଇଥିଲେ । ସେଥିରୁ 'ମୁଗଲ କୃତ ରାସ୍ୱେ' ଅନ୍ୟତମ । ଏହି ପଂକ୍ତିର ପାଠ ବିଭିନ୍ନ ପୋଥିରେ ବିଭିନ୍ନ ଭାବେ ଗୃହୀତ ହୋଇଅଛି ।

(କ) ଦୋହରା ଉଜାଣି ମୁଗଲ କୋଶ୍ୱେରାସ୍ୱେ
ଶ୍ରୀହଟ୍ଟ ଚମ୍ପାବତୀ ନେପାଳ ନପ ରାସ୍ୱେ ।

(ଖ) ଦୋହରା ଉଜାଣି ମୁଗଲ କୁତରାଏ,
ଶ୍ରୀହଟ୍ଟ ପାଟଣା ନେପାଳ ନୃପରାଏ ।

(ଗ) ଦୋହରା ଉଜାଣି ମୁଗ ଉନକୁର ରାଏ,
ଶ୍ରୀହଟ୍ଟ ଚମ୍ପା ଅଜ ନପାଳ ନୃପରାଏ ।

(ଘ) ଦୋହରା ଉଜାଣି ମୁଗଲ କେତ ରାସ୍ୱେ
ହେଟ ଚମ୍ପାବତୀ ନେପାଳ ନୃପ ଆସ୍ୱେ ।

Digitized by srujanika@gmail.com

(ଙ) ମରହଟ୍ଟ ପାଟଣା ଅମର ଦେଶ ଆସ୍ଥେ
ଆମନ୍ତ୍ରଣ ପାଇଣ ଅଇଲେ ସର୍ବ ଗ୍ରସ୍ଥେ ।

(ଚ) ଦେହୁରୀ ଉଯାଣି ମଧୁ କୋଟଗ୍ରାଏ
ଦ୍ୱେଠ ଚମ୍ପାବତୀ ନେପାଳ ନୃପ ଗ୍ରାଏ ।

(ଛ) ଦୋହୁରୀ ଉଜାଣି ମୁଘଲ ନୋଳଗ୍ରାଏ
ଶ୍ରୀହଟ୍ଟ ନେପାଳ ଚମ୍ପା ଗୋପାଳ ଗ୍ରାଏ ।

ଏହି ପଦରେ 'କ', 'ଖ', 'ଗ' 'ଘ', 'ଙ', 'ଚ', 'ଛ' ରେ 'ଦୋହୁରୀ ଉଜାଣି' ଶବ୍ଦ ଅବିକୃତଭାବେ ଅଛି । 'ମୁଗଲ' ଶବ୍ଦ 'ଗ' ରେ 'ମୁଗହନ' ଓ 'ଚ' ରେ 'ମଧୁ' ରେ ପରିବର୍ତ୍ତିତ ହୋଇଥିଲେହେଁ 'ଗ' ପୋଥିରେ 'ଲ' କୁ 'ହ' ପଢ଼ାଯାଇ ଏକ ବିକୃତ ଶବ୍ଦ 'ମୁଗହନ'ର ସୃଷ୍ଟି ହୋଇଛି । 'ଚ' ପୋଥିର ଲିପିକାର 'ମୁଗନ' ଶବ୍ଦକୁ ଅସ୍ୱାଭାବିକ ମନେକରି 'ମଧୁ' ( ଏକ ନୂଆ ପାଠ ) ର ସଂଯୋଜନାଦ୍ୱାରା ବୋଧହୁଏ ଏକ ହିନ୍ଦୁ ରାଷ୍ଟ୍ରର ପରିକଳ୍ପନା କରିଛନ୍ତି । ଅଥଚ 'ମଧୁ' ସହ ପରି ଅନ ଦେ 'କୁଟ'କୁ ଅପରିବର୍ତ୍ତିତଭାବେ ଗ୍ରହଣକରିବା ଫଳରେ ଦୁଇ ଶବ୍ଦର ମେଳ ବସିନାହିଁ । ଏହି ପରିବର୍ତ୍ତନ ସତ୍ତ୍ୱେ 'ମୁଗଲ' ର 'ମ' ଲୋପପାଇ ନାହିଁ । ତେଣୁ ସବୁ ପୋଥି ଗୋଟିଏ କଥାରେ ଏକମତ ଯେ ଏ ଶବ୍ଦ 'ମୁଗଲ' । ଏହି ପାଠ ଗ୍ରହଣ କରିନେବା ପରେ ମଧ୍ୟ ସନ୍ଦେହ ଯାଏ ନାହିଁ । କାରଣ ଉଦ୍ୟସିଂହ ଦେବଙ୍କ ବେଳକୁ ଓଡ଼ିଶାରେ ମୁଗଲ ରାଜ୍ୟ ସୁପ୍ରତିଷ୍ଠିତ ହୋଇ ସାରିଥିଲା । ସେଥିପାଇଁ ଲିପିକାରଙ୍କୁ ଏକଥା ବାଧି ନାହିଁ । ଅଥଚ ବଳରାମଙ୍କ ବେଳକୁ ମୁଗଲମାନେ ଏ ଦେଶରେ ମାତ୍ର ପ୍ରବେଶ କରୁଥିଲେ । ବଳରାମ ଏତେ ଚପଳ ସେମାନଙ୍କ ଆଧିପତ୍ୟକୁ ସ୍ୱୀକାରକରି ଦଶରଥଙ୍କ ପୁତ୍ରେଷ୍ଟି ଯାଗପରି ପବିତ୍ର ଉତ୍ସବରେ ସେମାନଙ୍କୁ ସ୍ଥାନ ଦେବା କିପରି ସମ୍ଭବ ? ବୃଦ୍ଧ ସୁଧାନିଧି ଗ୍ରନ୍ଥରେ ଶିବଭକ୍ତ ନାୟକପାଇଁ କନ୍ୟା ଖୋଜିବା ସମୟରେ ଗୁରମାନେ 'ମୁଘଲ' ଦେଶରେ ପ୍ରବେଶ କରିଥିଲେ । ସେଠି ହିନ୍ଦୁ ମୁସଲମାନ ବିଚାର ନଥିଲା । ସେହିପରି ଅଯୋଧ୍ୟାରେ ଯାଗ ହେଉଥିବାବେଳେ ନିକଟବର୍ତ୍ତୀ ପ୍ରତାପୀ ମୋଗଲ ନବାବ ନ ଆସିବେ ବା କାହିଁକି ? ବରଂ 'ମୁଗଲ କୁଟବନ୍ଧେ' ପ୍ରୟୋଗରେ ଆକ୍ରମଣକାରୀ ମୁଗଲମାନଙ୍କ ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଛି । ଏହା ଥିଲା ସେ ଯୁଗର ସ୍ୱାଭାବିକ ପରିସ୍ଥିତି । ବଳରାମ ଏହି ଶବ୍ଦ ପ୍ରୟୋଗ କରିବାଦ୍ୱାରା ନିଜ ଯୁଗର କଥାହିଁ କହିଛନ୍ତି । 'ଙ' ପୋଥି ଲେଖାହେବା ବେଳକୁ ମୋଗଲମାନଙ୍କ ପ୍ରତାପ ଦେଶରୁ ଉଭେଇସାରି ମରହଟ୍ଟା ପାଟଣା ଅମର ଦେଶରେ ପରିଣତ ହୋଇଛି । ତେଣୁ ଲିପିକାର ମଧ୍ୟ ପୁରୁଣା ଦେଶ ସବୁ ସ୍ଥାନରେ

Digitized by srujanika@gmail.com

ନୂଆ ଶବ୍ଦରୂପେ ପ୍ରତିଷ୍ଠିତ ହୋଇଥିବା ମରହଟ୍ଟା ଦେଶପ୍ରତି ଜନର ସମସ୍ତ ଶ୍ରଦ୍ଧା ଅକାଡ଼ି ନେଇଛନ୍ତି ।

'ମୁଗଲ'ର 'ମୁଗଲ୍ଲ' ପାଠ ବିକୃତ, କିନ୍ତୁ 'ମଧୁ' ପାଠ ଇଚ୍ଛାକୃତ । 'ମୁଗଲ'କୁ 'ମଧୁ' ବା 'ମଥୁରା' କରିବାଦ୍ୱାରା ଯୁଗରୁଚି ପରିବର୍ତ୍ତନର ଇତିହାସ ସଙ୍କଳିତ । ଏଥିରେ ମୁଗଲମାନଙ୍କ ପ୍ରତି ବିତୃଷ୍ଣା ଓ ମଥୁରା ଦେଶ ପ୍ରତି ଆସକ୍ତିହିଁ ପ୍ରତିଫଳିତ ।

'କୁଚ' ଶବ୍ଦର 'ଭୋଟ୍ଟେ' ବା 'କେଚ' ଓ 'କୁର' ବା 'କୋର' ପାଠାନ୍ତରରୁ ସେହିପରି ଦେଶର ପରିବର୍ତ୍ତିତ ସଂସ୍କୃତିକୁ ଜାଣିହୁଏ । ମୋଗଲ ଜାତି ଯେତେବେଳେ ଆକ୍ରମଣକାରୀ ସେତେବେଳେ 'କୁଚ' ଶବ୍ଦର ପ୍ରୟୋଗ ଯେତେବେଳେ ଉଦ୍ଧତ, ସେତେବେଳେ 'କୋଟ୍ଟେ' କୋପ୍ପ ପୁଣି ଯେତେବେଳେ ନିଷ୍ଠୁର, ସେତେବେଳେ 'କୁର' ବା 'କୋର' ।

ଗୃହୀତ ହୋଇଥିବା ସାତୋଟି ପୋଥି ମଧ୍ୟରୁ ଓଡ଼ଶାରୁ ସଂଗୃହୀତ ଛଅଟି ପୋଥିରେ ପାଠର ଭିନ୍ନତା ସତ୍ତ୍ୱେ ମୂଳପାଠକୁ ଚିହ୍ନିବାରେ ଅସୁବିଧା ହୁଏନାହିଁ । ଅଥଚ ଗୋବିନ୍ଦ ରଥଙ୍କ ପ୍ରକାଶିତ ପୁସ୍ତକର ପାଠରେ ମୂଳଗ୍ରନ୍ଥର ଆଭାସ ମିଳେ ନାହିଁ । ତାଙ୍କ ପାଠ ହେଉଛି—

ଶ୍ରୀହଟ୍ଟ ପାଟଣା ଯେ କାଉଁସ ଦେଶ ସ୍ୱୟେ
ନିମନ୍ତ୍ରଣ ପାଇ ଆସି କରନ୍ତି ବିଜୟେ ।

ଏହି ପାଠରେ କେବଳ 'ମୁଗଲ କୁଚ ସ୍ୱୟେ' ନୁହେଁ, ଦୋହରା, ଉଜାଣି, ଚମ୍ପାବତୀ, ନେପାଳ ପ୍ରଭୃତି ଦେଶ ମଧ୍ୟ ଲୋପ ପାଇଯାଇଛି । ଟିକିଏ ଲକ୍ଷ୍ୟ କଲେ 'ଙ' ପୋଥି ସହ ଏହାର ସମାନତା ଥିବା ଜାଣିହୁଏ । ଶ୍ରୀହଟ୍ଟା—ମରହଟ୍ଟା, କାଉଁସ—ଅମର, ନିମନ୍ତ୍ରଣ—ଆମନ୍ତ୍ରଣ, ପାଇ—ପାଇଣ, ଅସି କରନ୍ତି ବିଜୟେ—ଅଇଲେ ସବ ସ୍ୱୟେ, ପ୍ରଭୃତି ଶବ୍ଦରେ ପରିବର୍ତ୍ତିତ ହୋଇ ଥିଲେହେଁ କଥାର ସ୍ୱର ଏକା । ମୂଳପାଠରୁ ଦୂରେଇ ଗିବା ଫଳରେ ପରବର୍ତ୍ତୀ ଯୁଗରେ ଯେଉଁ ନୂଆ ପ୍ରତିଲିପି ସବୁ ପ୍ରସ୍ତୁତ ହୋଇଥିଲା, ଏହା ତାହାର ଏକ ଉଦାହରଣ । ଏହା ହେଉଛି ଜଗମୋହନ ରାମାୟଣର ପରିବର୍ତ୍ତିତ ଓ ପରିବର୍ଦ୍ଧିତ ଏକ ସଂସ୍କରଣ । ବିଭିନ୍ନ ସମୟରେ ଲିପିବଦ୍ଧ ହୋଇଥିବା ପାଠାନ୍ତରର ଅଧ୍ୟୟନ ଓ ଅନୁଶୀଳନରୁ ଦେଶର ସାଂସ୍କୃତିକ ଇତିହାସକୁ ଜାଣିହୁଏ । ଯୁଗରୁଚିର ପରିବର୍ତ୍ତନ ଯୋଗୁଁ ଶବ୍ଦସବୁ ପରିବର୍ତ୍ତିତହୋଇ ନୂଆ ରୂପ ଗୃହୀତ ହୁଏ । ଏହିପରି ଗୋଟିଏ ପଦ ଦେଉଛି, ଉପର୍ଯ୍ୟୁକ୍ତ ଉଦାହରଣ ।

Digitized by srujanika@gmail.com

ପ୍ରକ୍ଷେପ୍ତି ସାଗର ଆଚରଣ ବଧ ବ୍ୟାପାରରେ ଅଷ୍ଟାଦଶଙ୍କ ନାଟଗାର୍ଘ ଭାଷଣର ଏକ ଅଂଶ ହେଉଛି—

(କ) ନିର୍ଦ୍ଦୋଷ କର ହୋଇବ ଅନେକ ପୁତ୍ର
ତାହାର ଗ୍ରୁଲ ସେ ସ୍ୱେଥକୁ ପବନ ।

(ଖ) ନିର୍ଦ୍ଦୋଷ ଗାଇର ଯେବଣ ସେ ପୁତ୍ର
ତାହାର ଗ୍ରୁଲ ସେ ସ୍ୱେଥକୁ ପବିତ୍ର ।

(ଗ) ନିର୍ଦ୍ଦୋଷି ଲୋକ ହୋଇବ ପୁତ୍ର ଜାତ
ତାହାର ପୁତ୍ର ସେ ତାହାକୁ ପଗ୍ରପତ ।

(ଘ) ତ୍ରିଦୋଷ ଦାନ ହୋଇବ ବହୁତ ପୁତ୍ର
ତାହା ରକ୍ଷା କଲେଣ ହୋଇବ ପ୍ରାପତ ।

(ଙ) ନିର୍ଦ୍ଦୋଷି ଗାବର ହୋଇଥିବ ପୁତ୍ର
ସେ ବୃଷଭର ମଳ ସ୍ୱେଥକୁ ପବନ ।

(ଚ) କପି ପାଶଲେ ସ୍ୱଏ ପାଇବ ଅନେକ ପୁତ୍ର
ଯାହା ଇଚ୍ଛା କଲେଣ ଯେ ଯାଇବ ସେ ହୋଇବ ପଗ୍ରପତ ।

(ଛ) ନିଦୋଷୀ ଗାଈର ହୋଇବ ସେଷ୍ଠ ପୁତ୍ର
ତାହାର ଗ୍ରୁଲ ସେ ସ୍ୱେଥକୁ ଗନ୍ଧକ ।

ଏହି ପାଦରେ ଦ୍ୱିତୀୟ ପାଦ 'କ', 'ଖ', ଓ 'ଛ'ରେ ସମାନ । 'ଙ' ରେ 'ତାହାର' ସ୍ଥାନରେ 'ସେ ବୃଷଭର' ଓ 'ଗ୍ରୁଲ' ସ୍ଥାନରେ 'ମଳ' ଗୃହୀତ । 'ଚ' ରେ 'ଯାହା ଇଚ୍ଛା 'କ' ରେ 'ଇ' କୁ 'ର' ଓ 'ଙ୍କ' କୁ 'ଲ' ର ବିକୃତ ପାଠଭାବେ ଗ୍ରହଣ କଲେ 'ଯାହାର ଗ୍ରୁଲ' ଆସେ । ମୂଳପାଠକୁ ଠିକଭାବେ ପଢ଼ି ନ ପାରିବା ଫଳରେ ଏପ୍ରକାର ପ୍ରମାଦ ପ୍ରବେଶକରି ସମସ୍ତ ବାକ୍ୟକୁ ଦୂଷିତ କରୁଥିବାରୁ ବହୁ ଉଦାହରଣ ଦେଖିବାକୁ ମିଳିଥାଏ । ଏହିପରି ଗୋଟିଏ ଦୃଷ୍ଟାନ୍ତ ହେଉଛି, ଏସୋରର 'ଏତ ସାର' ପାଠ । ଏଥିରେ 'ଧୋ'ର ଏକାରକୁ 'ତ' ରୂପେ ଗ୍ରହଣକରି ନେବାପରେ ଏତସାରର ଉଦ୍ଭବ । ସେହିପରି ଉପସ୍ଥାପନାଭାବେ 'ତ'କୁ ଏକାର ରୂପେ ମଧ୍ୟ ପଢ଼ା ଯାଇପାରେ । ପ୍ରଥମ ଉଦାହରଣରେ ପ୍ରାଚୀନ ଲିପି ଅନଭିଜ୍ଞତା ଓ ଦ୍ୱିତୀୟ ଅର୍ଥ ଗ୍ରହଣରେ ଅସମର୍ଥତାହିଁ ଦେଖିବାକୁ ମିଳିଥାଏ । ଏପରି ସ୍ଥାନରେ ସମ୍ପାଦକଙ୍କୁ

Digitized by srujanika@gmail.com

ଅନ୍ତଃସାକ୍ଷ୍ୟ ଓ ଅର୍ଥସଙ୍ଗତି ଉପରେ ନିର୍ଭର କରିବାକୁ ପଡ଼େ । ବୈଜ୍ଞାନିକ ପଦ୍ଧତି ପାଠ ନିର୍ଣ୍ଣୟ କରିବାରେ ବିଶେଷ ସହାୟକ ହେଲେହେଁ, ସମ୍ପାଦକଙ୍କୁ ଅନେକ ସମୟରେ ନିଜର ବୁଦ୍ଧି, ବିଚାର, ତର୍କ ଓ ଜ୍ଞାନର ତର୍ଜମା କରିବାକୁ ହୋଇଥାଏ । ଏହିପରି ଭାବେ 'ତାହାର ଗ୍ରୁଲ ସେ ଏଥିକୁ ପବିତ୍ର' ପାଠ ପରବର୍ତ୍ତୀ ପାଦ 'ଚନ୍ଦ୍ରେ ବସି ଜପିବ ପଶ୍ଚିମ ମୁଖ ହୋଇ' ସହ ଅର୍ଥ ଦୃଷ୍ଟିରୁ ସଙ୍ଗତି ରକ୍ଷା କରୁଥିବାରୁ ଏହାର ପୂର୍ବବର୍ତ୍ତୀ ପାଦରେ ପ୍ରଶ୍ନ ହେଉଛି—କାହାର ଗ୍ରୁଲ ? 'ଖ', 'ଙ' ଓ 'ଛ' ରେ ଏହାର ଉତ୍ତର ହେଉଛି ନିର୍ଦ୍ଦୋଷୀ ଗାଈର ପୁତ୍ରର ଗ୍ରୁଲ । 'ପୁତ୍ର' ପାଠ ସବୁ ପୋଥିରେ ଅଛି । ତେଣୁ 'ଖ' 'ଙ' ଓ 'ଛ' ଉପରେ ନିର୍ଭର କଲେ ଏହା ହୁଏ 'ନିର୍ଦ୍ଦୋଷୀ ଗାଈର ପୁତ୍ର' । 'କ' ପୋଥିରେ 'ଇ' କୁ 'କ' ପଢ଼ା ଯାଇଛି ଓ 'ଗା' ଲୋପ ପାଇଛି । 'ଗ' ପୋଥି ପାଠରୁ କିଛି ଅର୍ଥ ହୁଏ ନାହିଁ ଓ ପରବର୍ତ୍ତୀ ପାଠ ସହ ଅର୍ଥ ମେଳ ମଧ୍ୟ ନାହିଁ ।

ପୁନଶ୍ଚ ଯାଗପାଇଁ ଏହା ବୋଧହୁଏ ସେ ଯୁଗର ଏକ ପ୍ରଚଳିତ ବିଧି ଥିଲା । ଏ ବିଷୟରେ କେହି ପ୍ରଶ୍ନ ବି କରୁ ନ ଥିଲେ । କିନ୍ତୁ ଯେତେବେଳେ ମୁସଲମାନ ରାଜତ୍ୱ ଏ ଦେଶରେ ପ୍ରବେଶ କଲା, ସେତେବେଳେ ମୁସଲମାନଙ୍କ ଗୋବଧରୁ ହିନ୍ଦୁମାନଙ୍କ ମଧ୍ୟରେ ଗୋଜାତିର ରକ୍ଷାପାଇଁ ଏକ ପ୍ରତିରୋଧ ଭାବନା ଜାଗ୍ରତ ହୋଇଥିଲା । ସେହି ପ୍ରବୃତ୍ତିରୁ ମୂଳପାଠ ପରିବର୍ତ୍ତିତ ହୋଇଗଲା । ଗାଈ ସମ୍ପୂର୍ଣ୍ଣଭାବେ ଲୋପ ପାଇଗଲା ଓ 'ଗ୍ରୁଲ' ସ୍ଥାନରେ 'ମଲ' ଆସିଲା । ଅର୍ଥରେ ସଙ୍ଗତି ଆସି ପାରିଲା ନାହିଁ । ଏସବୁ ସତ୍ତ୍ୱେ 'କ' ପୋଥି ପାଠରୁ ମୂଳପାଠର ସ୍ୱରୂପ ସମ୍ପୂର୍ଣ୍ଣ ଲୁପ୍ତ ହୋଇ ପାରିନାହିଁ । ଏହି ପଦରେ ମଧ୍ୟ ଗୋବିନ୍ଦ ରଥଙ୍କ ଗୃହୀତ ପାଠ ଓ 'ଙ' ପୋଥିର ପାଠରେ ସାଦୃଶ୍ୟ ପରିଲକ୍ଷିତ ହୁଏ । ବହିରେ ଥିବା ପାଠ ହେଉଛି—

'ନିର୍ଦ୍ଦୋଷୀ ଗାଈର ଏକ ହୋଇଥିବ ପୁତ୍ର
ସେ ଗାଈର ମଲ ମୂତ୍ର ନିସ୍ତାକୁ ପବିତ୍ର' ।

ତେବେ 'ଙ' ପୋଥି ଗାଈ ସ୍ଥାନରେ ବୃଷଭକୁ ରଖି ମୂଳପାଠର ଅଧିକ ନିକଟବର୍ତ୍ତୀ ହୋଇପାରିଛି । 'ଘ' ପୋଥି ଏସବୁ ଅଡୁଆକୁ ନ ଯାଇ 'ନିର୍ଦ୍ଦୋଷ'କୁ 'ନିଦୋଷରେ ପରଶତନିର ଦାନର ମାହାତ୍ମ ଘୋଷଣା କରିଛି ।

ବିଭିନ୍ନ ପାଠରୁ ଦେଶର କେବଳ ସାଂସ୍କୃତିକ ଇତିହାସ ଯେ ଜାଣିହୁଏ ତାହା ନୁହେଁ, ସେ ଯୁଗରେ ପ୍ରଚଳିତ ଉଚ୍ଚାରଣ ପଦ୍ଧତି ଉପରେ ସମ୍ୟକ ଧାରଣା କରିହୁଏ । ବିଭିନ୍ନ ପୋଥିରୁ ଏହିଭଳି କେତେକ ଉଦାହରଣ ସଂଗ୍ରହ କରାଯାଇପାରେ ।

Digitized by srujanika@gmail.com

| (କ) | (ଖ) | (ଗ) | (ଙ) |
|---|---|---|---|
| ହବୁର | | | ହବୁଲ |
| ଗୁଜୁଗୁଖ୍ଯା | | | ଗୁଜୁଘୁଖ୍ଯା |
| ବାହାନ୍ତ | | ବାହାରନ୍ତ | |
| କହଇ | | | କହୋଇ |
| ଚୋଟି | ତଣ୍ଡି | | |
| ଖାଆନ୍ତୁ | | | ଖାସ୍ୱାନ୍ତୁ |
| ଅଦ୍ରାଜିକ | | | ଅଦାତ୍ୱିକ |
| ନସକର | | ଲସକର | |
| ଧାଡ଼ି | | | ଦାଢ଼ି |

ଯୁଗର ରୁଚ ପରବର୍ତ୍ତିତ ହେବା ସଙ୍ଗେ ସଙ୍ଗେ କେତେକ ଶବ୍ଦ ଲୋପପାଇ ସେସବୁ ଶବ୍ଦ ସ୍ଥାନରେ ନୂତନ ଶବ୍ଦସବୁର ଆବିର୍ଭାବ ହୁଏ ।

| କ | ଖ | ଗ | ଘ | ଙ | ଚ | ଛ |
|---|---|---|---|---|---|---|
| ମୁଛନ୍ତ | — | — | — | ଦାଢ଼ି | — | ଛୋଡ଼ନ୍ତ |
| ଖାଆନ୍ତୁ | — | — | — | — | — | ଗେ୍ଳବାନ୍ତୁ |
| ଚୋଷନ୍ତୁ | — | — | — | ଚୁଷ୍ଟ କରନ୍ତୁ | | |
| ଦ୍ରବ୍ୟ | — | — | — | — | — | ପଦାର୍ଥ |
| ଗହ୍ୱର | — | ଗହ୍ୱଲ | | | | |
| ପକ୍ଷୀ | — | ପକ୍ଷିଛ | | | | |
| କାମିକ | — | — | — | — | ବରହ୍ଣୀ | |
| ସୋଗ | | | | ସେ ହ | | |

ସଂପାଦିତ ଗ୍ରନ୍ଥରେ ପାଠାନ୍ତର ନ ଦେଲେ ପାଠାଲୋଚନର ପ୍ରକ୍ରିୟା ଅବରୁଦ୍ଧ ହୋଇଯାଏ । ଏହା କେବଳ ଜଣଙ୍କର କାମ ନୁହେଁ । ପାଠାନ୍ତର ଥିଲେ ପ୍ରତ୍ୟେକ ବ୍ୟକ୍ତି ନିଜର ଜ୍ଞାନ, ବୁଦ୍ଧି ଓ ବିଶ୍ଳେଷଣ ପ୍ରକ୍ରିୟା ସାହାଯ୍ୟରେ ସେହି ଉପାଦାନରୁ ନୂଆ ନୂଆ ତଥ୍ୟସବୁ ଆବିଷ୍କାର କରିଥାଏ । ଅନ୍ୟ ପୋଥିର ସାହାଯ୍ୟ ନେଇ ପ୍ରତିଷ୍ଠିତ ପାଠକୁ ଭାଙ୍ଗେ ଓ ନୂଆ ସମ୍ଭାବ୍ୟ ପାଠର ଉଦ୍ଭାବନ କରେ ।

Digitized by srujanika@gmail.com

ସଂପାଦନା ଏକ ଚଳନ୍ତ ରଥ । ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପର୍ଯ୍ୟନ୍ତ ସାଧକକୁ ଗତି କରିବାକୁ ହୋଇଥାଏ । ବିଦଗ୍ଧ ଆଲୋଚକମାନଙ୍କୁ ଏହି ସୁବିଧାରୁ ବଞ୍ଚିତ କରିଥିବା ହେତୁ ମୁଁ ଦୁଃଖିତ ।

ଜଗମୋହନ ରାମାୟଣ ପୁରାଣ ଶୈଳୀରେ ରଚିତ ହୋଇଥିଲେହେଁ ଏହା ସାରଳା ମହାଭାରତର ଶୈଳୀ ପଣ ସମ୍ପୂର୍ଣ୍ଣ ମୁକ୍ତ ନୁହେଁ । ଏଥିରେ ପ୍ରଯୁକ୍ତ ହୋଇଥିବା ଶବ୍ଦ ମଧ୍ୟରେ ଅନ୍ୟ ଶବ୍ଦ ମିଶିଗଲେ, ସ୍ପଷ୍ଟଭାବରେ ଜାଣି ହୋଇଯାଏ । ତେବେ ବି ପ୍ରତିଲିପିକାରମାନେ ନିଜର ସ୍ୱାଧୀନତାକୁ ଅବ୍ୟାହତ ରଖିଛନ୍ତି । ପାଠାନ୍ତର ଦେବାକୁ ହେଲେ ପ୍ରାୟ ପ୍ରତ୍ୟେକ ପଦପାଇଁ ଦେବାକୁ ହୋଇଥାଏ । ଏହାଦ୍ୱାରା ଗୋଟିଏ କ୍ଷୁଦ୍ର ସ୍ଥାନରେ ସାତୋଟି ଗ୍ରନ୍ଥ ପ୍ରକାଶିତ ହୁଏ । କାଗଜର ଏହି ଦୁର୍ମୂଲ୍ୟ ଯୁଗରେ ସାଧାରଣ ପ୍ରକାଶକମାନଙ୍କ ପକ୍ଷରେ ଏହା ସମ୍ଭବ ନୁହେଁ । ତେଣୁ ଇଚ୍ଛା ବିରୁଦ୍ଧରେ ଅନ୍ୟ ପୋଥିର ପାଠାନ୍ତର ସବୁ ଦେଇହେଲା ନାହିଁ । ଭବିଷ୍ୟତରେ କୌଣସି ସରକାରୀ ସଂସ୍ଥା ଏହି ଜାତୀୟ ଗ୍ରନ୍ଥକୁ ପ୍ରକାଶ କରିବାକୁ ଇଚ୍ଛାକଲେ ପାଠାନ୍ତର ଦେବାରେ ଅସୁବିଧା ରହିବ ନାହିଁ ।



Digitized by srujanika@gmail.com

# ଜଗମୋହନ ରାମାୟଣ

## ଆଦିକାଣ୍ଡ

### ଶ୍ରୀ ଜଗନ୍ନାଥଙ୍କ ବନ୍ଦନା ।

ବନ୍ଦଇ ଜଗନ୍ନାଥ କମଳାଦେବୀ ପତି ।
ନୀଳଗିରି ଶିଖରେ ଅପୂର୍ବ ମୂରତି ।   ।
ସୁନ୍ଦର ଶ୍ରୀମୁଖ ନୀଳମଣି ଆଭା ।
କି ଜାଣି ପଟାନ୍ତର କଳାମେଘ ପ୍ରଭା । ୨ ।
ନୟନ ଯୁଗଳ କି ଶରଦର ଶଶୀ ।
ଜଗତଜନ ହୃଦେ ଅଛୁ ପ୍ରଭୁ ବସି । ୩ ।
ସର୍ବଦେବ ନସ୍ତାରଣ ସୁରଗଣ ସାହା ।
ସୁବର୍ଣ୍ଣର ଶଙ୍ଖଚକ୍ର ଶୋଭେ ବେନି ବାହା । ୪ ।
ସର୍ବାଙ୍ଗେ ଚନ୍ଦନ ଲେପନ ମୁରାରି ।
ବିଚିତ୍ର ଝୀନବ'ସ ପରିଧାରଣ କରି । ୫ ।
ଅଢଅନ୍ତ ଶୋଭିତ ପବିତ୍ର ନେତ ଗୋଟା ।
ଶ୍ରୀହରି ଅଙ୍ଗେଣ କାଛେଣି ଗୁରୁଛଟା । ୬ ।
ଶିରରେ ମୁକୁଟ କୁଣ୍ଡଳ ଶୋଭନ ।
ବିରାଜନ୍ତ ମଣି କିରଣ ଛନଛନ । ୭ ।
ଲଲାଟେ ଶୋହଇ ନବରତ୍ନ ଚିତା ।
ଗଗନ ମଣ୍ଡଳେ କି ଶୋହଇ ସବିତା । ୮ ।
ଅଳକା ଲମ୍ବିତ ଯେ ମୁକୁତାର ଝରା ।
ଚନ୍ଦ୍ର ସନ୍ନିଧେ ଯେସନେ ଉଦୟେ ଲକ୍ଷେ ତାରା । ୯ ।
ଗଣ୍ଡସ୍ଥଳେ ମଣ୍ଡିତ ସୁପଞ୍ଚ ଗୁରୁଚିତା ।
ହୃଦରେ ପଦେକ ଉପରେ ସୁବର୍ଣ୍ଣ ପଇତା । ୧୦ ।
ସୁରଙ୍ଗ ଅଧର ସୁଦୀର୍ଘ ସଞ୍ଚି ରେଖା ।
ଜଳଧର କୋଳେ କି ବିଜୁଳିର ଶିଖା । ୧୧ ।
ସୁପଞ୍ଚ ନାସିକାକୁ ପଟାନ୍ତର ନାହିଁ କିଛି ।
ଆପଣେ ଆପଣାକୁ ପଟନ୍ତି ଶ୍ରୀହରି । ୧୨ ।

Digitized by srujanika@gmail.com

ତଇଲୋକ ବଶ ହୁଅଇ ଯାହାକୁ ଗୃହଂ ।
ସ୍ୱେ ସେ ଜଗନ୍ନାଥ ଯେ ଜଗମୋହନ ଗୋସାଇଂ । ୧୩ ।
କଟିରେ କଟିମେଖଳା ଶୋଭିତ ଦିବ୍ୟ କାନ୍ତ ।
ବାମେ ଯମ ଦାଢ଼ ପ୍ରଚଣ୍ଡ ସୂର୍ଯ୍ୟ ଜ୍ୟୋତ । ୧୪ ।
ରତ୍ନ ଚକାୟେଣ ନେତର ତୁଲ ପାଢ଼ି ।
ବିଜୟେ ଜଗନ୍ନାଥ ବଢ଼ିମା ପଣ ଛାଡ଼ି । ୧୫ ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ଚନ୍ଦ୍ରନ୍ତ ଯାକୁ ଧ୍ୟାନେ ।
ସେ ପ୍ରଭୁ ଅବତାର ମଞ୍ଚେଣ ଆପଣେ । ୧୬ ।
ଦେଖିତ ସୁଲଭ ନୟନେ ଅଗୋଚର ।
ପରଂବ୍ରହ୍ମ ରୂପ ଦିଶନ୍ତ ଶୋଭାକର । ୧୭ ।
ଅବୟେ ଅଶେଷ ଅରୂପ ରୂପକାୟା ।
ଅବର୍ଣ୍ଣ ଅଜାତ ଅବିବେକ ମାୟା । ୧୮ ।
ଅନନ୍ତ କୋଟୀ ବ୍ରହ୍ମାଣ୍ଡେ ଯେକଇ ଈଶ୍ୱର
ସାକ୍ଷାତେ ବିଜୟେ ଦକ୍ଷିଣ ସିନ୍ଧୁ ତୀର । ୧୯ ।
ଦଣ୍ଡ ସିଂହାସନ ଚାମର ଶ୍ୱେତ ଛତ୍ର ।
ରାଜା ରାଜେଶ୍ୱର ନୃପତି ପବିତ୍ର । ୨୦ ।
ପାଟ ମହାଦେଈ ରୁକ୍ମିଣୀ ସତ୍ୟଭାମା ।
ମନ୍ତ୍ରୀଗଣ ସଙ୍ଗତରେ ଜ୍ୟେଷ୍ଠ ବଳରାମା । ୨୧ ।
ଭଗ୍ନୀ ସୋଭଦ୍ରା ଯେ ସମ୍ଭାଳଇ ଅର୍ଥ ।
ଭଣ୍ଡାରେ ପରିପୂର୍ଣ୍ଣ ବିବିଧ ପଦାର୍ଥ । ୨୨ ।
ବଜ୍ର ସମ ପ୍ରାସାଦ ପାଷାଣ ନବର ।
ଧ୍ୱଜେ ଚନ୍ଦ୍ର ଚନ୍ଦ୍ର ଚଉଳ ଫରହର । ୨୩ ।
ଆଗେ ଦ୍ୱାରପାଳ ବିନତାର ବଛ ।
ଦକ୍ଷିଣ ଦାରୁଣେଣ କଳପବଟ ବୃକ୍ଷ । ୨୪ ।
ଲବଣ ମାହାଜଳ ଗଡ଼କଇ ଖଣ୍ଡ ।
ଲାଉକେଶ୍ୱର ଲିଙ୍ଗ ପଶ୍ଚିମ କଣେ ଠଣା । ୨୫ ।
ପାଟଣାର ନାମ ଶ୍ରୀପୁରୁଷୋତ୍ତମ ପୁରୀ ।
ବ୍ରହ୍ମା ସ୍ତିଜିଲ୍ଲ ତାହା ଶଙ୍ଖ ମଠ କରି । ୨୬ ।
ମାରକଣ୍ଡେଶ୍ୱର ଲିଙ୍ଗ ନଗ୍ରକୁ ଦଣ୍ଡପାଟ ।
ସିଂହଦ୍ୱାରେ ବସଇ ମୁକୁନ୍ଦ ଗୁରୁଦ୍ୱାଟ । ୨୭ ।
ସୁବର୍ଣ୍ଣମୟେ ପୁର ଦିଶଇ ଅତି ଶୋଭା ।
ଯହିଂ ନ ଭେଦଇ କଳକାଳ ପ୍ରଭା । ୨୮ ।

Digitized by srujanika@gmail.com

ଦଶ ସହସ୍ର ଘର ଅଷ୍ଟାଦଶ କାଢ ।
ସର୍ବନ୍ତେ ଚତୁର୍ଭୁଜ ସ୍ୱର୍ଗକଇ ଦଶନ୍ତି । ୨୯ ।
ବ୍ରାହ୍ମଣ ଦେବତାଏ ପୁଚ୍ଛନ୍ତି ପିତାମହ ।
ଏଥିରେ ସଂଶୟେ ଦେବ ବାଣ୍ଣଣ କହ । ୩୦ ।
ମର୍ତ୍ତ୍ୟ ଲୋକେ ଭୁଥ ଖଣ୍ଡେ ପୂର୍ବଭାଗ ଶେଷ ।
ଦକ୍ଷିଣ ମହୋଦଧି ଉତ୍ତର ତଟ ଦେଶ । ୩୧ ।
ନୀଳଗିରି ପର୍ବତେ ବଜସ୍ତେ ଚକ୍ରଧାରୀ ।
ଚର୍ମ୍ମ ନୟନରେ ଦେଖିଣ ଲୋକେ ତରି । ୩୨ ।
ନରନ୍ତେ ସୁସାଙ୍ଗ ବହୁତ ଲୋକ ଅଛୁ ।
ସଭିଏ ଦିଶନ୍ତି ପ୍ରତକ୍ଷେ ଶ୍ରୀବତ୍ସ । ୩୩ ।
ଶଙ୍ଖ ଚକ୍ର ଗଦା ସାରଙ୍ଗ ଚତୁର୍ଭୁଜ ।
କଉସ୍ତୁଭ କୁଣ୍ଡଳ ପୀତବାସ ଦିବ୍ୟ ତେଜ । ୩୪ ।
ଏଥିର ମଧ୍ୟେ କେ ଅଟଇ ଜଗନ୍ନାଥ ।
କେମନ୍ତେ ଜାଣିମା ଏହା କହସି ଜଗତର ତାତ । ୩୫ ।
ହସିଣ ବ୍ରହ୍ମା ବୋଲନ୍ତି ସମସ୍ତ ଦେବେ ଶୁଣ ।
ପୁରୁଷୋତ୍ତମ ଲୋକେ ସମସ୍ତେ ନାରାୟଣ । ୩୬ ।
ଏ ସେ ସଦାବସ୍ଥୁ ପରମ ବ୍ରହ୍ମ ହରି ।
ଚର୍ମ୍ମ ଲୋଚନେ ଦେଖିଲେ ଯାହା ତରି । ୩୭ ।
ସର୍ବଲୋକେ ଯହୁଁ ହୋଇଲେ ଚତୁର୍ଭୁଜ ।
ଆପଣାର କର ଚ୍ଛାଡ଼ିଲେ ଦେବରାଜ । ୩୮ ।
ଚରଣ ନ ଘେନିଲେ ଦେବଗଣ ହସନ୍ତେ ।
ଗୁପତ କଲେ ହରି ଶ୍ରବଣ ସହିତେ । ୩୯ ।
ଆଜନ୍ତୁ ହେତୁ କଣଥିବ ସ୍ନେହା ଚହ୍ନି ।
ଆନନ୍ଦ ହୋଇଲେ ପୁଣି ସୁରସିଦ୍ଧ ମୁନି । ୪୦ ।
ବ୍ରହ୍ମା ସହିତେଣ ଅଇଲେ ଦେବ ଦେଖି ।
ସୁଫଳ ହୋଇଲେ ସେ ଗୋବିନ୍ଦଙ୍କୁ ନିରେଖି । ୪୧ ।
ଦୁଇବାହୁ ଟେକିଣ ଯାଚନ୍ତି ଶରଣ ।
ଯେବଣ ନାମ ଗୋଟି ଜଗତ ଉଦ୍ଧାରଣ । ୪୨ ।
ଦାସ ଜନଙ୍କଇ ଦେଖିଲେ ହସନ୍ତି ।
ତେଣୁ ସେ ସୁରଙ୍ଗ ଅଧର ବନ୍ଦସନ୍ତି । ୪୩ ।
ଚକ୍ଷୁ ଅଚଳ କରିଣ ଦେବ ଗୃହେଂ ।
ନସୁଣ ମୋହର ଭଗତ ଦୁଃଖ ପାସ୍ତେ । ୪୪ ।

Digitized by srujanika@gmail.com

କଟି ପୀତବାସ ପିନ୍ଧନ୍ତି କାଛୁ କରି ।
ସେବକ ନମିତ୍ତେଣ ଧାମନ୍ତ ଚକ୍ରଧାରୀ । ୪୫ ।
ସୁରକଣ୍ଠ ବହଇ ଚତୁର୍ଧାମ ନଦୀ ।
ଆରତ ଭଞ୍ଜନ ବାନା ଯାହାର ପ୍ରସିଦ୍ଧି । ୪୬ ।
କୁସୁମ ଚନ୍ଦନ ସୁଗନ୍ଧ ହିନ ବାସ ।
ରତ୍ନ ଆଭରଣ ଭୋଗ ଯେ ବିଳାସ । ୪୭ ।
ଦେଖିଣ ଦେବତାଏ ହୋଇଲେ ତ୍ରିପୁଣ୍ଡ ।
ଜାଣିଲେ ବାସୁଦେବ ବାସନା ପ୍ରକୃତ । ୪୮ ।
ଦେବେଣ ଦୁର୍ଲ୍ଲଭ ମାନବ ଅଗୋଚର ।
ଜୟ ଜୟ ମାଧବ ତୁ ପରମ ନିରାକାର । ୪୯ ।
ଅନନ୍ତ ପୁରୁଷୋତ୍ତମ ତୁ ସହସ୍ର ମୂରତି ।
ସହସ୍ରେ କର ସହସ୍ରେ ସୂର୍ଯ୍ୟ ଜ୍ୟୋତି । ୫୦ ।
ସହସ୍ରେକ ଶିର ସହସ୍ରେ ଲୋଚନ ।
ସହସ୍ରେ କୋଟି ଯୁଗ କଳ୍ପକ ବିମୋଚନ । ୫୧ ।
ସ୍ୱୟମ୍ଭୁ ମୂଳ ସହସ୍ରେ ସୃଷ୍ଟି ଅନ୍ତେ ତ୍ରିଦଶ ।
ଦ୍ୱାଦଶ ଆଙ୍ଗୁଳ ଯେ ବେଦାନ୍ତ ପୁରୁଷ । ୫୨ ।
ସତ ଶାନ୍ତ ସାତ୍ୱିକ୍ୟ ଅଚ୍ୟୁତା ଗୋସାଇଁ ।
ସର୍ବଗ୍ରାହୀ ନାଥ ତୁ ତୋ ଭଳି ଆନ ନାହିଁ । ୫୩ ।
ଅପାର ମହିମା ନାଥ ବିଚିତ୍ର ତୋର କେଳି ।
ଜାଣିତ ସର୍ଜନ ନୋହନ୍ତ ଦେବ ଶୂଳୀ । ୫୪ ।
ଦାସବତ୍ସଳ—ନାଥ କରୁଣାମୟେ ସିନ୍ଧୁ ।
ଧଉଯେଁଣ ମେରୁ ଦୁଃଖି ଜନ ବନ୍ଧୁ । ୫୫ ।
ସୁରଗଣେକଇ ଶାଖା ଦୈତ୍ୟ କୁଳ କାଳ ।
ନମୋ ନାରାୟେଣ ଗୋବିନ୍ଦ ଗୋପାଳ । ୫୬ ।
ନମୋ ଦାମୋଦର ଶ୍ରୀରଙ୍ଗ ମଧୁହାରୀ ।
ନମୋ ନମୋ ବିଷ୍ଣୁ ସାରଙ୍ଗ ଚକ୍ରଧାରୀ । ୫୭ ।
ନମୋ ଭଗବାନ ଜଗୁଜନଆତ୍ମା ।
ଉତପତ୍ତି ପ୍ରଳୟ ତୁ କରନ୍ତା ମହାତ୍ମା ୫୮ ।
ସୃଷ୍ଟି ସିର୍ଜନ୍ତା ଦୁଃଖ ସୁଖ ଦାତା ।
ଅବିକ୍ଷଣେ ଦାତା ପାପ ପୁଣ୍ୟ ଜ୍ଞାନୀ । ୫୯ ।
ଭାଇ ଭାରଜା ଭୟେଣୀ ସହିତେ ।
ନୀଳଗିରି ବିଜୟେ ଜଗତ ଜନ ହିତେ । ୬୦ ।

Digitized by srujanika@gmail.com

ବିବିଧ ବିନୋଦେ ତୁ କରୁ କ୍ରୀଡ଼ାରସ ।
ତୀର୍ଥଯାତ୍ରା ନାନା ବିଧାନ ସରସ । ୬୧ ।
ପାଟଛତ୍ର ଚାମର ଦାସ ଦାସୀ ଜନ ।
ଅବିକାର ପାତନା ତୋ ନ ଜାଣନ୍ତି ଆନ । ୬୨ ।
ଯାହାଙ୍କର ସୃଷ୍ଟିସ୍ଥା କରୁ ବ୍ରହ୍ମାଣୀ ।
ସେ ତୋହୋର ଚରଣେ ଶରଣ ପଶଇ ଆସି । ୬୩ ।
ଇନ୍ଦ୍ର ଲୋକେଣ ଭକ୍ତ ଅନନ୍ତେଣ ସ୍ୱର୍ଗଯାଇ ।
ଦେବଙ୍କର ତୁଲେ ମୁଗେ ମୁଗେ ଥାଇ । ୬୪ ।
ତୁ ସେ ନାରାୟଣେ ଶରଣ ରଖନ୍ତା ।
କୀଟ୍ୟୁ ବ୍ରହ୍ମ ସବୁହିଁ ସ୍ନେହକଇ ଦେଖନ୍ତା । ୬୫ ।
ଧର୍ମ ଅର୍ଥ କାମ ଅବଳ ବଳ ନାହିଁ ।
ତୋହୋର ଆଗେ ସ୍ୱାମୀ ଜପ ମନ୍ତ୍ର କାହିଁ । ୬୬ ।
ବେଦ ପୁରାଣେ ତୁ ଅଟୁ ଆଦ୍ୟପଣ୍ଡ ।
ତୋହର ଆଗେ କସ ମୋ ମୁଗଣ୍ଡ । ୬୭ ।
ବ୍ରହ୍ମା ଉରସ୍ତି ହୁଅଇ ଯାର ଆଗେ ।
ରୁଦ୍ର ସାମାନ୍ୟ ନୋହଇ ଯାକ୍ତ ଯୋଗେ । ୬୮ ।
ସର୍ବ ଦେବ କାରଣ ସର୍ବଜୀବ ଅନ୍ତର୍ଯାମୀ ।
ବନ୍ଦଇ ଜଗନ୍ନାଥ ପରମବ୍ରହ୍ମ ସ୍ୱାମୀ । ୬୯ ।
ମୁହିଁ ତୋହୋର ଶରଣ ପଶିଲି ଜଗନ୍ନାଥ ।
ଉଦ୍ଧର ଧର ମୋତେ ଶଙ୍ଖ ଚକ୍ର ହସ୍ତ । ୭୦ ।
ତୁ ଦେବ ଉଦ୍ଧାରଣ ବୋଲଣ ଭଜଲି ।
ଭୟେ ନ କରଣ ତୋରେ ଶରଣ ପଶିଲି । ୭୧ ।
ଶାସ୍ତ୍ର ଆଗମ ମୁଁ ଶୁଣିଲି ବିପ୍ରମୁଖେ ।
ତୋତେ ସେବା ସ୍ୱାମୀ କରିଥିବ ସୁଖେ । ୭୨ ।
ତୋହୋର ଆଜ୍ଞାରେଣ ସୁରଗଣେ ବଳୀ ।
ତୋତେ ଦ୍ୱେଷ କରଣ ଅସୁରେ ଯାନ୍ତି ଜଳି । ୭୩ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଚଉଦ ଭୁବନ ।
ତୋତେ ଆଶ୍ରେ କରଣ ଅଛନ୍ତି ସର୍ବଜନ । ୭୪ ।
ସେ ତୋହୋର ଦୟା ଅଛଇ ଦେବ ପାଇ ।
ବ୍ରହ୍ମାଣ୍ଡ ଭିତରେ ତାକୁ ସର ସମ ନାହିଁ । ୭୫ ।
ଜୟ ତୁ ଶ୍ରୀବତ୍ସ—ଲାଞ୍ଛନ ମୁରାର ।
କଉସ୍ତୁଭ ମଣି ମଣ୍ଡିତ ଦଇତାର । ୭୬ ।

Digitized by srujanika@gmail.com

ପୁରାଣ ପୁରୁଷ ତୁ କମଳ ପତ୍ରାକ୍ଷ ।
ପ୍ରସନ୍ନ ହୁଅ ମୋତେ ପ୍ରେମଜ୍ଞାନ ଦକ୍ଷ । ୭୭ ।
ମୁହିଂ ବଳରାମ ଦାସ ଅଟଇ ତୋହର ।
ତୁ ଦେବ ହୃଦରେ ବସସି ମୋହୋର । ୭୮ ।
ଶ୍ରୀରାମ ରୂପ ଜାନକୀ ପଦ୍ମ ମୂର୍ତ୍ତି ।
ସପ୍ତମ ଅବତାର ହୋଇଲେ ଶ୍ରୀପତ୍ମ । ୭୯ ।
ରାବଣର ଦର୍ପ ଧଂସିଲେ ଯେବଣ କୃତ୍ୟେ ।
ତାହା ମୁଂ ବର୍ଣ୍ଣବ ରଚବଇଂ ଗୀତେ ।
ଯେ ଜନ୍ମ ମୋହର ସାର୍ଥକ କରିବ ତୋତେ ସେବ ।
ଯାହା ସେ ବଖାଣ କଲ୍ଲ ବାଲ୍ମିକ ମହାକବ । ୮୧ ।
ତାହା ମୁଂ ସ୍ମରଣ ଧଂସିବ ପାପରାଶି ।
କରସି କରୁଣା ମୋତେ ନୀଳଗିରିବାସୀ । ୮୨ ।
ଶୁଣିଣ ପ୍ରସନ୍ନ ମୋତେ ହୋଇଲେ ଜଗନ୍ନାଥ ।
ହୃଦେ ପ୍ରକାଶ ମୋର ଶଙ୍ଖ ଚକ୍ର ହସ୍ତ । ୮୩ ।
ସ୍ୱାମୀର ଆଜ୍ଞା ପ୍ରମାଣେ ଶିରେ ଧର ।
ଗ୍ରନ୍ଥ ବଖାଣିମି ବୋଲି ମନରେ ବାଞ୍ଛା କର । ୮୪ ।
ଶୁଣିମା ସୁଜ୍ଞ ଜନେ ଶ୍ରୀରାମ ମହିମା ।
ସଦାଶିବ ଆଗେ ଯାହା ପଚାରିଲେ ଉମା । ୮୫ ।
ପ୍ରସନ୍ନ ଚିତ୍ତ ହୋଇଣ କହନ୍ତ ଶୂଳପାଣି ।
ମୁହିଂ ତାହା ପଣ୍ଡିତ ମୁଖୁଂ ଅଛି ଶୁଣି । ୮୬ ।
ନୀଳସୁନ୍ଦର ଗିରି ଜଗନ୍ନାଥଙ୍କ ପ୍ରସନେ ।
କହିବ ରାମାୟେଣ ଅମୃତ ବଚନେ । ୮୭ ।
କଇଲାସ କନ୍ଦରେ ଅଛନ୍ତ ବିଶ୍ୱନାଥ ।
ଯେସନ ସମୟେ ଯାଇ ମିଳିଲେ ଉମାଥ । ୮୮ ।
ଦେଖିଣ କୃତକୃତ ହୋଇଲେ ତ୍ରିପୁରାରି ।
ଉଠିଣ ବିଧାତାକୁ କୋଳାଗତ କରି । ୮୯ ।
ପୀଠରେ କରଣ ବସାଇଲେ ନେଇ ।
ବ୍ରହ୍ମାଙ୍କୁ ଦେଖିଣ ଆନନ୍ଦ ଉମାସାଇଂ । ୯୦ ।
ଏକ ଆରେକେଣେ ପୁଚ୍ଛନ୍ତ କୁଶଳ ।
ସୃଷ୍ଟିର କଥା ବ୍ରହ୍ମା କହିଲେ ସକଳ । ୯୧ ।
ସଦାଶିବ ବୋଲନ୍ତ ଶୁଣିମା ପିତାମହ ।
ବଳ କ୍ଷିଣ ଭଗ୍ନ ହୋଇଲା ମୋର ଦେହ । ୯୨ ।

Digitized by srujanika@gmail.com

ପାର୍ବତୀ ବୋଇଲେ ଅଦ୍ଭୁତ ମୋତେ ଦେଖି ।
କେବଣ କାରଣରେ ତୁମ୍ଭ ଅଷ୍ଟ ଆଖି । ୯୩ ।
ବ୍ରହ୍ମା ବୋଇଲେ ଦେବ ଅଛଇ ମୁହିଂ ଜାଣି ।
ଯେଣେ ସେ ମୁଂ ଅଇଲୁ ତାହା ଶୁଣ ଶୂଳପାଣି । ୯୪ ।
ଧର୍ମ ନ ଥାପିଣ ମହାଯାଗ ଘର୍ଷିଲୁ ।
ଦକ୍ଷ ପ୍ରଜାପତିକୁ ଅନେକ ଗଞ୍ଜିଲୁ । ୯୫ ।
ସେ ଦୋଷେ ତୋହୋର ଶରୀର ସୃଷ୍ଟ ନାହିଂ ।
ବୃଦ୍ଧ ପିତା ଭୂଆଇଂ ଅଛୁ ଉମା ଯାଇଂ । ୯୬ ।
ପାପ ପୁଣ୍ୟ ବୋଲିଣ ଦୁଇ ପନ୍ଥ କଲୁ ।
ପୁନ୍ୟେଣ ପାପେ ଦଗଧି ହୋଇଲୁ । ୯୭ ।
ଯାଗ ଯଜ୍ଞ ଜପ ତପ ଦାନ ଧର୍ମ ।
ଯେହା ହିଂସାସନ୍ତେ ପାଇ ପାପ କର୍ମ । ୯୮ ।
ଅହଲ୍ୟା ଘେନିଣ ଯେ ବଗ୍ଧର ନ କଲୁ ।
ତେଣେ ମହାଧର୍ମ ହେଲେ ହିଂସାଯିଲୁ । ୯୯ ।
ତହିଂର ପାପେଣ ବଢ଼ିଲା ତୋତେ ରୋଗ ।
ଶରୀର ଅସୁସ୍ଥେଣ ଅସାଧନ ଯୋଗ । ୧୦୦ ।
ଯେବେ ସଦାଶିବ ମୋହୋର ବୋଲକର ।
ତାରେକ ବ୍ରହ୍ମରାମ ନାମ ତୁ ଉଚ୍ଚାର । ୧୦୧ ।
ଯେ ସେ ପ୍ରମବ୍ରହ୍ମ ସଂସାର ଏଣେ ତର ।
ରାମ ନାମ ସୁମରଣା କର ନିସ୍ତର । ୧୦୨ ।
ବିଶ୍ୱାମିତ୍ର ମୁନ ଅନୁଷ୍ଟୁପ ଛନ୍ଦ ।
ଯେ ସେ ରାମ ନାମ ହୃଦରେଣ ବନ୍ଦ । ୧୦୩ ।
ହେଉ ପରାପତ ତୋତେ କଳପ ପଦାର୍ଥ ।
କଳୁଷ ବିସର୍ଜ୍ଜିଣ ହୁଅ ତୁ ସୁଆର୍ଥ । ୧୦୪ ।
ଯେତେ ବୋଲି ବ୍ରହ୍ମା ଚତୁର୍ବେଦ ଘୋଷି ।
ରୁଦ୍ର କଇ ଆଶିଷ କହିଲେ କମଳ କୋଷୀ । ୧୦୫ ।
କୃତଆଞ୍ଜୋଳି ହୋଇଣ ସଦାଶିବ ।
ବୋଲନ୍ତ ତୁମ୍ଭେ ଶୁଣ ହୋ ଦେବଙ୍କର ଦେବ । ୧୦୬ ।
ଅନେକ ସ୍ତୁତ ଯେ କଲା ଶୂଳପାଣି ।
ତୁ ସେ ପିତାମହ ମୋହୋର ମନ ଜାଣି । ୧୦୭ ।
ଆଜଂ ରାମ ନାମ ଜପିବି ଅନୁବ୍ରତେ ।
ତୋହୋରେ ପ୍ରସନ୍ନ ମୋତେ ହେଉ ପରାପତେ । ୧୦୮ ।

Digitized by srujanika@gmail.com

ଏଥୁଅନନ୍ତରେ ଗଲେକ ଶୂଳପାଣି ।
ସଦାଶିବ ହରଷେ ଭଣଇ ରାମବାଣୀ । ୧୦୯ ।
ନିତ୍ୟ କର୍ମ ସାରଣ ଶଙ୍କର ।
ଜପଇ ରାମ ନାମ ବେନି ଯେ ଅକ୍ଷର । ୧୧୦ ।
ହନୁ ହନୁ ଶରୀର ହୋଇଲେକ ସୁସ୍ଥ ।
ପରମ ସନ୍ତୋଷ ହୋଇଲେ ଶୂଳହସ୍ତ । ୧୧୧ ।
କ୍ଷଣେହେଂ ନ ଛାଡ଼ନ୍ତି ଶ୍ରୀରାମର ନାମ ।
ହୃଦ ପଦ୍ମ ମଧ୍ୟେ କଲେକ ବିଶ୍ରାମ । ୧୧୨ ।
ଏମନେକ କେତେକାଳ ଯନ୍ତୁଂ ଗଲା ।
ହେମବନ୍ତର ନନ୍ଦନୀ ତାହା ଯେ ଜାଣିଲା । ୧୧୩ ।
ଅନେକ ସଦାଶିବ ଜପିବାର ବେଳେ ।
ପାର୍ବତୀ ନମଇଂ ଈଶ୍ୱର ପାଦତଳେ । ୧୧୪ ।
କେ ଦେବ ଈଶ୍ୱର କେବଣ ଜପ ଜପୁ ।
ମୋତେ ହେଂ ମାୟା ଯେ ଅଛୁ ତୋର ବପୁ । ୧୧୫ ।
ମୁହିଂ ତୋର ଚରଣେ ସର୍ବଦା ଅଟଇ ଦାସୀ ।
କର ଅନୁଗ୍ରହ ମୋତେ କଇଲାସ ବାସୀ । ୧୧୬ ।
ଏମନ୍ତେ ବୋଲି ଦେବୀ ନମଇଂ ପୁଣ ପୁଣି ।
ହସନ୍ତି ସଦାଶିବ ବଦନ୍ତି ପ୍ରିୟବାଣୀ । ୧୧୭ ।
ଉଠ ଉଠ ସଖି ଗୋ ମମ ପ୍ରାଣ ସର ।
ତୋତେ କ ରୂପତ ଯେ ଅଛଇ ମୋହର । ୧୧୮ ।
ଆପଣେ ଶ୍ରୀଭୁଜେ ତୋଳିଲେ ଦେବଶୂଳୀ ।
ଜାନୁରେ ବସାଇଣ କହନ୍ତି ରାମକେଳି । ୧୧୯ ।
ଶୁଣ ଶଶୀମୁଖୀ ଗୋ କହଇ ମୁହିଂ ତୋତେ ।
ପିତାମହ ରୂପତେ ଯାହା କହିଗଲେ ମୋତେ । ୧୨୦ ।
ବିଷ୍ଣୁର ଏକ ନାମ ସର୍ବ ବେଦ ସର ।
ସହସ୍ରେକ ନାମ ଯେ ଉଚ୍ଚାରଣ କର । ୧୨୧ ।
ଏହୁ ଯେତେକ ଫଳ ହୋଇବ ସୁମରନ୍ତେ ।
ଏଥୁ ଅଧିକ ହୋଇବ ରାମନାମ ଜପନ୍ତେ । ୧୨୨ ।
ଏହୁ ସେ ସକଳ ବେଦର ଅଟଇ ସାର ।
ଏହା ସୁମରନ୍ତେ ଖଣ୍ଡଇ କ୍ଲେଶ ଭାର । ୧୨୩ ।
ରାମନାମ ବୋଲିଣ ସୁମରନ୍ତି ମୁନି ।
ରାମନାମ ଜପିଲେ ସେ ବୋଲନ୍ତି ବ୍ରହ୍ମଜ୍ଞାନୀ । ୧୨୪ ।

Digitized by srujanika@gmail.com

ରାମନାମ ସ୍ମରି ବ୍ରହ୍ମା ଜଗତର ପିତା ।
ରାମନାମ ସ୍ମରିଲେ ହୁଅଇ ଜଗତ ଜିତା । ୧୨୫ ।
ଶ୍ରୀରାମ ସ୍ମରଣ କରଇ ଦେବୀ ଶ୍ରୀୟା ।
ତେଣୁ ସେ କମଳା ବିଷ୍ଣୁନାଥ ପ୍ରିୟା । ୧୨୬ ।
ତାରେକ ବ୍ରହ୍ମଜ୍ଞାନ ଯାହା ଭଣି ।
ସ୍ୱେ ସେ ମହାମନ୍ତ୍ର ସମରକ୍ଷ ବାଣୀ । ୧୨୭ ।
ମୁହିଂ ତାହା ଜପଇ ପରମ ଯୋଗ ତତ୍ତ୍ୱ ।
ତେଣୁ ସେ ଶରୀରକଇ ନ ବାଧଇ ମୃତ୍ୟୁ । ୧୨୮ ।
ଉମା ବୋଇଲେ ଦେବ କହିଲସି ଯାହା ।
ନାରାୟଣ ସ୍ୱାମୀ ସେ ସର୍ବଦେବ ନାହା । ୧୨୯ ।
କେବଣ ଅବତାରେ ରାମ ନାମ କହ ।
କମର୍ଥେ ଅବତାର ହୋଇଲେ ସେ ମହ । ୧୩୦ ।
ଅବର୍ଣ୍ଣ ଅରୂପ ଅଶ୍ରୁତ ନାମ ଯାର ।
ମୃତ୍ୟୁ ଲୋକେ କପାଇଂ ସେ ହୋଇଲେ ଅବତାର । ୧୩୧ ।
ସେହା ସଙ୍କେପି ମୋତେ କହ ପ୍ରାଣନାଥ ।
ଶୁଣିମି ଶ୍ରୀରାମର ରବତଲେ ଜାତ । ୩୨ ।
ବୋଲନ୍ତି ଦଗବାସ ଶିବା ମୁଖ ଗୁହିଂ ।
ବିଷ୍ଣୁର ପୁରାଣକୁ ଶୁଣ ପ୍ରାଣେସ୍ୱ । ୧୩୩ ।
ବ୍ରହ୍ମାର ବେଦ ପଢ଼ନ୍ତେ ପୁରୁଷେକ ଜାତ ।
ତାହାଙ୍କ ନାମ ଧାମ ଦେଲକ ପଉଲେସ୍ତ୍ୟ । ୧୩୪ ।
ପଉଲେସ୍ତିର ସୁତ ବିଶର୍ବା ମହାଋଷି ।
ଦଶଗ୍ରୀବ ନାମେଣ ହୋଇଲା ତାହାର ଶିଷି । ୧୩୫ ।
ନ୍ରମାଳ ଦୋହିତା ନଢ଼କେଶୀ ତହିଂ ଜାତ ।
ମାତା ଗୁଣ ଘେନ ସେ ହୋଇଲା ଦଇତ । ୧୩୬ ।
ବ୍ରହ୍ମାର ବୋଲେ ସେ ସାଧିଲା ତନଲୋକ ।
ସୁର ମୁନିମାନଙ୍କୁ ଦେଲକ ମହାଦୁଃଖ । ୧୩୭ ।
ବଇମାତ୍ର ଭାଇ ତାର ଅଟଇ କୁବେର ।
ତାହାକୁହିଂ ଲଙ୍କାପୁରୁ କଲକ ବାହାର । ୧୩୮ ।
କପିଳାସ କନ୍ଦରେ ପଶିଲକ ଯାଇ ।
ତହିଂ କ ଧାଇଂଲା ବୀର ପ୍ରତଜ୍ଞା ଦେଖାଇଂ । ୧୩୯ ।
ମୁଞ୍ଜେ ଜିଣି ତ ହାର ଆଣିଲା ବିମାନ ।
ଦେବେ ହେ ଆରୋହନ୍ତି ପୁଷ୍ପକ ନାମେ ଯାନ । ୧୪୦ ।

Digitized by srujanika@gmail.com

ଋଷି ମହଋଷି ପଳାଇଲେ ଭୟେ ।
ଯତ ତପୀ ସନ୍ତ ଗ୍ରାମୁରେ ନ ରହେ । ୧୭୩ ।
ଦେବେ କମ୍ପନ୍ତି ଯେ ସ୍ୱର୍ଗପୁରେ ଥାଇ ।
ତ୍ରୈଲୋକ୍ୟ ରାବଣକୁ ଷଣ୍ଡି ସମ ନାହିଂ । ୧୭୪ ।
ଯାଗ ଭାଙ୍ଗିଣ ଯେ କଲାକ ଅକୀର୍ତ୍ତି ।
ଅଧର୍ମର ତେଜେ କମ୍ପାଇ ବସୁମତୀ । ୧୭୫ ।
ଋଷି ମହଋଷି ପଳାଇଲେ ଭୀତ ।
ଧର୍ମ ନ ଥାପିଲା ପଉଲସ୍ତିର ନାତ । ୧୭୬ ।
ବିସ୍ମରନ୍ତ ଦେବେ ହୋଇଣ ଏକ ଗୋଷ୍ଠୀ ।
କେତେ କାଳ ଆମ୍ଭେ ହୋଇବାକ କଷ୍ଟି । ୧୭୭ ।
ବ୍ରହ୍ମା ବୋଲେ ତୁମ୍ଭେ ପଠାରହୋ କାଳ ।
ପ୍ରଥମ ବୟେସ ଏ ବଣଖାର ବାଳ । ୭୮ ।
ସମୟେକ ଭୋଗ ଭୁଞ୍ଜିବ ଦର୍ପ ବନ୍ଧ ।
କାଳ ଆନୋଚ୍ଛିଣ ଥିବା ଆମ୍ଭେ ସହ । ୧୭୯ ।
ବୋଲନ୍ତ ସଦାଶିବ ଶୁଣଗୋ ବିମ୍ୱୋଷ୍ଠୀ ।
ଯେଥୁ ଅନନ୍ତରେ ମଉଳିଲା ସୁରଗୋଷ୍ଠୀ । ୧୮୦ ।
ଯେମନ୍ତେ ଅନେକ କାଳ ଯହୁଂ ଗଲା ।
ଅନେକ ଉପଦର୍ପ ରାବଣେଶ୍ୱର କଲା । ୧୮୧ ।
ସରମୁନି ବର୍ଷିଣ କରନ୍ତ ବିଚାର ।
ନନ୍ଦିକେଶ୍ୱର ଶାପ୍ୟ ଯେବଣ ପ୍ରକାର । ୧୮୨ ।
ବିଧାତା ବୋଇଲା ପୂର୍ବକଥା ଶୁଣ ।
ନନ୍ଦିକେଶ୍ୱର ଶାପ୍ୟକୁ ଡରଇ ଦଶାନନ ।
ନର ବାନରେ ହତ ହୋଇବ ତାର ବଂଶ ।
ଯେସନେକ ବିଧାନ ଅଛଇ ପୂର୍ବର ଭବିଷ । ୧୮୪ ।
ମୁହିଂ ତାହା ଜାଣି ଅଛଇ ନିର୍ଭାଇ ।
କଶ୍ୟପ ମୁନି ଜାତ ହୋଇ ମୃତ୍ୟୁପୁରେ ଯାଇଂ । ୧୮୫ ।
ତାହାର ତହିଂ ଜାତ ହୋଇବେ ମାଧବ ।
ମନୁଷ୍ୟ ରୂପ ଧରି ବଧିବେ ଦାନବ । ୧୮୬ ।
ତୁମ୍ଭେ ଦେବତାମ୍ଭେ ଋକ୍ଷ କପି ହୋଇଂ ।
ଯେ ଯାହାର ବଳ ଘେନି ଅବତାର ଯାଇଂ । ୧୮୭ ।
ଅଳପ ସମୟରେ ହୋଇବ ଦୁଖଂ ପାର ।
ଯେସନେକ ବଚନ ବୋଇଲେ କୁଶଧର । ୧୯୮ ।

Digitized by srujanika@gmail.com

ଶୁଣ ଗୋ ଭବାନୀ କହନ୍ତ ବଚନ ।
ସ୍ୱେସେ ରମା (ବା)ଯ୍ୱେଣ ପବନ୍ଧ ଅଛାନ । ୮୯ ।
ଜମ୍ବୋଦ୍ୱୀପ ଭୁଅ ଖଣ୍ଡ ମଧ୍ୟଭାଗ ମହୀ ।
ଦକ୍ଷିଣ କୋଣରେ ପବତ୍ର ଦିବ୍ୟ ଭୂଇଂ । ୧୯୦ ।
ଅଯୋଧ୍ୟା ନାମେ ନଗ୍ର ସରମ୍ବ୍ ନଦୀ ତଟେ ।
ଅଳକାପୁର ଯେହ୍ନେ ଗଣ୍ଡ୍କୀ ନଦୀର ନିକଟେ । ୧୯୧ ।
ନଗ୍ର ପରମଳ ଅଚ୍ଛନ୍ତିଂ ଗୃରୁ ଶୋଭା ।
କ ଜାଣି ପଞ୍ଚାନ୍ତର ଶରଦଶଶୀ ପ୍ରଭା । ୧୯୨ ।
ରାଜାର ମନ୍ଦିର ଦିବ୍ୟ ଗୃରୁ କାନ୍ତ ।
ମେଢ଼ ମଣ୍ଡପ ଅଟ୍ଟାଳି ଜଗତି । ୧୯୩ ।
ଅଗର ଚନ୍ଦନ ଖମ୍ବ ଚୂଅ ସେଣି ।
ଉପରେ ତେଜପଦ୍ମ ଗୁଲ୍ଲଇଲ୍ଲ ଗୁଯ୍ୱେଣୀ । ୧୯୪ ।
ମୁକୁତାର ଝରା ମାଳା ରତ୍ନ ଜଡ଼ ।
ସୁବର୍ଣ୍ଣର ଦ୍ରଉମା ପିତୁଳ କମ ଗଢ଼ି । ୧୯୫ ।
ମର୍କତରେ କଳସ ନେତର ଚଉଳ ।
ଚନ୍ଦ୍ରାତପ ତେଜ ଆଦିତ୍ୟ ପ୍ରବାଳ । ୧୯୬ ।
ସାମନ୍ତ ମନ୍ତ୍ରୀଙ୍କର ଉଆସ ଦିବ୍ୟ ପୁରୀ ।
ଘରେ ଘରେ ବଜସ୍ୱେକ ସାଦେର କୁମାରୀ । ୧୯୭ ।
ଅଷ୍ଟାଦଶ ଜାତି ଭବେ ଭବେ ପୁରୀ ।
କୂପ ବାର୍ପି ବହୁତ ଅଛଇ ପୋଖରୀ । ୧୯ ।
ସ୍ୱର୍ଗର ଲୋକ ଜାଣି ଦିଶନ୍ତି ନରନାରୀ ।
ସ୍ୱୟେଂ ବିଶ୍ୱକର୍ମା ଗଢ଼ିଲା ସେ ପୁ । ୧୯୯ ।
ରାଜା ଦଶରଥ ପାପ ପୁଣ୍ୟ ଜ୍ଞାନୀ ।
ଦୁଃଖୀ ଦରିଦ୍ରେ ଯେ ଅବକ୍ଷଣେ ଦାନୀ । ୨୦୦ ।
ଯମର ପ୍ରାଯ୍ୱେକ ବଗୃରଇ ନୃପତି ।
ଧର୍ମର ପ୍ରାଯ୍ୱେକ ଅଟଇ ଶାନ୍ତ ମୂର୍ତ୍ତି । ୨୦୧ ।
ଚନ୍ଦ୍ରମା ପ୍ରାଯ୍ୱେକ ଆହ୍ଲାଦ ଗୁଣ ।
ରଶ୍ମି ପଞ୍ଚାନ୍ତର ସହସ୍ରେ କିରଣ । ୨୦୨ ।
ଅଗ୍ନିର ତେଜ ଯେ ବହଇ ନୃପତି ।
ପବନଙ୍କ ବେଗ ଯେ ଚଳବାର ଗତି । ୨୦୩ ।
ବରୁଣ ଗୁଣେ ଯେ ସକଳ ଆଶ୍ୱାସି ।
ଅଇଶ୍ୱର୍ଯ୍ୟ ଇନ୍ଦ୍ର ପ୍ରାଯ୍ୱେକ ବଳସି । ୨୦୪ ।

Digitized by srujanika@gmail.com

ବଡ଼ମାସ୍ଯେ ମେରୁ ସହନ୍ତେ ମେଦନୀ ।
ରୂପରେ କାମଦେବ ବୃହସ୍ପତି ସମଗ୍ୟାନ । ୧୦୫ ।
ଦାନେଣ ସାଗ୍ଯ ଯେ ଷତ୍ରି କୁଳମଣି ।
ବିବେକ ଆଗ୍ଯର ଧର୍ମଶାସ୍ତ୍ର ଜାଣି । ୧୦୬ ।
ଧନୁ ଧରନ୍ତେଣ ଯୋଧା ସମ ନାହିଂ ।
ଅକଣ୍ଟେକ ରାଜ୍ୟ କରଇ ନରସାଇଂ । ୧୦୭ ।
କଯ୍ୟେକସ୍ଯା କଉଶଲ୍ୟା ସୁମିତ୍ରା ତିନ ନାରୀ ।
ରାଜାର ପାଟ ମାହାଦେଇ ମନୋହାରୀ । ୧୦୮ ।
ସାତଶ ପଞ୍ଚାଶ ଯେ ମାହାଦେଇ ମାନ ।
ଯେଥିରେ ମଧ୍ଯ ତିନହେଂ ମୋକ୍ଷପାନ । ୧୦୯ ।
ଜ୍ୟେଷ୍ଟ ପାଟରାଣୀ ଅଟଇ କଉଶଲ୍ୟା ।
ସହଭାଗ୍ୟବନ୍ତୀ କଯ୍ୟେକସ୍ଯା ଯେ ହୋଇଲା । ୧୧୦ ।
ତିନ ଭୁବନେ ପ୍ରତାପୀ ମହାରାଜା ।
ଭଯ୍ୟେଣ ଅଇର ବଳ କରନ୍ତି ପାଦପୂଜା । ୧୧୧ ।
ମନ୍ତ୍ରୀ ବଶିଷ୍ଟ ପାତ୍ର ଯେ ସୁମନ୍ତ ।
ଭଟ୍ଟ ମିଶ୍ର ବାମଦେବ ତାହାର ପ୍ରୋହିତ । ୧୧୨ ।
ଯାବାଲି କଶ୍ୟପ ଜାଣନ୍ତି ସମସ୍ତ ।
ରାଜାର ଗ୍ରାମୁରେ ମିଳନ୍ତି ପଣ୍ଡିତ । ୧୧୩ ।
ରାଜାର ଅସ୍ଥାନ ଦେବସଭା ଜାଣି ।
ନୃପତି ପଶ୍ଚାନ୍ତର କ ସ୍ଯେ ବଜ୍ରପାଣି । ୧୧୪ ।
ଯୋଦ୍ଧା ରାଉତ ମାହୁନ୍ତ ମହାପାତ୍ର ।
ଅଛନ୍ତି ପଣ୍ଡିତେ ଜାଣନ୍ତି ସର୍ବଶାସ୍ତ୍ର । ୧୧୫ ।
ସହସେ ପଡ଼ିହାରୀ ଜଗାଳ ପାତ୍ର କରେ ।
ପଟ୍ଟୋଆର ପଡ଼ୁଥାଇ କେତେହେଂକ ଦୂରେ । ୧୧୬ ।
ଶିର ଉପରେ ଉଡ଼ଇ ଶ୍ବେତଛତ୍ର ।
ସୂର୍ଯ୍ୟ ବଂଶେ ମହୀପତି ଅତିହିଂ ପବିତ୍ର । ୧୧୭ ।
ସହସ୍ରେକ ଶ୍ବେତ ଚାମର ଯେନ ଚେହ୍ନୁ ବାଳୀ ।
ମଳୟ ପବନ ଜମନ୍ତେ ତାହା ଢାଳି । ୧୧୮ ।
ଉତ୍ପର ବର୍ତ୍ତଂଣୀ ଆଗରେ ଧୂପକାଠି ।
ଆସ୍ଥାନେ ବଜସ୍ଯେ ରାଜା ଯେନ ଜଳ ଗୋଷ୍ଟୀ । ୧୧୯ ।
ରଥ ଗଜ ଅଶ୍ବ ପାଇକ ବହୁତ ।
ଉଡ଼ନ୍ତି ଆଲମ୍ବ ଚଗଲ ଘାର ନେତ । ୧୨୦ ।

Digitized by srujanika@gmail.com

ବଲମ୍ବ ପାଟଛତ୍ର ଉଡ଼ଇ ଉଲ୍ଲଖ ।
ଉଚେ ଉଚେ ଉଦ୍ଧର ଅଛନ୍ତି ରେଖ ରେଖ । ୨୨୧ ।
ଢୋଲ ଦମା ଝମକ ବାଜଇ ଘୋର ତୂର ।
ଶଙ୍ଖ ମହୁରୀ ଭେରୀ ଯନ୍ତ୍ରଂ ସପତ ସ୍ୱର । ୨୨୨ ।
କମ କାହାଳ ବଜ୍ରଘୋଷ ନାଦ ।
ତାଳ ତାଳ ଘଣ୍ଟ କଂସାଳ ଶବଦ । ୨୨୩ ।
ବାଜନ୍ତି ମର୍ଦ୍ଦଳ ବାଜନ୍ତି ବାଉଂଶି ।
ନାଚନ୍ତି ନାଚୁଣୀ ଅପଛରୀ ମିଶି । ୨୨୪ ।
ରାଜା ଦିବ୍ୟଜ୍ଞାନୀ ରାଜ୍ୟ କରଇ ଚନ୍ତା ।
ପରଜା ପାଳନ ପରଦେଶରେ ଅହନ୍ତା । ୨୨୫ ।
ଏସନେକ ସମୟେ ପାଟ ଜଉଦ୍ଧଷ ।
ସପତାଙ୍ଗ ପାଞ୍ଜି କହଇ ରାଜା ପାଶ । ୨୨୬ ।
ଶୁଣିମା ସାବଧାନେ ଅଯୋଧ ନରପତି ।
ଅଇଶ ଦର୍ପଗଞ୍ଜନ ବୀରବର ଚକ୍ରବର୍ତ୍ତୀ । ୨୨୭ ।
ଆଦିତ୍ୟ ଆଦିକରି ନବଗ୍ରହଗଣ ।
ସେ ଦେବ ଦଶରଥ ତୋତେ କରନ୍ତୁ କଲ୍ୟାଣ । ୨୨୮ ।
ସତାଇଶ ନକ୍ଷତ୍ର ପନ୍ଦର ଯେ ତିଥି ।
ସେ ତୋତେ ଅନୁଗ୍ରହ କରନ୍ତୁ କ୍ଷିତିପତି । ୨୨୯ ।
ବ୍ରହ୍ମା ମୁରାରି ତ୍ରିପୁରାରି ଅନ୍ତକାରୀ ।
ସେ ତୋତେ ଶୁଭ ବାଞ୍ଛନ୍ତୁ ଦଣ୍ଡଧାରୀ । ୨୩୦ ।
କାହିଁ କଥାଏ କରଇ ଦେବ ଭୟେ ।
ସେ ତୋହୋର ନକ୍ଷତ୍ରକୁ ଶନିଚର ବଜସ୍ୱେ । ୨୩୧ ।
ବୃଷରାଶିକ ଭେଦ ହୋଇବ ସୂର୍ଯ୍ୟପୁତ୍ର ।
ସେଣେ ସେ ପୀଡ଼ା ଦେବ ପାଇବ ଜଗତ । ୨୩୨ ।
ଇନ୍ଦ୍ର୍ୱଂ ନ ପାଳବ ନୋହିବ ରାଜ୍ୟେ ବୃଷ୍ଟି ।
ହାଡ଼ ମାଳ କଙ୍କାଳ ହୋଇବ ନବ ସୃଷ୍ଟି । ୨୩୩ ।
ତୁମ୍ଭର ନକ୍ଷତ୍ର ଯେ ରୋହିଣୀ ବୃଷ ।
ସେଣୁ ସେ ପୀଡ଼ା ଦେବ ପାଇବ ଅବଶ୍ୟ । ୨୩୪ ।
ଯମର ଭାଇ ସେ ସ୍ୱୟେଂ କାଳମୂର୍ତ୍ତି ।
ସକଳ ସୁର ତାର ନମେଣ କମ୍ପନ୍ତି । ୨୩୫ ।
ସେହାକୁ ସେବ ରାଜା ପୂଜାବିଧି ଦେଇ ।
ତେବେ ସେ ସନ୍ତୋଷ ଯେ ହୋଇବ ଗ୍ରହ ସାଇଂ । ୨୩୬ ।

Digitized by srujanika@gmail.com

ତାହାକୁ ଶାନ୍ତଦେବ କରିବା ମହୀପାଳ ।
ବଶିଷ୍ଠକୁ ପୁଛି ଚିନ୍ତା କର ମହୀପାଳ । ୧୩୭ ।
ଶୁଣିଣ ନୃପତି ବିସ୍ମୟେ ମତି ହୋଇ ।
ଖରତର ନିଶ୍ୱାସ ସେ ବଶିଷ୍ଠ ମୁଖ ଚାହିଁ । ୧୩୮ ।
ବୋଇଲେ ଶଉରି ଯେବେ ଭେଦିବ ମୋର ରାଶି ।
ଆଜ ମହାଗ୍ରହକୁ ମୁଁ ପକାଇବ ନାଶି । ୧୩୯ ।
ସଂସାର କଷ୍ଟ ମୁଁ ଫେଡ଼ିବି ତାକୁ ମାରି ।
କୋପେଣ କୋଦଣ୍ଡ ଯେ ଦଶରଥ ଧରି । ୧୪୦ ।
ତୀକ୍ଷ୍ଣ ନାରାଚେକ ବସାଇଲା ଗୁଣେ ।
ବିନ୍ଧିବି ଶନିଶ୍ଚରକୁ କେ ରଖନ୍ତୁ ଦେବଗଣେ । ୧୪୧ ।
ଓଷ୍ଠ କାମୋଡ଼ିଣ ଯେ ପ୍ରଚଣ୍ଡ ମୂରତି ହୋଇ ।
ଆକର୍ଣ୍ଣ ପରିଯନ୍ତେ ବାଣ ଅଛଇ ପୂରାଇ । ୧୪୨ ।
ଶନିଶ୍ଚର ମଣ୍ଡଳରେ ହୋଇଲା ଅରିଷ୍ଟି ।
ଅଦଭୁତ ହୋଇ ରୁଧିର କଲା ବୃଷ୍ଟି । ୧୪୩ ।
ଇନ୍ଦ୍ରାଦି ଦିବ୍ୟତେଣ କମ୍ପିଲେ ଦିଗପାଳ ।
ସାତସିନ୍ଧୁ ଉଚ୍ଛୁଳିଲା ଲଂଘିଲାକ କୂଳ । ୧୪୪ ।
ଦଶରଥ କୋପ ଦେଖିଣ ମହାଗ୍ରହ ।
ଦେବତାକୁ ଚାହିଁଣ କହଇ ରବିପୁଅ । ୧୪୫ ।
ଶୁଣ ହେ ଦେବାଧି ମୁଁ କହଇ ତୁମ୍ଭଙ୍କୁ ।
ଦଶରଥ କୋପ କଲା କମ୍ପାଇ ଆମ୍ଭଙ୍କୁ । ୧୪୬ ।
ମନୁଷ୍ୟ ହୋଇଣ ସେ ଦେବଙ୍କୁ କୋପବନ୍ତ ।
ଭସ୍ମ କରିବ ବୋଲି ଶନିଶ୍ଚର ବୋଲଇ । ୧୪୭ ।
ମଞ୍ଚର ରାଜା ହୋଇ ତାହାର କସ ବଳ ।
ନ ଜାଣିଣ କୋପ କରଇ ମହୀପାଳ ।୧୪୮ ।
ପୁର ସହିତେଣ ଯେ କରିବି ଭସ୍ମରାଶି ।
କଥା ରହାଇବ ଯାବତ ସୂର୍ଯ୍ୟବଂଶୀ । ୧୪୯ ।
ବ୍ରହ୍ମା ବୋଇଲେ ନ ଧର ମନେ ରୋଷ ।
ପୂର୍ବର କଥା ହାଦେ ଅଛଇ ଭବିଷ । ୧୫୦ ।
ଦେବ କାର୍ଯ୍ୟ ତାହାରେ ହୋଇବ ହୋ ଶନି ।
ନ କର କୋପ ତାକୁ ମୋହୋର ବୋଲି ଘେନ । ୧୫୧ ।
ତାହାର କୋଳେ ବିଷ୍ଣୁ ହୋଇବାକ ଜାତ ।
ଦୁଷ୍ଟ ରାବଣକୁ କରିବେ ପ୍ରାଣହତ । ୧୫୨ ।

Digitized by srujanika@gmail.com

ତେବେ ସେ ଦେବଗଣେ ରହିବେ ସ୍ୱର୍ଗପୁରୀ ।
ଶୁଣିଣ ସନ୍ତୋଷ ହୋଇଲେ ଶଚୀପତି । ୧୫୩ ।
ପ୍ରସନ୍ନ ବଦନ ହୋଇ ଦେଲେକ ସେ ବର ।
ଦଶରଥ ଯୋଗେ ଯେବେ ଦେବଙ୍କ ଉପକାର । ୧୫୪ ।
ଆଜହୁଂ ସେହିବାର ମୁଂ ନ ଭେଦିବ ରାଶି ।
ନ କରିବ ପୀଡ଼ା ମୁଂ ଶୁଣ ସ୍ୱର୍ଗବାସୀ । ୧୫୫ ।
କେବଳ ମାତ୍ର ମୁଂ ବସିବ ପୂର୍ବ ହେତୁ ।
ନାହିଂ ମୋର କୋପ ଶୁଣ କୃଶକେତୁ । ୧୫୬ ।
ସେହି ଶୁଣି ଦେବେ କଲେ ପୁଷ୍ପ ବୃଷ୍ଟି ।
ଦଶରଥ ପ୍ରସାଦେ ସୁସ୍ଥ ହୋଇ ସୃଷ୍ଟି । ୧୫୭ ।
ଅଦ୍ୟାପି ଶନି ରୋହେଣୀ ଭେଦ ନୋହେ ।
ଯାବତ କାଳକରି କୀର୍ତ୍ତି କଥା ରହେ । ୧୫୮ ।
ଶୁଣ ଶଶୀମୁଖି ଗୋ କହନ୍ତି ତ୍ରିପୁରାରି ।
ରବିକୁଳେ ଦଶରଥଙ୍କ ନାହିଂ ସମସରି । ୧୫୯ ।
ପ୍ରତାପବନ୍ତ ରାଜା ବୋଲନ୍ତି ତ୍ରିପୁର ।
ସ୍ୱର୍ଗେଣ ପ୍ରଶଂସା କରଇ ବଜ୍ରଧର । ୧୬୦ ।
ସେଥୁଅନନ୍ତରେ ଅଯୋଧ୍ୟାରେ ପତି ।
ସଭାକର ବଜସ୍ତେ ଯେ ବୀର ଚକ୍ରବର୍ତ୍ତୀ । ୧୬୧ ।
ମନ୍ତ୍ରୀ ଅମାତ୍ୟ ଯେତେକ ନୃପମଣି ।
ବଶିଷ୍ଠଙ୍କ ଗୃହଂ କହଇ ମୃଦୁବାଣୀ । ୧୬୨ ।
ହେ ମହାମୁନି ମୁଂ ପଚାରଇ ତୋତେ ।
ଅନୁଗ୍ରହ ବଚନେ କହିବାକ ମୋତେ । ୧୬୩ ।
ସୂର୍ଯ୍ୟବଂଶ ମୋହୋର ଧାର୍ମିକ ସତ୍ୟବାଦୀ ।
ତିନି ଲୋକରେ ସେ ମହିମା ପ୍ରସିଦ୍ଧି । ୧୬୪ ।
ଇକ୍ଷ୍ୱାକୁରୁ ମାନଧାତା ହରିଚନ୍ଦ୍ରନ ନୃପତି ।
ଦିଲୀପ ଭଗୀରଥ ରଘୁ ଚକ୍ରବର୍ତ୍ତୀ । ୧୬୫ ।
ସେହିମାନଙ୍କର କଥା ମୁନି ପୁରାଣେ ବଖାଣି ।
ଧର୍ମ ଶାସ୍ତ୍ର ବେଦ ଆଗମନ୍ତ ଜାଣି । ୧୬୬ ।
ପୁତ୍ର ସମ କରି ସେ ପାଳିଲେ ଜନପ୍ରଜା ।
ଅନେକ ଯାଗଯଜ୍ଞ କଲେକ ମହାରାଜା । ୧୬୭ ।
ସେମାନଙ୍କର କାଳେ ନୋହିଲା ଅନାବୃଷ୍ଟି ।
ହରପାଳେ ପାଳନ୍ତି ପ୍ରଜାଭେ ନଦୟଷ୍ଟି । ୧୬୮ ।

Digitized by srujanika@gmail.com

ତାହାଙ୍କର କୁଳେ ହୋଇଲି ମୁହିଂ ଜାତ ।
ମୋହୋର ଅମିତ ନାହିଂ କଦାଚିତ । ୧୬୯ ।
ନଉଶତ ବରଷ ହୋଇଲା ମୋତେ ଆସି ।
ଜମାଇ କୁଳ ମୋର ହୋଇଲାକ ଧ୍ୱଂସି । ୧୭୦
ପୁତ୍ରର ବହୁନେ ଜୀବନେ କସ କାର୍ଯ୍ୟ ।
ପୁତ୍ରର ବହୁନେ ପରକୁ କରଇ ଲଜ । ୧୭୧ ।
ଅପୁତ୍ରିକ ହୋଇଲେ ନରକେ ବସେ ଯାଇ ।
ପୁତ୍ର ନ ଥିଲେଣ ଘରେ ସୁସ୍ଥ ନାହିଂ । ୧୭୨ ।
ପୁତ୍ର ନୋହିଲେଣ ସ୍ୱସ୍ଥ ନାହିଂ ଜାଣ ।
ପୁତ୍ର ଅଟଇ ଯେ ପିଣ୍ଡକୁ କାରଣ । ୧୭୩ ।
ଅପୁତ୍ରିକ ମୁଖ ଗୃହିଂ ନ ଯୋଗାଇ ।
ଅପୁତ୍ରିକ ଲୋକର ଅନ୍ନ ହିଂ ନ ଖାଇ । ୧୭୪ ।
ଅପୁତ୍ରିକ ସଙ୍ଗେ ନୋହିବ ସଦଗୋଷ୍ଠୀ ।
ଅପୁତ୍ରିକ ବାପୁଡ଼ା ଅଟଇ ପରମକଷ୍ଟୀ । ୧୭୫ ।
ପୁତ୍ର ନ ଥିଲେଣ ଧନେ କସ କାର୍ଯ୍ୟ ।
ପରକଇ ଯେବେ ହୋଇବ ଗ୍ରାହ୍ୟ । ୧୭୬ ।
ଅନେକ ଛନ୍ଦେଣ ଅର୍ଜନ୍ତି ଜନେ ବିତ୍ତ ।
ପୁତ୍ର ନ ଥିଲେ ତା ନୁହଇ ଜାଣ ହିତ । ୧୭୭ ।
ପରବନ୍ଧ ଧ୍ୱଂସିଲେ କସ କାର୍ଯ୍ୟ ଅଛୁ ।
ପୁତ୍ର ବହୁନେ ଦେହ ନ ଯୋଗାଇ କଛୁ । ୧୭୮ ।
ସକଳ ଧର୍ମର ହାଦେ ପୁତ୍ର ହିଂ ସେ ମୂଳ ।
ପୁତ୍ର ନ ଥିଲେ ହେଂ ନ ରହଇ କୂଳ । ୧୭୯ ।
ମୁହିଂ ମହାରଜା ପୁତ୍ର ମୋର ନାହିଂ ।
କାହାକୁହିଂ ରାଜ୍ୟ ଅନ୍ତେ ଦେବ ମୁହିଂ । ୧୮୦ ।
କରିବ ବନବାସ ପିଛେ କଷ୍ଟାବାହ ।
ପୁତ୍ର ବହୁନେ ମୋର ରାଜ୍ୟକୁ କସ ଆଣ । ୧୮୧ ।
କହିଣ ଗଦ୍‌ଗଦ ନୃପତି ଶିରୋମଣି ।
ବଶିଷ୍ଠଙ୍କ ମୁଖଗୃହିଂ ରେଦଇ ପୁଣ ପୁଣି । ୧୮୨ ।
ରଜାର ବୈକଲ୍ୟ ଦେଖିଣ ମନ୍ତ୍ରୀଗଣ ।
ପୁରାତନ କଥା କହି କରନ୍ତି ଉଆରଣ । ୧୮୩ ।
ଜମ୍ମା ଭୁ ଆରତ ହୋଉ ଚକ୍ରବର୍ତ୍ତୀ ।
ନ କର ଶୋଚନା ତୁ ଅଯୋଧ୍ୟାର ପତି । ୧୮୪ ।

Digitized by srujanika@gmail.com

ଯେତେବେଳେ ଯାହାକୁ ପ୍ରାପତ ଯେସନ୍ତେ ଯୋଗ ।
ସେ କଥା ବିସ୍ମରଣ ଅଛଇ ଭୋଗାଭୋଗ । ୨୮୫ ।
ଉଚ୍ଛୁକ ହୋଇଲେ କି ତାହାଂର ଫଳ ପାଇ ।
ଯେ ଯାହାର ଅର୍ଜିଲା ମେଣ୍ଟଣା ନ ଯାଇ । ୨୮୬ ।
ପୂର୍ବେ ଯାହା କରି ଏବେ ତାହା ଭୁଞ୍ଜି ।
ଶୁଭାଶୁଭ ଲେଖନ ସେ ଧାତାର ପୁର୍ବପାଞ୍ଜି । ୨୮୭ ।
ତୁମ୍ଭେ ଯେବେ ତପ କରିଅଛ ବାସ୍ତେ ।
ଅଳପ ସମୟେ ତୋର ହୋଇବ ତନୟେ । ୨୮୮ ।
ମନ୍ତ୍ରୀ ତହୁଂ ଏସନେକ ଶୁଣିଣ ବୃତ୍ତାନ୍ତ ।
କର ଯୋଡ଼ିଣ କହଇ ସୁମନ୍ତ୍ର । ୨୮୯ ।
କଥାଏ କହିବ ମୁଂ ନୁହଇ ନା ଆନ ।
ସାବଧାନ ହୋଇ ତୁମ୍ଭେ ଶୁଣ ସଭାଜନ । ୨୯୦ ।
ହେ ଦେବ ଦଶରଥ ଶୁଣ ପୂର୍ବ ବାଣୀ ।
ସନନ୍ତକୁମାରଙ୍କ ତହୁଂ ଅଇଲ ମୁହିଂ ଶୁଣି । ୨୯୧ ।
ଗଙ୍ଗା କୁଳେଣ ଯେ ଅନେକ ଋଷି ଥିଲେ ।
କଥା ପଟାନ୍ତରେ ଏହା ବଖାଣିଲେ । ୨୯୨ ।
ଦଶରଥ ରାଜା ଯେ ଅଟ୍ଠ ପୁଣ୍ୟବାନ ।
କମ୍ପାଇ କୋଳେ ତାର ନୋହିଲା ନନ୍ଦନ । ୨୯୩ ।
ଶୁଣିଣ କହନ୍ତି ଦେବେ ସନନ୍ତକୁମାର ।
ସ୍ୱର୍ଗରେ ଆଜ ହୋଇଥିଲାକ ବିସ୍ମର । ୨୯୪ ।
ମୃତ୍ୟୁ ଲୋକେଣ ଯେ ଦଶରଥ ରାଜା ।
ବାସୁଦେବେ ହୋଇବେ ତାହାର ତନୁଜା । ୨୯୫ ।
ରାବଣ ମାରିବେ ଦେବଙ୍କର ହିତେ ।
ତେବେ ସେ ସ୍ୱର୍ଗେଣ ଦେବେ ବସିବାକ ସୁସ୍ତେ । ୨୯୬ ।
ଏସନେକ ବିସ୍ମର ବସି କରନ୍ତେ ଦେବଗଣ ।
ଦଶରଥ ରାଜାକୁ ହଲେକ କଲ୍ୟାଣ । ୨୯୭ ।
ସ୍ୱର୍ଗର ବାରତା ନୋହିଇ ପୁଣି ଆନ ।
ସୁରଗଣ ସଭାରେ ବିସ୍ମର ଏସନ । ୨୯୮ ।
ସନନ୍ତକୁମାରଙ୍କ ଏସନେକ ବାଣୀ ।
ମୁନି ଜନେ ଆନନ୍ଦ ହୋଇଲେ ତାହା ଶୁଣି । ୨୯୯ ।
ପୁଣ ପୁଣ ପୁଡ଼ପଶୀଲେ ପସ୍ମରନ୍ତି ରହି ।
କଥାଏକ ପସ୍ମରିବୁ ଯିବ ତୁମ୍ଭେ କହି । ୩୦୦ ।

Digitized by srujanika@gmail.com

କେତେକାଳେ ପୁତ୍ର ହୋଇବ ଦଶରଥ ।
ଏହା ସଞ୍ଜପିଣ କହସି ଯଥାର୍ଥ । ୩୦୧ ।
ସନନ୍ତକୁମାର ବୋଲନ୍ତ ଶୁଣ ଋଷି ।
ଋଷିସିଂହ ମୂନ ଯେ ବଭାଣ୍ଡେକ ଶିଷି । ୩୦୨ ।
ସେ ଯେବ ଅଯୋଧ୍ୟାକୁ ଆସିବେ ଏହୁକ୍ଷଣି ।
ପୁତ୍ର ପ୍ରାପତ ହୋଇବ ଦଶରଥ ନୃପମଣି । ୩୦୩ ।
ଏମନ୍ତେ କହଗଲେ ସନନ୍ତକୁମାର ।
ମୁହିଂ ତାହା ଶୁଣିଲି କଥା ତତୁ ସାର । ୩୦୪ ।
ସେ ସେ ମହାତପୀ ଅଟନ୍ତ ବ୍ରହ୍ମବେତ୍ତା ।
ତାହାଙ୍କର ବୋଲ କ ହୋଇବ ଅନ୍ୟଥା । ୩୦୫ ।
ଭଲ ଦଶରଥ ବସ୍ମରଇ ମନେ ।
ବଭାଣ୍ଡେକର ପୁତ୍ର ହୋଇଲା କେସନେ । ୩୦୬ ।
ସେ ସେ ମହାଋଷି ଅଟଇ ଊର୍ଦ୍ଧ୍ୱରେତା ।
କହ ସୁମନ୍ତ ହୋ କେବଣ ଏ କଥା । ୩୦୭ ।
ରଜାର ଅଗ୍ରତେ ଯେ ବୋଲନ୍ତ ମନ୍ତ୍ରୀବର ।
ଶୁଣ ଦେବ ଦଶରଥ ଅଯୋଧ୍ୟା ଈଶ୍ୱର । ୩୦୮ ।
ବ୍ରହ୍ମାର ମନୁ ଯେ ମରୀଚ ମୂନ ଜାତ ।
ମରିଚର ସୁତ ଯେ କାଶ୍ୟପ ତପୋବନ୍ତ । ୩୦୯ ।
କାଶ୍ୟପର ସୁତ ଯେ ବଭାଣ୍ଡେକ ମୁନ ।
ବ୍ରହ୍ମାର ସମାନେ ଯେ ଉଠଇ ତାର ଧୂନ । ୩୧୦
ତପ ଜପ ମନ୍ତ୍ର ବ୍ରହ୍ମ ବଦ୍ୟା ଜାଣଇ ।
ପୁରାତନ କଥାନ୍ତ ନତ୍ୟେ ବଖାଣଇ । ୩୧୧ ।
ଶୁଦ୍ଧ ଶରୀର ଯେ କଳଙ୍କ ନାହିଂ କଛୁ ।
ସାଧୁ ମହମା ସେ କଶ୍ୟପର ବଛୁ । ୩୧୨ ।
ଅନେକ ତୀର୍ଥକଇ ଗମିଣ ତପକଲା ।
ବ୍ରହ୍ମଋଷିପଣେ ଗଣିବା ହୋଇଲା । ୩୧୩ ।
କେତେହେଂକ ସମସ୍ତେ କଉସିକ ନଦୀ ତୀରେ ।
ପର୍ଣ୍ଣକୁଟୀ କର ରହଲେ ବନ ଘୋରେ । ୩୧୪ ।
କାଳେଣ ଉର୍ବସି (ଉର୍ବଶୀ) ଯେ ଦାସୀଗଣ ଘେନ ।
ଜଳକ୍ରୀଡ଼ା କରଣ ଅଇଲା କାମେନୀ । ୩୧୫ ।
ତପିନ ଭିତରେ ଅଛଇ ସରୋବର ।
କମଳ ପୁଷ୍ପ ତହିଂ ଅଛଇ ଅପାର । ୩୧୬ ।

Digitized by srujanika@gmail.com

ସ୍ଫଟିକର ପାବଚ୍ଛ ଅଛଇ ଚଉକଠ ।
ନାନା ଜୀବ ଜଳରେ ଅଛନ୍ତି ଅପ୍ରମିତ । ୩୧୭ ।
ହଂସମାନେ ପାଣିରେ ନିଜରୂପ ଦେଖି ।
ଶଉତ ନିର୍ମଳ ଅମୃତମୟ ଗଣି । ୩୧୮ ।
କୂଳେଣ ଅପଛରା ଯେ ଆସି ହେଲେ ଉଭା ।
ପରିଜନ ସଙ୍ଗେ ଦିଶଇ ମହାଶୋଭା । ୩୧୯ ।
ଜଳେ ପଶି ବାଳୀ ପଖାଳଇ ଅଙ୍ଗ ।
ହୀନବାସ ଦିନ୍ତ ଦିଶଇ ଥନ ଜଙ୍ଘ । ୩୨୦ ।
ସ୍ୱଭାବେ ମୂରତି ଯେ ସ୍ୱର୍ଗର ଅପଛରୀ ।
ତାହାଂ ପଟାନ୍ତର ଉପମା ଦେବା ସରି । ୩୨୧ ।
ତପୀଙ୍କର ତପ ଭଙ୍ଗ ଯେ ଦେଖିଲେଣ ଥିବ ।
ଯାହାର ଆଗେ ତରସ୍ତ ହୋଇବ କାମଦେବ । ୩୨୨ ।
ମୁଖ ଦେଖି ଚନ୍ଦ୍ର ଗଲକ ପଳାଇ ।
ଦୁଇ ଲକ୍ଷ ଯୋଜନେ ସେ ରହିଲକ ଯାଇ । ୩୨୩ ।
ନୟନ ମୃଗଳ ଦେଖି ନୀଳ-ଉତ୍ପଳ ।
ବୁଡ଼ି ମରିବ ବୋଲି ପଶିଲକ ଜଳ । ୩୨୨ ।
ନାସା ତିଳଫୁଲ ପଟାନ୍ତର କରି ।
ପଛେ ଲୁଚିଲା ସେ ମରତ ମନ କରି । ୩୨୫ ।
ଭ୍ରମର କେଶ ତାର ଦେଖିଣ ଚମରୀ ।
ବନରେ ରହିଲା ସେ ଭୋରୁ ରୂପ ଧରି । ୩୨୬ ।
କର୍ଣ୍ଣ ଦୁଇ ସମ ବରୁଣର ଫାଶି ।
ନୁହନ୍ତି ସମ ବୋଲି ଗଲେ ତହିଂ ଖସି । ୩୨୭ ।
ଡାହାଣାବର୍ତ୍ତି ଶଙ୍ଖ ଜାଣି କଣ୍ଠ ଶୋଭା ।
ସମୁଦ୍ରେ ପଶିଲାକ ନୋହିଲକ ଉଭା । ୩୨୮ ।
ପଦ୍ମନାଡ଼ ଜାଣି ଶୋହଇ ହସ୍ତ ବେନି ।
ନୋହଇ ସମ ସେ କଣ୍ଟକ ଭାବ ଘେନି । ୩୨୯ ।
ରତ୍ନର କଳସେ ଅମୃତ ପୂରେଇ ।
ତେସନ ସଂଯାତ ସେ ଦିଶଇ କୁଚଦୁଇ । ୩୩୦ ।
ମାତୁଳଙ୍ଗ ଫଳ ସେ ଯେ ପଟାନ୍ତର କରି ।
ପକ୍ୱୁଂ ହୋଇଲେ ସେ ଦିଶଇ ସୁସରି । ୩୩୧ ।
ମଝା ଦେଖି ସିଂଘ ବନକଇ ଗଲା ।
ଉଦରକଇ ପଦ୍ମ ପତ୍ର ସରି ସମ ନୋହିଲା । ୩୩୨

Digitized by srujanika@gmail.com

ନାଭି ଗମ୍ଭୀରକ ନଦୀର ଭଉଁରୀ ।
କଟିଭାଗ ଶୋଭା ନୁହଇ ପଟାନ୍ତରୀ । ୩୩୩ ।
ମଦନ ମହାପଢ ସିଂହାସନ କି ସେ ।
ଜାନୁ ଉଲଟ କଦଳୀ ଜାଣି ଦିଶେ । ୩୩୪
ଚରଣ ଅଙ୍ଗୁଷ୍ଠି ଓଶେକ କଢ଼ି ଆଭା ।
ପାଦପଦ୍ମ ତଳ ଅ- ତା ରଙ୍ଗ ପ୍ରଭା । ୩୩୫ ।
କରତଳ ଅଙ୍ଗୁଷ୍ଠି କନେକ ଚମ୍ପାକଢ଼ି ।
ନଖ ସେବତୀ କୁସୁମ ପାଖୁଡ଼ି । ୩୩୬ ।
ଜାଇ-ପୁଷ୍ପ ଜାଣି ଦିଶଇ ସର୍ବ ନଖ ।
କି ଅବା ଅଧର ଡାଳିମ୍ବ ପୁଷ୍ପରେଖ । ୩୩୭ ।
ଦନ୍ତ ଗଜମୋତି ସିନ୍ଦୂରେଣ ମଣ୍ଡି ।
କଟାକ୍ଷ ଗୃହାଣୀରେ ତପୀସ୍ୱେ ହୋନ୍ତି ଭଣ୍ଡି । ୩୩୮
ପୁଞ୍ଜି ପୁଞ୍ଜି ହୋଇ ବସନ୍ତ ପ୍ରେମପନ୍ତ ।
ହସି କହ୍ୱଲେଣ ମୃତ ଜୀବ ଜୀବନ୍ତ । ୩୩୯ ।
ସ୍ୱର୍ଗବେ ସୁନ୍ଦେରୀ ଯେ ରୂପେ ଗୁଣେ ସାର ।
ସର୍ବଦା ଯୁବା ଶରୀର ଅଟଇ ତାଙ୍କର । ୩୪୦ ।
ସ୍ୱର୍ଗର ସୁନ୍ଦେରୀ ସେ ଅପଛରୀ ଶ୍ରେଷ୍ଠ ।
ରତ୍ନ ଅଳଙ୍କାର ଭୂଷଣ ଗରିଷ୍ଠ । ୩୪୧ ।
ଜଳେ ପଶିଣ ସେ କରଇ ଜଳକେଳି ।
ଗୁରୁ ଗନ୍ଧ କୁଙ୍କୁମ ଘେନିଣ ଅଙ୍ଗେ ବୋଳି । ୩୪ ।
ନିଗମ ସ୍ଥାନ ଦେଖି ଲଜ୍ଜ୍ୟା ଭୟ ନାହିଁ ।
କାଖ ପଖା ଯେ ଜାନୁ ଜଘନ ଦେଖାଇ । ୩୪୩ ।
ବସ୍ତ୍ର ଖସିଣ ଦିଶଇ ଯଉବନ ।
ଅପାଙ୍ଗ ଦୃଷ୍ଟିରେ ଯେ ଚାଳଇ ନୟନ । ୪୪ ।
ଅଳପ ହସିଣ ଗୃହାଇଂ କାମେନୀ ।
ନାସିକା ଫୁଲାଇଣ ଚକୋର ଗୃହାଣୀ । ୩୪୫ ।
ସୁନ୍ଦେରୀ ମଦନ ଚେରଷ୍ଟା ବିକାର ।
କିଛି ଦୂରେ ଥାଇ ଦେଖିଲେ ମୁନିବର । ୩୪୬ ।
ସରୋବର କୂଳରେ ଯେ ତପ କରୁଥିଲା ।
କେତେହେଂକ ବେଳେ ତାର ଧ୍ୟାନ ଯେ ଭାଙ୍ଗିଲା । ୩୪୭ ।
ଦେଖିଲାକ ଉର୍ଭାସୀ କରଇ ସ୍ନାହାନ ।
ଦିଶୁଅଛି ତାହାର ମଦନ ମରମ ସ୍ଥାନ । ୩୪୮ ।

Digitized by srujanika@gmail.com

ବିଭାଣ୍ଡକ ନନ୍ଦନ ପଡ଼ିଲେକ ତହିଂ ।
ଆସି ନ ପାରଇ କାମେ ବଶ ହୋଇ । ୩୪୯ ।
ନନ୍ଦନ ପଡ଼ିଲାରୁ ମନହିଂ ରହିଲା ।
ଦେହ ଛାଡ଼ି ପ୍ରାଣ ପ୍ରକୃତି ଘେନଗଲା । ୩୫୦ ।
ନଖ ମୁଖ ଆଖି ଚୂଳଣ ପଞ୍ଚ ପ୍ରାଣ ।
ସ୍ତନ ଜଘନ ସେ ଭ୍ରମିଲା ପୁଣ ପୁଣ । ୩୫୧ ।
ଅଧର ପୟୋଧର ମଧରେଣ ଗଲା ।
ନାଭି ଜାଣି ଯାଇ କାମମଣ୍ଡଳେ ମିଶିଲା । ୩୫୨ ।
ଆସି ନ ପାରଇ ସଙ୍ଗ ମର୍ମ ସନ୍ଧି ।
ମୋହେ ଋଷି ମନ ହୋଇଲା ତହିଂ ବନ୍ଦୀ । ୩୫୩ ।
ଘନ ଘନ ନିଶ୍ୱାସ ଛାଡ଼ଇ ବିଭାଣ୍ଡକ ।
କନ୍ଦର୍ପ ଧ୍ୱଂସିଲା ତାର ମର୍ଯ୍ୟାଦା ବିବେକ । ୩୫୪ ।
ହୋଇ ଘନ ଘନ ଅଳସ କରି ଗୃହିଂ ।
ବିରହ ବିଭୋଳେଣ ହୋଇଲା କାମବାଇ । ୩୫୫ ।
ଧଇର୍ଯ୍ୟ ହତେ ଅଧାରଣ କାୟେ ।
ଅପଛରାଙ୍କ ମୁଖ ଦେଖିଣ ମୋହ ଯାଏ । ୩୫୬ ।
ସେ ସେ ସୁନ୍ଦରୀ ଯୁବତୀ ରହସିଣି ।
ଇନ୍ଦ୍ର ଯାହାକଇ କଥା କହଇ ହସି । ୩୫୭ ।
ବ୍ରହ୍ମାକଇ ମୋହ ପାରଇ ଯେବଣ ନାରୀ ।
ମୁଖ ଦେଖି ଯାହାକୁ ପ୍ରସନ୍ନ ତ୍ରିପୁରାରି । ୩୫୮ ।
ନୃତ୍ୟରଙ୍ଗେ ମୋହଇ ସ୍ୱର୍ଗର ସୁରଗଣ ।
ମୁନିଜନ ଦେଖିଲେ ହୁଅନ୍ତି ରଣଭଣ । ୩୫୯ ।
ବିଭାଣ୍ଡକ ମୁନି ଅଟଇ ଊର୍ଦ୍ଧ୍ୱରେତା ।
ତାହାଙ୍କୁହିଂ ହେଲେ ମୋହିଲ ବନିତା । ୩୬୦ ।
ସେ ଋଷି ଅଜ୍ଞାନ ହୋଇଲେ କାମବାଣେ ।
ବଶ୍ୟ ହୋଇଲା ସେ ଯୁବତୀ ରହୃ ଗୁଣେ । ୩୬୧ ।
ଅନେକ କାଳର ସେ ଥିଲା ବପୁ ରଖି ।
ସ୍ଖଳିତ ହୋଇଲା ସେ ଅପଛରା ଜା ଦେଖି । ୩୬୨ ।
ଧ୍ୟାନ ଭ୍ରଷ୍ଟ ହୋଇ ପଡ଼ିଲା ମୁନିବର ।
ପୁଣି ପ୍ରାଣ ଆସି ପଶିଲା ଶରୀର । ୩୬୩ ।
କ୍ଷଣକେ ଚେତନା ସେ ପାଇଣ ଉଠିବସି ।
ଅନେକ ଚିନ୍ତାର୍ଥେ ସେ ହୋଇଲେକ ଋଷି । ୩୬୪ ।

Digitized by srujanika@gmail.com

ବୋଇଲ୍ଲ ତପ ମୋର ହୋଇଲ୍ଲକ ଖଣ୍ଡି ।
ଯେ ସେ ସୁନ୍ଦେଶ୍ୱ ମୋର ପ୍ରାଣ ନେଲ୍ଲ ଭଣ୍ଡି । ୩୬୫ ।
ଆତ୍ମା ସଙ୍କୋଚ କରି କରଇ ସନ୍ତାପ ।
ବୋଇଲ୍ଲ ତପୀ ମୋତେ ଆକର୍ଷିଲ୍ଲ ପାପ । ୩୬୬ ।
ସେ୍ୱଥୁଅନନ୍ତରେ ସେ ଉର୍ବଶୀ ଅପଛସ୍ୱ ।
ଦାସୀଗଣ ସହିତେ ଗଲ୍ଲ ସ୍ୱର୍ଗପୁଷ୍ଟ । ୩୬୭ ।
ଦିବ୍ୟ ବିମାନେଣ ବସିଲ୍ଲ ମୁବଣ୍ଡି ।
ପ୍ରବେଶ ହୋଇଲ୍ଲ ସେ ଅମର ବାରପୁଣ୍ଡି । ୩୬୮ ।
ସନ୍ତ୍ରୁଂ ବିଦ୍ୟାଧସ୍ୱ ସ୍ୱର୍ଗକଇ ଗଲ୍ଲ ।
ତପସ୍ଥାନ ଉପେଖି ବିଭାଣ୍ଡେକ ଉଠିଲ୍ଲ । ୩୬୯ ।
ସଙ୍କୋଚ ଭରେ ସେ ଲଜ୍ୟାଭର ହୋଇ ।
ସରୋବର ଭିତରେ ପଶିଲ୍ଲ ମୁନ ଯାଇ । ୩୭୦ ।
ସ୍ନାହାନ ଯାରଣ କଉପ୍ସନ ପଖାଲ୍ଲ ।
ଜଳରେ ପଡ଼ି ରେତ ସ୍ଫଟିକ ମତ ଢ଼ଳ । ୩୭୧ ।
ନର୍ଜୀବ ହୋଇ ମୁନ ମଢ଼ି ଆଲୁ ଗଲ୍ଲ ।
ନଜ ଆସନେ ବସିଣ ଚନ୍ତା କଲ୍ଲ । ୩୭୨ ।
ଯେବଣ ବୀର୍ଯ୍ୟ ମୁନ ଜଳରେ ଗଲ୍ଲ ବୁଡ଼ି ।
ସେ ଅମୋଦ୍ଧ ବୀର୍ଯ୍ୟ ଜଳରେ ନ ବୁଡ଼ି । ୩୭୩ ।
ମଦନକା ଅପଛସ୍ୱ ପୂର୍ବର ଶାପ ପାଇ ।
ସେ ବିପିନେ ଥିଲ୍ଲ ସେ ମୃଗୁଣୀ ରୂପ ହୋଇ । ୩୭୪ ।
ତୃଷାରୁ ଆରତେ ସେ ଧାଇଂଣ ଅଇଲ୍ଲ ।
ସେହି ସରୋବରେ ଜଳ ସେ ଭକ୍ଷିଲ୍ଲ । ୩୭୫ ।
ପାଣିର ସଙ୍ଗେ ସେ ଭକ୍ଷିଲ୍ଲ ଋଷିବୀର୍ଯ୍ୟ ।
କୁରଙ୍ଗୀର ଗର୍ଭେ ରହିଲ୍ଲ ମହାତେଜ । ୩୭୬ ।
ଅମୋଦ୍ଧ ରେତ ସେ ଯେ ଜାର୍ଣ୍ଣ ଯେ ନୋହିଲ୍ଲ ।
ମୃଗୁଣୀର ନାଭି ପଦ୍ମ ଆବୋର ରହିଲ୍ଲ । ୩୭୭ ।
ଗର୍ଭବାସ ସନ୍ତୁଂ ହୋଇଲ୍ଲ କୁରଙ୍ଗୀ ।
ଏକାସ୍ଥେ ରହିଲ୍ଲ ସେ ନୋହିଲ୍ଲ ମୁଥସଙ୍ଗୀ । ୩୭୮ ।
ସେହି ସରୋବର ତଟରେ ବିପିନ ।
ତହିଂ ରହି କୁରଙ୍ଗୀ ହରିଲ୍ଲକ ଦିନ । ୩୭୯ ।
ଯଥା କାଳେ ତାହାର ହୋଇଲ୍ଲକ ପୁତ୍ର ଜାତ ।
ଦ୍ୟୁସଞ୍ଚ ସୁନ୍ଦର ସେ ହୋଇଲ୍ଲ ତାର ଗାତ୍ର । ୩୮୦ ।

Digitized by srujanika@gmail.com

ମନୁଷ୍ୟ ଶରୀର ଶିରରେ ବେନି ସିଙ୍ଗ ।
ଜାଣି ପଶ୍ଚାନ୍ତର ନାହିଂ ନା ଅନଙ୍ଗ । ୩୮୧ ।
ପୁତ୍ରଜାତ କରି କୁରଙ୍ଗୀ ସ୍ୱର୍ଗଗଲା ।
ପୂର୍ବର ଅଭିଶାପ ହେଲେଣ ନାଶଗଲା । ୩୮୨ ।
ସ୍ୱର୍ଗରେ ଗନ୍ଧର୍ବେ କଲେକ ବଜ୍ରପାଣି ।
ପୂର୍ବରୁ ବିଷ୍ଣୋଦ୍ଧ ତାର ଯୋଡ଼ିଲେକ ଆଣି । ୩୮୩ ।
ଯହୁଂ ସେ ମୃଗୁଣୀ ସ୍ୱର୍ଗକଇ ଗଲା ।
ଜନନୀ କ ନ ଦେଖି ପୁତ୍ର ଶୋକ କଲା ।। ୩୮୪ ।
ରାଢକ ରୋବିଲା ସେ ପୋଖରୀର କୂଳେ ।
ଆହାର ବିହୁନେ ସେ କ୍ଷୁଧାର ବିକଳେ । ୩୮୫ ।
ବିଭାଣ୍ଡେକ ମଢ଼ି ଆକୁ ଶୁଭିଲା ଶବଦ ।
ଶୁଣିଣ ମହାଯତ୍ନ ହୋଇଲା ତବଦ । ୩୮୬ ।
ପ୍ରଭାତ କାଳେଣ ସେ ଗଲା ତପୀସାଇଂ ।
ବାଳୁତ ଦେଖି ପଶୁ ମନେଣ ଭାଳଇ । ୩୮୭ ।
କିସ ଅପୂର୍ବ ଏ କାହୁଂଣ ଅଇଲା ।
ଅରଣ୍ୟେ ଜୀବ ବୋଲି ବିଭାଣ୍ଡେକ ବୋଇଲା । ୩୮୮ ।
ମନୁଷ୍ୟ ଶରୀର ଶିରରେ ଶୃଙ୍ଗ ଦୁଇ ।
ଉଧକଇ ଗୃହଂ ବିସ୍ମୟେ ମୁଖ ହୋଇ । ୩୮୯ ।
ଆକାଶୁ ଶବଦ ଶୁଭିଲା ଅନ୍ତରୀକ୍ଷ ।
ହେ ମୁନି ବିଭାଣ୍ଡେକ ତୋହର ସେ ବଛ । ୩୯୦ ।
ଉର୍ବାସୀକି ଦେଖିଣ ତୁ ଛାଡ଼ିଲୁ ଯେବଣ ରେତ ।
ଜଳର ମଧରେ ତୁ ଯାହା ଯେ କଲୁ ସୁପତ । ୩୯୧ ।
ମଦ ୍କା ଅପସରୀ ଶାପେ ମୃଗୁଣୀ ହୋଇଥିଲା ।
ତୃଷାର କାଳେ ସେ ନୀର ଭକ୍ଷି ଗଲା । ୩୯୨ ।
ପୁତ୍ରେ ଜାତ କରି ଅଇଲା ଅପସରୀ ।
ପାଳ ବିଭାଣ୍ଡେକ ସେ ତନଯେ ତୋହର । ୩୯୩ ।
ଯେଣେ ଦେବକାର୍ଯ୍ୟ ଅଛଇ ବହୁତ ।
ଯେ ାର ପ୍ରସାଦେ ସକଳ ଦେବେ ସୁସ୍ଥ । ୩୯୪ ।
ବାସୁଦେବ ଚିପୁଜିବେ ଯେହାର ଯାଗ କଲେ ।
ଶାପ୍ୟ ପାଇକ୍ରିତି ସଗ୍ରହଣ ନ କଲେ । ୩୯୫ ।
ସେ ପୁତ୍ରର ନାମ ହ୍ୱାଦେ ଅଟଇ ଋଷିସିଙ୍ଗ ।
ସ୍ୱର୍ଗେ ବସିବ ସେ ବ୍ରହ୍ମମୁନି ସଙ୍ଗ । ୩୯୬ ।

Digitized by srujanika@gmail.com

ସ୍ୱର୍ଗର ବାଣୀ ହ୍ରାଦେ ବିଭାଣ୍ଡେକ ଶୁଣି ।
ଚଳସ୍ତେ କରଣ ଯେ ଯୋଗ ବଳେ ଜାଣି । ୩୯୭ ।
ଯେହ୍ନାର ଆହୂତ ଦେଲେ ବସ୍ତୁ ହେବେ ଜାତ ।
ତେବେ ସେ ନାଶିବେ ରାବଣ ଦଇତ । ୩୯୮ ।
ସମସ୍ତ ଜାଣିଣ ଯେ ପୁତ୍ରକୁ ଘେନଗଲ ।
ପ୍ରାଣହୁଂ ଅଧିକ କରି ପୁତ୍ରକୁ ପାଳିଲ । ୩୯୯ ।
ଦୋହୋରି ଅଗ୍ନିର ପ୍ରସାଦେ ପୁତ୍ରବଳୀ ।
ସୁରଭିର କ୍ଷୀରେଣ ଯେ ପୁତ୍ର ତା ଅତୁଳ । ୪୦୦ ।
ବିଭାଣ୍ଡେକ ଋଷିର ସେ ଦେଖିଣ ତପକଲ ।
ପ୍ରସନ୍ନ ହୋଇଣ ଯେ ଇନ୍ଦ୍ର ତାକୁ ବର ଦେଲ । ୪୦୧ ।
ହୋଅତୁ ଆରୋଗ୍ୟ ଅମର ତନୁ ବହ ।
ତୋହର ମନବାଞ୍ଛା ମୋହର ଆଗେ କହ । ୪୦୨ ।
ଋଷିଶୃଙ୍ଗ ବୋଇଲ ଶୁଣ ଆଖଣ୍ଡଳ ।
ଯେତେବେଳେ ଲୋଡ଼ିବ ବରଷିବ ଜଳ । ୪୦୩ ।
ଶରୀର ରକ୍ଷ ମୋର ଅଟଇ ସୁରପତ ।
ଲୋଡ଼ିଲେ ବୃଷ୍ଟି ତୁ କରିବୁ ତତ୍ପତ । ୪୦୪ ।
ଅସ୍ତୁ ହୋଉ ବୋଲି ଗଲକ ବଜ୍ରଧର ।
ଆନନ୍ଦ ହୋଇଲାକ ଶୁଣି ଋଷିଶୃଙ୍ଗ କୁମର । ୪୦୫ ।
ଦଶରଥ ଆଗେ ଯେହ୍ନା ସୁମନ୍ତ୍ର କହିଲା ।
ଶୁଣ ଗୋ ଭବାନି ଯେହ୍ନା ଶଙ୍କର ବୋଇଲା । ୪୦୬ ।
ଯେ ସେ ରାମାୟଣ ଆଦିକାଣ୍ଡ ବାଣୀ ।
ଅଯୋଧ୍ୟାର ରଜା ସନ୍ତୋଷ ଏହା ଶୁଣି । ୪୦୭ ।
ଯେସନେ ସମସ୍ତେ ଅଯୋଧ୍ୟାର ଗ୍ରର ।
ଆସିଣ ପ୍ରବେଶ ହୋଇଲା ସିଂହଦ୍ୱାର । ୪୦୮ ।
ଦ୍ୱାରପାଳ କହି ଭିତରକୁ ଗଲା ।
ଆସ୍ଥାନ ବେଳେ ଯାଇ ରଜାକୁ ଭେଟିଲା । ୪୦୯ ।
ଶିରୁବାସ କାଢ଼ି କଉତୁଳ କରି ।
ପ୍ରଣମ୍ୟ ହୋଇ ଉଠିଲା କରପତ୍ର ଯୋଡ଼ି । ୪୧୦ ।
ହେ ଦେବ ଦଶରଥ ନୃପତ ଶିରୋମଣି ।
ଅପୂର୍ବ କଥାଏକ ଅଇଲୁ ଦେବ ଶୁଣି । ୪୧୧ ।
ଚମ୍ପାବତୀ ଦେଶେ ଦେବ ଲମ୍ବପାଦ ରାଯେ ।
ଇନ୍ଦ୍ର ଅନାବୃଷ୍ଟି ତାହାର ରଜ୍ୟେ କଯେ । ୪୧୨ ।

Digitized by srujanika@gmail.com

ବ୍ରାହ୍ମଣର କୋପେ ନ ପାଳଇ ବାସବ ।
ତୁ ତାହାର ଅଟୁ ମଇତ୍ର ବାନ୍ଧବ । ୪୧୩ ।
ପୂର୍ବେଣ ରାଜାଯେ ଅନେକ ଦାନ ଦେଲା ।
ଯ୍ୟେକଇ ବ୍ରାହ୍ମଣେକ ଆଦ୍ଦର ମାଗିଲା । ୪୧୪ ।
ତାହାକଇ ରାଜା ବୋଇଲା ଅସ୍ତୁକାର ।
ଗଳଥ୍ଥ ବ୍ରାହ୍ମଣଙ୍କୁ କଲାକ ବାହାର । ୪୧୫ ।
ଜଣକର ଦୋଷେ ସବୁଙ୍କୁହିଂ ମନ୍ଦ ବୋଲି ।
ଥୋକାଯ୍ୟେକ ଦ୍ୱିଜଙ୍କୁ ପକାଇଲା ପେଲି । ୪୧୬ ।
ଅପମାନ ପାଇ ବୋଇଲେ ଦ୍ୱିଦୁଜନ ।
ସମସ୍ତେ ହେଂ କୋପକରି ବୋଇଲେ ବଚନ । ୪୧୭ ।
ତୁ ଯେ ନୃପତି ହୋଇ ଆମ୍ଭଙ୍କୁ କୋପକଲୁ ।
ଦୋଷ ନ ବିଗ୍ଣର ଅନେକ ଦୋଷିଲୁ । ୪୧୮ ।
ଆମ୍ଭେ ଯେବେ ବ୍ରାହ୍ମଣ ବେଦମନ୍ତ୍ର ଜାଣୁ ।
ଜପତପ ଧ୍ୟାଏ ଧାରଣ ପରମାଣୁ । ୪୧୯ ।
ଅଦୋଷେ ଆମ୍ଭଙ୍କୁ କଲୁ ଉପହାସ ।
ଦେବ ଇନ୍ଦ୍ର ବୃଷ୍ଟି ନ କରୁ ତୋର ଦେଶ । ୪୨୦ ।
ଶାପ୍ୟ ଦେଇଗଲେ ବ୍ରାହ୍ମଣ ସକଳ ।
ଜାଣି ଗୋଡ଼ାଇଲେ ଲମ୍ବପାଦ ମହୀପାଳ । ୪୨୧ ।
ଅନେକ କାରୁଣ୍ୟ ସେ ହୋଇ ବ୍ରାହ୍ମଣଙ୍କୁ ବୋଇଲା ।
ହେ ଦ୍ୱିଜବର ମୋର ଅଭାଗ୍ୟ ହୋଇଲା । ୪୨୨ ।
ମୂର୍ଖ ପଣେ ନ ଜାଣି କଲି ମୁହିଂ ଦୋଷ ।
ସେ ଦୋଷ ଛାଡ଼ ତୁମ୍ଭେ ମହତ ପୁରୁଷ । ୪୨୩ ।
ବିପ୍ରଙ୍କର ଚରଣେ ପଡ଼ଇ ପୁଣ ପୁଣି ।
ଦଇନ୍ୟ କରଣ କହଇ ମୃଦୁବାଣୀ । ୪୨୪ ।
ଅନେକ ଆକୁଳ ଯହୁଂ ହୋଇଲା ନୃପତି ।
କୋପ ସଙ୍ଘରଣ ହୋଇଲେ ଶାନ୍ତ ମୂର୍ତ୍ତି । ୪୨୫ ।
ଯାହା ସେ ଶାପ୍ୟ ଦେଲେ ନୁହଇ ପୁଣ ଆନ ।
ଆଣିପାରୁ ଯେବେ ବିଭାଣ୍ଡେକ ନନ୍ଦନ । ୪୨୬ ।
ଋଷ୍ୟଶୃଙ୍ଗ ଅଇଲେ ବରଷିବ ଜଳ ।
ଶୁଣିଣ ସନ୍ତୋଷ ସେ ହୋଇଲା ଭୂପାଳ । ୪୨୭ ।
ନଗରେ ପ୍ରବେଶ ବିସନ୍ନ ମନ ହୋଇ ।
ବିଚାର କରେ ରାଜା ମନ୍ତ୍ରୀଗଣ ବସାଇ । ୪୨୮ ।

Digitized by srujanika@gmail.com

ଋଷିଶୃଙ୍ଗ ଆଣିବାକୁ ବୁଦ୍ଧି କାହାର ଅଛୁ ।
ଜଣେ ଜଣେ ମହାପଣ୍ଡ ସମସ୍ତଙ୍କୁ ପୁଚ୍ଛୁ । ୪୨୯ ।
ମନ୍ତ୍ରୀ ବୋଇଲେ ଭେଦେବ ଅଛଇ ମୋର ବୁଦ୍ଧି ।
ଯେଣେ ସେ ହୋଇବଇ ଆମ୍ଭର କାର୍ଯ୍ୟ ସିଦ୍ଧ । ୪୩୦ ।
ରତ୍ନ ଶୃଙ୍ଗୁଡ଼ି ଏକ ଦୋସାଧୁ ହାତେ ଦେବା ।
ଦୁନ୍ଦୁଭି ବଜାଇଣ ନଗ୍ର ବୁଲାଇବା । ୪୩୧ ।
ଯେହୁ ଋଷିଶୃଙ୍ଗଙ୍କୁ ପାରବାକ ଆଣି ।
ସେ ଏହା ପରଗ୍ରହ କରୁ ନୃପମଣି । ୪୩୨ ।
ଶୁଣି ସନମତ ଯେ କଲା ଲମ୍ବପାଦ ।
ରତ୍ନ ଶୃଙ୍ଗୁଡ଼ି ଦେଇ ବଜାଇଲା ବାଦ୍ୟ । ୪୩୩ ।
ହୀରାମଣି ମାଣିକ୍ୟ ଯେ ମୁକୁତା ଚନ୍ଦ୍ରକାନ୍ତ ।
ଶୁଦ୍ଧ ସୁବର୍ଣ୍ଣ ଜଡ଼ିଲା ଅଳଙ୍କାର ଶୋଭାପାନ୍ତ । ୪୩୪ ।
ଆଗରେ ଦାହୁଣ୍ଡୀ ବାଜଇ ଘର ତୂର ।
ଦୋସାଧୁ ଡାକଇ ତୁମ୍ଭେ ଶୁଣିମା ନଗ୍ରନର । ୪୩୫ ।
ଋଷିଶୃଙ୍ଗ ମୁନି ଯେ ବିଭାଣ୍ଡକ ଶିଷ୍ୟ ।
କଉଶିକ ନଦୀନ୍ତରେ ଅଟଇ ତାର ବାସ । ୪୩୬ ।
ସେ ମୁନିଙ୍କି ଆଣିଲେ ଯେ କରବ ଜଳବୃଷ୍ଟି ।
କେ ପାରିଲେ ଆଣ ଯେ ରକ୍ଷାକର ସୃଷ୍ଟି । ୪୩୭ ।
ଏସନେକ ବୋଲି ଯେ ଡାକଇ ଶବଦାଇ ।
ହାଟ ବାଟ ରାଜ୍ୟ ଦାଣ୍ଡରେ ବୁଲୋଇ । ୪୩୮ ।
ନଗ୍ର ନରନାରୀ ଗୋଡ଼ାଇ ଦେଖନ୍ତି ।
ଯେତେକ ଆରକେଣ ଯେ ବଗୃର ସାହସନ୍ତ । ୪୩୯ ।
ଜରତାକୋଷୀ ନାମେଣ ଯେ ଏକଇ ନଟନାରୀ ।
ବିଧାତା ଉପାୟେଣ ଅଛଇ ଅବତର । ୪୪୦ ।
ସେ ଆସି ସ୍ୱର୍ଣ୍ଣ ଶୃଙ୍ଗୁଡ଼ି ଧଇଲା ।
ମୁହିଂ ଋଷିଶୃଙ୍ଗଙ୍କୁ ଆଣିମି ବୋଇଲା । ୪୪୧ ।
ଶୁଣିଣ ଦୋସାଧୁ ହରଷ ମନ ହୋଇ ।
ରାଜାର ଛାମୁକୁ ତାକୁ ଗଲାକ ଘେନାଇ । ୪୪୨ ।
ଦେଖିଣ ସନ୍ତୋଷ ହୋଇଲା ମହୀପାଳ ।
ଜରତାକୁ ଦେଲା ହେ କନେକ ପଦ୍ମମାଳ । ୪୪୩ ।
ଅନେକ ପ୍ରବୋଧ ଯେ କଲାକ ନୃପମଣି ।
ଯେତେ ମୋହର ରାଜ୍ୟ ଉଧର ତରୁଣୀ । ୪୪୪ ।

Digitized by srujanika@gmail.com

ସୁଦେବୀ ବୋଇଲା ଯୋଡ଼ିଣ ବେନିକର ।
ଶୁଣ ଲମ୍ବପାଦ ଯେ ଠାକୁ  ମୋହୋର । ୪୪୫ ।
ଯେବେ ତୋହୋର ଆଜ୍ଞା ଶିରେ ଦେବ ଧରି ।
ସେ ମହାଋଷିଙ୍କି ମୁଂ ଆଣିମି ହେଳେ କରି । ୪୪୬ ।
କଥାଯେବେ କହିବ ମୁଂ ତ କରଇ ଦେବ ଭୟେ ।
ପ୍ରସନ୍ନ ହୋଇ ଆଜ୍ଞାଂ ଦେବା ମୋତେ ରାୟେ । ୪୪୭ ।
ଯେବେ ତୋହୋର କଟକେ ସର୍ବଜନେ ସୁଖୀ ।
ବିଶେଷେଣ ବେଶ୍ୟା ନୋହୁ ଆମ୍ଭେ ଦୁଃଖୀ । ୪୪୮ ।
ବନ ପର୍ବତ ଯେ ଶାଳ ଶିଳ ବାଟ ।
ପାଦେଣ ଗମନ୍ତେ ଯେ ପାଇବୁ ଆମ୍ଭେ କଷ୍ଟ । ୪୪୯ ।
ନାବ ସଜ କରିଦିଅ ନୃପବର ।
ଅପ୍ରମାଦେ ଆଣିମି ମୁଂ ଋଷିର କୁମର । ୪୫୦ ।
ନୃପତି ସନ୍ତୋଷ ହୋଇଲା ତାହା ଶୁଣି ।
ନାବ ଭିଆଣ ଯେ କଲାକ ନୃପମଣି । ୪୫୧ ।
ନଉକା ଉପରେ ବିବିଧ ଗଛ ରୁପି ।
ଫଳିଲା ଫୁଟିଲା ବୃକ୍ଷମାନ୍ତ ନେଇ ଥାପି । ୪୫୨ ।
ଆମ୍ବ ପଣସ ଯେ କଦଳୀ ନଡ଼ିକାଳ ।
ଟଭ ନାରଙ୍ଗ ଯେ ମାତଙ୍ଗ ଫଳଫୁଲ । ୪୫୩ ।
ବେଲ କଇଥ ଯେ ଅଁଳା ଖଜୁରି ।
ଚମ୍ପା ନାଗେଶ୍ୱର ବକୁଳ ତଗର । ୪୫୪ ।
ତର୍ଗ୍ଟ ମନ୍ଦାର ଅଶୋକ ମଲ୍ଲୀ ଜାଇ ।
କଟଣ କଣିଆର ଯେ କେତକୀ ଅଛଇ । ୪୫୫ ।
ଲବଙ୍ଗ ଗୁଳୁଚ ପିପ୍ପଳି ପାନଲତା ।
ପ୍ରତକ୍ଷେ ବନ କ ଯେ ରଞ୍ଚିଲା ବିଧାତା । ୪୫୬ ।
ଋଷିର ମଢ଼ିଆ ପ୍ରାୟେକ ପର୍ଣ୍ଣକୁଟୀ ।
ନାବ ମଧ୍ୟେ ରଞ୍ଚିଲେ ଅପୂର୍ବ ଘର ଗୋଟି । ୪୫୭ ।
ବାହିବାକୁ ପାଞ୍ଚନାବ ହାଦେଲ ଯେକ ଗାର ।
କଇବର୍ତ୍ତ ଅସଭବ ଅଛୁ ପାଞ୍ଚ ଡଙ୍ଗାର । ୪୫୮ ।
ଯେସନେକ କୋଡ଼ିଏ ନାବ ସଜ କଲେ ।
ଲତାକଂ ଭିତରେ ଯେ ପଲଙ୍କଂ ପାରିଲେ । ୪୫୯ ।
ଉପରେ ଚନ୍ଦ୍ରାତପ ଟାଣିଲେ ଗୋପ୍ୟ କରି ।
ବାହାରକୁ ନ ଦିଶଇ ଭିତରକୁ ଉହାଡ଼ି । ୪୬୦ ।

Digitized by srujanika@gmail.com

ସେତ ରୂମର ମୁକୁତା ମଣିହରା ।
ଚଉପାଶେ ଟାଣିଲେ ଅପୂର୍ବ ପାଟହେରା । ୪୬୧ ।
ପଲଙ୍କ ଉପରେ ଅଛଇ ପାଟ ଶେଯ ।
ତଥିରେ ଶେଜାଇଲା ଅଚ୍ଛୁ ବସ୍ତ୍ରରାଜ । ୪୬୨ ।
କୁସୁମ ପାଖୁଡ଼ା ଯେ କର୍ପୂର ଧୂଳି ।
ସୁବର୍ଣ୍ଣରେ ଜଡ଼ିତ ସିନ୍ଧୁଆ ମୂତୁଳି । ୪୬୩ ।
ଅଗର ଧୂପ ବାସ କରଇ ଚଉକଢ ।
ନାବ ଚଉପାଶେ ମାଣିକର ବଣ୍ଟା । ୪୬୪ ।
ସୁବାସ ଫଳମାନ ଯୋଗଲା ତହିଁ ନେଇ ।
ଦୁଧ ଘୃତ ଶାକର ଯେ ଅମୃତ ଭୁଆଇ । ୪୬୫ ।
ଗନ୍ଧ ଚନ୍ଦନ ଯେ କର୍ପୂର କସ୍ତୁରୀ ।
ସୁବର୍ଣ୍ଣର ଗଡ଼ୁ ଅଛଇ ଝୋର ଝୋର । ୪୬୬ ।
ଅଲଟ ରୂମର ଯେ ମୁକୁତା ଦର୍ପଣ ।
କନେକ ପଦାର୍ଥ ଯେ କାଚର ଘଟଣ । ୪୬୭ ।
ଶୁଭ ଅନୁକୂଳ ଯେବେନଣ କରନ୍ତା ।
କାମମୋହେନୀ ମୂଳେ ବାରହ ବନିତା । ୪୬୮ ।
ସଙ୍ଗତେ ଅଛନ୍ତି ଯେ ଅନେକ ପରିବାରୀ ।
ନଉକାରେ ବସିଲେ ଯେ ହରଷ ମନ ଧରି । ୪୬୯ ।
ଆସ୍ତେ ଅଲଙ୍କାର ଦ୍ରବ୍ୟ ବାସ ପିନ୍ଧି ।
କର୍ଣ୍ଣେଣ ତଡକ ବାହେ ବଦ ମୁଦ୍ଧି । ୪୭୦ ।
କର୍ଣ୍ଣେଣ ପଦେକ ଯେ ମୁକୁତାର ହାର ।
ଯଉବନ ଉପରେ ଲୁଳଇ ମୋତି ମାଳ । ୪୭୧ ।
ପାଦରେ ନୂପୁର ଯେ ହସ୍ତରେ ରତ୍ନ ବାହୁ ।
ଲଲାଟରେ କସ୍ତୁରୀ ଚିତା ତାମ୍ବୋଳ ରସ ଖାଇ । ୪୭୨ ।
ସ୍ତନ ଜାନୁ ଜଘନ ବଳଣ କାଖପଖା ।
କେ ଜାଣି ପଟାନ୍ତର ସ୍ୱର୍ଗର ନାୟେକା । ୪୭୩ ।
କରେ ତାଳ ମର୍ଦ୍ଦଳ ବଇଣୀ ବେଣୁ ଘେନି ।
ନୃତ୍ୟ ରଙ୍ଗ ସଜ ଘେନନ୍ତି କାମେନୀ । ୪୭୪ ।
କନ୍ୟାର ଆସନ୍ତେ ନୃପତି ଗୋଡ଼ାଇ ।
ମନ୍ତ୍ରୀ ଅମାନାତ୍ୟ ଘେନଣ ପ୍ରବୋଧଇ । ୪୭୫ ।
ତୁ ମୋହୋର କରତା ଗୋ ଅଟୁସି ବିଶ୍ୱାସ ।
ଯେମନ୍ତେ ପାରୁ ତୁ ମୁନକ ଘେନି ଆସ । ୪୭୬ ।

Digitized by srujanika@gmail.com

କାମମୋହେନୀ ଯେହ୍ନେ ଜରତାକୋଷା ନାରୀ ।
ବାରହ୍ନେ ବନତାଯ୍ନେ ନୃପଙ୍କ ପାଦେ ପଡ଼ି । ୪୭୭ ।
ତୁ ଦେବ ବାହୁଡ଼ିଣ ଯାସି ନୃପମଣି ।
ଅଣିମୁଂ ଋଷିଶୃଙ୍ଗ ବନଗଜ ଠାଣି । ୪୭୮ ।
ଯେହ୍ନେଥେ ଷଗୃର ତୁ ନ କର ଦେବ କିଛୁ ।
ଭାଲ ଆଣି ତୋତୋ ଦେବ ଋଷି ବଛୁ । ୪୭୯ ।
ରାଜା ପ୍ରସନ୍ନ ହୋଇ ଫୁଲ ପାନ ଦେଲା ।
ଶୁଦ୍ଧ ସୁବର୍ଣ୍ଣ ଯେ ବୃଷ୍ଟି କରାଇଲା । ୪୮୦ ।
ଆଗ୍ୟାଂ ଦେଲା ଶୁଭ ଅନୁକୂଳେ ଯାଅ ।
ମୁନର କୁମରକୁ ବେଗେ ଭେଟ ପାଅ । ୪୮୧ ।
ପଥେଣ ତୁମ୍ଭକୁ ରଖନ୍ତୁ ଦେବୀ ଦୁର୍ଗା ।
ଯାନ୍ତେ ଅନୁଗ୍ରହ କରନ୍ତୁ ଦେବୀ ଗଙ୍ଗା । ୪୮୨ ।
ବିନାୟକ ତୁମ୍ଭର ହରନ୍ତୁ ବିଘ୍ନଦୋଷ ।
ଶ୍ରୀମାଧବ ତୁମ୍ଭର ହରନ୍ତୁ କଲୁଷ । ୪୮୩ ।
ଲକ୍ଷ୍ମୀ ନରସିଂହ କରନ୍ତୁ ସଦୟା ।
ଶ୍ରୀପୁରୁଷୋତ୍ତମ ରଖନ୍ତୁ ତୁମ୍ଭର କାୟା । ୪୮୪ ।
ମଙ୍ଗଳ ଅଷ୍ଟକ ଯେ ପଢ଼ନ୍ତି ଜଉଛଷ ।
ବ୍ରାହ୍ମଣେ ବେଦ କରନ୍ତି ଆଗେ ଘୋଷ । ୪୮୫ ।
ଲୋକେ ଧନ ଧନ ବୋଲନ୍ତି ବେଗେ ଯାଅ ।
ମାହେନ୍ଦ୍ର ବେଳେ ଯେ ନାବ ପେଲ ଦିଅ । ୪୮୬ ।
ନୃପଙ୍କଙ୍କ ଓଳଗି ବୋଲଇ ଜରତା ।
ବାହୁଡ଼ା ବଜସ୍ୱେ ଦେବ କର ଶତ୍ରୁଜିତା । ୪୮୭ ।
ବୋଲଇ ମହୀପାଳ ଆମ୍ଭରେ କିସ କାର୍ଯ୍ୟ ।
ତୋହୋରେ ଗଲେ ରକ୍ଷା ହୋଇବ ସିନା ରାଜ୍ୟ । ୪୮୮ ।
ନାବ ଚଳିଯାନ୍ତେ କୂଳେ ବଜାଇଲେ ବାଜା ।
ଉଛବ ରାଜ୍ୟରେ କଲେ ଲମ୍ବପାଦ ରାଜା । ୪୮୯ ।
ଚଳିଲାକ ନାବ ଯେ ସ୍ନେହ ଲଯ୍ନେ ହୋଇ ।
ପ୍ରସାଦ ପାଇ କଇବର୍ତ୍ତେ ନାବ ନେଲେ ବାହି । ୪୯୦ ।
ବନ ପର୍ବତ କ ଚଳଇ ନଦୀ ମଧ୍ୟେ ।
ଆକାଶେ ଆନନ୍ଦ ହୋଇଲେ ସୁର ସିଦ୍ଧେ । ୪୯୧ ।
ରାତ୍ର ଦିବସରେ ନ ବିଶ୍ରାମି ଗଲେ ।
ଅନେକ ଘୋର ଗିର ବନସ୍ତ ଜିଣିଲେ । ୪୯୨ ।

Digitized by srujanika@gmail.com

ଦୁସହ ଦୁର୍ଗମ ଗହନ ବନେ ଯାନ୍ତି ।
ଅପୂର୍ବ ପଦାର୍ଥ କୂଳରେ ଦେଖନ୍ତି । ୪୯୩ ।
କାହିଂ ଗଜେ ଗଜେ ହୁଅନ୍ତି ଚଉଦନ୍ତି ।
କେବଣ ଶାର୍ଦ୍ଦୂଳ ଖେଦଇ ମୃଗନ୍ତି । ୪୯୪ ।
କାହିଂ ରୁକ୍ଷ ଯୋଏ ଖେଳନ୍ତି ଖେଡ଼ରସ ।
କାହିଂ ହସ୍ତୀ ଦେଖି ବାନରେ ହରଷ । ୪୯୫ ।
କାହିଂ ସୁରଭ ଯେ କରନ୍ତି ଗଜ ବେଢ଼ ।
ନାବକୁ ଗୁହିଂକେ ହୁଅନ୍ତି ଅନ୍ୟୋଅନ୍ୟ । ୪୯୬ ।
କାହିଂ ମତ୍ତହସ୍ତୀକ ବିଦାରଇ ସିଂହ ।
ସର୍ବାଙ୍ଗେ ଶ୍ରୋଣିତ ଢଳଇ ଦେହ ରଙ୍ଗ । ୪୯୭ ।
କାହିଂ ସର୍ପକଇ ମାରଇ ବଣ ଗୋରୁ ।
କାହିଂ ବାଘ ଡରେ ପଳାବନ୍ତି ଗୋରୁ ଦୂରୁ । ୪୯୮ ।
କେବଣ ଜୀବଜନ୍ତୁ ନଦୀକ ଗୁହିଂାନ୍ତି ।
ନାବ ଚଳି ଯାନ୍ତେ ଦଶନ୍ତି ପନ୍ଥ ପନ୍ଥ । ୪୯୯ ।
ପରାକ୍ରମ କରି ହୁଅନ୍ତି ଆଗୁସାର ।
କେହୁ ଭୟଙ୍କର ପଶନ୍ତି ଲତାର । ୫୦୦ ।
କେହୁ ପଛକଇ ଗୁହିଂ ଆଡ଼େ ହୋଇଯାନ୍ତି ।
ଥୋକାଏକ ଦୂର ଯାଇ ଲେଉଟି ଆସନ୍ତି । ୫୦୧ ।
ଗୃମଶି ଯୂଥ କାହିଂ ପାଣି ପିଇ ଆସଇ ।
ନାବ ଦେଖିଣ ଯେ ଥୋକାଏ ଦୂରେ ରହି । ୫୦୨ ।
କେବଣ ଠାବେ ତାଙ୍କୁ ଝାମ୍ପଇ ଶାର୍ଦ୍ଦୂଳ ।
ବଣ ମାର୍ଜାର କାହିଂ କରନ୍ତି ମୁଖଗୋଳ । ୫୦୩ ।
କାହିଂ ଶେତ ନେଉଳ ଖେଦାଖେଦା ହୋଇ ।
ନେପାଳ ମୂଷାକୁ ଯେ ଅଛନ୍ତି ଗୋଡ଼ାଇ । ୫୦୪ ।
ଚତ୍ର ମୟୂର ଯେ କରନ୍ତି ନୃତ୍ୟ ରସ ।
କାହିଂ ବଣ ପାରୁଆ ଉଡ଼ନ୍ତି ଚଉପାଶ । ୫୦୫ ।
ଗହନ ବନସ୍ତରେ ବୋବାଇ ଏକ ଜୀବ ।
ହୁଳହୁଳ ପ୍ରାଏକ ଶୁଭଇ ଶବଦ । ୫୦୬ ।
ପର୍ବତ ଉପରେ ଥାଇ ଦେଖଇ ଗଣ୍ଡୂଳ ।
ନାବ ଦେଖି ଧାଇଂ ଅଇଲା ନଦୀକୂଳ । ୫୦୭ ।
ବଳଆ ଗୋଡ଼ାଇ ଅଛନ୍ତି ଗଣ୍ଡାକୁ ।
ନାବ ଦେଖି ଦୁହେଂ ହୋଇଲେ ଠେକୁ ଠେକୁ । ୫୦୮ ।

Digitized by srujanika@gmail.com

ନଦୀର ଭିତରେ ଚରନ୍ତି ଜଳଚର ।
ହଂସ କାରଣ୍ଡକ ଚକୁଆ ଅପାର । ୫୦୯ ।
କଣ୍ଠା ପାଣିକୁଆ ହଂସଗୁଳ ପକ୍ଷୀ ।
ବସା ଛାଡ଼ିଣ ଯେ ପଳାନ୍ତି ନାବ ଦେଖି । ୫୧୦ ।
କେହ୍ନୁ ତହ୍ନଂ ବୁଡ଼ି ରହନ୍ତି ବସା ଆଣେ ।
କେବଣ ଚଢ଼ାଇ ଯେ ରହିଲେ ଡମ୍ବ ଆଣେ । ୫୧୧ ।
କେହ୍ନୁ ତହ୍ନଂ ପରେ ଉଡ଼ନ୍ତି ରଡ଼ି ଦେଇ ।
ନାବ ଗଲେଟି କେ ଦେଖନ୍ତି ବସା ଯାଇ । ୫୧୨ ।
କେବଣ ଠାବରେ ଯେ ଅଛନ୍ତି ପଦ୍ମଲତା ।
ନଛକା ମାଡ଼ିଗଲ ନୋହିଲ ଦେଖନ୍ତା ୫୧୩ ।
ନାନା ପକ୍ୱଫଳ ଭୁଞ୍ଜନ୍ତି ଶାଳୀଅନ୍ନ ।
ନୃତ୍ୟ ଗୀତେ ହରଷେ ଦିନ କଅନ୍ତି ଅନୁକ୍ଷଣ । ୫୧୪ ।
ଗମ୍ଭୀର ଜଳ ଦେଖି କଶାରେ ନାବ ଖାଞ୍ଚି ।
ପ୍ରଭାତେ ଚଳଯାନ୍ତେ ନଦ୍ୟାରସ ବଞ୍ଚି । ୫୧୫ ।
ଯେମନ୍ତେ କୋଡ଼ିଯେ ଦିବସ ବହିଗଲ ।
କଉଶିକ ନଦୀ ତୀରେ ପ୍ରବେଶ ହୋଇଲ । ୫୧୬ ।
ପଶ୍ଚିମକଇ ଉଜାଣି ନାବ ବହିଯାନ୍ତି ।
କେତେହେଂକ ଦୂରେ ଗିରିପର୍ବତ ଦେଖନ୍ତି । ୫୧୭ ।
ତହ୍ନଂ ଯାଇ ପ୍ରବେଶ ବଷିଷ୍ଠେକର ସୀମା ।
ଯେବଣ ଥାନ ପୂର୍ବେ ଭିଆଇଲ ବ୍ରହ୍ମା । ୫୧୮ ।
ଉତ୍ତର ଦିଗରେ ପଞ୍ଚକୋଶ ଗଲେ ।
ତେଇଣ ଦିନେ ମୁନି ସନଧେ ମିଳିଲେ । ୫୧୯ ।
ପରିମଳ ଠାବ ଦେଖିଲେ ରହନ୍ତି ।
ନାବ ଖଣ୍ଟାଇଣ ସୁନ୍ଦେଶି ଓଲ୍ଲବନ୍ତି । ୫୨୦ ।
ଖୋଜିଣ ଜାଣିଲେ ଯେ ବଷିଷ୍ଠେକ ଘର ।
ଅର୍ଦ୍ଧ କୋଶକ ସେ ଅଟଇ ନଦୀ ତୀର । ୫୨୧ ।
ତହ୍ନଂ ରହିଲେ ଯେ ଉତ୍ତମ ସ୍ଥାନ ଦେଖି ।
ବିଶ୍ରାମ କରନ୍ତି ଯେ ଶରଦଚନ୍ଦ୍ରମୁଖୀ । ୫୨୨ ।
ବଷିଷ୍ଠେକ ନଥିବା ଜାଣିଣ ଯେ ଯିବା ।
ସେ ମୁନି ଜାଣିଲେ ଶାପ୍ୟ ସେ ପାଇବା । ୫୨୩ ।
ଯେଥିଅନନ୍ତରେ ଗଲକ ଦିନ ସ୍ଥିର ।
ବଷିଷ୍ଠେକ ନ ଥିବାରେ ଜାଣିଲେ ଚତୁର୍ଥ । ୫୨୪ ।

Digitized by srujanika@gmail.com

କାମମୋହେନ୍ତୀ କି ଘଇଣ ଜରତା ।
ସାଙ୍ଗରେ ପେଷିଲେ ସେ ବାରହ୍ଣ ବନିତା । ୫୨୫ ।
ଅନେକ ମତେ ତାଙ୍କୁ ଢଆର କହିଲ ।
ପ୍ରେମ ରସ ଗୁଣ ଅନେକ ଶିଖାଇଲ । ୫୨୬ ।
ଯାଅଯା ସୁନ୍ଦେଷ୍ଟି ଲେ ରାଜକାର୍ଯ୍ୟ କର ।
ଯେମନ୍ତେ ଭଣ୍ଡି ହୁଅଇ ଋଷିର କୁମର । ୫୨୭ ।
ଶୁଣିଣ ସୁନ୍ଦେଷ୍ଟି ଯେ ଦିବ୍ୟ ବେଶ ହୋଇ ।
ଅଲେଖ ଢଲେଖ ଯେ ହୋଇଲେ ଚନ୍ଦ୍ରମୁହାଂ । ୫୨୮ ।
ମୁକୁତା ସିନ୍ଦ୍ରସ୍ଥାନ ସେ ଉପରେ ପକାଇ ।
ଖୋଷା ଖୋଷିଲେ ସେ ଅନେକ ଫୁଲଲ୍ଲଇ । ୫୨୯ ।
କେଶ କେଶ କର ମଣ୍ଡିଲେ ଅଳକା ।
କସ୍ତୁରୀ ଚିତା ଘେନଲେ ସୁନ୍ଦେଷ୍ଟି ନାୟେକା । ୫୩୦ ।
କର୍ଣ୍ଣେଣ କାପ ଯେ ମୁକୁତା ଫେର କମ ।
କାହାର କର୍ଣ୍ଣରେ ପଦ୍ମ ତଡ଼କ ଅନୁପାମ । ୫୩୧ ।
ଯେକଗୋଟିଆ ଗଜ ମୁକୁତା ବେଣ୍ଟୋଳ ।
କେବଣ ବାମା ଶ୍ରବଣ ଶିଖରେ ଝଞ୍ଜିଲ । ୫୩୨ ।
କାହାର ନାସାରେ ମାଣିକ୍ୟର ବସଣି ।
କାହାର ନାସାରେ ଲୁଲଇ ନୀଳମଣି । ୫୩୩ ।
ପାଞ୍ଚ ଗଜମୋତି କାହାର ନାସାଫୁଲ ।
ତାମ୍ବୂଳ ରଙ୍ଗେ କାହାର ଅଧର ଅମୂଲ୍ୟ । ୫୩୪ ।
କାହାର ଗଳାରେ ଲମ୍ବାନ୍ତ ଚମ୍ପସର ।
ମୁକୁତା କଣ୍ଠିମାଳ ହୃଦରେ କେହୁ ଭର । ୫୩୫ ।
କେହୁ ଝଞ୍ଜନ୍ତ ବେଳେ ଯାଉଂଳ ସୁନା ସୂତା ।
କାହାର ହୃଦରେ ପଦେକ ମୁକୁତା । ୫୩୬ ।
କାହାର ରତ୍ନନଆଳ ଲୁଲଇ ଉର ଯାଏ୍ୟେ ।
ମର୍କତ ତୋଡ଼ର କେ ଖଞ୍ଜି ନିଜ ପାୟେ । ୫୩୭ ।
କେ ନେତ ପିନ୍ଧଣ ହାପୁରଣ ଦେ.. ।
କେ ରଙ୍ଗ ପତନୀ ଯେ ଆଭରଣ କର । ୫୩୮ ।
କେହୁ ଚତୁସମ କେହୁ କୁଙ୍କୁମ ଘଷନ୍ତି ।
ଗଣ୍ଡି ଅନା ଚନ୍ଦନ କେ ମିଶାଇ ଘେନନ୍ତି । ୫୩୯ ।
କେ କରେଣ ଯନ୍ତ୍ର କେ ଧରିଲେ କରତାଳ ।
କେହୁ ସଜ ହୋଇଲ ଘେନଣ ମର୍ଦ୍ଦଳ । ୫୪୦ ।

Digitized by srujanika@gmail.com

କେହୁ ସ୍ମରର କେହୁ ମୁଖ ଦରପଣ ।
କେହୁ ଭୁଜେ କରନ୍ତି ବିବିଧ ଆଭରଣ । ୫୪୧ ।
କାହାର ହସ୍ତରେ ଦାଗ୍ଷର ଫଳ ।
କେହୁ ପଣା କେହୁ ଘେନଲେ ବାସ ଜଳ । ୫୪୨ ।
କେହୁ ଦିବ୍ୟବସ୍ତ୍ର କେ ଘେନଲେ ପୁଷ୍ପମାଳ ।
କେ ଗନ୍ଧ ଚନ୍ଦନ କେ କର୍ପୂରର ଧୂଳି । ୫୪୩ ।
କେ ସୁବର୍ଣ୍ଣର କଠାଉ କେ ସୁବର୍ଣ୍ଣ କମଣ୍ଡଳୁ ।
କେହୁ ଧୂପକାଠି କେ ଘେନଲେ ତାମ୍ବୋଳ । ୫୪୪ ।
କେ କରେଣ ପାଟଛତ୍ର କେ କରେଣ ଖଟୁଲି ।
କେ ରତ୍ନଝଁଶ କେ ପାଟଇ ମୁରୁଲି । ୫୪୫ ।
ଅନେକ ସମ୍ଭର ଯେ ଘେନଣ ଯୁବତୀ ।
କରତାର ଆଜ୍ଞା ଘେନଣ ଚଳଯାନ୍ତି । ୫୪୬ ।
ବେଳ ଦନ ଘଡ଼ିମାନେ ସେ ତହୁଂ ଚଳଗଲେ ।
ପ୍ରହରକ ପ୍ରବେଶେ ଯାଇ ମୁନଙ୍କି ଦେଖିଲେ । ୫୪୭ ।
ମଢିଆ ଦୁଆରେ ଯେ ଅଛଇଁ ବେଲଗଛ ।
ତହିଂର ତଳେ ବସି ଅଛଇ ମୁନି ବଛ । ୫୪୮ ।
କୃଷ୍ଣାଜିନ ଚ୍ଛଲ ସେ ପାଡ଼ିଣ ବ୍ରହ୍ମଗ୍ଷ ।
ବାମ ପାଖେ ଥୋଇ ଅଛଇ ଆଧାଶ । ୫୪୯ ।
ଗୁମ୍ଫୁରେ ଅଛଇ ଶାଳଗ୍ରାମ ଶିଳା ।
ଗୋମଳ ପାଉଂଶ ଭୂଷଣ ମୁନବାଳା । ୫୫୦ ।
କର୍ଣ୍ଣରେ ଅଛୁ ବେନ ତମ୍ବାର କୁଣ୍ଡଳ ।
କଣ୍ଠରେ ରୁଦ୍ରାକ୍ଷ ତୁଳସୀ କାଠମାଳ । ୫୫୧ ।
ପଦ୍ମ ପୁଷ୍ପର ମାଳେକ କଣ୍ଠେ ଲୁଳ ।
ନବ ଯୁବା ପୁରୁଷ ଅପୂର୍ବ ତପଶାଳୀ । ୫୫୨ ।
ଶୁଦ୍ଧ ସ୍ଫଟିକ ଯେ ଅଠାଇଶ ଗୋଟି ।
ଅକ୍ଷୟେ ମାଳା ଘେନି ଜପଇ ତପନିଷ୍ଠି । ୫୫୩ ।
ଅଜପା ସୁମରଇ ଅନାମିକା ପଢ଼ି ।
ଛତ୍ତିଶ କୋଟି ଯେ ଜପଇ ଏକ ଘଡ଼ି । ୫୫୪ ।
ଶିରରେ ସୁନ୍ଦର ଦିଶଇ ଗୁରୁ ଜଟ ।
ସିଂଘ ଦୁଇଗୋଟି କି ଦିଶଇ ମୁକୁଟ । ୫୫୫ ।
ତଳଯେ କରଣ ଯେ ଅଛଇ ମହାମୁନି ।
ଯେସନେକ ସମୟେଣ ମିଳଲେ କାମେନୀ । ୫୫୬ ।

Digitized by srujanika@gmail.com

କାମମୋହିନୀ ଯାଇ ଓଳଗଇ ମୁନିପାଦ ।
ତାହାଙ୍କର ମୁନି କରଇ ଆଶୀର୍ବାଦ । ୫୫୭ ।
କନ୍ୟାଙ୍କର ରୂପ ମନୋହର ଦେଖି ।
ଉଠିଲେ ଋଷିପୁତ୍ର ଆସନ ଉପେଖି । ୫୫୮ ।
କୃତାଞ୍ଜଳି ହୋଇ ବୋଲଇ ବିନୋଇ ।
ଜନ୍ମହୁଂ ଯୁବତୀ ଯେ ଦେଖିଲି ତାର ନାହିଁ । ୫୫୯ ।
ପୁଛଇ ଋଷିଶୃଙ୍ଗ ଯୁବତୀଙ୍କ ସ୍ନେହେ ।
କେ ତପୀଜନେ ଅଇଲ ତୁମ୍ଭେ କାହିଁ । ୫୬୦ ।
କେବଣ ଦେଶୀ ତୁମ୍ଭେ କେବଣ ପ୍ରକାର ।
କେବଣ ଦେବବିଦ୍ୟା ଅଭ୍ୟାସ ତୁମ୍ଭର । ୫୬୧ ।
କେବଣ ନଦୀ ତଟରେ ମଠିଆ କରିଥିଲ ।
କେବଣ କାରଣେ ତପୀ ଏଥିକୁ ଏବେ ଅଇଲ । ୫୬୨ ।
କିସ ନାମ ତୁମ୍ଭର କେବଣ କୁଳେ ଜାତ ।
ଏକ ଥାନେ ଥାଅ କି ସକଳ ତପୋବନ୍ତ । ୫୬୩ ।
କ ମମୋହିନୀ ବୋଇଲା ଋଷିର କଥାଶୁଣି ।
ଆମ୍ଭର ଦେଶ ସ୍ୱାମୀ ଅଟଇ ଉଜାଣି । ୫୬୪ ।
ନଖଦନ୍ତ ଆଘାତ ଦେଇତ ସର୍ବକାଣ୍ଡ ।
ମଦନ ଅନଳେ ଯେ ରତିଶାସ୍ତ୍ର ଭଣ୍ଡ । ୫୬୫ ।
କାମ କ୍ରୀଡ଼ା ରସ ଜାଣୁ ଯେ ଅପାର ।
ଚୁମ୍ବନ ଗୃହିଣୀ ଯେ ପୀରତି ଆମ୍ଭର । ୫୬୬ ।
ଧନ ଅର୍ଥେ ପରପୁରୁଷଙ୍କୁ ଖଟୁ ।
ମହା ମହାତପୀଙ୍କି ହରି ତପ ବାଣ୍ଟୁ । ୫୬୭ ।
ଇଚ୍ଛା ସୁଖେ ଆମ୍ଭେ ସର୍ବପୁର ଯାଉ ।
ଦ୍ରବ୍ୟ ପୁରୁଷେକ ତହିଂ ପୂଜା ପାଉ । ୫୬୮ ।
ପ୍ରୟାଗ ତୀର୍ଥେ ଆମେ ମକର ମାସେ ଗାଧୋଇଲୁ ।
କୁମ୍ଭେ ଶିବରାତ୍ରୀ ବାରଣସିରେ କଲୁ । ୫୬୯ ।
ତଇତେ ଗଙ୍ଗା ଜଗନ୍ନାଥ ଘାଟେ ।
ବୈଶାଖେ ଅଇଲୁ ଯେ ହର ତପ ବାଟେ । ୫୭୦ ।
ପ୍ରଥମ ଜ୍ୟେଷ୍ଠେ ଭେଟିଲୁ ଆସି ତୋତେ ।
ଅଯୋଧ୍ୟାକୁ ଯିବାର ଅଛଇ ଦିନା କେତେ । ୫୭୧ ।
ଶୁଣି ଋଷିଶୃଙ୍ଗ ହରଷ ହୋଇଲା ।
ପାଦ ପଖାଳ ବୋଲି କମଣ୍ଡଳୁ ଦେଲା । ୫୭୨ ।

Digitized by srujanika@gmail.com

ଶାର୍ଦ୍ଦୂଳଚର୍ମ୍ମଳ ମୁନି ଦେଖି ଯେ ବସିଛି ।
କୋମଳ ପାଣ୍ଡୁଂଶ ଗାତ୍ରେ ଭୂଷିତ । ୫୭୩ ।
ହରଡ଼ା ବାହାଡ଼ା ଅମ୍ବେଲା ଫଳ ଦେଖି ।
କନ୍ଦମୂଳ କିଛୁ ଉପଗତ କଲି । ୫୭୪ ।
ହସିଣ ଚତୁର୍ଥି ଯେ ବୋଲନ୍ତି ନାକମଳ ।
କସ କସ ପଦାର୍ଥ ଦେଲ ତପଶାଳୀ । ୫୭୫ ।
ମୁନି ବୋଇଲେ ସ୍ୱେ ଅଛଇ କନ୍ଦଫଳ ।
ପାଦ ପଖାଳନ୍ତ ଦେଇଅଛୁ ଜଳ । ୫୭୬ ।
ତୁମ୍ଭେ ଯେ ଅତଥି ଅଇଲ ଆମ୍ଭ ଘର ।
ତପସ୍ଥାନେ ଯାଇ ଯେ ଅଛୁ ଆମ୍ଭ ପିଅର । ୫୭୭ ।
ମୁହିଁ ବାଳୁତ ତନୁ ନ ଜାଣଇ କିଛୁ ।
ଭଗଣ ହୋଇତ କ ମୋହର ବୁଦ୍ଧି ଅଛୁ । ୫୭୮ ।
ତୁମ୍ଭେ ମହାତପୀ ପରମ ବ୍ରହ୍ମଜ୍ଞାନୀ ।
ମୁଁକ ସମ୍ଭାଳ ପାରିବ ଭୋ ମୁନି । ୫୭୯ ।
ତୁମ୍ଭେ ସଦୟା ଯେ ଘେନିବା ମୋର ସେବା ।
ପ୍ରସନ୍ନ ହୋଇଣ ସ୍ୱେହା ପରିଗ୍ରହ କରିବା । ୫୮୦ ।
କାମମୋହେନୀ ବୋଲଇ ଶୁଣସି ହେ ଋଷି ।
ସ୍ୱେ ସେ ଉପହାର ମୋହୋର ଆଖିକି ନ ଦିଶି । ୫୮୧ ।
ହରତକି ଅମ୍ବେଲା ଆମ୍ଭେ କି ସ୍ୱେହା ଖାଇ ।
ସ୍ୱେକ କନ୍ଦମୂଳ ଖାଇଲେ କ୍ଷୁଧା ଯାଇ । ୫୮୨ ।
ସ୍ୱେହୁ ପାଣି ଖାଇଲେ କି ଧ୍ୱରଇ ହାଦେ ତୃଷା ।
ବାହାଡ଼ା ଫଳ ଏତ ଲଗଇ ବଡ଼ କଷା । ୫୮୩ ।
ସ୍ୱେହୁ ବନେ ସ୍ୱେହୁ ଫଳ ଉପୁଜଇ ।
ଅଭାଗ୍ୟବନ୍ତ ଋଷି ଯେ ସେ ସ୍ୱେ ଫଳ ଭୁଂଜଇ । ୫୮୪ ।
ଆମ୍ଭର ବନ ଫଳ ଭୁଞ୍ଜ ମହାଯତ ।
ଦେଖ ହୋ ଆମ୍ଭର ତପର ଶକତ । ୫୮୫ ।
ଆମ୍ଭର ବପୁନ୍ୟର ଗଛର ବକଳ ।
ଅମୃତ ପବତର ନଦ୍ଦର ଯେହ୍ନ ଜଳ । ୫୮୬ ।
ସ୍ୱେତେ ବୋଲି ନାରୀ ସୁବାସିଲି ପାଣି ।
ରତ୍ନ ଝରେ ଭରି ବେଗେ ଦେଲେ ଆଣି । ୫୮୭ ।
ସନ୍ତୋଷେ ଋଷିପୁତ୍ର ପଖାଳିଲି ପାଦ ।
ଆଚମନ କରନ୍ତେ ମଣିଲି ସୁସ୍ୱାଦ । ୫୮୮ ।

Digitized by srujanika@gmail.com

କାମମୋହେନୀ ଯେ ଘେନଣ ଶ୍ରୀନବାସ ।
ସ୍ୱେ ତରୁ ବଢଲଟି ହୋ ବଶିଷ୍ଠେକର ଶିଷ । ୫୮୯ ।
ସ୍ୱେତେ ବୋଲ ମୁନ ଯେ ଶ୍ରୀର ପୋଛିଲା ।
ରଙ୍ଗଗଜ ନେତ ପୁଣ ହୁଂ ବାଛିଲା । ୫୯୦ ।
କୁଞ୍ଚେ ଉଛିଣ ସେ ବୋଲଇ ମୁନ ପିନ୍ଧ ।
ଶଗ୍ଧରେ ଆପଣେ ସେ ଲିପିଲେ ସ୍ତ୍ରୁ ଗନ୍ଧ । ୫୯୧ ।
ରତ୍ନ କମ୍ବଳେକ ପାଡ଼ିଣ ତହିଂ ଦେଲା ।
ସ୍ୱେ ସେ ପଶୁଚର୍ମ ବୋଲଣ ବୋଇଲା । ୫୯୨ ।
କର୍ପୂର ଚୂର୍ଣ୍ଣି ଅଙ୍ଗେ ଘଷାଇଲା ନେଇ ।
ସ୍ୱେ ସେ ବଭୂତ ମୁନ ଆମ୍ଭର ଦେଶେ ପାଇ । ୫୯୩ ।
କର୍ଣ୍ଣରେ ଖଞ୍ଜିଲେ ହାଦେ ମକରକୁଣ୍ଡଳ ।
ଗଳାରେ ଲମ୍ବାଇଲେ ମୁକ୍ତାହାର ମାଳ । ୫୯୪ ।
ବାହାରେ ତାଡ଼ ଯେ ବଚିତ୍ର ବାହୁଟି ।
ପୟରେ ନୂପୁର ଯେ ଖଞ୍ଜିଲେ ପ୍ରପଟି । ୫୯୫ ।
ଦୁଧ ଶାକର ବବଧ ପରକାର ।
ଆମ୍ବ ପନସ ସେ କଦଳୀ ଦବ୍ୟସାର । ୫୯୬ ।
ସ୍ୱେ ସେ ବନଫଳ ବୋଲଣ ଭୁଜାଇଂଲେ ।
ପୁଣିହିଂ ଗଙ୍ଗବାଣ ପାଣି ପିଆଇଲେ । ୫୯୭ ।
ଶାକର ସାଚ ଚଣି ଆବର ଖଣ୍ଡ ଖଜା ।
ହରଷେ ଭୁଞ୍ଜାଇ ଏହା ଋଷିର ତନୁଜା । ୫୯୮ ।
ଦୁଧ ଲଡ଼ୁ ଖାଇ ପଚାରଇ ମୁନ ।
ବାରୁ ତପନଷ୍ଟେ ମହମା ତୁମ୍ଭ ଧନ । ୫୯୯ ।
ସ୍ୱେଡ଼େ ସ୍ୱାଦଫଳ ତୁମ୍ଭର ବନେ ଥାଇ ।
ଜାଣିଲ ତୁମ୍ଭର ହେ ତପସିଙ୍କ ହୋଇ । ୬୦୦ ।
କେବଣ ବନ ତୁମ୍ଭର କେମନ୍ତେ ଦେଖିବା ।
ସ୍ୱେ ମୋହର ମନ ତୁମ୍ଭ ସଙ୍ଗେ ଯିବା । ୬୦୧ ।
କାମମୋହେନୀ ଯେ ଯଉର ନାମ ଶୁଣି ।
ହୁଆ ଲଗାଇଣ ବସିଲା ତରୁଣୀ । ୬୦୨ ।
ଇକ୍ଷୁ କାନ୍ଦାର ଯେ ଛଡ଼ାଇଲା ଥିଲା ।
ପାଚିଲା ଡାଳି ମଞ୍ଜି ପୁଣି ଖୁଆଇଲା । ୬୦୩ ।
ଗଙ୍ଗବାଣ ପଇଡ଼ ଯେ ପିଆଇଲେ ନେଇ ।
କେତେବେଳେହେଂ ର ପାପୁଡ଼ି ଖୁଆଇ । ୬୦୪ ।

Digitized by srujanika@gmail.com

ଦୁଧ ବହଳ ଯେ ରସକୋରା ନାଳ ।
ପୁଣି ନେଇ ଦେଲ ଅମୃତବାନ କଦଳୀ । ୭୦୫ ।
ନାନା ପଦାର୍ଥ ଦେଲା ଋଷିଙ୍କର ।
ଭୁଞ୍ଜି ଣ ସନ୍ତୋଷ ଯେ ହୋଇଲେ ତପସ୍ୱୀ । ୭୦୬ ।
କାମମୋହେନୀ ଯେ ପିଠି କଉ ବସି ।
ମୁନିଙ୍କି ଭଥାସ୍ତେ ବୁଝାବଇ ବସି । ୭୦୭ ।
ଆଚମନ କରାଇଲେ ଅଗ୍ରବାସ ପାଣି ।
ମୁଖବାସକଇ ଚନ୍ଦନ ଗୁଆ ଆଣି । ୭୦ ।
ଆଚ୍ଛେବନ କରାଇ ପୋଛିଲେକ ମୁଖ ।
ଋଷିଙ୍କର ପୁତ୍ର ପାଇଲା ବଡ଼ ସୁଖ । ୭୦୯ ।
କର୍ପୂର ବାସ ଗୁଆ ଉତ୍ତମ ତାମ୍ବୋଳ ।
ଭୁଞ୍ଜିଣ ତପସ୍ୱୀ ଯେ ହୋଇଲେକ ଖେଳ । ୭୧୦ ।
ଶିରେ କୁସୁମ କଣ୍ଠେ ଉତ୍ତମ ତାମ୍ବୋଳ ।
ପୁଣି ଚନ୍ଦନ ଲେପିଲେକ ବାଳୀ । ୭୧୧ ।
କେବଳ ବାଳା ସୁଣୀ ବାନ୍ଧନ୍ତି ବାନ୍ଧଣୀ ।
ଗ୍ରୀମର ଡାଳନ୍ତି କେବଣ ତରୁଣୀ । ୭୧୨ ।
କେହୁ ପାଟଛତ୍ର ଉଖଣଲେ ଶିରେ ।
ପୁଣି ବସାଇଲେ ରତ୍ନ ଖଟୁଲି ଉପରେ । ୭୧୩ ।
ହୁଂକାର ଆଳାପ କରଣ ଗୀତ ଗାଇ ।
ଅତି କୋମଳ ସ୍ୱରେ କେଦାର ଉଚ୍ଚାରଇ । ୭୧୪ ।
ବୀଣା ଯନ୍ତ୍ର ଘେନି ବଜାଇଲେ ମର୍ଦ୍ଦଳ ।
କେହୁ କରତାଳ ବାଇ କେ ବଜାନ୍ତି କଂସାଳ । ୭୧୫ ।
ମଧୁରକେଶୀ ସ୍ୱରେ କେ ପ୍ରବନ୍ଧେ ଗୀତ ଗାଇ ।
ମୁନିଙ୍କ ମୁଖ ଚାହିଁ ନୃତ୍ୟ କେ କରଇ । ୭୧୬ ।
କେ ଧୂପକାଠି ଘେନିଣ ଉଭା ହୋଇଛନ୍ତି ।
କେହୁ ରତ୍ନ ପାଦୁକା ନେଇ ପାଦେ ଦ୍ୟନ୍ତି । ୭୧୭ ।
କେବଣ ସୁନ୍ଦରୀ ଯେ ଦର୍ପଣ ଦେଖାଇଲେ ।
ଯେଣୁ ମୁନି ମୁଖ ଚାହିଁ ହସି ବୋଇଲେ । ୭୧୮ ।
କାମମୋହେନୀର କୋଳରେ ବସି ଯତି ।
ପରମ ହରଷେଣ ଦର୍ପଣ କରେ ଘେନନ୍ତି । ୭୧୯ ।
ଦେଖିଲେକ ମୁଖ କସ୍ତୁରୀ ଗୁରୁ ଟଟା ।
କର୍ଣ୍ଣରେ କୁଣ୍ଡଳ ଯେ ସୁନ୍ଦର ଭ୍ରୂଲତା । ୭୨୦ ।

Digitized by srujanika@gmail.com

କଣ୍ଠେଣ ହାର ଯେ ଶିରରେ ଫୁଲ ଗଭା ।
ମଦନ ପ୍ରତିମା ଠାଣି ଦିଶଇ ମୁନି ଶୋଭା । ୭୨୧
ଆପଣାର ମୁଖ ଦେଖି ମୁନି ମୋହମାନ ।
କାମମୋହିନୀ କ ବୋଲଇ ବଚନ । ୭୨୨ ।
ସେହିଡ଼େ ଅପୂର୍ବତ ଦେଖିଲ ମୋର ନାହିଁ ।
ଆପଣା ଶରୀର ରୂପ ସମସ୍ତ ଦିଶଇ । ୭୨୩ ।
ସାଧୁ ସାଧୁ ତୁମ୍ଭେ ସାଧୁ ତୁମ୍ଭର ପୁଣ୍ୟ ।
ଯୁବତୀଙ୍କ ମୁଖ ଶୁଣି ବୋଲନ୍ତି ମହାମୁନ୍ୟ ୭୨୪ ।
ହସି କାମମେ ହେନୀ ମୁନିଙ୍କି କୋଲ କଲା ।
ଯଉବନ ଲଗାଇ ମୁଖେ ଚୁମ୍ବନ ଦେଲା । ୭୨୫ ।
ବୋଇଲା ଏ ଆମ୍ଭର ତପର ଶକତି ।
ତପର ବଲେ ଏଥେ ଦିଶଇ ନିଜମୂର୍ତ୍ତି । ୭୨୬ ।
ଜଙ୍ଘେ ଲଖ ଦେଇ ଚଳାଇଲା ଲଖ ।
ପୁଣିହିଁ ଲେଉଟି ଚୁହାଇଂ ଋଷିମୁଖ । ୭୨୭ ।
ହୁଆ ଆଉଜାଇ କୁଚ ଠାବ କଲା ।
ହସ ହସ ହୋଇଣ ମୁନି ପଚାରିଲା । ୭୨୮ ।
ସେ ଅପୂର୍ବତ ମୋର ତହିଁ ନାହିଁ ।
ସେହିଡ଼େ ଭଲ ପଦାର୍ଥ ପାଇଲ ତୁମ୍ଭେ କାହିଁ । ୭୨୯ ।
କାମମୋହିନୀ ଯେ ବୋଲଇ ଶୁଣ ଋଷି ।
ସେଥିର ଭିତରେ ହାଦେ ଅମୃତ ପୂରିଅଛି । ୭୩୦ ।
ସେବେଣେ ସେ ଆମ୍ଭର ଅଗ୍ରହଣ ହୋଇ ଦେହ ।
ଯଜ୍ଞର ଫଳ ଆମ୍ଭର ଅଟଇ ସର୍ବଂସହ । ୭୩୧ ।
ନୀଳ ମୁଖ ବସ୍ତୁ ସେଥେ ଛବେଣ ବିଜେ କଲା ।
ଦାସବତ୍ସଳ ନାମ ସେବେଣେ ସେ ବହିଲା । ୭୩୨ ।
ଅବର୍ଣ୍ଣ ଅରୂପ ସେ ପଞ୍ଚ ପାଣି ନାହିଁ ।
ଅଛି ପଞ୍ଚ ପାଣିତ କ୍ଷମ କାହାର କାହିଁ । ୭୩୩ ।
କର ଅଁଶ୍ୱାସ ପ୍ରସନ୍ନ ତୋତେ ହୋନ୍ତୁ ।
ମନେ ଯାହା ବାଞ୍ଛିବୁ ସେ ବର ତୋତେ ଦିଅନ୍ତୁ । ୭୩୪ ।
ହୁଆରେ ଆଉଜାଇ ଅଣିଲା କୋଳକାଖ ।
ହରଷେ ଅଧର ଯେ ଚୁମ୍ବିଲକ ଧରି । ୭୩୫ ।
ଶରୀର ଆଢଂଧି ଯେ ଗୃହିଂଲ ପ୍ରେମ ରସେ ।
ମୁନି ମନ ହରିଲା ଏକଇ ନମିଷେ । ୭୩୬ ।

Digitized by srujanika@gmail.com

ଷଡ଼ରସ ସ୍ୱାଦ ସର୍ବେ ଯେ ଭୋଗକଲ୍ଲ ଋଷି ।
ଚନ୍ଦନ କର୍ପୂର ଯେ ଗନ୍ଧ ଅଙ୍ଗେ ଘଷି । ୬୩୭ ।
ତାମ୍ବୁଳ ଭୁଞ୍ଜିଣ ରତ୍ନ ଆଭରଣ କରି ।
ନୃତ୍ୟ ରଙ୍ଗ ରସେ ଭେଟିଲ ତପସ୍ୱୀ । ୬୩୮ ।
କାମମୋହେନୀକ ବୋଇଲକ ହସି ।
ତୁମ୍ଭର ଆଶ୍ରମେ ଆସିବୁ ଆମ୍ଭେ ପଶି । ୬୩୯ ।
ଚ୍ଛଲ ଯିବା ଆମ୍ଭେ ଦେଖିବା ମନ୍ଦିର ।
ଏତେକ ବୋଲିଣ ଯେ ଉଠିଲେ ମୁନିବର । ୬୪୦ ।
ନୃତ୍ୟ ଗୀତ ରୁହାଇ ବୋଲଇ କାମମୋହେନୀ ।
ଆଜ ନ ଯିବା ତୁମ୍ଭେ ଶୁଣ ତପୋଧନୀ । ୬୪୧ ।
ଏବେ ଆମ୍ଭେ ଯିବୁ ଦେବତା ପୂଜାକରି ।
ଆହ୍ନିକ ବେଳ ଯେ ହୋଇଲା ତପସ୍ୱୀ । ୬୪୨ ।
କାଲି ଆସି ତୋହୋର ଗଲେ ଘେନି ଯିବୁ ।
ଏ କଥା ସତ୍ୟ ସତ୍ୟ ଅବଶ୍ୟ କରିବୁ । ୬୪୩ ।
ମୁନି ନ ମୁଛଇ ତୁଣ୍ଡ ତ ଇଚ୍ଛା ନାହିଂ ।
ତୁମ୍ଭେ ତପୀଜନ ନ ଆସ ଆଜ ଯାଇ । ୬୪୪ ।
ଆସିବା ବୋଲି ଯୁବତୀ ସତ୍ୟ କଲେ ।
ପିତା ତୁମ୍ଭର ଦୁଷ୍ଟ ବୋଲିଣ ଡ଼ରାଇଲେ । ୬୪୫ ।
ଏହେ ସେ ଆଭରଣ ପିନ୍ଧିବାର ବଳକ ।
ଲୁଚ୍ଛଇ ଥୋଇଥାଅ ବିଭାଣ୍ଡେକର ବାଳ । ୬୪୬ ।
ଏ ସୁଣ୍ଡି ଛଡ଼ାଇଣ ଘେନସି ବଳ୍କଳ ।
ପିତା ଆଗେ ନ କହିବୁ ଏସନେକ ଗୋଠ । ୬୪୭ ।
ଏତେ ବୋଲି ନାରୀ ଅଇଲେ ପିଠି ଦେଇ ।
ଥୋକାଏକ ଦୂରେ ଲେଉଟି ପୁଣି ଗୃହିଂ ।। ୬୪୮ ।
ମୁନି ଅନାଇ ବୋଇଲେ କାଲି ଆସ ।
ମୁହିଂ ତୁମ୍ଭର ଯେ ଅଟଇ ନିଜ ଦାସ । ୬୪୯ ।
ସୁନ୍ଦେରୀ ଅଳପ ହସିଣ ବୋଇଲେ ।
ଆସିବୁ ଆସିବୁ ବୋଲିଣ ବୋଇଲେ । ୬୫୦ ।
ଅଦୃଶ ପରିଯନ୍ତେ ଅନାଇଥିଲା ମୁନି ।
ଜରତା ଗୁମ୍ଫାର ସେ ମିଳିଲେ କାମେନୀ । ୬୫୧ ।
ଏସନେକ କଥା ହୋଇଲା ସେହୁଦିନ ।
ଶୁଣି ଜରତା କନ୍ୟା ପରମ ତୋଷ ମନ । ୬୫୨ ।

Digitized by srujanika@gmail.com

ସେଥୁ ଅନନ୍ତରେ ଋଷିଶୃଙ୍ଗ ମୁନି ।
ଯୁବତୀଙ୍କର ଗଲକୁ ଜାଣିଲେ ତପୋଧନୀ । ୭୫୩ ।
ନ ପୂର୍ବ ନ ଆସନ୍ତ ଅପୂର୍ବ ତପସ୍ଵୀ ।
ପୁଣି ହୃଂ ବସୁରଇ ସାଷ୍ଟାମ ମନେ ଧର । ୭୫୪ ।
ଆସିବୁ ବୋଲି ଯେ ବୋଇଲେ ତପସ୍ଵୀ ।
କାଲି ଆସିବେ ସେ ପ୍ରାତସ୍ନାନ କରି । ୭୫୫ ।
ପିତା ଆସିବାର ଜାଣିଲେ ବେଳ ।
ବସ୍ତ୍ର ଅଲଙ୍କାର କାଢ଼ି ଋଷିବାଳ । ୭୫୬ ।
ଗନ୍ଧ ଚନ୍ଦନ ଯେ ପକାଇଲା ପୋଛି ।
ଶିରର ପୁଷ୍ପ ସେ ପକାଇଲା ଲେଛି । ୭୫୭ ।
ଦୋହୋଟି ଘରେ ପଶି ବଭୂତ ବୋଳିଲା ।
କନ୍ଦ ଫଳ ମୂଳ ଜଳାଦ୍ୟ ଆଣିଲା । ୭୫୮ ।
କାମଧେନୁ ସଂଖିଳଣ କଲେକ ଦୋହନ ।
ଯୁବତୀଙ୍କ ଠାଇଂ ଅଛଇ ତାର ମନ । ୭୫୯ ।
ସେଥୁ ଅନନ୍ତରେ ରବି ଅସ୍ତ ଗଲା ।
ତପସ୍ଥାନ ତେଜ ବିଭାଣ୍ଡକ ଅଇଲେ । ୭୬୦ ।
ଋଷିଶୃଙ୍ଗ କଥା ବିକୃତ ମଣିଲା ।
ମାୟା ମୁନିଙ୍କର ଆସିବା ଜାଣିଲା । ୭୬୧ ।
ପୁତ୍ରକୁ ପଗ୍ଚରିଲା କୋଳରେ ବସାଇ ।
ଶରୀର ଆଘ୍ରାଣ ମୁଖେ ଚୁମ୍ବ ଦେଇ । ୭୬୨ ।
କରେ ବାବୁ କସ ପ୍ରକଟଇ ଗନ୍ଧ ।
ତପୀଙ୍କି ନ ଯୋଗାଇ ଅଟଇ ଏ ମନ୍ଦ । ୭୬୩ ।
କପାଇଂ ସେଥି ସେ ହୋଇଲେ ପରଦେଶ ।
କହିବା ମୋତେ ସେଥିର ସନ୍ଦେଶ । ୭୬୪ ।
ଋଷିଶୃଙ୍ଗ ବୋଇଲେ ଶୁଣ ତୁ ପିତାମହ ।
ଆଜ ସେ ସଫଳ ହୋଇଲା ମୋ ଦେହ । ୭୬୫ ।
ଅପୂର୍ବ ତପୀ ଦେଖିଲି ଆଜ ମୁହିଂ ତାତ ।
ରୂପେଣ ମୋହି ସେ ପାରନ୍ତ ଜଗତ । ୭୬୬ ।
ସେ ଆମର ଜଟା ପିଙ୍ଗଳ ବର୍ଣ୍ଣ କେଶ ।
ତାଙ୍କର ଶିରରୁହ ଭ୍ରମର ସାଦୃଶ । ୭୬୭ ।
ରୁଦ୍ରାକ୍ଷ କାଠମାଳ ଆଭରଣ ନାହିଂ ।
ଅପୂର୍ବ ଅଲଙ୍କାର ଅଛନ୍ତି ସେ ଲଇ । ୭୬୮ ।

Digitized by srujanika@gmail.com

ଅନ୍ୟେଂଲା ହରଡ଼ା ସେ ଦେଖିଣ ହସିଲେ ।
ସ୍ୱାଦ ପଦାର୍ଥ ହେ ଫଳ ବୋଲିଣ ଆଣିଦେଲେ । ୬୬୯ ।
ତାହାଙ୍କର ପର୍ବତୁ ଯେବଣ ଝରପାଣି ।
ତାହା ଖାଇଲେ ପିତା ତପେ ପରିପଢ଼ ଜାଣି । ୬୭୦ ।
ତରୁ ବକଳ ତାତ ଅପୂର୍ବ କମ ଅଛୁ ।
ଆମ୍ଭର ବକଳ ତାତ ପକାଇଲେ ଲେଛୁ । ୬୭୧ ।
ଆମ୍ଭର ପରିସ୍ୱେ ବେଦ କରଣ୍ଡି ନ ବହନ୍ତି ।
ତାହାଙ୍କର ଦେବତାକୁ ହୃଦରେ ବହୁଆନ୍ତି । ୬୭୨ ।
ମୁଖବାସ ହତେଣ ଯେବଣ ପତ୍ର ଦେଲେ ।
ଆପଣେ ଦଣଇତ ପଦାର୍ଥ ଦେଖାଇଲେ । ୬୭୩ ।
ଏଣେ ତାତ ଧନ୍ୟ ଧନ୍ୟ ତପ ତାହାଙ୍କର ।
ଛଦ୍ମ ତପ ତ ଦେଖିଲୁ ଭୂମ୍ଭର । ୬୭୪ ।
ଅଙ୍ଗନ୍ୟାସ କରନ୍ତି ଥାନମାନ ଛୁଇଂ ।
ତୋହୋର ଶପତ ତାତ ଅଗ୍ୟାନ ହୋଇଲଇଂ । ୬୭୫ ।
ବିଭାଣ୍ଡେକ ବୋଲନ୍ତି ସେ ନୋହନ୍ତିଟି ଯତ୍ତ ।
ଯାହା ସେ କହିଲୁ ବାବୁ ରକ୍ଷାସୁଣୀ ପ୍ରକୃତ । ୬୭୬ ।
ବିବିଧ ରୂପ ସେ ହୁଅନ୍ତି ଦଇତୁଣି ।
ତପୀଙ୍କି ଭଣ୍ଡନ୍ତି ସେ ମାୟାରେ ପିଶୁଣୀ । ୬୭୭ ।
ତୁ ବାବୁ ତାହାଙ୍କୁ ବିଶ୍ୱାସ ନ ଯିବୁ ।
ଯେବେ ମୋହୋର ବୋଲ ପ୍ରତପାଳିଥିବୁ । ୬୭୮ ।
ପିତା ତଥାରଲେ ସୁତ ତୋଷ ନାହିଂ ।
ରଏଣୀ ବଞ୍ଚିଲେ ସେ ବିବିଧ କଥା କହି । ୬୭୯ ।
ପ୍ରଭାତେ ବିଭାଣ୍ଡେକ ତପ ସ୍ଥାନେ ଗଲେ ।
ସ୍ନାହାନ ତର୍ପଣ ସେ ଋଷିଶୃଙ୍ଗ କଲେ । ୬୮୦ ।
ଅଗ୍ନିପୂଜା ସାର ଦୁହିଂଲେକ ଗାଈ ।
କନ୍ୟାଙ୍କ ଆସିବାର ନରେଖିଣ ସ୍ତ୍ରହିଂ । ୬୮୧ ।
ଗହନ ବନେ ନେଇ ରୁହାଇଲା ଗାଈ ।
ଛନ ଛନ ମନ ବାଛୁରି ବାନ୍ଧଇ । ୬୮୨ ।
କୃଷ୍ଣାଜିନ ଗୁଲ ମାଡ଼ିଣ ବସଇ ।
ପୁଣି ହିଂ ବେଲ ଗଛ ତଳେ ଉଭା ହୋଇ । ୬୮୩ ।
ଜପ କରନ୍ତେଣ ନୋହିଲାକ ମନ୍ତ୍ର ସିଦ୍ଧ ।
ଚଉ ବିଚଳିତ ପାଶୋରିଲା ବେଦ । ୬୮୪ ।

Digitized by srujanika@gmail.com

କେଶ ଫେଡ଼ିଣ ସେ ଘେନନ୍ତି ଗନ୍ଧବାସ ।
କାଖ ଆଉସିଂଣ ପାଉନ୍ତି ବଡ଼ ରସ । ୬୮୫ ।
ଗତ ଦ୍ଦବସର ଭୋଜନ ସୁମର ।
ଚତୁର୍ଭୁଜଙ୍କ କଲ୍ଲ ପ୍ରେମ ଅନୁସର । ୬୮୬ ।
ଚଳେ ନ ବସଇ ଉଠି ଉଭା ହୋଇ ।
ଚକିତ ହୋଇଣ ସେ ଚଉକଢ ଚାହିଁ । ୬୮୭ ।
ମନେ ବିଗ୍ରହଲେ ତପୀଙ୍କ ନଇଲେ ।
ଚେଡ଼େ ମହାଋଷି ଭଣ୍ଡି ତ ମୋତେ ଗଲେ । ୬୮୮ ।
ପୂର୍ବ ଭାଗ୍ୟ ଥିଲେ ଦେଖା ତ ପାଇବା ।
ମନେ ମନେ ଭାଳଇ କେମନ୍ତ କରିବା । ୬୮୯ ।
ସନ୍ଧ୍ୟାଂ ସେ ପହରେ ହୋଇଲ୍ଲକ ବେଳ ।
ବିଭାଣ୍ଡେକ ବାଲ ଚିତ୍ତ ସମାକୁଳ । ୬୯୦ ।
ନଇଲେ କ ନା ବୋଲି ବୃକ୍ଷେ ଉଠି ଚାହିଁ ।
ଯେଣେ ନଦୀ କୂଳେ ଅଛନ୍ତି ସର୍ବସହି । ୬୯୧ ।
ବେଶ ବେଶନ ସେ ହୋଇଣ ଅଲଙ୍କାର ।
ଧୂପ ଦୀପ ବାସ ଚନ୍ଦନ ଅଗର । ୬୯୨ ।
ଗୀତ ଗାଇଣ ସେ କରନ୍ତି ନୃତ୍ୟ ରସ ।
ଦୂରୁହୁଁ ଦେଖିଲ୍ଲ ତାହା ବିଭାଣ୍ଡେକର ଶିଷ । ୬୯୩ ।
ଚରତର ହୋଇଣ ସେ ଗଛରୁ ଓହ୍ଲାଇଲ୍ଲ ।
କନ୍ୟାଙ୍କର ତହିଁକ ସେ ଅନ୍ତର ହୋଇଗଲ୍ଲ । ୬୯୪ ।
ଅଧକୋଶେକ ଯେ ଅଟଇ ତହିଁ ପଥ ।
ଦଣ୍ଡକର ଭିତରେ ମିଳିଲେ ତପୋବନ୍ତ । ୬୯୫ ।
ଦୂରୁହୁଁ ଦେଖିଣ କାମମୋହେନୀ ବୋଇଲ୍ଲ ।
ଦେଖ ଦେଖ କରତା ଗୋ ଋଷିଶୃଙ୍ଗ ଅଇଲ୍ଲ । ୬୯୬ ।
ଅନେକ ରସ ତହିଁ ଉପୁଜିଲ୍ଲ କାଲ୍ଲି ।
ମୂରୁଛି ନ ପାରିଲ୍ଲ ଅଇଲ୍ଲ ମୁନ ଭୁଲି । ୬୯୭ ।
ନିକଟ ହୁଅନ୍ତେଣ ବୋଲଇ ବ୍ରହ୍ମଋଷି ।
ବାରହ ବନିତାଯେ ଚରଣେ ଯାଇ ପଡ଼ି । ୬୯୮ ।
ଋଷିଶୃଙ୍ଗ ବୋଇଲେ ଶୁଣ ତପସ୍ୱିନୀ ।
ଯେବେ ମୋତେ ଅକଲ୍ୟାଣ ଅଟଇ ମହାମୁନି ୬୯୯ ।
ତୁମ୍ଭେ ପୁଣ୍ୟଦେଶ ରୂପେଣ ଗରୁହିଂସୀ ।
ମୁହିଁ ବାଳୁତ ଯେ ଅଟଇ ତୁମ୍ଭର ଶିଷି । ୭୦୦ ।

Digitized by srujanika@gmail.com

ମହନ୍ତଙ୍କ ସଙ୍ଗେ ଯିରନ୍ତି ଥିବା ଅର୍ଥେ ।
ଆରତ ହୋଇଣ ଅଇଲଇଂ ଏଥେ । ୭୦୧ ।
ପିତା ମୋହୋର ବହୁତ ଉଆରଲେ ଆସି ।
ବୋଇଲେ ବାବୁରେ ସେ ଅଟନ୍ତ ରାକ୍ଷାସି । ୭୦୨ ।
ତାହାଙ୍କୁଇଂ ପରତେ ନ ଯିବୁ ବାଳପୋଇ ।
ତାହାଙ୍କର ପରସାଦେ ତପନାଶ ଯାଇ । ୭୦୩ ।
ଅନେକ ଉଆରଣ ଗଲେ ମୋର ତାତ ।
ମୁହିଂ ତାହାଙ୍କର ବୋଲ ନ କଲି ଗ୍ରାହ୍ୟତ । ୭୦୪ ।
ତୁମ୍ଭନ୍ତ ନ ଦେଖି ମୋର ଚଉ ଥଏ ନାହିଂ ।
ସପନେ ତୁମ୍ଭ ସଙ୍ଗତେ ଥିଲି ଆଜ ମୁହିଂ । ୭୦୫ ।
ବାବୁ ମହାତମା ତପ ତୁମ୍ଭର ସାର ।
ବର୍ଣ୍ୟ ହୋଇଲି ଦେଖି ତୁମ୍ଭର ଆଗ୍ରର । ୭୦୬ ।
କାମମୋହେନୀ ବୋଲଇ ଶୁଣ ମହାମୁନି ।
ତୋହୋର ଆଗେ ଉଭା ଯେବଣ କାମେନୀ । ୭୦୭ ।
ସେ ଆମ୍ଭର ମୋକ୍ଷ କରତାକୋଷା ନାମ ।
ତପେଣ ମନାଇଲା ପଞ୍ଚଶର କାମ । ୭୦୮ ।
ସେହାକଇ ପ୍ରୀତି ହୁଅ ମହାମୁନି ।
ସାକ୍ଷାତ ରୂପବନ୍ତୀ ସେ ମଦନ ରସଦାନୀ । ୭୦୯ ।
ଶୁଣିଣ ଋଷିଶୃଙ୍ଗ ଜରତାକଇ ଗୃହିଂ ।
ଅଳସ ଦୃଷ୍ଟିରେ ସେ ଅଛଇ ଉଭା ହୋଇ । ୭୧୦ ।
ମୁନି ମୁଖ ଗୃହିଂ ସେ ଅଳପ ହସିଲା ।
ଚରଣ ଜେଷ୍ଟ ଅଙ୍ଗୁଳି ଭୂମିରେ ଘଷିଲା । ୭୧୧ ।
କର ପ୍ରସାରଣ ଧଇଲା ମୁନି ହସ୍ତ ।
ବୋଇଲା ସୁଦୟା ମୋତେ କରବ ତପୋବନ୍ତ । ୭୧୨ ।
କାମମୋହେନୀ ଯେ ବଞ୍ଚଇ ବଞ୍ଚଣୀ ।
ଗୃମର ଚାଳନ୍ତ ଯେ କେବଣ ତରୁଣୀ । ୭୧୩ ।
କରେ ପାଟଛତ୍ର କେ ତୋଳଣ ଧରନ୍ତ ।
କେ ନେଇ ପାଦେ ପାଦୁକା ନେଇଣ ଯୋଗ୍ଇନ୍ତ । ୭୧୪ ।
ମୁନି ବୋଇଲେ ଧନ୍ୟ ତୁମ୍ଭର ଦେବ ପୂଜା ।
ରଖିଅଛୁ ତୁମ୍ଭକୁ ଧନ୍ୟ ସେହୁ ରାଜା । ୭୧୫ ।
କେବଣ ପୁନ୍ୟ କୁଟୀରେ ଥାଅ ତୁମ୍ଭେ ରହି ।
କାମମୋହେନୀ କହିଲା ଅଙ୍ଗୁଷ୍ଟି ଦେଖାଇ । ୭୧୬ ।

Digitized by srujanika@gmail.com

ଯଦ୍ଧ ଦସ୍ଥା ତୋର ଅଛୁ ତପଶାଳୀ ।
ଆଜ ଆମ୍ଭର ପାପ ହୋଇଲା ପଖାଳି । ୭୧୭ ।
ସ୍ୱେ ତୋହୋର ପବିତ୍ର ଚରଣ ଯୁଗଳ ।
ସ୍ୱେଣେ ସେ ମଢ଼ି ଆ ଆମ୍ଭର ହୋଇବ ସୁଫଳ । ୭୧୮ ।
ବଗ୍ରେ ଯୋଗାଇଲେ ଦେଖିବା ଦେବ ପଣି ।
ସ୍ଲଲଯିବା ବୋଲି ବୋଇଲେ ମହାରଣି । ୭୧୯ ।
ଉପୀର ବାମକର ଧରଣ ଜରତା ।
ନିଜ କୁଚକୁମ୍ଭେ ଦେଲ୍ଲକ ବନିତା । ୭୨୦ ।
କାମମୋହେନୀ ଯେ ବାଞ୍ଛଇ ଆଲଟ ।
ଯଦ୍ଧର ପିଠିରେ ଲଗାଇଲେ ସ୍ତନ ତଟ । ୭୨୧ ।
ସ୍ୱାଦ ଫଳମାନ ଅଛନ୍ତ ଫଳ ତରୁ ।
କେ ଫୁଲ ଫୁଟନ୍ତ କେ ଅଛନ୍ତ କଢ଼ି ଧରୁ । ୭୨୨ ।
ପର୍ଣ୍ଣକୁଟୀ ଭିତରେ ଯାଇଣ ସମ୍ଭାଇଲେ ।
ରତ୍ନ ପଲଙ୍କ ଉପରେ ମୁନଙ୍କି ବସାଇଲେ । ୭୨୩ ।
ନେତର ସୁପାଢ ଉପରେ ଝୀନ ବାସ ।
ଜରତାକଇ ଘେନ ବସିଲେ ମୁନ୍ଦ ଶିଷ । ୭୨୪ ।
ପାଦ ପଖାଳଣ ଅଞ୍ଚଲେ ପୋଛୁଲେ ।
କର୍ପୂର କସ୍ତୁରୀ ମିଶାଇ ଘଷିଲେ । ୭୨୫ ।
ସ୍ୱାଦ ଦ୍ରବ୍ୟମାନ ଭୁଞ୍ଜିତ ଦେଲେ ଆଣି ।
ଆଚ୍ଚେବନ କରଇଲେ ଅଗ୍ରବାସ ପାଣି । ୭୨୬ ।
କର୍ପୂର ତାମ୍ବୋଲ ଦେଇଣ ତୋଷ କଲେ ।
ରତ୍ନ ଅଲଙ୍କାର ଶରୀରେ ଲଇଲେ । ୭୨୭ ।
କାମମୋହେନୀ କ ଜରତା ଦେଲ୍ଲ ଠାର ।
ଆଡ଼ ହୋଇଲେ ସେ ନିଶ୍ଚଳ ଟେରପାଢ଼ି । ୭୨୮ ।
ସ୍ତପେଣୀ କାଟି ତକ୍ଷଣେ ନାବ ମେଲ୍ଲ ।
କୂଳେ ଥିଲ୍ଲ ଲୋକେ ବେଗେ ଦେଲେ ପେଲ୍ଲ । ୭୨୯ ।
ଧାଢକାରେ କଇବର୍ତ୍ତ ବାହିଦେଲ୍ଲ ନାବ ।
କେହ ନ ଜାଣଇ ଚଳବାର ଠାବ । ୭୩୦ ।
ଜରତା କନ୍ୟା କୋଳେ ଅଛଇ ମୁନ ବସି ।
ସୁନ୍ଦେଶ୍ୱ ମୁନଙ୍କି କଥା କହଇ ହସି । ୭୩୧ ।
ଦେହ ଆଲିଂଗିଣ ବିଳାସ କଥା କର ।
ଅଧର ଚୁମ୍ବିଲ ସେ ସ୍ତବ୍ଧହ ସୁନ୍ଦେଶ୍ୱ । ୭୩୨ ।

Digitized by srujanika@gmail.com

କୋଳେଣ ଘେନଣ ମୁନିଙ୍କି ଉଭାର ଶୁଆଇଲା ।
ବିବିଧ ଛନ୍ଦେଣ ସେ ରମଣ କରାଇଲା । ୭୩୩ ।
ବୁଆରେ ବୁଆ ଲଗାଇ ଭୂଜରେ ଭୂଜ ଭିଡ଼ି ।
ମଦନ ଘାଉଲା ଘେନି ଜରତା ବାସ ଫେଡ଼ି । ୭୩୪ ।
ମୁନି ନ ଜାଣଇ ସୁରତର ସୁଖ ।
ପୁଣ ପୁଣ ସୁନ୍ଦେରୀ ଚୁମ୍ବଇ ମୁନି ମୁଖ । ୭୩୫ ।
ମୁଖେ ଚୁମ୍ବ ଦେଇ ଉତ୍ୟାନେ ଗ୍ରହଂଲା ।
ନିଜ ସ୍ତନ ଅଗ୍ର ମୁନି ମୁଖେ ଦେଲା । ୭୩୬ ।
ଦଶନ କ୍ଷତ କଲା ଗଣ୍ଡସ୍ଥଳ ।
ତେଣୁ ସ୍ରବିଲା ସେ ମୁନିର ଧାତୁ ଜଳ । ୭୩୭ ।
କାମକଳାବନ୍ଧ ଜାଣଇ ସୁନ୍ଦେରୀ ।
ରତି ସାହାସ୍ତ୍ର ପଢ଼ି ଅଛଇ ଚତୁରୀ । ୭୩୮ ।
ଶୃଙ୍ଗାର ରସେ ସେ ମୁନିଙ୍କି ମୋହ କଲା ।
ଲକ୍ଷା ଖୁଣ୍ଡଣ ସେ ରମଣି ଦାନ ଦେଲା । ୭୩୯ ।
ଅଚିନ୍ତ ଅବସ୍ଥ ନାଗରୀ ସଙ୍ଗେ ପ୍ରୀତି ।
ପଞ୍ଚଶରେ ମସ୍ତାଣ ଘାଉଲା ମାହାଯତି । ୭୪୦ ।
ମୁନିବର ପ୍ରସନେ କଲାକ ରମଣି ।
ଘନ ଘନ ପ୍ରେମ ରସେ ପିଡ଼ିଲା ତରୁଣୀ । ୭୪୧ ।
କେତେହେଂକ ବେଳେ ଝଳତ ହୋଏ ରେତ ।
କନ୍ୟାକୁ ଛାଡ଼ି ମୁନିବର ଅଚେତ । ୭୪୨ ।
କଣ୍ଠ ଶୁଖିଲା ବୁଜିଲାକ ଆଖି ।
ଖରତର ନିଶ୍ୱାସ ଆସଇ ମୁନିକ । ୭୪୩ ।
ବୁକୁ ଦମଦମ ଯେ ବାହାରକୁ ଚଳଇ ।
ଜାଣି ପଞ୍ଚାନ୍ତର କି ମୃତ୍ୟୁ ପିଣ୍ଡେ ଲାଇ । ୭୪୪ ।
ତକ୍ଷଣେ ଜରତା ସମ୍ଭାଳିଲା ବାସ ।
କୋଳ କରି ଧଇଲା ବିଭାଣ୍ଡେକର ଶିଷ । ୭୪୫ ।
ଶୀତଳ ଜଳ ଘେନି ମୁଖ ପଖାଳିଲା ।
କର୍ପୁର ପକାଇ ଚତୁଃସମ ବୋଳିଲା । ୭୪୬ ।
ଆଳଟ ଘେନଣ ବିଞ୍ଚି କଲାକ ସାଷ୍ଟମ ।
ମୁନି ମୁଖ ଗ୍ରହଂ ଆଗୁଦଇ କାମ । ୭୪୭ ।
ପୁଣି ହୁଂ ଚୁମ୍ବଦେଇ ଲଗାଇଲା ବୁକୁ ।
ପସୁରଇ ମୁନି ହେ କିସ ଲଗିଲା ତୁମ୍ଭକୁ । ୭୪୮ ।

Digitized by srujanika@gmail.com

ଶୀତଳ ପଦାର୍ଥ ସେ କିଛି ଖୁଆଇଲା ।
ସୁଗନ୍ଧ ପୁଷ୍ପମାଳ କଣ୍ଠେ ଲମ୍ବାଇଲା । ୭୪୯ ।
ହସି ମହାମୁନି ନରତାକୁ ବହିଂ ।
ଆଚମନ ସାରି କର୍ପୂର ତାମ୍ବୁଲ ଖାଇ । ୭୫୦ ।
ମୁନିକ କୁଚେ ଆଉଜାଇ ବସାଇଲା ପୁଣି ।
ଅଧର ଚୁମ୍ବାଇ ଯେ କହଇ ପ୍ରିୟ ବାଣୀ । ୭୫୧ ।
ପୁଣି ହିଂ ପ୍ରେମ ରସେ ମୁନିଙ୍କି ବଶ କଲା ।
ଚଉଷଠି ପଶବନ୍ଧେ ରମଣ କରାଇଲା । ୭୫୨ ।
ରାଜକାର୍ଯ୍ୟ ଅର୍ଥେ ସୁନ୍ଦେଶୀ ନରତା ।
ଅନେକ ଛନ୍ଦେଣ ମୋହିଲା ବ୍ରହ୍ମବେତା । ୭୫୩ ।
କ୍ଷଣେ କ୍ଷଣେ ରମଣ କରଇ ମୁନିବର ।
ନାବ ଚଳିବାର ସେ ନ ଜାଣଇ ବେଭାର । ୭୫୪ ।
ସ୍ନେହେ ଆରକେ ସେ ପାଳଣିଆ ହୋଇ ।
ମୁନି କୁମାରଙ୍କୁ ଅଛନ୍ତି ନାରୀ ମୋହି । ୭୫୫ ।
ରାତ୍ରେଣ ଦୀପ ଦିହୁଡ଼ି ଜ୍ୱଳା ଧରି ।
ରଜନୀ ଦିବସ ଏକତ୍ୱ ପ୍ରାୟେ କରି । ୭୫୬ ।
କ୍ଷଣକେ କାମମୋହେନୀ କ୍ଷଣକେ ନରତା ।
କ୍ଷଣକେ ଖଟିଆନ୍ତି ବାରହି ବନିତା । ୭୫୭ ।
ହେଠ ସ୍ରୋତେ ନାବ ଚଳଇ ଅତିବେଗେ ।
ଚମ୍ପାବତୀ ନଗ୍ରେ ଯାଇଣ ସେ ଲଗେ । ୭୫୮ ।
ଯିବାର ବେଳେଣ ଯେ ତେଇଶି ଦିନ ଗଲେ ।
ବାର ଦିବସେଣ ବାହୁଡ଼ି ଅଇଲେ । ୭୫୯ ।
ତହିଂ ପାଖଦିନ ରହିଲେ ସୁନ୍ଦେଶୀ ।
ଗୁଳିଶି ଦିନେ ହେଲେ ଚମ୍ପାବତୀ ପୁରୀ । ୭୬୦ ।
ନଦୀର ଘାଟେ ସେ ଲଗିଲା ନାବ ଯାଇ ।
ନରତା କୋଳରେ ଅଛଇ ମୁନି ଶୋଇ । ୭୬୧ ।
ଏକେଣ ଯତି ସେ ଶୃଙ୍ଗାରେ ଶ୍ରମ ପାଇ ।
ନାବ ଚଳିବାରେ ଘୂର୍ଣ୍ଣମ ଖାଇ ବହିଂ । ୭୬୨ ।
ନାବର ଭିତରେ ଯେ ଅଛଇ ଟେରା ପଡ଼ି ।
ରତ୍ନ ପଲଙ୍କେ ମୁନି ଅଛନ୍ତି ପହୁଡ଼ି । ୭୬୩ ।
ମୁନି ବସ୍ତୁରଇ ଶରୀରେ ମୋର ତାପ ।
ପାଇବା କି ନରତା ଗୋ ନର୍ମ୍ମରର ଆପ । ୭୬୪ ।

Digitized by srujanika@gmail.com

କର ଦୁଇ ଯୋଡ଼ିଣ ବୋଲଇ ଯୁବତୀ ।
ସେସେ ନଗ୍ର ଦେବ ଅଟଇ ଚମ୍ପାବତୀ । ୭୬୫ ।
ଲୋମପାଦ ରାଜା ବ୍ରାହ୍ମଣଙ୍କୁ ଦ୍ରୋହ କଲା ।
ସେ ଦୋଷେ ସେ ନଗ୍ରେ ଇନ୍ଦ୍ର ନ ପାଳିଲା । ୭୬୬ ।
ନଈର ଆପ ପାଇବା ସେଥି କାହିଂ ।
ନଦୀ ସେ ନ ବହି ସେ ପୋଖରୀରେ ପାଣି ନାହିଂ । ୭୬୭ ।
ଦ୍ୱାଦଶ ବର୍ଷ ସେ ଇନ୍ଦ୍ର ନ କଲକ ବୃଷ୍ଟି ।
ଜଳ ବିହୁନେଣ ବିକଳ ହୋଏ ସୃଷ୍ଟି । ୭୬୮ ।
ରାଜା ଆରମ୍ଭେଣ ଅନେକ ଧର୍ମ କଲା ।
ଜଳ ତପ କରାଇ ଅଚ୍ଛିଦ୍ର ବଇଲା । ୭୬୯ ।
ବାରୁଣୀରେ ହୋମ କରନ୍ତି ସୁଗ୍ୟଂ ଦ୍ୱିଜ ।
ପାଣି ପଣା ଦାନ ଦେଲକ ମହାରାଜ । ୭୭୦ ।
କେବେହେଂ ବୃଷ୍ଟି ନ କଇଲା ସୁରପତି ।
ଅପାର ଚିନ୍ତା ସେଥେ ପାଇଲା ନୃପତି । ୭୭୧ ।
ରାଜାର ଭାଗ୍ୟନ୍ତେଣ ପୁଣ ବ୍ରାହ୍ମଣ ବରଦେଲେ ।
ଋଷିଶୃଙ୍ଗ ଅଇଲେ ସେଥି ବରଷିବ ବୋଇଲେ । ୭୭୨ ।
ଶୁଣିଣ ହରଷ ଯେ ହୋଇଲେ ମହୀପାଳ ।
କେମନ୍ତେ ଆଣିଣ ମୁଂ ବିଭାଣ୍ଡେକର ବାଳ । ୭୭୩ ।
ମନ୍ତ୍ରୀର ବଚନେ ସେ ପେଷିଲକ ମୋତେ ।
ଶୁଭ ଯୋଗେ ଯାଇଂ ଯେ ଭେଟି ମୁହିଂ ତୋତେ । ୭୭୪ ।
ପ୍ରସନ ହୋଇଲୁ ତୁ ମୋହର ଭାବ ଘେନି ।
ନାବରେ ବସାଇ ତୋତେ ଆଣିଲୁ ତପୋଧନ । ୭୭୫ ।
ମୁହିଂ ବେଶ୍ୟା ନାରୀ ଅଟଇ ନଟ ଜାତି ।
ନୁହଇ ପୁରୁଷ ନୁହଇଂ ମୁହିଂ ଯତି । ୭୭୬ ।
ବାରହି ବନିତାସେ ପଡ଼ିଲେ ବିକଳେ ।
ମୁନିର ପାଦତଳେ ପଡ଼ି ବୋଲନ୍ତି ସକଳେ । ୭୭୭ ।
ନ କର କୋପ ମୁନି ନ ଦିଅ ଆମ୍ଭକୁ ଶାପ ।
ସ୍ୱାମୀର ଆଜ୍ଞାରେ ସେ ଅମ୍ଭେ କଲୁ ସେତେ ଧାପ । ୭୭୮
ଜଳ ବୃଷ୍ଟି ନୋହିଲେ ତ ଜଗତ ଜନ୍ତୁ ମର ।
ତେଣୁ ସେ ଆଣିଲୁ ଦେବ ପ୍ରାଣେକୁ ନ ଡର । ୭୭୯ ।
ସେଣେ ସେ ଦେବ ଶୀତଳ ପାଣି ନାହିଂ ।
ସେ ଆମ୍ଭର ଦୁଃଖ ଦେନ ତପସାଇଂ । ୭୮୦ ।

Digitized by srujanika@gmail.com

ଶୁଣିଣ ମହାମୁନି ଯେ ତ୍ରିପୁଚ୍ଛ ହୋଇଲେ ।
ଉଠ ଉଠ ମୁନିବନ୍ତ ଗୋ ବୋଲିଣ ବୋଇଲେ ।୭୮୧ ।
ସକଳ ଦୋଷ ତୁମ୍ଭର କଲୁ ଆମ୍ଭେ କ୍ଷମା ।
ଆମ୍ଭନ୍ତ ସୁରତ ଦେଇ ତୋଷିଲ ରେ ରାମା । ୭୮୨ ।
ହୋଇଲୁ ପ୍ରସନ୍ନ ଆମ୍ଭେ ଉଠ ଉଭା ହୋଅ ।
ହରଷ ମନେ ସଖି ହସିଣ କଥା କହ । ୭୮୩ ।
ଶୁଣିଣ ସୁନ୍ଦେଶ୍ରୀ ଯେ ଭସ୍ମ ତେଜି ଉଠି ।
ବରପଣ ଯୋଡ଼ି ଉଭା ହୋଇଲେ ବନ୍ଦୋଷ୍ଟୀ । ୭୮୪ ।
ମୁନି ବୋଇଲେ ସ୍ବେଥେ ନାହିଂ ଯେବେ ଜଳ ।
ବୃଷ୍ଟି କର ବୋଲି ବୋଇଲେ ତପଶୀଳ । ୭୮୫ ।
ତୁମ୍ଭର ସୀମା ହାଦେ ଅଟଇ ଯେତେ ଦୂର ।
ଯେତେବେଳେ ଇଚ୍ଛା ବରଷିବ ଜଳ । ୭୮୬ ।
ଋଷିର ମୁଖୁ ହାଦେ ଏସନ ବାକ୍ୟ ଶୁଣି ।
ମେଘନ୍ତ ହକାରି ବୋଇଲା ବଜ୍ରପାଣି । ୭୮୭ ।
ଲୋମପାଦ ରାଜ୍ୟେ ଯେତେକନ୍ତି ଦେଶ ।
ବୃଷ୍ଟି କର ବୋଲି ଦେଲାକ ଆଦେଶ । ୭୮୮ ।
ତତକ୍ଷଣେ ଆବର୍ତ୍ତିକ ସାବର୍ତ୍ତିକ ଦ୍ରୋଣ ।
ପୁଷ୍କର ସହିତେ ଆଚ୍ଛାଦିଲା ଯେ ପସ୍ମାଣ । ୭୮୯ ।
ବିଜୁଳି ଘଡ଼ଘଡ଼ି ପବନ ମୁଗତେ ।
ଆକାଶେ ମେଘ ଯେ ଦେଖିଲେ ସମସ୍ତେ । ୭୯୦ ।
କି ସ୍ବେ ଅପୂର୍ବ କେବଣ କଥା ହୋଇ ।
ସ୍ବେତେ ବୋଲି ଲୋକେ ଉର୍ଦ୍ଧ କଇ ରହିଂ । ୭୯୧ ।
ଦେଖୁ ଦେଖୁ ବୃଷ୍ଟି କଲାକ ଅତଘୋର ।
ନିରନ୍ତରେ ବୃଷ୍ଟି ଯେ ଅଖଣ୍ଡିତ ନୀର । ୭୯୨ ।
ରାଜ୍ୟର ଲୋକେ ଦେଖି ହରଷ ମୁଖ ହୋଇ ।
ଅତ ଆନନ୍ଦେଣ ହୁଅନ୍ତ କୁହାକୁହ । ୭୯୩ ।
ଇନ୍ଦ୍ର ଯେବେ ବୃଷ୍ଟି କଲା ହୋଇଲା ସୁଫଳ ।
ପ୍ରବେଶ ହୋଇଲା ଆସି ବିଭାଣ୍ଡେକ ବାଳ । ୭୯୪ ।
ସ୍ବେସନେକ ସମସ୍ତେ କହିଲାକ ଗୃର ।
ଶୁଣ ଦେବ ଲୋମପାଦ ମୋହର ଠାକୁର । ୭୯୫ ।
ଜରତା ଯେ ଗଲା ନାବ ସଜ କର ।
କାମମୋହେନି ସହିତେ ଦାରନାରୀ । ୭୯୬ ।

Digitized by srujanika@gmail.com

ବାହୁଡ଼ିଣ ପ୍ରବେଶ ଦେଖିଲୁ ତାଙ୍କର ।
ହୂରୁଣ ନାବ ହାଦେ ବଣଇ ନୃପବର । ୭୯୭ ।
ଆଲମ୍ବ ଚନ୍ଦ୍ର ଦେବ ଦେଖିଣ ଅଇଲୁ ।
କୂଳେ ଲଗିବାର ତ ତଥ୍ୟ ନ ଜାଣିଲୁ । ୭୯୮ ।
କଥା ହୁଅନ୍ତେଣ ଆରେକ ଚ୍ଛର ଆସି ।
ବୋଇଲା ପ୍ରବେଶ ଦେବ ଋଷିଶୃଙ୍ଗ ଋଷି । ୭୯୯ ।
ଜରତାକୋଷା କାମମୋହେନୀ ସକଳ ।
ନାବ ଆସି ଦେବ ଲଗିଲାଣି କୂଳ । ୮୦୦ ।
ନାଉଗଆ କହିଲା ମୁନିର ଆଗତ ।
ନୋହିଲେକ ବୃଷ୍ଟି କର୍ମ୍ମ କଲା ପୁରୁହୂତ । ୮୦୧ ।
ଶୁଣିଣ ନୃପତି ସନ୍ତୋଷ ମନ ହୋଇ ।
ଚ୍ଛରକଇ ବହୁତ ଗଉରବ କରଇ । ୮୦୨ ।
ଦେଣ ଘୋଷ ଦାନ ଦେଲେକ ଶୁଦ୍ଧ ଚିତ୍ତେ ।
ନଗ୍ର ଉଛବ ସେ କରାଇଲା ତୁରିତେ । ୮୦୩ ।
ଦିବ୍ୟ ସୁବର୍ଣ୍ଣ କଳସେ ମଣ୍ଡପେ କରାଇଲା ।
ବାରଣ ତଥ୍ୟ ଜାଣି ମନ୍ତ୍ରୀଙ୍କି ପେଷିଲା । ୮୦୪ ।
ରାଜାର ଆଜ୍ଞାରେ ସେ ମନ୍ତ୍ରୀ ଗଲା ଚଳି ।
ଦେଖିଲେକ ନାବ ସେ କାଳନ୍ଦୀରେ ମିଳି । ୮୦୫ ।
ଲୋକନ୍ତ ପଠିଆଇ ସେ କନ୍ୟାନ୍ତ ରାଇଲା ।
ଜରତାକୋଷା ଋଷିର ଗ୍ରାମ୍ନରେ ଜଣାଇଲା । ୮୦୬ ।
ସ୍ୱେ ଦେବ ରାଜାର ମନ୍ତ୍ରୀ ଅଛୁ ଆସି ।
ଆଜ୍ଞା ହୋଇଲେ ସେ ଆସିବ ମହାଋଷି । ୮୦୭ ।
ମୁନି ବୋଇଲେ ଗୋ ରାଜା ତୁମ୍ଭର କାହିଂ ।
କାମମୋହେନୀ ବୋଇଲେ ଶୁଣ ତୁ ଗୋସାଇଂ । ୮୦୮ ।
ତୋହୋର ଆଗ୍ୟାଂ ହୋଇଲେ ଆସିବ ନୃପତି ।
ତଥ୍ୟ ଜାଣିବାର ନିମନ୍ତେ ଆସିଅଛୁ । ୮୦୯ ।
ଋଷ ବୋଇଲେ ନୃପତିଙ୍କ ବେଗେ ଆଣ ।
ଶୁଣି କାମମୋହେନୀ ସେ ଗଲା ତତକ୍ଷଣ । ୮୧୦ ।
ନାବରେ ଥାଇଂ ସେ ମନ୍ତ୍ରୀକି ବୋଇଲା ।
ନୃପତିଙ୍କ ଆଣ ଋଷି ଆଜ୍ଞା ଦେଲା । ୮୧୧ ।
କାମମୋହେନୀର ଏସନ ବାଣୀ ଶୁଣି ।
ମନ୍ତ୍ରୀ ଗଲା ବେଗେ ନୃପତିଙ୍କୁ ଆଣି । ୮୧୨ ।

Digitized by srujanika@gmail.com

ଶୁଣସି ଦେବ ତୁ ଚମ୍ପାବତୀ ନଗ୍ର ସାଇଂ ।
ତୋହୋର ପୁରେ ପ୍ରବେଶ ଋଷ୍ୟଶୃଙ୍ଗ ଗୋସାଇଂ । ୮୧୩
ତେଣୁ ସେ ବୃ ଦେବ କଲକ ସୁରପତି ।
ଆସ ଆସ ରାଜା ଦେଖିବା ମହାଯତି । ୮୧୪ ।
ଋଷୀର ପ୍ରସନ୍ନ ମୋତେ କହଲକ ନାରୀ ।
ବୋଇଲେ ଘେନ ଆସ ତୋର ଦଣ୍ଡଧାରୀ । ୮୧୫ ।
ତୋତେ ସେ ଶୀଘ୍ରେ ମୁଂ ଅଇଲଇଂ ନେଇ ।
ଶୁଣିଣ ସନ୍ତୋଷ ସେ ଲୋମପାଦ ହୋଇ । ୮୧୬ ।
ଅନେକ ଉପହାର ବିବିଧ ପଦାର୍ଥ ।
ବିବିଧ ଝିନବାସ ଘେନଣ ନୃପନାଥ । ୮୧୭ ।
ନାନା ପକ୍ୱଂ ଫଲ ଚନ୍ଦନ ଗନ୍ଧ ବାସ ।
ଆପଣେ ନପବର ହୋଇଲକ ପ୍ରବେଶ । ୮୧୮ ।
ରାଜା ବିଜେ କଲେ ବାଜଇ ବୀର ତୂର ।
ଶୁଣିଣ ପୃଚ୍ଛିଲେ ସେ ବିଭାଣ୍ଡେକ କୁମର । ୮୧୯ ।
କସ ଶବଦ ସ୍ୱେ ଶୁଭଇ ଗୋଲବାଣୀ ।
ବେନି କର ଯୋଡ଼ି କହନ୍ତି ତରୁଣୀ । ୮୨୦ ।
ରାଜା ଲୋମପାଦ ସେ ଦେଖି ତୋତେ ଆସି ।
ଶୁଣିଣ ଋଷ୍ୟଶୃଙ୍ଗ ଅଲପ ହୋଇ ହସି । ୮୨୧ ।
ବୃଷ୍ଟି ଥିର ହୋଉ ଆସିବ ଯେବେ ରାଜା ।
ତେବେ ସେ ଆମ୍ଭନ୍ତ ଦେଖିବେ ଜନପ୍ରଜା । ୮୨୨ ।
ତକ୍ଷଣେ ଜଳ ବୃଷ୍ଟି ହୋଇଲକ ଥିର ।
ଘଡ଼କେ ପୂରିଗଲା ନଦୀ ସରୋବର । ୮୨୩ ।
ରାଜା ଆସନ୍ତେଣ ଆନନ୍ଦ ସର୍ବ ଲୋକ ।
ଧାମନ୍ତ ନରନାରୀ ହୋଇଣ ହରୁଷ । ୮୨୪ ।
ପାତ୍ରମନ୍ତ୍ରୀ ଘେନଣ ଲମ୍ବପାଦ ରାସ୍ୱେ ।
ନଦୀର କୂଳେ ସେ ପ୍ରବେଶ ରାଜା ହୋଏ । ୮୨୫ ।
ଋଷ୍ୟଶୃଙ୍ଗ ଆଜ୍ଞାଂ ଦେଲେ ରହ ରାଜା ତହିଂ ।
ଆମ୍ଭେହେଂ ନାବରୁ ଯିବାକ ଓହ୍ଲାଇ । ୮୨୬ ।
ଋଷୀର ଆଜ୍ଞାଂ ପାଇଣ ନୃପବରେ ।
ସଇନ ଘେନଣ ରହି ନଦୀ ତୀର । ୮୨୭ ।
ପୁଣ୍ୟ କୁଟୀରୁ ସେ ବାହାର ଋଷ୍ୟଶୃଙ୍ଗ ।
କି ଜାଣି ପଟାନ୍ତର ଯୁବା ସେ ଅନଙ୍ଗ । ୮୨୮ ।

Digitized by srujanika@gmail.com

କର୍ପୂରର ବିଭୂତି କସ୍ତୁରୀର ଚିତା ।
କଣ୍ଠେ ରତ୍ନହାର ସ୍ୱର୍ଣ୍ଣ ପଇତା ।୮୨୯।
ତାଡ଼ ବାହୁଟି ଯେ ବିଦ ମୁଦ୍ରି ତେଜା ।
ପାଟ ପରିଧାରଣ ବିଶ୍ୱାମିତ୍ରଙ୍କ ତନୁଜା ।୮୩୦।
ବାମ ଭୁଜମୂଳ ଆଧାର ଗୋଟି ଅଛୁ ।
ଶିରର ଜଟାରେ ବିବିଧ ପୁଷ୍ପ ରଞ୍ଜୁ ।୮୩୧।
କପାଳେଣ ସିଙ୍ଗ ବାଳମୃଗ ପରିସ୍ଥେ ।
ନୀଳଉତ୍ପଳ ନୟନ ଢଳଇ କର୍ଣ୍ଣଯାଏ ।୮୩୨।
ସୁଦୀର୍ଘ ନାସା ତାର ଅଧର ବିମ୍ବ ପ୍ରଭା ।
ଆଜାନୁ ବେଢ଼ି ବାହୁ ବିସ୍ତାର ବପୁ ଶୋଭା ।୮୩୩।
ପଦ୍ମପତ୍ର ଜାଣି ଓଦର ଶୋଭା ଧରି ।
ମଝାି ସିଂହ ସାନ ଡମ୍ବରୁ ସାଦୃଶି ।୮୩୪।
କଟିତଟ ବିସ୍ତାର ସୁବଳିତ ଜାନୁ ।
ନାହିଁ ପଟାନ୍ତର ବିଶ୍ୱାମିତ୍ରଙ୍କ ତନୁ ।୮୩୫।
ନାବରେ ଉଭା ଧରିଇ ପାଟଛତ୍ର ।
ପାଦରେଣ ରତ୍ନ ପାଦୁକା ପବିତ୍ର ।।୮୩୬।
ଦେଖିଲେ ନୃପତି ନଦୀ କୂଳେ ଥାଇ ।
ଋଷିସିଂହ ମୁନି ଅଛଇ ଉଭା ହୋଇ ।୮୩୭।
ପୁଣ ଉଠଇ ପୁଣ କରଇ ନମସ୍କାର ।
ଜରତା ଜଣାଇଲା ଋଷିର ଛାମୁର ।୮୩୮।
ଏ ମୁନି ଏଠି ଲମ୍ବପାଦ ରାଜା ।
ନାନା ଦ୍ରବ୍ୟ ଘେନଣ କରଇ ତୋତେ ପୂଜା ।।୮୩୯।
ଶୁଣିଣ ସନ୍ତୋଷ ଋଷ୍ୟଶୃଙ୍ଗ ମୁନି ।
ନାବୁ ଓହ୍ଲାଇଣ ଅଇଲେ ତପୋଧନ ।୮୪୦।
ସୁରପଟା ଜାଣି ଆସନ୍ତେଣ ଋଷି ।
ରାଜା କରଯୋଡ଼ି କହିଲାକ ଆସି ।୮୪୧।
ସୁଖାସନ ଆରୋହ କରସି ତପୋବନ୍ତ ।
ପାଦେ ଗମିବା ଦେବ ନୋହଇ ଉଚିତ ।୮୪୨।
ଏସେ ନଗ୍ରବାଟ ବିଶେଷେ ଜଳସାଇ ।
ଅବକାର ଲୋକେ ଅଛନ୍ତି ଏଣେ ଯାଇ ।୮୪୩।
ତୁ ପରମ ପୁରୁଷ ପରମ ବ୍ରହ୍ମଗ୍ୟାନୀ ।
ଏ ମୋହର ଭଗତି ଘେନମା ମହାମୁନି ।୮୪୪।

Digitized by srujanika@gmail.com

ଶୁଣିଣ ସନ୍ତୋଷ ହୋଇଲେ ତପସ୍ୱୀ ।
ଆଣ ସୁକାସନ ଚୋଇଲେ ଅବଧାର ।୮୪୫ ।
ତକ୍ଷଣେ ଯାନ ଆଣି କଲେକ ଉପଗତ ।
ସନ୍ତୋଷେ ବିଜୟେ ତହିଂ କଲେ ତପୋବନ୍ତ ।୮୪୬ ।
ରାଜାଙ୍କଇ ଦରଶନ କଲ୍କ ଜରତା ।
କାମ ମୋହେନୀ ମୂଳେ ବାରହ୍ୱ ବନିତା ।୮୪୭ ।
ହସିଣ ନୃପତ୍ତ ପ୍ରଶଂସା କରଇ ।
ଋଷି ଚଳିଯାନ୍ତେ ପଛେଣ ଗୋଡ଼ାଇ ।୮୪୮ ।
ଧଟନ୍ତ ପାଟହନ ବଜାବନ୍ତ ବୀରତୂର ।
ଲୋକ ଗହଗହ ଗହଳ ଅପାର ।୮୪୯ ।
ବାଳ ବୃଦ୍ଧ ଯୁବା ସକଳ ନରନାରୀ ।
ଋଷିଙ୍କି ଦେଖିତ ଶରଧା ସବୁଙ୍କର ।୮୫୦ ।
ରାଜାର ନଗରେ ହୋଇଲେ ପ୍ରବେଶ ।
ଦିବ୍ୟପୁରେ ବିଜେ ବଶିଷ୍ଠେଙ୍କ ଶିଷ ।୮୫୧ ।
ଜରତା ସହିତେ ଅଛନ୍ତି ମୁନି ପାଶେ ।
ବାରହ୍ୱ ବନିତାଏ ଖଟନ୍ତି ବଶୁଆସେ ।୮୫୨ ।
ରାଜା କର ଯୋଡ଼ିଣ ସମ୍ମୁଖେ ଉଭା ହୋଇ ।
କୃତାଞ୍ଜଳି ହୋଇ ବିନୟ କରସାଇଂ ।୮୫୩ ।
ଋଷିଶୃଙ୍ଗ ଯାଇଂ ବିଜୟେ ଖଟଦୋଳି ।
ଗୃମର ଆଲଟ ତହିଂ ମନ୍ତ୍ରୀଗଣେ ଢାଳି ।୮୫୪ ।
ରାଜାର ମୁଖ ଗୃହିଂ ପଚାରଇ ଋଷି ।
ତୁ ହୋ ଲମ୍ବପାଦ ଚମ୍ପା ନଗ୍ରବାସୀ ।୮୫୫ ।
କ୍ଷେମେଣ ପାଳୁନା ସକଳ ଜନପ୍ରଜା ।
ଦୁଷ୍ଟେଣ ବଧ ଅଛୁନା ମହାରାଜା ।୮୫୬ ।
ପାତ୍ର ମନ୍ତ୍ରୀ ତୋହୋର ଅଗ୍ୟାଂରେ ଥାନ୍ତି ଟିକି ।
କଷ୍ଟକାଇ କରୁନା ଶତ୍ରୁର ତହିଂକି ।୮୫୭ ।
ଅନ୍ତପୁର କଥା ଜାଣୁନା ତୁ ଭଲେ ।
ବିଶ୍ୱାସ ଯାଉଟିକି ତୁ ଅମନାତ୍ୟଙ୍କର ବୋଲେ ।୮୫୮ ।
ରଥ ଗଜ ଅଶ୍ୱ ପାଦାନ୍ତି ସନ୍ୟ ବଳ ।
ସେ ତୋହର ଆଗ୍ୟାଂରେ ଚଳନ୍ତିନା ସକଳ ।୮୫୯ ।
ରାଜ୍ୟ ନୀତ କଥା ପଚାରଇ ମୁନି ।
ଶୁଣି କରଯୁଗଳ ଯୋଡ଼ଇ ନୃପମଣି ।୮୬୦ ।

Digitized by srujanika@gmail.com

ବୋଲଇ ଖେ ଋଷି ତୋହ୍ମର ପରସାଦେ ।
ସକଳ ଦୁଃଖ ମୋର ଗଲା ଅପ୍ରମାଦେ । ୮୬୧ ।
ଆଜୁଂ ସୁଫଳ ମୁନି ହୋଇଲା ମୋର ରାଜ୍ୟ ।
ଯହୁଂ ମୋହର ପୁରେ ବିଜୟେ ବିଭାଣ୍ଡେଙ୍କର ତନୁଜ । ୮୬୨ ।
ଜଳ ବୃଷ୍ଟି ହୋଇବାରେ ସକଳ ଦୁଃଖ ଗଲା ।
ଋଷି ପାଦେ ପଡ଼ି ନୃପତି ବୋଇଲା । ୮୬୩ ।
ଉଠ ଉଠ ରାଜା ହୋ ବୋଲଇ ତପଋଷି ।
ଜରତାକୁ ସ୍ୱହ୍ନଂ ବୋଲଇ କର ହେ ପ୍ରସାର । ୮୬୪ ।
ଯେହ୍ନାକୁ ଗଉରୋବ କର ହୋ ନୃପତି ।
ଯେହ୍ନାକଂରେ ସୃଷ୍ଟି ତୁ ହୋଇଲୁ ଚକ୍ରବର୍ତ୍ତୀ । ୮୬୫ ।
ଯେସେ ଆମ୍ଭକଇ କଲେ ବହୁତ ସେବା ।
ଯେହ୍ନାକଂଇ ନୃପତି ଯେ ପୁରୁଷାର୍ଥ କରିବା । ୮୬୬ ।
ତପୀର ଆଜ୍ଞାରେ ସେ ନୃପତି ଶିରୋମଣି ।
ଅନେକ ଗଉରୋବ କଲେକ ବିଧି ଜାଣି । ୮୬୭ ।
କାମମୋହେନୀକ ସେହି ରୂପେ ଗଉରୋବ ।
ବାରହି କନ୍ୟାକଇ ବହୁଧନ ଦ୍ରବ୍ୟ । ୮୬୮ ।
ଦେଶ ଘୋଷ ଦାନ ଅନେକ ଅଳଙ୍କାର ।
ବିବିଧ ପାଟ ନେତ ବିଚିତ୍ର ମନ୍ଦିର । ୮୬୯ ।
ହସ୍ତୀ ଚଢ଼ି ନିଜ ବାସକଇ ଗଲା ।
ସବୁକର ସୁଖେ ସାଧୁ ବଚନ ପାଇଲା । ୮୭୦ ।
ପୁଣି ଯେ ଯାହାର ନିତ୍ୟକର୍ମ ସାର ।
ମୁନିଙ୍କ ସେବା କରିଥାନ୍ତି ସର୍ବ ନାରୀ । ୮୭ ।
ରାଜା ଅନୁବ୍ରତେ ଥାଇ ମୁନି ପାଶ ।
ଭୋଜନେ ଶୟନେ ନାହିଂ ତାର ଆଶ । ୮୭୨ ।
ନିଅବକାଶ ହେଲ ସକଳ ମହାଦେଈ ।
ମୁନିଙ୍କ ଦର୍ଶନ କଲେ ତହିଂ ଯାଇ । ୮୭୩ ।
ଜରତା ଜଣାବଇ ଶୁଣ ମହୀପତି ।
ଲୋମପାଦ ରଜାର ଯେ ଅଟନ୍ତି ମୁବତୀ । ୮୭୪ ।
ଶୁଣିଣ ତପଋଷି କଲ୍ୟାଣ ସେ କଲା ।
ଶତେକ ତନୟ ତୁମ୍ଭର ହୋଉ ଯେ ବୋଇଲା । ୮୭୫ ।
ରାଜା ସନ୍ତୋଷ ମହାଦେଈଙ୍କ କହନ୍ତେ ।
ଚମ୍ପାବତୀ ନଗ୍ରେ ଆନନ୍ଦ ସମସ୍ତେ । ୮୭୬ ।

Digitized by srujanika@gmail.com

ନଧନେ ଧନେ କ ସେ ଅନ୍ଧେ ଚକ୍ଷୁ ଦାନ ।
ଅପୁତ୍ରିକେ ପୁତ୍ର ଅପାବନେ ପାବନ । ୮୭୭ ।
ଋଷ୍ୟଶୃଙ୍ଗ ପ୍ରସାଦେଣ ରୋଗ ଶୋକ ତେଜ ।
ନିଶ୍ଚିନ୍ତ ହୋଇଲେ ସେ ଲୋମପାଦ ରାଜା । ୮୭୮ ।
ଦଶରଥ ରାଜାର ଦାଣ୍ଡୁଆ ଚର ଥିଲା ।
ରାଜାର ଛାମୁରେ ଯାଇଣ ଜଣାଇଲା । ୮୭୯ ।
ଯେ କଥା ତଥ୍ୟ ଦେବ ଅଛଇଁ ମୁହିଁ ଜାଣି ।
ଶୁଣ ତୁ ଅଯୋଧ୍ୟା ନୃପତି ଶିରୋମଣି । ୮୮୦ ।
ଋଷ୍ୟଶୃଙ୍ଗ ଅଇଲେ ଲୋମପାଦ ଦେଶ ।
ବୃଷ୍ଟି କରାଇଲା ଉପୁଜିଲା ଶସ୍ୟ । ୮୮୧ ।
ଯେ କଥା ମାଗୁ ତୁ ନ ବୁଝି ନୃପବର ।
କର ଦୁଇ ଯୋଡ଼ିଣ ସେ କହିଲାକ ଚର । ୮୮୨ ।
ଶୁଣିଣ ସନ୍ତୋଷ ହୋଇଲେ ଦଶରଥ ।
ବଶିଷ୍ଠ ଯାବାଳି କଶ୍ୟପ ତପୋବନ୍ତ । ୮୮୩ ।
ବାମଦେବ ସୁମନ୍ତ୍ର ସଙ୍ଗରେ ସପ୍ତ ଜନ ।
ରାଜା ମୁଖ ଚାହିଁ ବୋଲନ୍ତି ବଚନ । । ୮୮୪ ।
ହେ ଦେବ ସୁମନ୍ତ୍ର କହିଲେ ଯେବଣ କଥା ।
କାଳବେଳ ଅସି ହୋଇଲା ମହାରଥା ୮୮୫ ।
ଚାଲ ଶୁଭଯୋଗେ ଲୋମପାଦ ପୁର ।
ଋଷ୍ୟଶୃଙ୍ଗ ମୁନିଙ୍କି ଆଣିମା ପୁରସର । ୮୮୬ ।
ବଶିଷ୍ଠେ ବୋଲନ୍ତି ତୁ ସାଧୁ ଦଶରଥ ।
ଦୂରକଥା ତୋତେ ନିକଟେ ପରାପତ । ୮୮୭ ।
ସୁମନ୍ତ୍ର କହିବାର ସ୍ୱରୂପ ହୋଇଲା ।
ବ୍ରହ୍ମଣ୍ଡେକ ପୁତ୍ର ଯେବେ ସ୍ୱେଥକୁ ଅଇଲା । ୮୮୮ ।
ସନତ୍କୁମାରଙ୍କ କାହାଣୀ ସ୍ୱରୂପ ।
ସ୍ୱର୍ଗର ବଚ୍ଚର ହାଦେ ବୋଇଲେ ଯାହା ନୃପ । ୮୮୯ ।
ସେହୁକ ଅନ୍ତର ହୋଇବ ତପୀ ବାଣୀ ।
ନ କର ହେଳା ଦେବ ଅଯୋଧ୍ୟା ନୃପମଣି । ୮୯୦ ।
ଶୁଣିଣ ଦଶରଥ ଦେଲାକ ଆଦେଶ ।
ସକଳ ସଇନ ମୋର ସଜ ହୋଇ ଆସ । ୮୯୧ ।
ଯାବତ ଚରଚ୍ଚ ସୁମନ୍ତ୍ରକଇ କହି ।
ଆସ୍ତାନୁଂ ବାଜେ କଶଗଲେ ନରସାଇଂ । ୮୯୨ ।

Digitized by srujanika@gmail.com

ସ୍ନାହାନ ସାରଣ ଦେବତା ପୂଜାକର ।
ସକାଳ ମୁଣୋଦ୍ଧ କଲେକ ଦଣ୍ଡଧାରୀ । ୮୯୩ ।
ମୁଣୋଦ୍ଧ ସାରଣ ସେ କଲା ଆଚମନ ।
ସୁମନ୍ତ୍ର ପାତ୍ର ଯାଇ କଲାକ ଦରଶନ । ୮୯୪ ।
କର ଦୁଇ ଯୋଡ଼ି ଜଣାଇଲାକ ଯାଇ ।
ଥାଟ ସଜ ହୋଇ ଅଇଲେ ଗୋସାଇଂ । ୮୯୫ ।
ଶୁଣିଣ ସନ୍ତୋଷ ହୋଇଲେ ନୃପବର ।
ଆଜ୍ଞା ଦେଲେକ ସେ ଗୃହକୁ ହକାର । ୮୯୬ ।
ତକ୍ଷଣେ ସୁମନ୍ତ୍ର ବାରଠଆକୁ ଆଣି ।
ଦେଶ ଘୋଷ ଦାନ ଦେଲେକ ନୃପମଣି । ୮୯୭ ।
ଆଚମନ ସାରଣ ତାମ୍ବୁଳ ଲଗି ହୋଇ ।
ବିବିଧ ବେଶ ଚହ୍ନଂ ହୋଇଲେ ନରସାଇଂ । ୮୯୮ ।
ସୁମନ୍ତ୍ର ସାରଥି ରଥ କଲା ଆଣି ।
ଖୀରଛତ୍ର ଧରାଇ ବଜେ ନୃପମଣି । ୮୯୯ ।
ବାଜଇ ଟମକ ଢୋଲ ଦମା ଭେରୀ ।
ବିବିଧ ବାଦ୍ୟ ବାଜଇ ଝୁଂମହୁରୀ । ୯୦୦ ।
ପାଟଛତ୍ର ନିରନ୍ତରେ ଚବଳ ଉଡ଼ନ୍ତ ।
ଢ଼ଦଣ୍ଡ ଉଲଖ ଆଲମ୍ବ ପନ୍ତୁପନ୍ତ । ୯୦୧ ।
ହସ୍ତୀ ଘୋଡ଼ା ରଥୀ ପଦାନ୍ତ ନିରନ୍ତର ।
ରହୁବରେ ବସିଣ ଚଳଇ ନୃପବର । ୯୦୨ ।
ବଶିଷ୍ଠକୁ ସମର୍ପିଲ ନିଜ ରାଜ୍ୟ ଦେଶ ।
ସୁମନ୍ତ୍ରକୁ ସାଙ୍ଗେଣ ନେଲେକ ସୂର୍ଯ୍ୟବଂଶ । ୯୦୩ ।
ଯାନ୍ତେଣ ଛନ ଦିବସ ବାଟରେ ରହିଲେ ।
ଚମ୍ପାବତୀ ନଗ୍ରେଣ ପ୍ରବେଶ ହୋଇଲେ । ୯୦୪ ।
ଲୋମପାଦ ଆସି ପାଶ୍ଚେଟି ଘେନିଗଲା ।
ଶୁଭ ଯୋଗେ ମୁନିଙ୍କ ଛାମୁରେ ଜଣାଇଲା । ୯୦୫ ।
ମୁନି ପଚ୍ଛରନ୍ତେ ଏଥେ ଅଇଲେକ କାହୁଂ ।
ଲୋମପାଦ ବୋଇଲା ଯେ ଅଯୋଧ୍ୟାର ରାହୁ । ୯୦୬ ।
ସୂର୍ଯ୍ୟବଂଶେ ଅଜ ନୃପଙ୍କର ଶିଷ ।
ନାମ ଦଶରଥ ଏ ମୋହର ମଇତ୍ର । ୯୦୭ ।
ଜୀବନ ସୁଫଳ କରି ହୋଇବ ପବିତ୍ର ।
ତୋହୋର ଚରଣେ ଏଥେ ହୋଇବ ଭଗତ । ୯୦୮ ।

Digitized by srujanika@gmail.com

ଶୁଣିଣ ଋଷିଶୃଙ୍ଗ ଗଉରବ କରି ।
ଦଶରଥ ଉଭା ଛାମୁରେ ଯେ କରଯୋଡ଼ି । ୯୦୯ ।
ଯେତେ ପଗ୍ଭରନ୍ତି ତୁ ହୋ ଦଶରଥ ।
ପରଜା ପାଳୁନା ତୁ ପୁତ୍ରର ସଙ୍ଗାତ । ୯୧୦ ।
ଅମନାତ୍ୟ ପୋଷୁନା ଅତି ଯତ୍ନ କରି ।
ମଦ୍ୟେମତ୍ତ ଗଜ ଥାଇନା ଦୁଆରି । ୯୧୧ ।
ପୁରଜନ ଲୋକ ଘେନ କରୁନା ବଗ୍ଭର ।
ନୀତିଶାସ୍ତ୍ର ଶୁଣି ଘେନୁନା ଆଗ୍ଭର । ୯୧୨ ।
ପରଦେଶ ବାରତା ପାଉନା ସନ୍ଧି ।
ମନ୍ତ୍ରୀ ତୋହର ଅଟଇ ନା ସୁବୁଦ୍ଧି । ୯୧୩ ।
ବ୍ରାହ୍ମଣ ପଢ଼ନ୍ତି ନା ବେଦଶାସ୍ତ୍ର ମାନ ।
ସାଧୁତେ ସଂଗ୍ରହଣ କରନ୍ତଟିକି ଧନ । ୯୧୪ ।
ପୁତ୍ରେ କରନ୍ତଟିକି ମାତାପିତାଙ୍କର ସେବା ।
ସବୁଙ୍କର ହୃଦେ ବସଇଟିକି ଦୟା ଦେବା । ୯୧୫ ।
ନଗ୍ର ନରନାରୀ ଅଟନ୍ତିଟିକି ସୁନ୍ଦର ।
କାଳ ଜାଣି ବୃଷ୍ଟି କରଇ ବଜ୍ରଧର । ୯୧୬ ।
ଅନ୍ତେଶ୍ୱର କଥା ବୁଝୁଟିକି ନିତି ।
ଦେଶରେ ଦଣ୍ଡପାଟ ନ କରନ୍ତି ନା ଅନୀତି । ୯୧୭ ।
ବରଷାରେ ନଦୀରେ ଥାଇଟିକି ନାବ ।
ସୁଜନେ ଟେସକର ସଙ୍ଗେ ନୁହନ୍ତି ନା ଭାବ । ୯୧୮ ।
ପତିଙ୍କ ଭଗତ ହୁଅନ୍ତି ନା ଯୁବତୀ ।
ବିଶ୍ୱାସଘାତକା ସଙ୍ଗେ ନୁହନ୍ତି ନା ପୀରତି । ୯୧୯ ।
ବଇଦେ ଉପଗ୍ଭର ଜାଣନ୍ତିଟିକି ବ୍ୟାଧି ।
ତପୀଏ ଅଛନ୍ତିଟିକି ଅଗ୍ନିକି ଆରାଧି । ୯୨୦ ।
ସେବକ ପେଷିଲେ ନୋହନ୍ତି ନା ବିମୁଖ ।
ସଂଗ୍ରାମେ କ୍ଷତ୍ରୀଙ୍କର ହୃଷ୍ଟଟିକି ମୁଖ । ୯୨୧ ।
ଦେବତାରେ ପୂଜା ବ୍ରାହ୍ମଣେ ଦାନ ।
କୁଳୀନ ଲୋକମାନେ ମାନନ୍ତି ନା ମାନ୍ୟ । ୯୨୨ ।
ସୁଜ୍ଞାନୀ ଦ୍ୱିଜମାନେ କରନ୍ତିନା ହୋମ ।
ମନ୍ତ୍ରେ ସିଦ୍ଧ କରନ୍ତି ନ ନ କାମ । ୯୨୩ ।
ଅପନ୍ତ୍ୟେ ବାଟେ ପାଣି ପଣା ଦାନ ।
ପ୍ରାସାଦ ଅଟ୍ଟାଳି ଅଛନ୍ତି ନା ବୃକ୍ଷମାନ । ୯୨୪ ।

Digitized by srujanika@gmail.com

ବଧୂନ୍ତ ଆଗ୍ରହ ଅଛନ୍ତ ନା ସୁରସ୍ତ ।
ଦୋଷାଧୂ ରଖନ୍ତ ନା ଗୃହବାସ ବନ୍ତ । ୯୨୫ ।
ଅଗାଦ ଜଳ ଅଛଇଟିକ ଦେଶ ଲାଗେ ।
ଭୃତ୍ୟ ମାୟା ନ କରନ୍ତ ନା ସ୍ୱାମୀଙ୍କର ଆଗେ । ୯୨୬ ।
ମନ୍ତ୍ରୀଙ୍କେ ସିଦ୍ଧ କରନ୍ତ ନା କାମ ।
ଶୁଦ୍ଧ ଦ୍ୱିଜବର କରନ୍ତ ନା ହୋମ ;। ୯୨୭ ।
ବେଦଶାସ୍ତ୍ର ପଣ୍ଡାଏ ହୁଅନ୍ତ ନା ଗୋଷ୍ଠୀ ।
ପୁତ୍ରଆନ୍ତେ ପିତାଏ ନୋହନ୍ତ ନା କଷ୍ଟି । ୯୨୮ ।
ଦରିଦ୍ରଙ୍କଇ ଦୟା କରନ୍ତଟିକ ସାଧୁ ।
ଲଜ୍ଜ୍ୟାବନ୍ତ ହୋଇଣ ଅଛନ୍ତ ନା କୁଳବଧୂ । ୯୨୯ ।
ଔଷଧେଣ ରୋଗୀ ହୁଅନ୍ତ ନା ରକ୍ଷା ।
ଶିଷ୍ୟେ ପାଳନ୍ତ ନା ଗୁରୁବଚନ ଦୀକ୍ଷା । ୯୩୦ ।
ପ୍ରଚଣ୍ଡ ହୋଇଣ ନ ବହଇ ନା ପବନ ।
ମିଥ୍ୟା ନ କହନ୍ତ ନା ବଣିକାର ଜନ । ୯୩୧ ।
କୁତ୍ସିତ ବୁଧ ନ ପଶଇ ନା ଚୋହୋର ଚଢେ ।
ସଦା ଅନୁରାଗୀ ଅଟୁନା ନରନାଥେ । ୯୩୨ ।
ନଟେ ଉଦର ପୋଷନ୍ତ ନା ନୃତ୍ୟ କରି ।
ବେଶ୍ୟାଏ ପାରନ୍ତ ନା ପରମନ ହରି । ୯୩୩ ।
ଚଞ୍ଚଳ ଅଟନ୍ତ ନା ସାହାଣର ଘୋଡ଼ା ।
ହସ୍ତୀ ମାରଇଟିକ ଗୋଡ଼ାଇଣ ବେଢ଼ା । ୯୩୪ ।
ସାରଥୀ ସୂତ୍ରେଣ ବାହାଇ ନା ରଥ ।
ପାଦାନ୍ତ ପାଦେଣ ଅଟନ୍ତ ନା ସାମରଥ । ୯୩୫ ।
ଢେଣ୍କ ବନ୍ଧଲେଣ ଫୁଟଇଟିକ ବାଣ ।
ବିକଟାଳ ହୋଇଣ ବାଜଇଟିକ ନିଶାଣ । ୯୩୬ ।
ଅଲୋଭୀ ସିଠ ନିର୍ଲୋଭୀ କରଣ ।
ରସ ଗୁଣ୍ଡି ଆଭରଣ କରୁନା ସଂହରଣ । ୯୩୭ ।
ଦୀନ ଦୁଃଖୀ ଜନଙ୍କୁ ଅଟୁ ନ ନା ବଳ ।
ଯେ ଯାହାର ବସନ୍ତେ ପାଇନା ସ୍ୱାଦଫଳ । ୯୩୮ ।
ସୁରଭି ଦୁଧ ଦୁହାଂନ୍ତ ନା ଗାଈ ।
ବିଷ୍ଠା ନ ଖାନ୍ତ ନା ଚଉବାର ପାଇ । ୯୩୯ ।
ଚମ୍ପାଙ୍କେ ବଇଲେ ନ କରନ୍ତ ନା ତ୍ରାସ ।
ବାଟ ବୃକ୍ଷମାନ ନ କରନ୍ତ ନା ନାଶ । ୯୪୦ ।

Digitized by srujanika@gmail.com

ଚିତ୍ର ଲେଖନ ଲେଖନ୍ତିଟିକ୍କ ଘର ।
ଇଚ୍ଛାୟେ ବ୍ତନ୍ତ ନା ବାଣ ବଣିକାର । ୯୪୧ ।
ପରବାଗ୍ୱ ସେବକେ ନୋହନ୍ତ ନା କଷ୍ଟି ।
କୃଷି ପାଗ ଜାଣି କରଇ ନା ବୃଷ୍ଟି । ୯୪୨ ।
ଯେ ଯାହାର ଚ୍ରୁ କରନ୍ତ ନା ଦିଗପାଳ ।
ଭଗ୍ନ ନୋହଇ ନା ପକ୍ଷୀଙ୍କର ଆଳ । ୯୪୩ ।
ଧୂର୍ମଖେତ୍ରୁ ଉଦୟେ ନୋହଇ ନା ଗଗନେ ।
ପୂତ୍ରେ ତୋହର ଅନୀତ ନ କରନ୍ତ ନା ଭୁବନେ । ୯୪୪ ।
ଯେଥୁଅନନ୍ତରେ ଶୁଣ ଗୋ ଭଗବତୀ ।
ମଉନ ହୋଇ ଶୁଣୁଥିଲେକ ନୃପତି । ୯୪୫ ।
ଶୁଣି ଦଶରଥ ପ୍ରଳମ୍ବ କର ଶୋଇ ।
ଶୋକଭର ହୋଇଣ ସେ ଉଠିଣ କଥା କହ୍ନ । ୯୪୬ ।
ନୟନୁ ଅଶ୍ରୁ ଜଳ ପଡ଼ଇ ଘନ ଘନ ।
କର ଦୁଇ ଯୋଡ଼ିଣ ବୋଲଇ ରାଜନ । ୯୪୭ ।
ଶ୍ରେ ମୁନ ଯାହା ତୁ ପଚ୍ଚରିଲୁ ମୋତେ ।
ତୋହୋର ପ୍ରସାଦେ ଅଛଇ ସବୁ ସୁସ୍ତେ । ୯୪୮ ।
ପୁତ୍ର ବୋଲି ଯାହା ପଚ୍ଚରିଲୁ ତପସ୍ୱୀ ।
ଅପୁତ୍ରିକ ହୋଇ ମୁଂ ଅଛଇ ଦେହଧରି । ୯୪୯ ।
ନବ ସହସ୍ର ବରଷ ଭୋଗକଲି କର୍ମବଳେ ।
ପୁତ୍ର ପ୍ରାପତ ସେ ନୋହିଲା ସେତେ କାଳେ । ୯୫୦ ।
ଜଳଜ ପ୍ରାଣ ନ ଯାଇ ଦେହୁ ଛାଡ଼ି ।
ଅଭିମାନ ସମୋହେ ଅଛଇ ମୁହିଂ ବୁଡ଼ି । ୯୫୧ ।
ଆଜ ମୁଂ ଦେଖିଲି ବଶିଷ୍ଠେକ ସୁତ ।
ସର୍ବ ସମ୍ପଦ ମୋତେ ହୋଇଲା ପରାପତ । ୯୫୨ ।
ମୋହୋଠାରୁ ଯେ ଶେଷ ମୋର ବଂଶ ।
ପୁତ୍ର ବିହୁନେଣେ ରାଜ୍ୟରେ କାର୍ଯ୍ୟ କିସ । ୯୫୩ ।
ଦୋହତା ଗୋଟିଏ ମୋର ହୋଇଲା କେବଣ ପୁଣ୍ୟେ ।
ସେହି ପ୍ରଦାନ ନୋହିଲା ଆନେ । ୯୫୪ ।
ଯୁବା ବୟସ ସେ ସାଦୃଶେ ନାହିଂ ବର ।
ମନେ ବିଚାରଇ କରିବ ସ୍ୱୟମ୍ବର । ୯୫୫ ।
ଚଉ ଅସନ୍ତୋଷ ସେହି ଯେଥେ ଥାଇ ।
ଯେହି ମୋର ବଂଶ ରହିବ ଆର କାହିଂ । ୯୫୬ ।

Digitized by srujanika@gmail.com

ଅନେକ ଆକୁଳ ସହୁଂ ହୋଇଲ ନୃପତି ।
ରାଜାକଇ ହୁଂ ଗୃହୁଂ ବୋଲଇ ମହାଯତି । ୧୫୭ ।
ତୁ ଯେବେ ବସୁଯେ ନୁହସି ନୃପବର ।
ଆମ୍ଭେ ପ୍ରାପତ ତୋତେ କରିବୁ କୁମର । ୧୫୮ ।
ଯେଥକଇଂ ଭ୍ରାନ୍ତ ତୁ ନ କର ହୋ କିଛୁ ।
ପୁତ୍ର ପ୍ରାପତ ତୋତେ କର୍ମେଣ ଯେ ଅଛୁ । ୧୫୯ ।
ନୁହସି ବିକଳ ତୁ ଅଳପ ଦିନ ରହ ।
ଦୋହିତା କେଡ଼େ ତୋହର ମୋହୋର ଆଗେ କହ । ୧୬୦ ।
ବିଭା କଲୁନ କା ନାମ ତାର କସ !
କେତେମାନ ସୁନ୍ଦର କେତେକ ବୟସ । ୧୬୧ ।
ଦଶରଥ କହଇ ଯୋଡ଼ିଣ ବେନି କର ।
ଶୁଣିମା ମହାମୁନି ତପୀଙ୍କ ଈଶ୍ୱର । ୧୬୨ ।
ସାତଶ ପଞ୍ଚାଶ ମୋର ମହାଦେଈ ଅଛୁ ।
ଯେଥିରେ ତହିଁ ଯେ ଉତ୍ତମ ମନ ରୁଚ । ୧୬୩ ।
କଉଶଲ୍ୟା ସୁମିତ୍ରା କଇକେୟୀ ସୁନ୍ଦରୀ ।
ଯେ ମୋହାର ପାଟ ସେ ଅତ୍ୟନ୍ତ ମନୋହାରୀ । ୧୬୪ ।
କଉଶଲ୍ୟା ରାଣୀ ସବୁର ତହୁଂ ଶ୍ରେଷ୍ଠ ।
ତାହାକଇ ଘେନ ମୁଂ ବସିଲଇଂ ପାଟ । ୧୬୫ ।
କେବଣ ପୁଣ୍ୟେ ତାହାର ଗର୍ଭେ ଏକ ଫଳ ।
କାଳେଣ ପ୍ରସବିଲା ଏକଇ ଦୁଲ୍ଲଳ । ୧୬୬ ।
ତାହା ଦେଖି ମୁହିଂ ଛାଡ଼ିଲଇଂ ଚିନ୍ତା ।
ଶାନ୍ତ ହୋଇ ନାମ ଦେଲଇଂ ଶାନ୍ତା । ୧୬୭ ।
ପ୍ରାଣୁଂ ଅଧିକେ କରି ପାଳିଲଇ ତାହା ।
ଯୁବା ବୟସେଣ ନ କଲି ତାକୁ ବେହା । ୧୬୮ ।
ଯେ ମୋହର ମଇତ୍ର ଲୋମପାଦ ରାୟେ ।
କେବଣ ପାପେ ଯେହାର ନୋହିଲା ତନୟେ । ୧୬୯ ।
ଦୁହେଂ ଅପୁତ୍ରିକ ହୋଇଲୁ କର୍ମହୀନ ।
ଯେକା ଦୋହିତାକୁ ପାଳୁ ବେନିଜନ । ୧୭୦ ।
ମଇତ୍ର ବିକଳ ଦେଖିଣ ମୋ ଯତି ।
ଯେହାକଇଂ ଦିଅ ଦେଲଇଂ ପ୍ରିୟମତି । ୧୭୧ ।
ତାହାକଇଂ ପାଳଇ ନିଜ ପୁରେ ଆଣି ।
ଯେହାର ଘରେ ଦେବ ଅଛଇ ଦୁଲଣୀ । ୧୭୨ ।

Digitized by srujanika@gmail.com

ମୁନି ପଗୃରଇ ଲୋମପାଦକଇଂ ମୃହିଂ ।
ଦଶରଥ ନନ୍ଦନୀ ଅଛଇ ଗୃହେ କାହିଂ । ୯୭୩ ।
ଶୁଣିଣ ବୋଲଇ ଚମ୍ପାବତୀ ନରପତି ।
ମୁହିଂ ପ୍ରତିପାଳଇ ଦଶରଥ ଦୁହିତ । ୯୭୪ ।
ତାହାର ମୋହୋର ଅଟଇ ଏକପ୍ରାଣ ।
ମୋହୋର ଅର୍ଥେ କାରେଣୀ ଅଯୋଧ୍ୟାର ରାଣ । ୯୭୫ ।
ମୁନି ବୋଲଇ ଯେବେ ତୋହୋର ଘରେ ଥାଇ ।
ଆମ୍ଭର ଗ୍ରାମୁକୁ ସେ ନୁ ଆସଇ କପାଇଂ । ୯୭୬ ।
ରାଜା ବୋଇଲା ସ୍ୱାମୀ ଅପ୍ରତିଷ୍ଠା ନାହିଁ ।
ତେଣୁ ସେ ନୁଆସଇ ଶାପକୁ ଭୟକର । ୯୭୭ ।
ଅଣାଅ ବୋଲି ବୋଇଲେ ବଭଣ୍ଡେକର ଶିଷ ।
ତକ୍ଷଣେ ଲୋମପାଦ ଭିତରେଣ ପ୍ରବେଶ । ୯୭୮ ।
ସାଇନ୍ତା କନ୍ୟାକଇ ବେଗେଣ ସଜକର ।
ବହନ ହୋଇ ତହିଂ ଅଇଲା ଦଣ୍ଡଧାରୀ । ୯୭୯ ।
ଦ୍ରବ୍ୟ ବଳାସୁଣୀ କରାଇଲେ ବେଶ ।
ଅଲଙ୍କାର ଲାଇ ପିନ୍ଧାଇ ଚୀନବାସ । ୯୮୦ ।
ନୟେନ କଜ୍ଜ୍ୱଳ ଶିରେଣ ଫୁଲଗଭା ।
ମୁଖେଣ ତାମ୍ବୁଳ ଲଲାଟେ ଚନ୍ଦନ ଫୋପି ଶୋଭା । ୯୮୧ ।
କର୍ଣ୍ଣରେ ତଡ଼ଙ୍କ ମଥାରେ ମଥାମଣି ।
ଗଳାରେ ଗ୍ରୃପସର ନାସାରେ ବସଣି । ୯୮୨ ।
ବାହେ ବନ୍ଦ ସେ କରେଣ କଙ୍କଣ ।
ଅଙ୍ଗୁଷ୍ଠିରେ ମୁଦ୍ରିକା ତା ସୂର୍ଯ୍ୟର କରଣ । ୯୮୩ ।
ପୟରେ ନେପୂର ଚରଣେ ଅଳତା ।
ବ୍ବିଧ ବେଶକର ଆଣିଲେ ବନିତା । ୯୮୪ ।
ଧାଇ ମୁଦୁସୁଲି ଝିଡ଼ା ସଙ୍ଗେ ଆଇ ।
ପଛେଣ ଆସଇ ଯେ ଶରଦଚନ୍ଦ୍ର ମୁହାଁ ।
ମତ୍ତଗଜ ଗବନୀ ଧୀରେ ଧୀରେ ଚାଲେ ।
ଦାସୀ ପରିବାରୀ ଆଡ଼ୋ ଆଡ଼ୋ ବୋଇଲେ । ୯୮୬ ।
ଲାଜ ଭରେ ମଥା ପୋତିଣ ସୁନ୍ଦେରୀ ।
କର ଯୁଗଳରେ ଅଛୁ ଶ୍ରୀଫଳ ଗୋଟିଧରି । ୯୮୭ ।
ଲୋମପାଦ ଆଗେ କଢ଼ାଇଣ ବାଟ ।
ଆସିଣ ହୋଇଲେ ମହାଋଷିର ନିକଟ । ୯୮୮ ।

Digitized by srujanika@gmail.com

ଦଶରଥ ଦେଖିଣ ବୋଇଲେ ଆଗୋ ମାଏ ।
ପ୍ରଲମ୍ବ କର ମାତା ମୁନିଙ୍କର ପାଏ । ୯୮୯ ।
ଶୁଣିଣ ସୁନ୍ଦେଶୀ ଯେ ଶ୍ରୀଫଳ ପୁଷ୍ପ ଦେଇ ।
ଋଷିଶୃଙ୍ଗ ଚରଣେ ପଡ଼ିଲ୍କ ଯାଇ । ୯୯୦ ।
ଦେଖିଣ ମୋହମାନ ହୋଇଲ୍କ ଯତି ।
ବୋଇଲେ ଉଠ ଉଠରେ ଯୁବତୀ ରତ୍ନକାନ୍ତି । ୯୯୧ ।
ହୁଅସି କଲ୍ୟାଣ ଦୀର୍ଘ ଆୟୁ ପାଅ ।
ସୁପୁରୁଷ ବର ପ୍ରାପତେ ହେଉ ନାଥ । ୯୯୨ ।
ପୁତ୍ରବନ୍ତୀ ଯଶବନ୍ତୀ ଧନବନ୍ତୀ ତଜ ।
ଏ ତେତେ ପ୍ରାପତ ହୋଉରେ କାମେମୀ । ୯୯୩ ।
ଶୁଣିଣ ସୁନ୍ଦେଶୀ ଉଠିଣ ଉଭା ହୋଇ ।
ଦଶରଥକୁ ଗୃହଂଣ ଋଷିଶୃଙ୍ଗ ବୋଲଇ । ୯୯୪ ।
ଏ ତୋହୋର ଦୋହିତ ଶରଦଚନ୍ଦ୍ର କାନ୍ତି ।
ଆମ୍ଭକଇ ପ୍ରଦାନ କରସି ନୃପତି । ୯୯୫ ।
କ୍ଷତ୍ରୀଙ୍କର ଝିଅ ଋଷିଙ୍କି ଗ୍ରାହିତ ।
ତୋହୋର କୁଳଗୋତ୍ର ଅଟଇ ପବିତ୍ର । ୯୯୬ ।
ଆମ୍ଭେ ବିଭାଣ୍ଡେକ ପୁତ୍ର ବ୍ରହ୍ମବଂଶୀ ।
ନ କର ଚିନ୍ତା ତୁ କନ୍ୟା ମୋତେ ଦେସି । ୯୯୭ ।
ଶୁଣିଣ ଦଶରଥ ଋଷିର ପାଦେ ପଡ଼ି ।
ହରଷ ହୋଇଣ କହଇ କରଯୋଡ଼ି । ୯୯୮ ।
ମୁହିଂତ ଭର୍ଜନ ନୋହଇ ବୋଲିବାକୁ ।
ତୋତେ କି ଭର୍ଜନ ମୁଂ କନ୍ୟାଏ ଦେବାକୁ । ୯୯୯ ।
ତୁମ୍ଭେ ବ୍ରହ୍ମଗୃଷ୍ଟି ମହତ ମହାଋଷି ।
ହୁଅସି ବିଭ ମୁନି ଯେମନ୍ତେ ତୋତେ ଆସି । ୧୦୦୦ ।
ମୁହିଂକ କ୍ଷେମ ତାହା ତୁଣ୍ଡରେ ବସାଇ ।
ଏହା ଶୁଣି ବୋଇଲେ ଚମ୍ପାନଗ୍ର ସାଇଂ । ୧୦୦୧ ।
କିମ୍ପାଇ ମଇତ୍ର ହୋ ସଙ୍କୁଚ ଧର ମନେ ।
ଆମ୍ଭର ପୁନ୍ୟ ଯେବେ ପ୍ରକାଶଇ ଏସନେ । ୧୦୦୨ ।
ଋଷିଶୃଙ୍ଗ ଜୁଆଇଂ ହୋଇବ ଯେମନ୍ତ ।
ଏହେନେକ କର ନିର୍ଭା କରନ୍ତୁ ବିଧାତ । ୧୦୦୩ ।
ଆମ୍ଭର କୁଳ ଯେବେ ମୁନିଙ୍କରେ ହୋଇବ ରକ୍ଷା ।
ହୋଅନ୍ତୁ ବିଭ ଯେଣେ ପୁରଇ ମନବାଞ୍ଛା । ୧୦୦୪ ।

Digitized by srujanika@gmail.com

ଶୁଣିଣ ବିଭାଣ୍ଡେକ ପୁତ୍ର ଦରହସି ।
ଲୋମପାଦକଇ ବଚନ ପ୍ରକାଶି । ୧୦୦୫ ।
ଦଶରଥ ସଙ୍ଗେ ହୋଅ ତୁମ୍ଭେ କଥା ।
ସ୍ୱେ ବଚନ ଶୁଣି ବୋଲଇ ଦଶରଥା । ୧୦୦୬ ।
କସ କଥା ଆମ୍ଭେ ହୋଇବଇଂ ଆଉ ।
ତୋହୋର ତହୁଂ ମୋହର ଭଗଢ ଯେ ଥାଉ । ୧୦୦୭ ।
ହୋଅସି ବଶ୍ର ତୁମ୍ଭେ ବିଚାର ଲଗ୍ନ ବେଳ ।
ଶୁଣିଣ ପ୍ରସନ ଯେ ବିଭାଣ୍ଡେକର ବାଳ । ୧୦୦୮ ।
ତକ୍ଷଣେ ଆପଣା କଣ୍ଠର ରତ୍ନମାଳ ।
କନ୍ୟାର କଣ୍ଠେ ନେଇ ଲମ୍ବାଇଲେ ତପଶାଳୀ । ୧୦୦୯ ।
ଧାଇ ମୃଦୁସୁଲ ହୁଳହୁଳି ଦେଲେ ।
ମନ୍ତ୍ରୀଗଣେ ମିଳି ମଙ୍ଗଳ ଉଚ୍ଚାରିଲେ । ୧୦୧୦ ।
ମୁନି ବିଚାରଇ ସ୍ୱେତ ଜ୍ୟେଷ୍ଠମାସ ।
ଶୁକଳ ପକ୍ଷ କାଲି ପଞ୍ଚମୀ ଦିବସ । ୧୦୧୧ ।
ରବିବାର ମଘା ନକ୍ଷତ୍ର ପ୍ରସିଦ୍ଧି ।
ଦଶ ଯୋଗ ଚନ୍ଦ୍ର ବିଚାରିଣ ବିଧି । ୧୦୧୨ ।
ଶୁଭ ନାମେ ଯୋଗ ଅଟଇ ପୁଣ୍ୟକାଳ ।
କଇଲବ ନାମେ କରଣ ବୃହସ୍ପତିଙ୍କ ବେଳ । ୧୦୧୩ ।
ଏକାଦଶ ଘଡ଼ି କନ୍ୟା ଲଗ୍ନ ବେଳେ ।
ଆମ୍ଭକଇ କନ୍ୟା ସମର୍ପ ମହାଁ ଧାଲେ । ୧୦୧୪ ।
କନ୍ୟାର ନକ୍ଷତ୍ର ଅଟଇଁ କସ କହ ।
ଜାଣିମାନା ହାନ ଅପଚୟେ ଯେବଣ ଗ୍ରହ । ୧୦୧୫ ।
ଦଶରଥ ବୋଇଲା ଦେବ ମକର ସ୍ୱେହାର ରାଶି ।
ଶ୍ରବଣା ନକ୍ଷତ୍ର ସେ ଶନୈଶ୍ଚର ଦୋଷୀ । ୧୦୧୬ ।
ମୁନି ବୋଇଲେ ମୋର ଆରଦ୍ରା ମିଥୁନ ।
ଓହୋ କୁଳ ପ୍ରୀତି ବଢ଼ିବ ଦିନୁଦିନ । ୧୦୧୭ ।
ଶନିଶ୍ଚର ଯେବେ କନ୍ୟା ଅର୍ଥେ ଥିବ ।
ଲବଣ ଦାନ ଦେବା ଦୋଷ ପାର ଯିବ । ୧୦୧୮ ।
କନ୍ୟାର ପଞ୍ଚମେ ଅଛନ୍ତି ଦିନମଣି ।
ଆମ୍ଭଙ୍କ ଦ୍ୱାଦଶ ଦୋଷ ଜାଲା ଜାଣି । ୧୦୧୯ ।
ସଂକରାତକ ସତାଇଶ ଦିନ ଆଜଂ ଯାଇଂ ।
କକଡ଼ା ରାଶିରେ ଯେବେ ଦେବଗୁରୁ ଥାଇ । ୧୦୨୦ ।

Digitized by srujanika@gmail.com

ଆମ୍ଭଙ୍କ ତୃତୀଅ କନ୍ୟାକୁ ଅଷ୍ଟମ ଦେଲ ।
ପ୍ରସନ୍ନ ମନ ତୁ କର ମହୀଂପାଳ । ୧୦୨୧ ।
ବୁଧ ଚନ୍ଦ୍ର ଏକ ଆସନେଣ ସ୍ଥିତ ।
ରାହୁ ଗ୍ରହ ଅଛୁ ଏହାଙ୍କର କେତ । ୧୦୨୨ ।
ଶନଶ୍ଚର ଅଛୁ ଋଷଭେ ବିଜେ କରି ।
ବିତ୍ତରେ ଶୁକ୍ର କେତୁ ସହିଂ ଅଧିକାରୀ । ୧୦୨୩ ।
ଯେହ୍ନାଙ୍କର ସଙ୍ଗେ ଅଛଇ ଭୂମିବନ୍ତ ।
ଦୋଷକଇ ଦାନ ଶଦ୍ଧବା ପ୍ରତକ୍ଷ । ୧୦୨୪ ।
ବିଶେଷେ ଆମ୍ଭେତ ଅଟୁ ତପୀଜନ ।
ଆମ୍ଭକଇ ବେଳକାଳ ନାହିଂ ନା ରାଜନ । ୧୦୨୫ ।
ଦେବତା ବ୍ରାହ୍ମଣ ଅସୁର ନୃପତି ।
ଏହାକଇ ସୋଧି ନ ଯାଇ ଲଗ୍ନ ତିଥି । ୧୦୨୬ ।
ବଳେ ଆମ୍ଭନ୍ତ ଯେ କଥ ତୁ ଆବୋର ।
ଏହାକୁ ସଂଶୟେ ନାହିଂ ଦଣ୍ଡଧାରୀ । ୧୦୨୭ ।
ଦଶରଥ ବୋଲଇ ସ୍ନେହ ତୋହୋର ବିଚାର ।
ସେ କଥା ଆମ୍ଭଙ୍କ ଶୁଭ ମଙ୍ଗଳ ସୁଲଭ ଲଗ୍ନ ସାର ।୧୦୨୮ ।
ଲୋମପାଦ ନୃପତି ହେନ୍ତ କଥା କହି ।
କନ୍ୟା ଯାଉ ବୋଲି ମୁନି ଆଜ୍ଞାଂ ଦେଇ । ୧୦୨୮ ।
ନମସ୍କାର କରି ଶାନ୍ତା ଭିତରକୁ ଗଲା ।
ଦଶରଥ ଭୂଜଧରା ଲୋମପାଦ ନେଲା । ୧୦୩୦ ।
ଅନ୍ତର ସ୍ଥାନେ ଯେ ଝିଲନ୍ତି ଦୁହେଂ ବସି ।
ତହିଂ ଯାଇ ପ୍ରବେଶ ହୋଇଲେ ଋଷ୍ୟଶୃଙ୍ଗ ଆସି ।୧୦୩୧।
ମୁନି ପଚ୍ଚରନ୍ତି କିସ କିସ ଖେଳ ।
ଦେଖିଣ ଉଠିଲେ ଯେ ଦୁଇ ମହୀପାଳ । ୧୦୩୨ ।
କରଯୋଡ଼ି ଲୋମପାଦ ଦଶରଥ କହି ।
ଆଉ କିସ ବିଚାର ଅଛଇ ତପସ୍ୱୀଇଂ । ୧୦୩୩ ।
ଆମ୍ଭର ଭାଗ୍ୟେ ଯେବେ ଦେସନେକ କାଲୁ ।
ଋଷିଶୃଙ୍ଗ ଋଷିଙ୍କି ଜୁଝଇଂ ପାଇଲୁ । ୧୦୩୪ ।
ତୋହୋର ପୁଣ୍ୟେ ଅବା ଆମ୍ଭର ବଂଶ ରହି ।
ଯେସନେକ ବୋଲି ଯେ ତେବେ ରାଜା କହି । ୧୦୩୫ ।
ହେଥୁଅନନ୍ତରେ ଯେ ଦିନ ଅବଶେଷ ।
ମେଟୁଗିର ହୃଦଂଡ଼େ ଯେ କଶ୍ୟପର ଶିଷ । ୧୦୩୬ ।

Digitized by srujanika@gmail.com

ଋଷିଶୃଙ୍ଗ ଯାଇଁ ନିଜପୁରେ ବିଜେ କଲା ।
ଦଶରଥ ଘେନି ଲୋମପାଦ ଗଲା । ୧୦୩୭ ।
ସ୍ୱେକାନ୍ତ ହୋଇ ଚାଲିଲେ ବେନି ନୃପବର ।
ସାରିଲେ ସ୍ନାହାନ ଭୋଜନ ବେଗର । ୧୦୩୮ ।
ରଜନୀ ବଞ୍ଚିଲେ ବିବିଧ କଥା କହି ।
ଆନନ୍ଦଭରେ ଅତି ଉପତ ସେ ହୋଇ । ୧୦୩୯ ।
ପ୍ରଭାତେ ନିତ୍ୟକର୍ମ ସାରିଣ ନୃପ ବେନି ।
ଯାଇ ମିଳିଗଲେ ଋଷ୍ୟଶୃଙ୍ଗ ମୁନି । ୧୦୪୦ ।
ଦେବତା ପୂଜା ସେ ସାରିଣ ବ୍ରହ୍ମଋଷି ।
ଲୋମପାଦକଇ ଗୃହ୍ୟଂ ବୋଇଲେକ ହସି । ୧୦୪୧ ।
ମଣ୍ଡ ହୋ ନବର ସଞ୍ଜ ହୋ ସର୍ବକର୍ମ ।
କପାଇଂ କାର୍ଯ୍ୟକୁ ହେଉଅଛୁ ଭ୍ରମ । ୧୦୪୨ ।
ବେଳ ନିକଟସ୍ଥେ ହୋଇବ ଏହିକ୍ଷଣି ।
ଦ୍ରବ୍ୟନ୍ତ ସମ୍ପାଦ ତୁ କର ହୋ ନୃପମଣି । ୧୦୪୩ ।
ଶୁଣି ଲୋମପାଦ ମନ୍ତ୍ରୀକୁ ଆଜ୍ଞା ଦେଲା ।
ରାଜା ବୋଲେ ମନ୍ତ୍ରୀ ସମସ୍ତ ଭିଆଇଲା । ୧୦୪୪ ।
ଦଶଘଡ଼ି ଯହୁଂ ହୋଇଲାକ ବେଳ ।
ପାଞ୍ଚ ଜଉତଷ କହିଲା ଅନୁକୂଳ । ୧୦୪୫ ।
ବରକନ୍ୟା ବସାଇ ଦ୍ରବ୍ୟ ବେଶ କଲେ ।
ସୁବର୍ଣ୍ଣ ବେଦୀରେ ଆଣି ଶୁଭେ ବସାଇଲେ । ୧୦୪୬ ।
ଉପରେ ଗ୍ରୁଆର ମଣ୍ଡୋପ ମଣ୍ଡାଇଣ ।
କି ଜାଣି ଶରଦଚନ୍ଦ୍ର ଶୋଭିବନ । ୧୦୪୭ ।
ନଗ୍ର ନର ନାରୀ ଉଲ୍ଲୁକେ ହରଷ ।
ରାଜାର ମନ୍ଦିରେଣ ହୋଇଲେ ପରବେଶ । ୧୦୪୮ ।
ଦେଖନ୍ତି ବିଭା ଶାନ୍ତା ଋଷିଶୃଙ୍ଗ ।
ଜାଣି ପଞ୍ଚାନ୍ତର ରତି କି ଅନଙ୍ଗ । ୧୦୪୯ ।
ଦଶରଥ ବୋଲେ ଅଛିରେ ଦୂଲଣୀ ।
ଆହୋର ବସିଲ ମୁନି ଘେନିଣ କୁଶପାଣି । ୧୦୫୦ ।
ସ୍ୱେହୋଦଶ ଘଡ଼ି ସମୟେଣ ବେଳ ।
ଜଉତଷ ବୋଇଲା ହୋଇଲା ଅନୁକୂଳ । ୧୦୫୧ ।
ମୁନି ଦ୍ୱିଜବର ଅଛନ୍ତି ବହୁତ ।
ବରକନ୍ୟାକୁ ଆଶିଷ ଦଅନ୍ତି ତପୋବନ୍ତ । ୧୦୫୨ ।

Digitized by srujanika@gmail.com

କୁଶେଣ ବନ୍ଧନ କଲେକ ବେଦକର ।
ଯଜ୍ଞରୁକ ବଧାନ ଦେଲ୍ଲକ ଅପାର । ୧୦୫୩ ।
ଲକ୍ଷେକ ରତ୍ନ ଯେ ଶଙ୍ଖରେ ପୂରାଇ ।
ଦଶରଥ ଋଷିସିଂଘ କରେ ଦେଲେ ନେଇ । ୧୦୫୪ ।
କୁଶ ଗଣ୍ଠି ଫେଡ଼ଣ କଲେ ଅଗ୍ନି ପୂଜା ।
ଉଠିଣ ହସ୍ତ ହୋଇଲେ ଦଶରଥ ରାଜା । ୧୦୫୫ ।
ବସିଷ୍ଠେକ ତନସ୍ତ ଋଷ୍ୟଶୃଙ୍ଗ ମୁନି ।
ସ୍ନେହାକଇ ଦେଲ ମୋହର ନନ୍ଦନୀ । ୧୦୫୬ ।
ଯଜ୍ଞରୁକ ଦେବାକୁ ମୁଂ ନୁହଇ ଖରଜନ ।
ସମର୍ପ ହୋଇଲ ମୁଂ ଶୁଣ ସର୍ବଜନ । ୧୦୫୭ ।
ମୁନି ବୋଇଲେ ମୁଂ ହୋଇଲଇଂ ତୋଷ ।
ସ୍ତେ ମୋହରେ ରକ୍ଷା ହୋଇବ ତୋର ବଂଶ । ୧୦୫୮ ।
ଶୁଣି ଦଶରଥ ଲୋମପାଦ ରାସ୍ତେ ।
ବ୍ରାହ୍ମଣ ଅର୍ଚ୍ଚନା ଦକ୍ଷିଣା ବଧି କସ୍ତେ । ୧୦୫୯ ।
ସୁଲକ୍ଷଣୀ ନାରୀ ବନ୍ଦାଇଲେ ଆସି ।
ବରକନ୍ୟା ଭିତରକୁ ନେଲେ ଶୁଭ୍ରକେଶୀ । ୧୦୬୦ ।
ଅନ୍ତେସ୍ୱରେ ରାଜା ମହାଦେଈମାନ ।
ଆନନ୍ଦେ ବନ୍ଦାବନ୍ତ ବସିଷ୍ଠେକର ନନ୍ଦନ । ୧୦୬୧ ।
ଏକା ପତ୍ରେ ଭୋଜନ କଲେ ବରକନ୍ୟା ।
ଦୁର୍ବା ଅକ୍ଷତ ଘେନ କରନ୍ତ ବନ୍ଦାପନା । ୧୦୬୨ ।
ଲୋମପାଦକଇ ଯେ ବୋଲଇ ଋଷି ଗୃହଂ ।
ଯେତେକ ଯଜ୍ଞରୁକ ଅଛଇ ମୃହ୍ନଂ ପାଇ । ୧୦୬୩ ।
ପିତା ଆଶ୍ରମକୁ ଚଳାଇଣ ଦିଅ ।
ସମସ୍ତ କଥା ଗଲ୍ପ ଲୋକ ଆଗେ କହ । ୧୦୬୪ ।
ତକ୍ଷଣେ ଲୋମପାଦ ଯଜ୍ଞରୁକମାନ ।
ସଜ କରାଇଲ୍ଲ ଲକ୍ଷେକ ଗୋଧନ । ୧୦୬୫ ।
ଶତେକ ଅଶ୍ୱ ଯେ ଦ୍ୱିଶତ ଗଜ ।
ବବଧ ରତ୍ନ ଭଣ୍ଡାର କଲେକ ଯେ ସଜ । ୧୦୬୬ ।
ଶତେକ ପରିବାରୀ ଶାନ୍ତା ସଙ୍ଗେ ରହ ।
ସହସ୍ରେକ ଲୋକ ବୋଝ ଭାର ବହ । ୧୦୬୭ ।
ଖଟ ଦୋଳା ଶେଯ ପାଦଦାନ ମାନ ।
ଆଲଟ ଚାମର ଯେ ବବଧ ବସନ । ୧୦୬୮ ।

Digitized by srujanika@gmail.com

ଗଡ଼ୁ ଗରେଆ ଥାଲ ଖୋଗ ଖୋଶ ।
ହାତଧୂଆ ମଣ୍ଡା ନାଲୁଆ ରନ୍ଧଶ । ୧୦୬୯ ।
ସିଠ ବରଗିଣ ଚଳାଇଲେ ସବୁ ।
ବୋଇଲେ ସମର୍ପ ନେଇ ଋଷିଶୃଙ୍ଗ ବାବୁ । ୧୦୭୦ ।
ନାବେ ଗଲାର ଅଣାଇଲେ ଜଣେ ।
ସେହ୍ନାକଂର ସଙ୍ଗତେ ବେଷିଲେ ମନ୍ତ୍ରୀଗଣେ । ୧୦୭୧ ।
ନଦୀର କୂଳେ କୂଳେ ପଥ ବହିଗଲେ ।
ଚଉଦ ଦିନେ ଯାଇ ପ୍ରବେଶ ହୋଇଲେ । ୦୭୨ ।
ବିଭାଣ୍ଡେକ ଆଶ୍ରମ ସନ୍ନିଧେ ଗୋଚର ।
ସେଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭେଶ୍ୱ । ୧୦୭୩ ।
ଋଷିହିଂଘ ଋଷିକ ଆଣିଲେ ଯହୁଂ ହର ।
ସନ୍ଧ୍ୟା ସମୟେଣ ପିତା ଅଇଲେ ନଜ ପୁଶ । ୧୦୭୪ ।
ଦେଖିଲେ ମଢ଼ିଆ ଯେ ହୋଇଅଛୁ ଚୁଛା ।
ପୁତ୍ରକୁ ନ ଦେଖି ମୁନି ପଡ଼ିଗଲେ ମୁଚ୍ଛା । ୧୦୭୫ ।
ସଚେତ ହୋଇଣ ସେ ସୁମରଇ ସୁତ ।
ବୋଇଲେ ଆହା ମୋର ତନୟେ ପବିତ୍ର । ୧୦୭୬ ।
କାହିଂକି ଗଲୁ ବାବୁ ନ କହିଣ ମୋତେ ।
ଅନେକ ଦୁଃଖେଣ ପାଲିଲଇଂ ତୋତେ । ୧୦୭୭ ।
ବ୍ରହ୍ମଋଷି ସଙ୍ଗେ ହୋଇଲୁ ଗଣିତା ।
ଯାହାକଇ ପ୍ରଶଂସା କଲକ ବିଧାତା । ୧୦୭୮ ।
ପ୍ରସନ୍ନ ହୋଇଣ ଇନ୍ଦ୍ର ଦେଲ ବର ।
ବାଲୁକା ପୂଜା କଲେ ବିଜେ କରଇ ଶଙ୍କର । ୧୦୭୯ ।
ତପେଣ ନିଜତ ତୋର ଶୁଦ୍ଧମୟେ ତନୁ ।
ନକ୍ଷତ୍ର ନିର୍ମଳ ଯେ ତେଜମସ୍ତ ଭାନୁ । ୧୦୮୦ ।
ଚଉକିଡ଼ ବନ ନାହିଂ ଦେଶ ଗ୍ରାମ ।
କେଣେ ଗଲୁ ବାବୁରେ ଅଭିନବ କାମ । ୧୦୮୧ ।
ମାୟା ମୁନି ଅଇଲେ ମୋତେ ଯେ କହିଲୁ ।
ପିଶୁଣୀଙ୍କର ସ୍ୱରୂପେ ମୋହିଲୁ । ୧୦୮୨ ।
କପଟେ ରାକ୍ଷାସୁଣୀ ମୁନିଙ୍କ ଭକ୍ଷନ୍ତି ।
କେଣେ ଗଲୁ ବାବୁରେ ପବିତ୍ର ତନୟ ଗୋଟି । ୧୦୮୩ ।
ବାଳୁତ କାଳୁ ବାବୁ ପାଳିଲଇ ତୋତେ ।
ବିଧାତା ବିଚ୍ଛେଦ ଯେ କରାଇଲା ମୋତେ । ୧୦୮୪ ।

Digitized by srujanika@gmail.com

କାହାକୁ ପୂଛିବ ସେ ପର୍ବତ କନ୍ଦର ।
ବାଇ ପ୍ରାୟେ ହୋଇ ବୋଲ଼ଇ କୁମର । ୧୦୮୫ ।
ଆହାର ନ ରୁଚଇ ମନେ ସୁସ୍ଥ ନାହିଁ ।
ଜପ ତପ ମନ୍ତ୍ର ନାହିଁ ତପସାଇଁ । ୧୦୮୬ ।
ଦିନୁ ଦିନୁ ତନୁ ହୋଇଲାକ ଖିନ୍ନ ।
କ ଜାଣି ପଷ୍ଟାନ୍ତର ଅନ୍ଧାର ପକ୍ଷ ଜହ୍ନ । ୧୦୮୭ ।
ପୁନକଇ ଭ୍ରମଇ ସେ ରୋଦଇ ମହାମୁନି ।
ହେନସନ ସମୟେ ଶୁଣିଲା ବେଣୁଧ୍ୱନି । ୧୦୮୮ ।
ଋଷି ବିଚାରନ୍ତି ସେ କେବଣ କୃତ୍ୟ ।
ଶ୍ରବଣେ ଶୁଭିଲା ଶବଦ ବିପରୀତ । ୧୦୮୯ ।
ପୁନ୍ୟ କୁଟୀରୁ ବାହାର ମୁନି ତ୍ରିଦଣ୍ଡୀ ହାଥେ ଘେନି ।
ସୁରଭିର ଚରନ୍ତେ ଦେଖିଲେ ମହାମୁନି । ୧୦୯୦ ।
ନିକଟେ ପୁଛନ୍ତି ସେ କାହାର ଗୋରୁ ।
କାହାର ଆଜ୍ଞାରେ ଅଛନ୍ତି ସେ ଚରୁ । ୧୦୯୧ ।
ତ୍ରସେ ମୋହର ରକ୍ଷା ଯେ ଅଟଇ ସେ ବିପିନ ।
କମ୍ପା ସେଥେ ଉପଦର୍ପ କରେ ଦୁଷ୍ଟଜନ । ୧୦୯୨ ।
ରକ୍ଷାପାଳେ ବୋଇଲେ ଶୁଣସି ହୋ ଯତି ।
ଅମ୍ବର ନଗ୍ର ହାଦେ ଅଟଇ ଚମ୍ପାବତୀ । ୧୦୯୩ ।
ଲୋମପାଦ ରାଜାର ମଇତ୍ର ଦଶରଥ ।
ଶାନ୍ତେନ୍ତା ନାମେଣ ଯେ ତାହାର ଦୋହିତ । ୧୦୯୪ ।
ସେ ସେ କନ୍ୟା ଋଷିସିଂଘକୁ ବିଭାକଲା ।
ସେ ସବ ପଦାର୍ଥ ଯଉତୁକ ଦେଲା । ୧୦୯୫ ।
ଗଜ ଅଶ୍ୱ ବସ୍ତ୍ର ଧେନୁ ଅଳଙ୍କାର ।
ପିତାର ତହିଁକ ସେ ପେଷିଲା ମୁନିବର । ୧୦୯୬ ।
ବିଭାଣ୍ଡେକ ନାମେଣ ଅଟଇ ତାହା ତାତ ।
ତାହାକଇ ଗୋଚରେ ସମର୍ପିବୁ ବଉ । ୧୦୯୭ ।
ଶୁଣି ମହାଋଷି ହରଷ ମନ ହୋଇ ।
ସେ ମୋହୋର ପୁତ୍ର ବୋଲିଣ ବୋଲଇ । ୧୦୯୮ ।
ଅଛୁ ନା କୁଶଳେ କହ ତଥ୍ୟ ବାଣୀ ।
ସିଠ ନମସ୍କାର କଲେ ତାହା ଶୁଣି । ୧୦୯୯ ।
ବୋଇଲା ହେ ଋଷି ତୋହର ଏ ବଉ ।
ଋଷିଶୃଙ୍ଗ ମୁନି ପେଷିଲା ଆମ୍ଭନ୍ତ । ୧୧୦୦ ।

Digitized by srujanika@gmail.com

ଦଶରଥ ଝିଅ ଶାନ୍ତେନ୍ୟା ବନ୍ଧ ହୋଇଂ ।
ଏ ସର୍ବ ପଦାର୍ଥ ଯଜ୍ଞତୁକ ପାଇଂ । ୧୧୦୧ ।
ଶୁଣି ମହାମୁନି ବୋଇଲେ ବାବୁ ରହି ।
ମୋହୋର ଆସିବା ଯାଏ୍ଁ ସମ୍ଭାଳଣ ଥାଅ । ୧୧୦୨ ।
ମଠିଆ ଦେଖାଇଣ ବୁଝାଇଲେ ତାହାନ୍ତ ।
ପୁତ୍ରର ତହିଂକ ଚଳିଗଲେ ତପୋବନ୍ତ । ୧୧୦୩ ।
ମନ୍ତ୍ରବଲେ ପବନୁ ବେଗେଣ ଅଇଲା ।
ଚମ୍ପାବତୀ ନଗ୍ରେ ଘଡ଼କେ ପ୍ରବେଶ ହୋଇଲା । ୧୧୦୪ ।
ରାଜାର ନବରେ ପ୍ରବେଶ ଯାଇ ହୋଏ୍ଁ ।
ଋଷିଶିଂଘ ଦେଖିଣ ପଡ଼ଇ ପିତା ପାଏ୍ଁ । ୧୧୦୫ ।
କୋଳ କରଣ ପୁତ୍ରକୁ ମୁନି ଚୁ ି ଦେଇ ।
ନ କହି କେମନ୍ତେ ବାବୁ ଅଇଲୁ ବୋଲଇ । ୧୧୦୬ ।
ତୋତେ ନ୍ଲେଡ଼ି ମୋତେ ନ ଦିଶଇ ପନ୍ଥ ।
ଆହାର ନଦ୍ରା ମୁହିଂ ଛାଡ଼ିଲି ସମସ୍ତ । ୧୧୦୭ ।
ଶରୀର ଦେଖ ମୋର ଶରୀର ସ୍ୱସ୍ତ ନାହିଂ ।
ଅଢ ବେଗେ ଅଇଲି ବାରତା ତୋ ପ ଇ । ୧୦୮ ।
ପୁତ୍ର ବୋଲଇ ହୋ ତାତ ତୋହର ପରସାଦେ ।
ଆଜଦନ ସରକ ମୁଂ ଅଛୁ ଅପ୍ରମାଦେ । ୧୧୦୯ ।
ଏହି ନଗ୍ରେ ଇନ୍ଦ୍ର ହାଦେ ନ ପାଳିଲା ଯହୁଂ ।
ପ୍ରକାରନ୍ତର କର ଅଣିଲେ ମୋତେ ତହୁଂ । ୧୧୧୦ ।
ଏହି ମୋହର ଆସନ୍ତେଣ ହୋଇଲା ଏହିଥେ ବୃଷ୍ଟି ।
ଶସ୍ୟ ଉପୁଜିଲା ସୁଲଭ ହୋଏ୍ଁ ସୃଷ୍ଟି । ୧୧୧୧ ।
ଲୋମପାଦ ନାମେଣ ଏହି ନଗ୍ରର ରାଜା ।
ଦେଖ ତୋହୋର ଚରଣେ କରୁଅଛୁ ପୂଜା । ୧୧୧୨ ।
ଏହି ଯେ ଦଶରଥ ଅଯୋଧ୍ୟାର ପତ୍ତି ।
ବନ୍ଧ ହୋଇଲି ମୁଂ ଏହାର ଦୋହିତ । ୧୧୧୩ ।
ଉପହାର ମାନ ଏହି ସବୁ ଦେଲା ଚଲାଇ ।
ଗଲାଲୋକଙ୍କ ଆଗେ ବାରତା କହିଲଇ । ୧୧୧୪ ।
ବନ୍ଧଣ୍ଡେକ ବୋଲନ୍ତି ଲୋମପାଦକଇ ଗୃହିଂ ।
ତୋତେ କୋପ ହାଦେ କରୁଥିଲି ମୁହିଂ । ୧୧୧୫ ।
ଏହିବେ ସନ୍ତୋଷ ହାଦେ ହୋଇଲି ପୁତ୍ର ଦେଖି ।
ବନ୍ଧୁ ହୋଇଲୁ ଯହୁଂ ପୂର୍ବର କର୍ମ ଲେଖି । ୧୧୧୬ ।

Digitized by srujanika@gmail.com

ଯେଣୁ ସେ ଦଶରଥ ଅଟଇ ମୋହର ସାଇ ।
ଯହୁଁ ପୁତ୍ରକୁ ମୋର ଦେଲକ ତନଇ । ୧୧୧୭ ।
ନାହିଁ ମୋହର କୋପ ହୋଇଲୁ ପରସନ ।
ମାଗ ତୁମ୍ଭେ ବର ଦୁଇ ଯେ ରାଜନ । ୧୧୧୮ ।
ଶୁଣି ଦଶରଥ ଲୋମପାଦ ବେନ ।
କର ଦୁଇଯୋଡ଼ି ବୋଲନ୍ତି ଶୁଣ ମୁନି । ୧୧୧୯ ।
ଦୁହେଁ ଆମ୍ଭେ ଅପୁତ୍ରିକ ପୁତ୍ର ଦାନ ଦେବା ।
ଯଦ୍ୟପି ମହାମୁନି ଘେନିଲୁ ଆମ୍ଭ ସେବ । ୧୧୨୦ ।
ଅସ୍ତୁ ହୋଉ ବୋଲି ବୋଇଲେକ ମୁନି ।
ତୁମ୍ଭେ ଯାଗ କର ଋଷ୍ୟଶୃଙ୍ଗଙ୍କୁ ଘେନି । ୧୧୨୧ ।
ଯେତେଅନନ୍ତରେ ବିଭାଣ୍ଡକ ଋଷି ।
ପୁତ୍ର କୋଳେ ଧରି ସିଂହାସନେ ବସି । ୧୧୨୨ ।
ଦୁଇ ରାଜା ଯେ ଅଛନ୍ତି ଉଭା ହୋଇ ।
ବିଭାଣ୍ଡକ ବୋଇଲେ ଲୋମପାଦକଇ । ୧୧୨୩ ।
ଦଶରଥ ନନ୍ଦନୀକି ଅଣାଅ ମୋର ପାଶ ।
ଦେଖିବି କୁଳବଧୂ ହୋଇବି ହରଷ । ୧୧୨୪ ।
ଶୁଣି ଲୋମପାଦ ଅଣାଇଲା ବାଳୀ ।
ତାହାର ରୂପ ଦେଖି ସୁର ମୁନି ଟଳି । ୧୧୨୫ ।
ଶଶୁରଙ୍କ ପାଦେ ଫଳ ପୁଷ୍ପ ଥୋଇ ।
ସମ୍ପୂର୍ଣ୍ଣ ଚନ୍ଦ୍ରବଦନ ଓଳଗିଣ ଶୋଇ । ୧୧୨୬ ।
ଦେଖିଣ ମହାମୁନି କଲ୍ୟାଣ ବାଞ୍ଛିଇ ।
ସାଧୁ ଦଶରଥ ବୋଲିଣ ବୋଲଇ । ୧୧୨୭ ।
ଯେତେ ତୋହୋର କୁଳେ କମଳିଣୀ ଜାତ ।
ମୋହୋ ଭାଗ୍ୟେ ମୋହୋର ପୁତ୍ରକୁ ହୋଇଲା ପରାପତ । ୧୧୨୮ ।
ଧନ୍ୟ ଋଷିଶୃଙ୍ଗ ଧନ୍ୟ ତୋହୋର ତପ ।
କୁଳବଧୂ ପାଇଲୁ ଚଞ୍ଚଳା ସ୍ୱରୂପ । ୧୧୨୯ ।
ଉଠ ଉଠ ମାଏ ଗୋ ମୋର କୁଳର ମଣ୍ଡଣି ।
ଶତେକ ପୁତ୍ର ତୋର ହୋଉରେ ସୁଲକ୍ଷଣି । ୧୧୩୦ ।
ଭର୍ତ୍ତାରେ ଦୃଢ଼ଭାଗୀ ହୋଇଣ ଧନ ନାଥ ।
ଯୁବା ମୂର୍ତ୍ତି ହୋଇ ଯୁଗେ ଯୁଗେ ଥାଅ । ୧୧୩୧ ।
ଦଶରଥକୁ ବୋଲନ୍ତିଣ ମହାଋଷି ।
ସାଧୁ ସାଧୁ ରାଜା ତୁ ଅଟୁ ସୂର୍ଯ୍ୟବଂଶୀ । ୧୧୩୨ ।

Digitized by srujanika@gmail.com

ଧନ୍ୟ ତୋହୋର ମହିମା ଧନ୍ୟ ତୋହୋର ଜୀବନ ।
ବର ମାଗ ସତ୍ୟ ସଦେ ଦେବଇ ବଚନ । ୧୧୩୩ ।
ଯେ ତୋହୋର ବାଞ୍ଛା କରିବଇଂ ସିଦ୍ଧି ।
ସୁତକୁ ଦେଲୁ ମୋର ଯୁବତୀ ରତ୍ନନିଧି । ୧୧୩୪ ।
ସେ ମୋର କୁଳବଧୂ କରିବ କୁଳରକ୍ଷା ।
ତୋହୋର ପ୍ରସାଦେ ଅଜ ନୃପତିର ବକ୍ଷ । ୧୧୩୫ ।
ମୋତେ ଯେବେ ହୋଇଲ ତୋହୋର ସ୍ନେହେ ଯଶ ।
ମୁହିଂ କେଝେ ନୋହିବି ବିଶ୍ୱାସ । ୧୧୩୬ ।
ମାଗ ମାଗ ବର ସତ୍ୟ ମନେ ଦେବି ।
ଯାବତ ଚନ୍ଦ୍ର ସୂର୍ଯ୍ୟ କଥା ରୁହାଇବି । ୧୧୩୭ ।
ମୁନିବର ବଚନେ ଦଶରଥ ନୃପତି ।
କରଯୋଡ଼ି ବୋଇଲା ଶୁଣ ବ୍ରହ୍ମପତି । ୧୧୩୮ ।
କସ ବର ମାଗିବି ମୋହୋର ପୁତ୍ର ନାହିଂ ।
ଦେସି ପୁତ୍ର ଦାନ ମୋର କୁଳରକ୍ଷା ପାଇଁ । ୧୧୩୯ ।
ତୋହୋର ନନ୍ଦନକଇ ଦେଲି ମୋହର ଝିଅ ।
ଅନୁଗ୍ରହ କର ଯେବେ ପାଇବାର ପୁଅ । ୧୧୪୦ ।
ଭିନ ପୁରେ କଥା ହୋଇବ ବିଖ୍ୟାତ ।
ଝିଅ ଦେଇ ପୁଅ ପାଇଲା ଦଶରଥ । ୧୧୪୧ ।
ପାରୁ ଯେବେ ହେ ଋଷି ହୁଅ ପରସନ ।
ବଂଶରକ୍ଷା ହେଉ ମୋତେ ଦିଅ ପୁତ୍ରଦାନ । ୧୧୪୨ ।
ଶୁଣି ବିଭାଣ୍ଡକ ହରଷ ମନ ହୋଇ ।
ବୋଇଲେ ବଂଶ ତୋର ରଖିଦେଇ ମୁହିଂ । ୧୧୪୩ ।
ବିଷ୍ଣୁର ସମାନ୍ୟେ ହୋଇବ ତୋର ପୁତ୍ର ।
ତାହାକରେଣ ରକ୍ଷା ହୋଇବ ତୋହର ଗୋତ୍ର । ୧୧୪୪ ।
ଲୋମପାଦକୁ ଯେ ବୋଇଲେ ମହାମୁନି ।
ତୋହୋର ପ୍ରସାଦେ ପୁତ୍ର ମୋ ପାଇଲା କାମିନୀ ।୧୧୪୫।
ତୋତେ ବର ଦେବି ମାଗ ଯାହା ପାର ।
କର ଦୁଇ ଯୋଡ଼ି କହଇ ଲୋମପାଦ ବୀର । ୧୧୪୬ ।
ଦିଅସି ପୁତ୍ରଦାନ କଲୁ ଯେବେ ଦୟା ।
ତୋହେରେଣ ଗଣିତା ହୋଇବ ମୋହୋର କାୟା । ୧୧୪୭ ।
ମହାମୁନି ବୋଲନ୍ତି ପୁତ୍ର ମୁଖ ଗୃହିଂ ।
ହୋମକର ବାବୁ କପଟନା ଦେଖାଇ । ୧୧୪୮ ।

Digitized by srujanika@gmail.com

ଛନ୍ନ ବନେ ତପ ଚରୁ ସିଦ୍ଧ ଯେ ହୋଇବ ।
ଚମ୍ପାବତୀ ରାଜା ସନ୍ତୋଷ ପାଇବ । ୧୧୪୯ ।
ଶୁଣି ଋଷିଶୃଙ୍ଗ ଲୋମପାଦକଇ ଗୃହଂ ।
ବୋଲନ୍ତି ସମ୍ଭାରଣ ଭିଆଅ ତୁ ଯାଇ । ୧୧୫୦ ।
ଅଯୋଧ୍ୟା ରାଜ୍ୟେଣ ଦଶରଥ ଯାଗ କରୁ ।
ଅମ୍ଭେ ସ୍ନେବେ ତୋତେ ଦେବାକ କଣେତରୁ । ୧୧୫୧ ।
ଶୁଣି ଲୋମପାଦ ଭିଆଇଲା ଦ୍ରବ୍ୟ ।
ସମ୍ପାଦଣ କୁଣ୍ଡକଲ ଆଣି ହବ୍ୟ । ୧୧୫୨ ।
ଶଶୁର କଲ୍ୟାଣ ଯେନ୍ନ ଦେବୀ ଶାନ୍ତି ।
ଅନ୍ତପୁରେ ପ୍ରବେଶ ହୋଇଲେ ରୂପବନ୍ତୀ । ୧୧୫୩ ।
ଜ୍ୟେଷ୍ଠ ଶୁକଲ ଯେ ଦଶମୀ ଗୁରୁବାର ।
ସେଦିନ ହସ୍ତୀ ନକ୍ଷତ୍ର ସୀଦ୍ଧକାର । ୧୧୫୪ ।
ପିତା ପୁତ୍ର ହୋଇଣ ଅଗ୍ନିରେ ହୋମ ଦେଲେ ।
ଛନ୍ନ ବନ ପ୍ରବେଶେ ପୂର୍ଣ୍ଣ ଆହୁତ କଲେ । ୧୧୫୫ ।
ଚରୁ ସିଧ କରିଦେଲେ ମନ୍ତ୍ର ଭଣି ।
ଆନନ୍ଦେ ଯେନ୍ନଲେ ଲୋମପାଦ ନୃପମଣି । ୧୧୫୬ ।
ଶତେ ମହାଦେଈଙ୍କ ବାଣ୍ଟିଣ ଚରୁ ଦେଲ ।
ଖାଲେଣ ଶତେକ ପୁତ୍ର ଉପୁଜିଲ । । ୧୧୫୭ ।
ଚମ୍ପାବତୀ ନଗ୍ର ରାଜାର ପାଟରାଣୀ ।
ବସନ୍ତା ନାମରେ ସୁଭାଗୀ ତରୁଣୀ । ୧୧୫୮ ।
ତାହାର ପୁତ୍ର ଯେ ହୋଇଲା ହଲଧର ।
ଦୃଷ୍ଟି କନ୍ଦର୍ପ ପ୍ରାୟେକ ଦଶଇ ପଟାନ୍ତର । ୧୧୫୯ ।
ଶତେକ ପୁତ୍ର ତାର ନଳିଣୀ ଦଳ ଜାଣି ।
ଦେଖିଣ ହରଷ ଲୋମପାଦ ନୃପମଣି । ୧୧୬୦ ।
ଋଷିଶୃଙ୍ଗ ପ୍ରସନ୍ନ ହୋଇଣ ଚରୁଦେଲ ।
ଦେଖି ଦଶରଥ ନିସ୍ପୃହ ହୋଇଲା । ୧୧୬୧ ।
ବ୍ରାହ୍ମଣଙ୍କ ଚରଣେ କରଇ ନମସ୍କାର ।
ବୋଲନ୍ତି ପ୍ରସନ୍ନ ମୋତେ ହୁଅସି ମୁନିବର । ୧୧୬୨ ।
ସ୍ନେ ମୋହର ନଗ୍ର ଅଯୋଧ୍ୟା ଚାଲିଯିବା ।
ପୁତ୍ର ଅର୍ଥେ ମୋତେ କାରଣ କରିବା । ୧୧୬୩ ।
ବ୍ରାହ୍ମଣେକ ବୋଲନ୍ତି ତୁମ୍ଭେ ଶୁଣ ଦଶରଥ ।
ଅଯୋଧ୍ୟାକୁ ଯିବ ହୋ ତୋହୋର ଜାମାତ । ୧୧୬୪ ।

Digitized by srujanika@gmail.com

ଦୋହନ୍ତା ସହିତେ ତୋର ମୁଆଇଂ କ ନେସି ।
ଅଥ ଆରମ୍ଭକର ଯଜ୍ଞ ତୁ କରସି । ୧୧୬୫ ।
ପୁତ୍ର ପାଇବୁ ନୁ ସ୍ୱୟଂ ନାରାୟଣ ।
ରୂପେ ପଞ୍ଚାନ୍ତର ନୋହିବାକ କାମ । ୧୧୬୬ ।
ମୋହୋର ମନ ସନ୍ତୋଷେ ଦେଲଇ ତୋତେ ବର ।
କୁଳରକ୍ଷା ଯିବ ହୋଇବ କୁମର । ୧୧୬୭ ।
ଯାଅ ତୁ ନ ରହ ହୋ ଯାଗ କର ଯାଇ ।
ପୁତ୍ରକଇ ବଶିଷ୍ଠେକ ବୋଇଲେକ ଗୃହିଂ । ୧୧୬୮ ।
ଦଶରଥ ରାଜା ସ୍ୱେ ତୋହୋର ଶଶୁର ।
ସୂର୍ଯ୍ୟବଂଶୀ ରାଜା ସେ ପବିତ୍ର ନୃପବର । ୧୧୬୯ ।
ସ୍ୱେହାକଇ ବାବୁ ପୁତ୍ର କରାଅ ପରାପତ ।
ମୁହିଂ ଆଶ୍ରମକୁ ଯିବଇଂ ହୋ ସୁତ । ୧୧୭୦ ।
ଯହନ୍ତୁକ ଆସ୍ୱେ ଚଳାଇବୁ ଯାହା ।
ଯାଇଣ ସଂଭାଳଣ କରବଇ ତାହା । ୧୧୭୧ ।
ଦଶରଥକଇ ପୁତ୍ର ଦାନ ଦେଇ ।
କୁଳବଧୂ ଘେନ ଆସ ବେଗ ହୋଇ । ୧୧୭୨ ।
ମୁହିଂ ସ୍ୱେଥେ ରହି ନ ପାରଇ ବାବୁ ।
ଅସମ୍ଭାଳ ହୋଇଣ ଦ୍ରବ୍ୟ ପଡ଼ିଅଛୁ ସବୁ । ୧୧୭୩ ।
ସ୍ୱେତେ ବୋଲଣ ଯେ ଶୃଙ୍ଗୀ ଉଥାର ।
ପୂଜା ଘେନଣ ଚଳଇ ମଲଧାସ୍ୱ । ୧୧୭୪ ।
ଲୋମପାଦ ବୋଇଲ ମୃତ ବାହାନ ଆରୋହି ।
ଶୁଣି ତପଶୀଳେ ହସଇ ଟହ ଟହ । ୧୧୭୫ ।
କସ ନଶବୁ ଆମ୍ଭେ ଯାନ ସୁଖାସନ ।
ମନ ପବନ ଯୋଗେ କଶବୁ ଗମନ । ୧୧୭୬ ।
ସ୍ୱେତେ ବୋଲଣ ଯେ ବଶିଷ୍ଠେକ ଯତ୍ର ।
ପ୍ରବେଶ ହୋଇଲେ ନଜ ଆଶ୍ରମ କତ୍ର । ୧୧୭୭ ।
ଦୁଇ ଦଣ୍ଡେ ମିଳଲେ ଆସି କଉଶିକ ନଦୀ ତୀରେ ।
ଦେଖିଲେକ ଗୋରୁ ଚରୁଅଛନ୍ତ ଆଗରେ । ୧୧୭୮ ।
ସିଠ ଦଇଂ ଅର୍ଚ୍ଚନା କରାଇ ।
ଆସନ୍ତା ଲୋକଙ୍କୁ ମୁନ ଦେଲେ ପଠିଆଇ । ୧୧୭୯ ।
ଗୋପାଳଙ୍କ ମେଳେ ଧେନୁ ସମର୍ପିଲେ ।
ଆବର ପଦାର୍ଥ ଯତନ କଶ ଯାଇଥିଲେ । ୧୧୮୦ ।

Digitized by srujanika@gmail.com

ତପ ଆଶ୍ରେ କରି ରହିଲେ ମୁନି ପୁଣି ।
କହନ୍ତି ହର ଶୁଣ ହେମବନ୍ତ ଦୁଲଣୀ । ୧୧୮୧ ।
ସନ୍ତୁଂ ଷ୍ୱଶ୍ରେକ ଗନ୍ଧ ଜଳ ପୁଷ୍ପ ।
ଅଯୋଧ୍ୟାକୁ ଆସଇ ଦଶରଥ ଦଣ୍ଡଧାର୍ଣ୍ଣ । ୧୧୮୨ ।
ଲୋମପାଦ ସହିତେ ଋଷିସିଂଘ ଘେନି ।
ସଙ୍ଗେ ବହୁତ ବଳ ଅଛଇ ସଇନି । ୧୧୮୩ ।
ରତ୍ନ ହାନ୍ଦୋଳାରେ ଶାସ୍ତେନ୍ତା ବଟଜ କଲା ।
ବିଚିତ୍ର ପାଟଛେତ୍ର ଓହାଡ଼ ପଡ଼ିଲା । ୧୧୮୪ ।
ଶତେକ ପରିବାର୍ଣ୍ଣ ହାନ୍ଦୋଳାର ଭୁଲେ ।
ଋଷିଶୃଙ୍ଗ ବନେ କଲାକ ଚଢ଼ଦୋଳେ । ୧୧୮୫ ।
ଲୋମପାଦ ରଜା ଚଢ଼ିଲା ମତ୍ତହସ୍ତୀ ।
ରହୁବରେ ବସିଲେ ଦଶରଥ ନୃପତି । ୧୧୮୬ ।
ସୁମନ୍ତ ସାରଥି ରଥ ବାହାଇ ଘନଘନ ।
ହୁଦଣ୍ଡ ପାଟଛତ୍ର ଆଲମ୍ଭ ବିତପନ । ୧୧୮୭ ।
ନେତର ଚଉଳ ବଲମ୍ବ ରଥଧ୍ୱଜ ।
ସମ୍ମୁଖ ହୋଇଣ ଚଳନ୍ତି ବେଳିରଜ । ୧୧୮୮ ।
ଆଗେ ଦଶରଥ ଋଷ୍ୟଶୃଙ୍ଗ ମଝି ।
ପଛେ ଲୋମପାଦ ହସ୍ତୀଦଣ୍ଡ ସାଜ । ୧୧୮୯ ।
ବାଜଇ ଟମକ ନିଶାଣ ଖିରତୂର ।
ଶଙ୍ଖ ମହୁରି ଯନ୍ତ୍ର ସପତ ସ୍ୱର । ୧୧୯୦ ।
ନାନା ବନୋଦେଣ କରନ୍ତି କଉତୁକ ।
ପାରେଆ ଉଡ଼ାଇ କେ ବୋଲନ୍ତି ଦେଖ ଦେଖ । ୧୧୯୧ ।
ବାଟେଣ ନଟେ ଯେ ଗଛରେ ଉଠନ୍ତି ।
ଅବଧାନ ବୋଲି କେ ତଳରେ ପଡ଼ନ୍ତି । ୧୧୯୨ ।
ସାଙ୍ଗେଣ ଗୋଡ଼ାଇ ଅଛନ୍ତି ବେଶ୍ୟାନାର୍ଣ୍ଣ ।
ପରିମଳ ଠାବନ୍ତି ଦେଖିଲେ ନୃତ୍ୟକରି । ୧୧୯୩ ।
ମଦ୍ଦଳ କଂସାଳ ତାଳ ବେଣୁ ବାନ୍ତି ।
ମଧୁର ସ୍ୱରେଣ ଗୋଡ଼ାଇ ଗୀତ ଗାନ୍ତି । ୧୧୯୪ ।
ସାନ୍ତେ୍ରଣ ଦୁଇଦିନ ପଥ ବହିଗଲେ ।
ତିନି ଦିନେ ଅଯୋଧ୍ୟାରେ ପ୍ରବେଶ ହୋଇଲେ । ୧୧୯୫ ।
ନଗରେ ପ୍ରବେଶ ଲୋମପାଦ ଦଶରଥ ।
ଶାନ୍ତା ସହିତେ ଋଷସିଂଘ ତପୋବନ୍ତ । ୧୧୯୬ ।

Digitized by srujanika@gmail.com

ବଶିଷ୍ଟଙ୍କୁ ଦେଖି ନମସ୍କାର କଲେ ।
ସେ ବଧି ଯାହାକଇ କଲ୍ୟାଣ ଚଳିଲେ । ୧୧୯୭ ।
ସୁମନ୍ତ୍ରକୁ ହକାରି ଅଯୋଧ୍ୟାର ପଥ ।
ଲୋମପାଦକୁ ସୁରେକ ଦେଲେ ବାରମ୍ବାର । ୧୧୯୮ ।
ଋଷିସିଂଘ କଇ ଭଦ୍ୟ ଭଆସେକ ଦେଇ ।
ଜନନୀ କ ଦେଖି ତାର ଗଳ୍ପକ ତନଇ । ୧୧୯୯ ।
ଅନ୍ତଃପୁରେ ପ୍ରବେଶି ଓଳଗଇ ମାତା ।
ଦେଖିଣ ଆନନ୍ଦ ଦଶରଥଙ୍କ ବନିତା । ୧୨୦୦ ।
ଦୋହିତା କୋଳେଧରି ଚୁମ୍ବନ ଦଅନ୍ତି ।
କଉଶଲ୍ୟ କୈକେୟୀ ସୁମିତ୍ରା ଦେଖନ୍ତି । ୧୨୦୧ ।
ହସ ହସ ହୋଇ କରଇ ଲଜ ଲଜ ।
ମାସ୍ୟେ ବୋଇଲେ ଗୋ ହୋଇଲ ଶୁଭକାର୍ଯ୍ୟ । ୧୨୦୨ ।
ଋଷିଶୃଙ୍ଗ ଯେବେ ହୋଇଲେ ଛୋହୋଚ ପଥ ।
ବଂଶରକ୍ଷା ଆମ୍ଭର କରସି ମହାସଥ । ୧୨୦୩ ।
ଯେଥୁଅନନ୍ତରେ ଦଶରଥ ରାସ୍ୟେ ।
ଲୋମପାଦ ଘେନ ସ୍ନାହାନ ଭୋଜନ କସ୍ୟେ । ୧୨୦୪ ।
ଋଷସିଂଘକଇ ମଣୋହର ବଧି ।
ଶାସ୍ୟେନ୍ତା ସକଳ ପାଦ କଲ୍ପକ ସେ ସିଧି । ୧୨୦୫ ।
ସ୍ନାହାନ ସାରଣି ଦେବ ପୂଜା କରି ।
ଭୋଜନ କରଇ ମୁନି ପରଷଇ ନାରୀ । ୧୨୦୬ ।
ଆଞ୍ଚୋବନ ସାରଣ କର୍ପୁର ତାମ୍ବୋଳ ଖାଇ ।
ପଲଙ୍କେ ବଜାସ୍ୟେ କଲେ ବଶ୍ରେକ ତନଇ । ୧୨୦୭
ଦ୍ଦନକର ଅନ୍ତେ ବଧି କର୍ମ କଲ ।
ପ୍ରିୟା ଘେନ ମୁନି ରଜନୀ ବଞ୍ଚିଲ । ୧୨୦୮ ।
ଲୋମପାଦ ଦଶରଥ ଯେ ଯାହାର ପୁରେ ।
ପ୍ରବେଶ ହୋଇଲେ ସେ ସ୍ୱେନ ମନ୍ଦିରେ । ୧୨୦୯ ।
ପ୍ରଭାତେ ଯେ ଯାହାର ନିତ୍ୟକର୍ମ ସାରି ।
ଆସ୍ଥାନେ ବିଜଏ ଦଶରଥ ଦଣ୍ଡଧାରି । ୧୨୧୦ ।
ଲୋମପାଦ ରାଏ ସେ ମିଳଲେକ ଆସି ।
ଋଷିସିଂଘ ବଶିଷ୍ଟ ଅଛନ୍ତି ହବ ବସି । ୧୨୧୧ ।
ବାମଦେବ ଜାବାଲ କଶ୍ୟପ ତପୋବନ୍ତ ।
ସଭାପଣ୍ଡା ବପ୍ର ଅଛନ୍ତି ଅମାତ୍ୟ । ୧୨୧୨ ।

Digitized by srujanika@gmail.com

ଋଷିଶୃଙ୍ଗ ବୋଇଲେ ବଶିଷ୍ଠ ତୁମ୍ଭେ ଶୁଣ ।
ଯାଗ କରବଇଂ ଦଶରଥ କାରଣ । ୧୨୧୩ ।
ଚରୁ ଦେଲେ ନାରୀ ହୋଇବେ ଗର୍ଭବାସ ।
ପୁତ୍ର ଜାତ ହୋଇବେ ସମ୍ପୂର୍ଣ୍ଣ ଦଶମାସ । ୧୨୧୪ ।
ବଶିଷ୍ଠେ ବୋଇଲେ ତୁ ଦୟା ଯେବେ କଲୁ ।
ସେ ତୋହୋର ମୁଖେଣ ଯାହା ତୁ ବୋଇଲୁ । ୧୨୧୫ ।
କର ଯଥା ବିଧି କୀରତି ତୋର ଥାଉ ।
ପୁତ୍ରବନ୍ତ ହୋଅ ଅଯୋଧ୍ୟାର ପ୍ରଭୁ । ୧୨୧୬ ।
ଋଷିସିଂଘ ବୋଇଲେ ଶୁଣ ଦଶରଥ ।
ଯାଗକୁ ପଦାର୍ଥ ତୁ ଭିଆଅ ସମସ୍ତ । ୧୨୧୭ ।
ରାଜାକୁ ନିମନ୍ତ୍ରଣ ପେଷ ବେଗେ ଗୃହ ।
ବନ୍ଧୁଜନ ମାନଙ୍କୁ ଅଣାଅ ନୃପବର । ୧୨୧୮ ।
ଯଜ୍ଞଶାଳ ଶୋଧନ ତୁ କରାଅ ଲୋକ ପେଷି ।
ଶୋଧି ବସ୍ତ୍ର ତୁମ୍ଭେ ଲଙ୍ଗଳେ ଭୂମି ଚଷି । ୧୨୧୯ ।
ପୁରନ୍ତ ମଣ୍ଡ ତପୀଜନନ୍ତ ବର ।
ତିଳ ଘୃତ ଯବ ସମିଧ ସଜକର । ୧୨୨୦ ।
ତକ୍ଷଣେ ନୃପତି ସୁମନ୍ତ୍ରକୁ ରାଇ ।
ଯାଜ୍ଞର ବିଧି ଭିଆଅ ଆଜ୍ଞା ରାଜା ଦେଇ । ୧୨୨୧ ।
ଶୁଣିଣ ପାତ୍ର ବେଗେ ପ୍ରମନ୍ତ୍ରଲ ଦୂତ ।
ନାନା ଦେଶ ରାଜାନ୍ତ ଦେଲକ ବାରତ । ୧୨୨୨ ।
ମୁନି ଜନମାନଙ୍କୁ ନିମନ୍ତ୍ରଣ କଲା ।
ମହାରଣା ଯଜ୍ଞ ଶାଳନ୍ତ ଶୁଭଦେଲା । ୧୨୨୩ ।
ମଣ୍ଡନ୍ତ କଣ୍ଟେକ ବିବିଧ ଗୃହୁ ଶୋଭା କରି ।
କଦଳୀ ଗଛ ପୋତନ୍ତ ଦ୍ୱାରେଣ ସବୁର । ୧୨୨୪ ।
ଉଭା ସର ହୋଣା ଲମ୍ବାନ୍ତୁ ଚାରିଲ ।
ପୂର୍ଣ୍ଣକୁମ୍ଭ ଚୂତପତ୍ର ନଟିକାଲ । ୧୨୨୫ ।
ପିତାଙ୍କର ଉପରେ ସୁବର୍ଣ୍ଣ କଳସ ।
ନେତର ପାତାଙ୍ଗ ଉଡ଼ଇ ଚନ୍ଦ୍ରପାଶ । ୧୨୨୬ ।
ଚନ୍ଦ୍ରକାନ୍ତ ପାଟପତନୀ ଗୃମର ।
ଦର୍ପଣ ପନ୍ତପନ୍ତ ଶୋଭା ଦଶେ ଘର । ୧୨୨୭ ।
ଚିତ୍ର ଲେଖନ ଯେ ଚନ୍ଦନ ଗନ୍ଧ ବାସ ।
ଝରନ୍ତରେ ଲମ୍ବନ୍ତୁ ଶୁକଳ ରଙ୍ଗ ପୁଷ୍ପ । ୧୨୨୮ ।

Digitized by srujanika@gmail.com

ଦାଣ୍ଡ ପରିମଳ ଚତୁସମ ଛୁଆଁ ଯାଇଁ ।
ସରୁ ବହଳ ପାଟ ବସ୍ତ୍ରନ୍ତ ପକାଇ । ୧୨୨୯ ।
ତଥିର ଉପରେ ପୁଷ୍ପନ୍ତ ସଞ୍ଚିଲେ ।
କର୍ପୂର ଗୁଣ୍ଡି ଧୂଳି ଉପରେ ବିଞ୍ଚିଲେ । ୧୨୩୦ ।
ଠାବେ ଠାବେ ନୃତ୍ୟ ଗୀତ ବାଇଲେ ବାଦ୍ୟ ବୀଣା ।
ନର ନାରୀ ରୂପ ଏକୁ ଆରେ କ୍ଷୀଣା । ୧୨୩୧ ।
ବିବିଧ ବେଶ ହୋଇ ଅଳଙ୍କାର ଭରି ।
ବିବିଧ ପାଟନେତ ପରିହରଣ କରି । ୧୨୩୨ ।
ମୁଖେଣ ତାମ୍ବୋଳ ମୁଣ୍ଡେଣ ଫୁଲଗଭି ।
ସର୍ବାଙ୍ଗେ ଚନ୍ଦନ ଦିଣଇ ମହାଶୋଭି । ୧୨୩୩ ।
ଘରେ ଘରେ ଉଚ୍ଛବ ମଙ୍ଗଳ ଗୀତ ଗାଇ ।
ସାତ ପାଞ୍ଚ ହୋଇଣ ନଗ୍ର ବୁଲି ଯାଇ । ୧୨୩୪ ।
ଚତୁର ପୁରୁଷ ନାଗରୀ ନାରୀ ଦେଖି ।
କାମଭର ହୋଇ ଠାରି ଦ୍ୟନ୍ତ ଆଖି । ୧୨୩୫ ।
କେ ମୁଖେ ହସିଣ କେ ଗେଲ କଥା କହି ।
କେ ପାଦ ଅଙ୍ଗୁଷ୍ଠି ଘେନି ଭୂମିରେଣ ଲିହି । ୧୨୩୬ ।
କେହି ହୃତୁ ଅଙ୍ଗୁଷ୍ଠି ଦେଖାଇଣ ଠାରି ।
କେବଣ ପୁରୁଷଙ୍କୁ ହାବୋଡ଼ି ଗଲେ ନାରୀ । ୧୨୩୭ ।
ଲୋକର ଗହଳ ନ ଯାଇ କହିତ ।
ଟମକ ନିଶାଣ ବାଜଇ ବହୁତ । ୧୨୩୮ ।
ନଟେ ନୃତ୍ୟ ଗୀତ ଠାବେ ଠାବେ କରି ।
କାହିଁ ମେଲମେଲି ଯୁଧାମାନନ୍ତ କରି । ୧୨୩୯ ।
କାହିଁ ଅଶୁଆର ଅଶ୍ୱନ୍ତ ଧୁଆନ୍ତି ।
କାହିଁ କଉତୁକ ପାରୁଅ ମେଳନ୍ତି ।
ଦଣ୍ଡା ଝଣ୍ଡା ସାଧନ କରନ୍ତି ବହୁତ ।
ମାଲେ ମାଲେ ଉଭିରି ମାରନ୍ତି ମାଥେ ମଥା । ୧୨୪୧ ।
କେହୁ ଉଡ଼ାବନ୍ତି ତାଳପତ୍ର ଚକ୍ର ।
ଅତି ଉଚେ ଉଭିହୋଇ ଭିତର ଲୋକ ଦେଖି ।୧୨୪୨।
ନାନା ଦେଶରୁ ଅଇଲେ ନୃପବର ।
ଚଡ଼ଙ୍ଗ ଗଉଡ଼ ମାଳେବ ମୁକ୍ତର । ୧୨୪୩ ।
ଚିରୁହୁତ ମଗଧ ତେଲଙ୍ଗ କର୍ଣ୍ଣାଟ ।
ମହ୍ଲାର କନ୍ଧାଳୀ ଝଇରୀ କାମରାଷ୍ଟ୍ର । ୧୨୪୪ ।

Digitized by srujanika@gmail.com

ଦୋହୋର ଉକାଣି ମୁଗଲ କୁଚ ରସ୍ତେ ।
ଶ୍ରୀହଟ୍ଟ ଚମ୍ପାବତୀ ନେପାଳ ନୃପରସ୍ତେ । ୧୨୪୫ ।
କାଞ୍ଚି ମଥୁରା ଉତ୍କଳଦେଶୀ ।
କଳିଙ୍ଗ ଗାନ୍ଧାର ମିଥିଳା କାଶୀବାସୀ । ୧୨୪୬ ।
କାଉଂଶ୍ରୀ କନାଉଜ ଗୁର୍ଜ୍ଜରଷ୍ଟ ଭୋଟ ।
ପଶୁପତି କେଦାର ମଲ୍ଲିକା ସଉରାଷ୍ଟ୍ର । ୧୨୪୭ ।
ଦେବଗିରି ରଜା ପ୍ରବେଶ ହୋଇଲେ ଆସି ।
କେ ଗଙ୍ଗବଂଶୀ କେ ହୋଇ ହୋଇ ବଂଶୀ । ୧୨୪୮ ।
କେ ସୋମବଂଶୀ କେ ସୂର୍ଯ୍ୟବଂଶେ ଜାତ ।
ତାହାର ବଂଶାବଳୀ ଅଟଇ ବିଧାତ । ୧୨୪୯ ।
କେ ବଚ୍ଛ ଗୋତ୍ରୀ କେ ମରୁଡର ବଂଶୀ ।
କେହୁ ଭରଦ୍ୱାବଂଶ ଗୋତ୍ର କେ ଅଟଇ ହୁତବଂଶୀ । ୧୨୫୦
କେ ଅଗ୍ନି ଗୋତ୍ରୀ କେ ସୁଷୁମୁନା ଗୋତ୍ରୀ ।
ଛତିଶ କୁଳୁଂ ସେ ଅଇଲେ ବୀର କ୍ଷେତ୍ରୀ । ୧୨୫୧ ।
ଯେ ଯାହାର ସୈନ୍ୟ ରଥ ଗଜ ଅଶ୍ୱ ।
ମୃଦଙ୍ଗରାବ ଶବଦ ଶୁଭଇ ସିନ୍ଧୁ ଘୋଷ । ୧୨୫୨ ।
ଉପରେଣ ରତ୍ନ କଳସ ଦିଆଇଲେ ।
ତହିଁର ଉପରେ ଗିଲମି ବେଢ଼ାଇଲେ । ୧୨୫୩ ।
ସରୁ ନେତ ପାଟପତନି ତ୍ରୋଣା ବାନ୍ଧ ।
ଫୁଲ ମାଳ ମାଳ ଏଣେ ତେଣେ ଛନ୍ଦ । ୧୨୫୪ ।
ଶିଖରେ ସୁବର୍ଣ୍ଣ କଳସ ବସାଇ ।
ବିଚିତ୍ର ଝୀନନେତ ଚମର ଉଡ଼ାଇ । ୧୨୫୫ ।
ଦର୍ପଣ ପନ୍ତି ପନ୍ତି ଭ୍ରମର ଶ୍ୱେତକଳା ।
ଚଉକତି ଲମ୍ବଇ ଗଜମୋତି ମାଳା । ୧୨୫୬ ।
ଘର ଦ୍ୱାରେଣ ଯେ ଭିନ୍ନ ଭିନ୍ନ ଘର ।
ଇନ୍ଦ୍ର ଭୁବନ କି ପଟାନ୍ତର କର । ୧୨୫୭ ।
ମର୍କତର ପୀଢ଼ ସ୍ଫଟିକ ବନ୍ଧାଣ ।
କେବଣ ଠାବେ କାଚ ସୁବର୍ଣ୍ଣ ରସାଣ । ୧୨୫୮ ।
କାହିଂ ପୋଛେଲା ଯେ କାହିଂ ମଳା ଜଡ଼ି ।
କେବଣ ଠାବରେ ରତ୍ନ ପିରୁଳାଛନ୍ତି ପଡ଼ି । ୧୨୫୯ ।
ବାଜଣାର ଘାଏ କୁରୁମ ଉଚ୍ଛୁଳ ।
ପାଦ ଭରେ କମ୍ପିଲ୍ଲ ସେହୁ ମହିଆଳୀ । ୧୨୬୦ ।

Digitized by srujanika@gmail.com

ଅଯୋଧ୍ୟାରେ ପ୍ରବେଶ ସକଳ ନୃପତି ।
ବଚନ୍ତି ଗୁରୁ ମଣ୍ଡପେ କଟକ ଦେଖନ୍ତି । ୧୨୬୧ ।
ନାନା ଦେଶର ରାଜା ଭାଷା ଭିନ ଭିନ ।
ଶୁଣି ହସ ହସ ହୁଅନ୍ତି ଆନ ଜନ । ୧୨୬୨ ।
ସୁମନ୍ତ ସମ୍ଭାଳଇ ନବରପୁର ଦେଇ ।
ରହନ୍ତି ରାଜାମାନେ ଯେ ହରଷ ମୁଖ ହୋଇ । ୧୨୬୩ ।
ଥାଟକୁ ଅସମ୍ଭବ ରାଜାଙ୍କୁ ଯୋଗାଣ ।
ସମସ୍ତ ଆଗହୁଁ ସେ କରଛୁ ଭିଆଣ । ୧୨୬୪ ।
ଅନେକ ତୀର୍ଥରୁ ଅଇଲେ ତୀର୍ଥବାସୀ ।
ଯତି ଭିକ୍ଷୁକ ଯୋଗୀ ଚଉର୍ଯ୍ୟ ଜନ ଆସି । ୧୨୬୫ ।
ଅଯୋଧ୍ୟାରେ ମିଳି ଦେଖନ୍ତି ସ୍ୱେଣେ ତେଣେ ।
ଅନ୍ନ ବସ୍ତ୍ର ଦାନ ଦିଅନ୍ତି ଜଣେ ଜଣେ । ୧୨୬୬ ।
ତଇଳ ଗନ୍ଧ ପୁଷ୍ପ ତାମ୍ବୋଳ ଯାଚନ୍ତି ।
ପାଣି ପଣା ପଇଡ଼ ଘେନ ଲୋକେ ଯାନ୍ତି । ୧୨୬୭ ।
ଯେ ଯାହା ଇଚ୍ଛନ୍ତି ସେ ପାବନ୍ତି ସର୍ବବିଧି ।
ସୁମନ୍ତ କରୁଅଛୁ ସର୍ବ କାର୍ଯ୍ୟ ସିଦ୍ଧି । ୧୨୬୮ ।
ସରଯୂ ନଦୀର ଉତ୍ତର ପାରୁଣେ ।
ଦାରୁକ୍ଷ ବିପିନ ଅଛଇ ତହିଁ ପାଶେ । ୧୨୬୮ ।
ଚୂତବନ ନିକଟେ ପାତିଲେ ଯାଗ ଶାଳ ।
ଚନ୍ଦନ କାଠର ଯେ ଭୁଅ ଖମ୍ବ ଗୁଳ । ୧୨୭୦ ।
ପାଟ ଲଇ ଗଣ୍ଠି ଲବଙ୍ଗ ଲତା ଲତା ।
ତେଜପତ୍ର ଚୁସ୍ୱେଣି ଚୁଇଲେ କଦଳକତା । ୧୨୭୧ ।
ମଧ୍ୟରେ ବେଦି ସ୍ୱେକ ପବିତ୍ର ଶୁଦ୍ଧ ମାଟି ।
ଶତେ ଶତେ ହାଥ ଗୁଉଜୁଲ ଘାଟି । ୧୨୭୨ ।
ତଥିର ଭିତରେ ଅଛଇ ହୋମକୁଣ୍ଡ ।
ଦୀର୍ଘେ ପ୍ରସ୍ତ ପ୍ରମାଣ ବାରହାଥ ଦଣ୍ଡ । ୧୨୭୩ ।
ସ୍ୱେତେକ ଗଭୀର ଶୁଦ୍ଧଲେ ସୂତ୍ରକାର ।
ପ୍ରବେଶ ହୋଇଲେ ଯାଇ ସକଳ ତପସ୍ୱୀ । ୧୨୭୪ ।
ଅଗସ୍ତି ପାରେଶ୍ୱର କୃଷ୍ଣଧୂଜ ଗ୍ୟାନୀ ।
ପବନ ଗଉତମ ବିଶ୍ୱାମିତ୍ର ମୁନି । ୧୨୭୫ ।
ପୌଲସ୍ତି ତଣବା ଆହନ୍ତି ପିତା ପୁତ୍ର ।
କଣ୍ଡୁ କପିଳ ଶରଭଙ୍ଗ ତପୋବନ୍ତ । ୧୨୭୬ ।

Digitized by srujanika@gmail.com

ଭରଦ୍ୱାଜ ଦେବ ମୁନି ରାଜ ମୁନି ।
ବେଦବଳ ଶାନ୍ତ ସେ ଦୁର୍ବାସା ତପୋଧନ । ୧୨୭୭ ।
ଏହାଙ୍କର ମୂଳେ ଅଛଲେ ଅନେକ ମୁନି ।
ଅଯୋଧ୍ୟା କଟକେଣ ମିଳିଲେ ତପୋଧନ । ୧୨୭୮ ।
ଦଶରଥ ନମସ୍କାର କରିଣ ବୋଇଲା ।
ଆଜ ସେ ସୂର୍ଯ୍ୟବଂଶ ସୁଫଳ ହୋଇଲା । ୧୨୭୯ ।
ବ୍ରହ୍ମଋଷି ଦେବଋଷି ରାଜଋଷିମାନେ ।
ପ୍ରବେଶ ହୋଇଲେ ଯହୁଂ ମୋହର ଭୁବନେ । ୧୨୮୦ ।
କଲ୍ୟାଣ କର ମୁନି ପୁତ୍ର ମୋର ହେଉ ।
ତୁମ୍ଭର କଲ୍ୟାଣେ ସୂର୍ଯ୍ୟବଂଶ ରହୁ । ୧୨୮୧ ।
ତପୀ ଜନେ ବୋଇଲେ ତୁ ଶୁଣ ମହୀପାଳ ।
ଯହୁଂ ତୁ ଦେଖିଲୁ ହୋ ଋଷ୍ୟଶୃଙ୍ଗକର ବାଳ । ୧୨୮୨ ।
ଆବର କି ଚିନ୍ତାକରୁ ହୋ ପୁତ୍ର ପାଇ ।
ନୁହସି ଅରତ ହୋ ରଘୁକୁଳ ସାଇଁ । ୧୨୮୩ ।
ଯେଉଁ ଯାଗରେ ସେ ହୋଇବ ତୋର ପୁତ୍ର ।
ଆମ୍ଭର କଲ୍ୟାଣେ ବିସ୍ତାର ହେବ ଗୋତ୍ର । ୧୨୮୪ ।
ଏହୁ ଅନନ୍ତରେ ସୁମନ୍ତ ଆସି ମିଳି ।
ମନ୍ତ୍ରୀକି ଗୃହଂ ଆଜ୍ଞା ଦେଲା ନୃପଶାଳୀ । ୧୨୮୫ ।
ଏତେ ସେ ମହାଋଷି ଅଛନ୍ତି ସର୍ବେ ମିଳି ।
ଏ ମାନନ୍ତ ତୁମ୍ଭେ ହଅ ଅନୁହୋଳ । ୧୨୮୬ ।
ଶୁଣିଣ ସୁମନ୍ତ ସନ୍ତୋଷ ଚିତ୍ତ ହୋନ୍ତି ।
ରାଜାଙ୍କ ଆଜ୍ଞା ପାଇ ତପୀଙ୍କି ଘେନି ଯାନ୍ତି । ୧୨୮୭ ।
ଯେ ଯାହା ଅନୁରୂପେ ରହିତ ଠାବଦେଲା ।
କନ୍ଦମୂଳ ଫଳ ଜଳ ସମର୍ପିଲା । ୧୨୮୮ ।
ସୁସ୍ଥ ହୋଇଣ ରହିଲେ ସର୍ବ ଋଷି ।
ନିଜ ରାଜ୍ୟ ଛାଡ଼ି ପରଜା ଦେଖିବାରେ ଆସି । ୧୨୮୯ ।
ଲୋମପାଦକଇ ବୋଇଲେ ଦଶରଥ ।
ପୂର୍ବଦ୍ୱାରକଇ ତୁମ୍ଭେ ରଖସି ମଇନ୍ତ । ୧୨୯୦ ।
କନ୍ଦଶୀଳର ଭାଇ ରଖୁସି ଉତ୍ତର ଦ୍ୱାର ।
ଦକ୍ଷିଣେ ଥିବେ କଳେକସ୍ଥାର ପିଶ୍ୱର । ୧୨୯୧ ।
ସୁମୈହାର ଭାଇ ପଶ୍ଚିମ ଦ୍ୱାରେ ରଖୁ ।
ସର୍ବ ଲୋକନ୍ତ ହେ ସେବକ କର ଦେଖୁ । ୧୨୯୨ ।

Digitized by srujanika@gmail.com

ସୁମନ୍ତ୍ର ସମ୍ଭାଳିବ ନୃପତିଗଣେ ମାନ ।
ତପୀଙ୍କି ବଶିଷ୍ଟେ ଦେବେ ସନମାନ । ୧୨୯୩ ।
ଜାବାଳି ସମିଧ ତଣ୍ଡୁଳ ଫଳ ଜମ୍ବୁ ।
ବାମଦେବକଇ ଭଣ୍ଡାର ଧନ ଲମ୍ବୁ । ୧୨୯୪ ।
କଶ୍ୟପ ରଖନ୍ତୁ ଘୃତ ଗନ୍ଧ ପୁଷ୍ପ ।
ସ୍ୱର ଦ୍ୱାରେ ଥାଉ ଲକ୍ଷେବେନ୍ତ ଅଶ୍ୱ । ୧୨୯୫ ।
ମତ୍ତ ମାତଙ୍ଗ ଯେ ଦିବ୍ୟ ରଥମାନ ।
ବେଶ୍ୟାଏ ନୃତ୍ୟ କରୁଥିବେ ଅବିଛିନ୍ନ । ୧୨୯୬ ।
ଯେ ଯାହା ମାଗିବ ନିରାଶ ନ କରିବ ।
ଅନ୍ନ ବସ୍ତ୍ର ଧନ ଦ୍ରବ୍ୟମାନ ଦେବ । ୧୨୯୭ ।
ଆଷାଢ଼ ଶୁକ୍ଳ ଦଶମୀ ଗୁରୁବାର ।
ଜ୍ୟେଷ୍ଠା ନକ୍ଷତ୍ର ଦଶରଥକୁ ସାଧେକ ତାର । ୧୨୯୮ ।
ସପତମ ଚନ୍ଦ୍ର ସିଂହ ଲଗ୍ନ ବେଳେ ।
ଶୁକ୍ର ଅଧିକାସ୍ତ ଅଃନ୍ତ ତତକାଳେ । ୧୨୯୯ ।
ବାରୁଣୀ ବେଳେ ଯେ ଧଇଲେ ଅନୁକୂଳ ।
ଦଶରଥକୁ ବୋଇଲେ ବଶିଷ୍ଠେକର ବାଳ । ୧୩୦୦ ।
ଯେତେକ ତୋହୋର ହୋ ଅଛନ୍ତି ମହାଦେଈ ।
ତାହାଙ୍କୁ କହ ତୁ ହୋ ନିୟମବ୍ରତ ହୋଇ । ୧୩୦୧ ।
ପ୍ରଭାତେ ସ୍ନାହାନ ସାୟଂକାଳେ ଭୋଗ ।
ମଜ୍ଜନ ବତ ଯେହ୍ନେ ବ୍ରହ୍ମା ସାଧଇ ଯୋଗ । ୧୩୦୨ ।
ଅବିଛନ୍ନେ ଅନ୍ନ ଦେବ ଦୁଃଖୀ ଜନେ ।
କୁତ୍ସିତ କଥାମାନ ନ ବସିବ ମନେ । ୧୩୦୩ ।
ଏହି ମନ୍ତ୍ର ଗୋଟି ଜପିବ ଏକ ଧ୍ୟାନେ ।
ଋଷିଶୃଙ୍ଗ କହିଲେ ଦଶରଥ କାନେ । ୧୩୦୪ ।
ଦିନକେ ସହସ୍ରେ ବେଳ ଏହା ଜପ ।
ଭ୍ରାନ୍ତ କଲେ ରାଜା ପାଇବୁ ତୁ ପାପ । ୧୩୦୫ ।
ଏକାନ୍ତ ଠାବେ ବସି ଜପି ପରମୁଖ ନ ଦେଖି ।
ତାହା ସେ ବ୍ରତ କଲା ବୋଲି ଲେଖି । ୧୩୦୬ ।
ହବିଷ ଭୋଜନ ସ୍ୱଂଏ ପାକ କରି ।
କାଙ୍କ ଅନ୍ନ ତୁମେ ଭୁଞ୍ଜିବ ଦଣ୍ଡଧାରୀ । ୧୩୦୭ ।
ନିର୍ଦୋଷୀ ଗାଈର ଯେ ଜ୍ୟେଷ୍ଠ ପୁତ୍ର ।
ତାହାର ଦୁଗ୍ଧ ସେ ଏଥିକୁ ପବିତ୍ର । ୧୩୦୮ ।

Digitized by srujanika@gmail.com

ତନ୍ତୁଂ ବସିବ ଯେ ପଶ୍ଚିମମୁଖ ହୋଇ ।
ପୀତ ବସ୍ତ୍ର ପରିହରଣ ଶିରେ ବଦରୀ ପତ୍ର ଦେଇ ।୧୩୦୯।
ସତାଇଶ ଗୋଟି ହୋଇବ କୁଶଗଣ୍ଠି ।
ମନ୍ତ୍ର ପଢ଼ିବ ସ୍ତୁକ ଗୋଟିକ ପାଲଟି । ୧୩୧୦ ।
ଗଳାରେ ଥିବ ହାଦେ ତୁଳସୀର ମାଳ ।
ସମ୍ମୁରେ ଯେ ଜ୍ୱଳିଆ ଘୃତ ଦୀପାବଳୀ । ୧୩୧୧ ।
ଯେତେଦିନେ ପୂର୍ଣ୍ଣ ଆହୁତି ପଞ୍ଚପଚ ।
ତେତେଦିନ ଯାଏ ଆଚରିବୁ ବ୍ରତ । ୧୩୧୨ ।
ଶୁଣିଣ ନୃପତି ନବରେ ପରବେଶ ।
ହକାରିଲେ ଆଣିଲେ ସମସ୍ତ ରାଣୀହଂସ । ୧୩୧୩ ।
ଋଷିଶୃଙ୍ଗ କହିଲେ ଯେତେଯେତେ ବାଣୀ ।
ମହାଦେଈ ମାନଙ୍କୁ କହିଲେ ନୃପମଣି । ୧୩୧୪ ।
ସମସ୍ତେ ଶୁଣିଣ ଆଚରିଲେ ବ୍ରତ ।
ଆପଣେ ତାଙ୍କ ଦୀକ୍ଷା ଦେଲେ ତପୋବନ୍ତ । ୧୩୧୫ ।
ଶୁଣ ମହାମାୟା କହନ୍ତି ଶୂଳପାଣି ।
ଏ ସେ ଆଦିକାଣ୍ଡ ରାମାୟଣ ବାଣୀ । ୧୩୧୬ ।
ଶ୍ରୀରାମ ଜନମ ହୋଇବେ ଯେଉଁ ଯାଗେ ।
ଶୁଣିମାକୁ ତୁମେ ଅର୍ଜନ ପୂର୍ବ ଭାଗ୍ୟେ । ୧୩୧୭ ।
ଗଉରୀ କରଯୋଡ଼ି ବୋଲଇ ଦେବ ଶୁଣ ।
ଯେ ମୋହର ପାପ ହୋଇବ ଦହନ । ୧୩୧୮ ।
ତୋହୋର ପ୍ରସାଦେ ଅରଜିଲି ଯେତେ ଧର୍ମ ।
କହ ପ୍ରାଣନାଥ ଶ୍ରୀରାମର ଆଦ୍ୟ ଜନ୍ମ । ୧୩୧୯ ।
ଶଙ୍କର ବୋଲନ୍ତି ଯେ ପାର୍ବତୀ ମୁଖ ଚୁମ୍ବିଂ ।
ଶ୍ରୀରାମ ଚରିତ ଗୋ ଉତ୍ତମେ ତୋତେ ମୁହିଂ । ୧୩୨୦ ।
ଦଶରଥ ନୃପତି ସଙ୍ଗେ ଆଚରିଲେ ବ୍ରତ ।
ଦୀକ୍ଷା ଘେନିଲେ ତାହାର ମହାଦେଈ ସମସ୍ତ । ୧୩୨୧ ।
ଋଷିଶୃଙ୍ଗ ଆପଣେ ଶୁଚିବନ୍ତ ହୋଇ ।
ତପ ଆଚରିଲ ଯୁବତୀ ନ ଛୁଇଂ । ୧୩୨୨ ।
ଯଜ୍ଞେ ପ୍ରବେଶ ଯେ ବ୍ରହ୍ମଋଷି ମୁନି ।
ଅଜପା ଗାୟତ୍ରୀ କହଇ ମହାମୁନି । ୧୩୨୩ ।
ବ୍ରାହ୍ମଣ ବରଣ ସେ କଲେ ଜଣ ଚାରି ।
ବ୍ରହ୍ମା ବରଣ ସେ ଗଉତମ ଋଷିକି କରି । ୧୩୨୪ ।

Digitized by srujanika@gmail.com

ତେବନ ମହାଋଷି ନେଲେ ସ୍ନାନ ଦୀକ୍ଷା ।
ଅଷ୍ଟବନ୍ଧ ହୋତା ଅଧର୍ଯ୍ୟୁ ପୌଲସ୍ତି ର ଚଷ୍ଟ । ୧୩୨୫ ।
ଏମନ୍ତ ପ୍ରକାରେ ସପତ ଜଣ ବରି ।
କୁଣ୍ଡଳ ବଦ ମୁଦ୍ର ବଚତ୍ର ପଞ୍ଚାନ୍ଦରଣ କରି । ୧୩୨୬ ।
ଋଷିଶୃଙ୍ଗ ମୂଳ ଯାଗରେ ଆଚାର୍ଯ୍ୟ ।
ମାରକଣ୍ଡ ଋଷି ହୋଇଲେ ଋତ୍ଵିଜ । ୧୩୨୭ ।
ଅଗ୍ନି ସ୍ଥାପିଣ ସେ ବେଦ ମନ୍ତ୍ର ପଢ଼ି ।
କୁଶ ପଲାଶ ସମିଧ ଯୋଡ଼ି ଯୋଡ଼ି । ୧୩୨୮ ।
ସବଧାନ ଗୁଆ ନଡ଼ିଆ ଦୁଧ ଘୃତ ।
ଥଳ ସୁବର୍ଣ୍ଣ କୃଷ୍ଣ ବର୍ଣ୍ଣ ପାତ୍ର । ୧୩୨୪ ।
ସ୍ୱେ ବିଧି ଯଜ୍ଞ କରନ୍ତି ତପସ୍ୱୀ ।
ଚନ୍ଦନ କୁସୁମ ଗନ୍ଧ ସଜ କରି । ୧୩୨୫ ।
ଯେବଣ ଦେବତାଙ୍କୁ ଯେବଣ ମନ୍ତ୍ରେ ପୂଜା ।
ଧୂପଦୀପ ସମିଧ ଦିଅନ୍ତି ବିପ୍ରଦ୍ୱିଜା । ୧୩୨୬ ।
ବାଦ୍ୟ ବାଜଇ ବିବିଧ ବନେ ତ୍ୱର ।
ଅତହୁଂ ଗହଳ ସେ ଉଚ୍ଛବ ନଗ୍ରପୁର । ୧୩୨୭ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଆନନ୍ଦ ଜନପୁର ଲୋକ ।
ଯେଣେ ସୁରଗଣେ ଦେଖିବେ ଚରି ଶୋକ । ୧୩୨୮
ପାଞ୍ଚଦିନ ଯାଗ ହୋଇଲା ସମାପତ ।
ପୂର୍ଣ୍ଣ ଆହୁତି ଦିଅନ୍ତି ସକଳ ତପୋବନ୍ତ । ୧୩୨୯ ।
ସନ୍ତୁଂ ଋଷିଶୃଙ୍ଗ ଦେଲେକ ଆହୁତି ।
ସର୍ବଦେବ ଯେନ ଅଇଲେ ବେଦାପତି । ୧୩୩୦ ।
ନବଗ୍ରହ ସ୍ୱେକାଦଶ ରୁଦ୍ର ଆସ୍ୱେ ।
ଅଷ୍ଟବସୁ ଦଶ ଦିଗପାଳ ଯାସ୍ୱେ । ୧୩୩୧ ।
ସର୍ବ ଦେବତାଏ ମୂର୍ତ୍ତିବନ୍ତ ହୋଇ ।
ହବି ଭୁଞ୍ଜନ୍ତି ସେ ପରମ ସୁଖ ପାଇ । ୧୩୩୨ ।
ବ୍ରହ୍ମା ସହିତେଣ ସକଳ ଦେବ ଦେଖି ।
ଋଷିଶୃଙ୍ଗ ଉଠିଲେ ଆସନ ଉପେକ୍ଷି । ୧୩୩୩ ।
ଶ୍ରୁହା ପ୍ରୋକ୍ଷଣୀ ଛାଡ଼ି ମହାଯତି ।
କରି ଯୋଡ଼ିଣ କରଇ ଅନେକ ସ୍ତୁତି । ୧୩୩୪ ।
ଧନ୍ୟ ମୋର ପୁଣ୍ୟ ଧନ୍ୟ ମୋର ତପ ।
ପ୍ରତ୍ୟକ୍ଷେ ଦେଖିଲି ମୁଁ ସୁରଗଣଙ୍କ ସ୍ୱରୂପ । ୧୩୩୫ ।

Digitized by srujanika@gmail.com

ଦଶରଥଙ୍କ କଲ୍ୟାଣ ସମସ୍ତେ ଯେବେ କର ।
ପୁତ୍ରବନ୍ତ ହେଉ ଅଯୋଧ୍ୟା ନୃପବର । ୧୩୩୬ ।
ଯେ ମୋହର ଯଶ ରହୁ ଯେହ୍ନାର ଚନ୍ଦ୍ରଂ ।
ଧର୍ମ ଆଶ୍ରେକେ ପୁତ୍ର ଲଭୁ ନରହାଇଂ । ୧୩୩୭ ।
ମନ୍ତ୍ରବଳ ତପବଳ ଧର୍ମବଳ ଥାଉ ।
କଥା ବ୍ରହିଥାଉ ଯାବତ ମେଦିନୀ । ୧୩୩୮ ।
ତୁମ୍ଭେ ସୁର ଯେବେ ହୋଇଲ ସନ୍ତୋଷ ।
କର ଅନୁଗ୍ରହ ହାଦେ ରହୁ ସୂର୍ଯ୍ୟବଂଶ । ୧୩୩୯ ।
ଏତେ ବୋଲି ମୁନି ପ୍ରଣମୁ କଲ ଶୋଇ ।
ଯେସନେକ ସମସ୍ତେ ବାସୁଦେବ ଯାଇ ହୋଇ । ୧୩୪୦ ।
ଦେଖି ସୁରଗଣେ ବିଷ୍ଣୁଙ୍କୁ ସ୍ତୁତି କଲେ ।
ଜୟ ଜୟ ପରମେଶ୍ୱର ବୋଇଲେ । ୧୩୪୧ ।
ଜୟ ତୁ ନାରାୟଣ ଜୟ ମଧୁହାରି ।
ଜଗତ ନିସ୍ତାରଣ ଜୟ ଜଗଜ୍ଜନ ବେହାରି । ୧୩୪୨ ।
ପରମପୁରୁଷ ବ୍ରହ୍ମ ସର୍ବଜୀବ ଅନ୍ତର୍ଯ୍ୟାମୀ ।
ନମୋ ପୁରୁଷୋତ୍ତମ ପରମାନନ୍ଦ ସ୍ୱାମୀ । ୧୩୪୩ ।
ସଂସାର ତାରଣ ଯେ ସୁରଗଣ ନାଥ ।
ଅପାର ମହିମା ଦେବ ଶଙ୍ଖ ଚକ୍ର ହସ୍ତ । ୧୩୪୪ ।
ଶ୍ରୀବତ୍ସ ଲକ୍ଷଣ ଯେ କର୍ଣ୍ଣେଟି କୁଣ୍ଡଳ ।
କଣ୍ଠେ କଉସ୍ତୁଭ ମଣି ଆଦିତ୍ୟ ମଣ୍ଡଳ । ୧୩୪୫ ।
କଟୀରେ ପୀତବାସ ବାହେଣ ଖଦ ମୃଧ ।
ହୃଦରେ ବନମାଳା ଶକୁଳ ପ୍ରସିଦ୍ଧି । ୧୩୪୬ ।
ଆରତଭଞ୍ଜନ ଦେବ ଭଗତବତ୍ସଳ ।
ଶରଣରକ୍ଷଣ ସ୍ୱାମୀ ଅସୁରକ୍ଷୟକାଳ । ୧୩୪୭ ।
ଶ୍ରୀବନ୍ତ ପୁରୁଷ ତୁ ଶ୍ରୀହରି ଜଗତମିତ ।
ଶ୍ରୀନାରାୟଣ କେଶବ ମାଧବ ଅଚ୍ୟୁତ । ୧୩୪୮ ।
ତର କରୁଣା ଦେବ ଅପାର ମହିମା ।
ଯେତେନେକ ବୋଲି ସ୍ତୁତି କଲେ ବ୍ରହ୍ମା । ୧୩୪୯ ।
ଶ୍ରୀହରି ବୋଇଲେ ହୋ କରିବି କସ କାର୍ଯ୍ୟ ।
କମ୍ପା ସ୍ତୁତି କଲ କହ ବିପ୍ରରାଜ । ୧୩୫୦ ।
ବିଧାତା ବୋଇଲେ ତୁମ୍ଭେ ଶୁଣ ଦେବସ୍ୱାମୀ ।
ଜଗଜନ ହୃଦେ ତୁ ସେ ଅନ୍ତର୍ଯ୍ୟାମୀ । ୧୩୫୧ ।

Digitized by srujanika@gmail.com

ଉତପତ୍ତି ସ୍ଥିତି ପ୍ରଳୟ କରନ୍ତା ।
ତୋ ତନୁଂ ଆନ କେ ସୃଷ୍ଟି ଉଧରନ୍ତା । ୧୩୫୨ ।
ତୋହୋର ପ୍ରସାଦେ ଆମ୍ଭେ ସୁସ୍ତେ ଥାଉ ।
ତୋହୋର ଅଦସ୍ଥାରେ ସୃଷ୍ଟି ରହିବ କାହୁଂ । ୧୩୫୩ ।
ତୁହି ସେ ଠାକୁର ଆମ୍ଭେ ସବୁ ଭୃତ୍ୟ ।
ଭୃତ୍ୟଙ୍କଠି କାରେଣୀ କର ଶଙ୍ଖଚକ୍ରହସ୍ତ । ୧୩୫୪ ।
ଶୁଣ ଦେବ ବ୍ରହ୍ମାଣ୍ଡନାୟେକ ମୁରାରି ।
ହେତି ପ୍ରହେତି ବୋଲି ପୂର୍ବେ ଦୁଇ ଦାଇତ ଅବତରି । ୧୩୫୫ ।
ସୁକେଶୀ ନାମେଣ ସେ ତାହାଙ୍କର ପୁତ୍ର ।
ବଡ଼ାଇ ଧାର୍ମିକ ସେ ଅଟଇ ତପୋବନ୍ତ । ୧୩୫୬ ।
ସେ ସେ ମହାତମା ପାପପୂର୍ଣ୍ୟଜ୍ଞାନୀ ।
ନ୍ୟାୟବନ୍ତ ପଣେ ସମାନ୍ୟ ମହାମୁନି । ୧ ୫୭ ।
ତାହାର ତନୟ ସେ ବଦୁତକେଶୀ ହୋଇ ।
ପ୍ରତାପୀ ପଣେ ତାକୁ ସାମାନ୍ୟ ନାହୁଂ କେହି । ୧୩୫ ।
ତାହାର ତିନପୁତ୍ର ହୋଇଲେକ ଜାତ ।
ମାଲି ସୁମାଳି ସେ ଆବର ମାଲ୍ୟବନ୍ତ । ୧ ୫୯ ।
ଦୁଷ୍ଟପଣ କରି ଧର୍ମ ଛଡ଼ାଇଲେ ।
ତପୀ ଜପୀ ମାରି ବ୍ରାହ୍ମଣ ନାଶିଲେ । ୧୩୬୦ ।
ପରଦେଶ ପରନାରୀ ହରିଲେ ପରଧନ ।
ତୁ ତାହା ଚକ୍ରଧରି କଲୁ ନିଶୋଧନ । ୧୩୬୧ ।
ମାଳି ମାଲ୍ୟବନ୍ତ ମଲେ ସେ ତୋର ହସ୍ତେ ।
ଡରେ ପଲାଇଲା ସୁମାଳି ନାମେ ଦତ୍ୟେ । ୧୩୬୨ ।
ବଳ ଘେନିଣ ସେ ପାତାଳେ ଯାଇ ଲୁଚି ।
ନିକେଶୀ ନାମେ ଝିୟେକ ତାର ଅଛି । ୧୩୬୩ ।
କାଳେଣ ତାହା ବଶବା ରିଷିଙ୍କ ବରିକଲା ।
ମୁନିର ବିର୍ଯ୍ୟେ ତିନିପୁତ୍ର ଉତ୍ପନ୍ନିଲା । ୧୩୬୪ ।
ରାବଣ କୁମ୍ଭକର୍ଣ୍ଣ ଏ ଅତି ବଳବନ୍ତ ।
ଦେବାସୁର ମୁନି ଡରିଲେ ଏହାନ୍ତ । ୧୩୬୫ ।
ଜଗତ୍ରେ ସାଧିଲେ ସେ ଦୁଷ୍ଟ ବେନି ଭାଇ ।
ରାବଣର ତନୁଜେ ମେଘନାଦ ନାମେ ହୋଇ ।୧୩୬୬।
ଇନ୍ଦ୍ରକଇ ଜିଣି ତାର ନାମ ଇନ୍ଦ୍ରଜିତ ।
ଆବର ନରାନ୍ତକ ଦେବାନ୍ତକ ବେନି ପୁତ୍ର । ୧୩୬୭ ।

Digitized by srujanika@gmail.com

ଅତିକାୟେ ଅମୟେ ସମଏ ଜ ଶିରା ।
ଅକ୍ଷୟେ ଅଶୋକ ଅକମ୍ପନ ମହାବୀରା । ୧୩୬୮ ।
ଜମ୍ବୋମାଳୀ ଶତ୍ରୁଜିତ ସହସ୍ରାଜିତ ଘେନ ।
ସ୍ୱେହାଙ୍କର ଗୁଲନ୍ତେ କମ୍ପିବ ମେଦିନୀ । ୧୩୬୯ ।
ଅଜୟେ ମାହାକ ସ୍ୱେ ପୃଥିଜ ମହାବୀର ।
କୁମ୍ଭ ନିକୁମ୍ଭ ଯେ ମହାରାବଣ ବୀର । ୧୩୭୦ ।
କୁମ୍ଭେକ ମକରାକ୍ଷସ ବିରୂପାକ୍ଷ ।
ମହାପାରୁଶ ମହୋଦର ଧୂମ୍ରପାକ୍ଷ । ୩୭୧ ।
ପ୍ରଶସ୍ତ ଶୁକ ଯେ ସାରଣ ମହାବଳୀ ।
ସ୍ୱେହାନ୍ତ ଘେନ ରାବଣ ଦେବତାନ୍ତ ଦଳି । ୧୩୭୨ ।
କୁବେରକୁ ଜିଣିନେଲ ପୁଷ୍ପେକ ବିମାନ ।
ସୁରଗଣ ବଶ କଲାକ ଦଶାନନ । ୧୩୭୩ ।
ସ୍ୱେବେ ତୁ ନାରାୟଣ ଦଇତନ୍ତ ମାର ।
ତୋହୋର ସେବକଜନନ୍ତ ରକ୍ଷାକର । ୧୩୭୪ ।
ବାଲ୍ଲକ ଗୃପିଲୁ ବାମନ ରୂପ ହୋଇ ।
କଶ୍ୟପର କୁଳେ ଜନମିଲୁ ଗୋସାଇଂ । ୧୩୭୫ ।
ସେ ଯେ କଶ୍ୟପ ସ୍ୱେବେ ଦଶରଥ ।
ସ୍ୱେକାବେଳେକ କଉଶଲ୍ୟା ଗର୍ଭେ ହୁଅ ଜାତ । ୧୩୭୬ ।
ବାଳକକାଳେ ଯଜ୍ଞ ରଖିବୁ ଦେବ ହରି ।
ଯୁବାକାଳେ ବନସ୍ତ ଯିବୁ ମୁନିନ୍ତ ରକ୍ଷାକରି । ୧୩୭୭ ।
ବିପିନେ ଭାରଯା ତୋର ରାବଣ ହରି ନେବ ।
ଦୁଖେଣ ଦିନ ତୁ ବଞ୍ଚିବୁ ରାଘେବ । ୧୩୭୮ ।
ଦେବଙ୍କର କର୍ମିରେ ପାଇବୁ ଅନେକ କଷ୍ଟ ।
ନୋହିଲେ ଅସୁର ନୁହନ୍ତ ନା ନଷ୍ଟ । ୧୩୭୯ ।
ଋକ୍ଷ ବାନର ଯେ ସଇନ ଘେନିଯିବୁ ।
ମାନବ ରୂପଧରି ରାବଣ ମାରିବୁ । ୧୩୮୦ ।
ଶୁଣିଣ ସନମତ କଲେ ଚକ୍ରଧାରୀ ।
ହୋଇବ ମୁଂ ଜାତ ଅସୁରନ୍ତ ମାରି । ୧୩୮୧ ।
ତୁମ୍ଭର ଦୁଖ ମୁହିଂ କ ପାରଇ ଯେ ସହି ।
ଦଇତ୍ୟବଳ ଦଳଣ ମୁହିଂ ଉଧରିବ ମହୀ । ୧୩୮୨ ।
ଶ୍ରୀହରି ପ୍ରସନ ବଦନ ବେଳ ଜାଣି ।
ମୁହିଂ ସ୍ତୁତି କଲଇ ଗୋ ହେମବନ୍ତର ଦୁଲଣୀ ।୧୩୮୩।

Digitized by srujanika@gmail.com

ସେହା ମୋତେ ସଂକ୍ଷେପି କହିବା ତପସ୍ୱୀ ।
ଋଷି ବିଶ୍ୱାମିତ୍ର କହନ୍ତି ବିସ୍ତର । ୭୩ ।
ଶୁଣ ରଘୁନାଥ ପଚରିଲୁ ଯିସ ।
ସୁକେଶୀ ନାମେଣ ଦକ୍ଷ ଗରୁହଂସ । ୭୪ ।
ସେହୁ ମହାତ୍ମା ଅନେକ ତପ କଲା ।
କର୍ମସ୍ଥାନେ ତାହାର ତନୟେ ନୋହିଲା । ୭୫ ।
କଷ୍ଟୋର ତପ ସେ କରନ୍ତେଣ ଜାଣି ।
ପ୍ରସନେ ବର ତାକୁ ଦେଲେ କୁଶପାଣି । ୭୬ ।
ଦକ୍ଷ ବୋଇଲା ମୋତେ ପୁତ୍ର ଦାନ ଦେବା ।
ଯେବେ ପିତାମହ ଘେନିଲୁ ମୋର ସେବା । ୭୭ ।
ଧାତା ବୋଇଲେ ତୋତେ ପ୍ରାପତ ନାହିଁ ପୁତ୍ର ।
ଦୋହିତାଏ ବର୍ଦ୍ଧିତ ହୋଇବ ତୋର ଗୋତ୍ର । ୭୮ ।
ଅତିବଳ ପ୍ରାକର୍ମ ସେ ହୋଇବ ନନ୍ଦନୀ ।
ବର ଦେଇଣ ଗଲେ ତାକୁ ପଦ୍ମଯୋନି । ୭୯ ।
ଦକ୍ଷକଇ ଦୋହିତା ହୋଇଲା ପ୍ରାପତ ।
ଭୟଙ୍କାର ଦେଖି କମ୍ପଇ ଜଗତ । ୮୦ ।
ତାହାର ତନୟେ ଯେ ମାରୀଚ ହୋଇଲା ।
ଶୁଣ ଦାଶରଥି ବିଶ୍ୱାମିତ୍ର କହିଲା । ୮୧ ।
ଦୁନ୍ଦୁଭି ଦଇତ ଯହୁଁ ହୋଇଲାକ ହତ ।
ତାଡ଼କା ଦୁଷ୍ଟପଣ କଲାକ ବହୁତ । ୮୨ ।
ପୁତ୍ର ସଙ୍ଗେ ଘେନି ଯେତେଣେ ତେତେଣେ ଯାଇ ।
ଅନ୍ୟାୟେ ଉପଦର୍ପ ବହୁତ କରଇ । ୮୩ ।
ଅଗସ୍ତି ମହାମୁନି ଯେଥେ ରହିଥିଲେ ।
ନାଶାୟେ ମୁନିଙ୍କର ଆଶ୍ରମ ଭାଙ୍ଗିଲେ । ୮୪ ।
କୋପେଣ ଶାପ୍ୟ ତାକୁ ଦେଲେ ତପସ୍ୱୀ ।
ଯେତେଡ଼େ ଦୁଷ୍ଟପଣ କର୍ମା କଲ ନ ବିସ୍ତର । ୮୫ ।
ଯେ ବନେ ଥାଅ ତୁମ୍ଭେ ରାକ୍ଷସୀ ଦେହ ଘେନି ।
ରାକ୍ଷସୀ ପ୍ରକୃତି ଧର ତୁମ୍ଭେ ବେନି । ୮୬ ।
ମୁନିର କୋପେ ସେ ଯେ ବନବାସୀ ହୋଇ ।
ବାଟ ପଡ଼ନ୍ତି ସେ ବିପୁନ୍ୟେଣ ଥାଇ । ୮୭ ।
ତେଣେ ସେ ଯେ ବନେ ନ ବହନ୍ତି ଜନ ।
ଉପଦର୍ପେ ପାଇ ଯେଥୁ ଗଲେ ମୁନିଜନ । ୮୮ ।

Digitized by srujanika@gmail.com

ଆଶ୍ରମ ତେଜି ସେଥୁ ଅଗସ୍ତି ହିଂ ଗଲେ ।
ଯେଣୁ ରାକ୍ଷସୀର ଦୁଷ୍ଟପଣ ଦେଖିଲେ । ୮୯ ।
ସୁରନର କନ୍ଦରେ ସେ ନକରଇ ଭୟେ ।
ଅନେକ ଅସୁର ସେ ସଙ୍ଗତେ ଘେନି ଆୟେ । ୯୦ ।
ସେହିକ୍ଷଣି ଭେଟ ସେ ପାଇବା ସେହି ବନେ ।
ବୋଲନ୍ତି ମୁନି ଶୁଣ ଦଶରଥ ନାନେ । ୯୧ ।
ଅଗମ୍ୟ ବନସେ ଅଟଇ ସେଥିର ନାମ ।
ଯନ୍ତୁ ସେ ସେ ବନେ ନବହଇ ଜନ । ୯୨ ।
ଆମ୍ଭେ ହେଂ ନଜାଣି ଅଇଲୁ ସେ ବାଟେ ।
ଅକାରଣେ ଆସି ପଡ଼ିଲୁ ସଙ୍କଟେ । ୯୩ ।
ଦୁଷ୍ଟ ରାକ୍ଷାସୁଣୀ ଓପ୍ରଧ ନକରଇ ।
ପଥେ ଗଲା ଲୋକଙ୍କର ଜୀବନ ହରଇ । ୯୪ ।
ଶୁଣିଣ ଶ୍ରୀରାମ ସେ ବୁଲାଇଲେ ଧନୁ ।
ଋଷିର ମୁଖକୁ ଗୃହିଂ ବୋଲନ୍ତି ବଚନୁ । ୯୫ ।
ତୁ କମ୍ପା ମହାମୁନି ବଗ୍ଭର ନ କରୁ ।
ଦାଇରୁଣୀ ଗ୍ଭରକୁ ସେତେ ଭସ୍ମ କରୁ । ୯୬ ।
ଯଦ୍ୟପି ଭେଟ ସେ ପଡ଼ିବାକୁ ଆସି ।
ପ୍ରାଣ ଘେନି ସେ ଯିବ କି ରାକ୍ଷସୀ । ୯୭ ।
ସେ ତୋହୋର ଚରଣ ପ୍ରାସାଦେ ଗାଧିସୁତ ।
ଅସୁରକୁ ଆଜ ମୁଂ କରିବି ପ୍ରାଣହତ । ୯୮ ।
ସେତେ ବୋଲୁ ଶୁଣ ଟଙ୍କାର ରାମ କରି ।
ଅଗମ୍ୟ ବନେଥାଇ ରାକ୍ଷାସୁଣୀ ବଗ୍ଭରି । ୯୮ ।
ଆହାର ନିମନ୍ତେଣ ଧାଇଲା ଖରକରି ।
ଜଭ ଲହ ଲହ ଅଛ ଭୟାଙ୍କାର ଧରି । ୧୦୦ ।
ଆକାଶେଣ ଶିର ଲଗିଲାକ ଯାଇ ।
ବିକଟାଳ ବଦନ ବସ୍ତ୍ରେ ମୁଖ ହୋଇ । ୧୦୧ ।
ପେଟ ଖାଖର ତାର ରଡ଼ି ଘନ ଘନ । '
ଧରିତୁଂ ଧାଇଂଲା ଡରିଲେ ମହାମୁନ୍ୟ । ୧୦୨ ।
ବୋଲନ୍ତି ବିଶ୍ୱାମିତ୍ର ଶୁଣ ରଘୁନାଥ ।
ସେବାଟ ଛାଡ଼ି ଆମ୍ଭେ ଘେନିବା ଆନ ପଥ । ୧୦୩ ।
ଦୁଷ୍ଟ ରାକ୍ଷାସୁଣୀ ଅନର୍ଥ କରିବ ।
ସେ ବାଟ ଛାଡ଼ି ଯିବା ହୋ ରାଘବ । ୧୦୪ ।

Digitized by srujanika@gmail.com

ରାମ ବୋଲନ୍ତି ମୁନି ହୋଇଲକ ବାଇ ।
ନିଶାଚରୀ ସ୍ତ୍ରୀରକୁ କି ବାଣ ଛୁଡ଼ିଯାଇ । ୧୦୫ ।
ଆଜ ଯେବେ ଯେହାକୁ ମୁଂ ନକରିବି ହତ ।
ଯଜ୍ଞ କେମନ୍ତେ ରଖିବି ମୁଂ ଗାଧିସୁତ । ୧୦୬ ।
ଅନେକେ ଅସୁରେ ଯେ ମିଳିବେ ତହିଂ ଯାଇ ।
ଯେଉଁଠାରୁ ମୁହିଁ ଯେବେ ଯିବଇ ପଳାଇ । ୧୦୭ ।
ସେ ଦଇତକୁ କେମନ୍ତେ କରିବି ଆଉ ବଧ ।
କମ୍ବା ମହାମୁନି ହେ ଯେ କଥା ନ ବୁଝ । ୧୦୮ ।
ଷଡ଼ି ସ୍ତ୍ରୀ ପୁଅ ମୁଂ ଡରିବି କସ ପାଇଁ ।
ଯେଥକୁ ସେ ମୁନି ଆଣିଅଛୁ ଯାଇ । ୧୦୯ ।
କୋପେଣ ରାଘେବ କମ୍ପନ୍ତି ଥରହର ।
ଧନୁଧର ଆଗ ହୋଇଲେ ରଘୁବର । ୧୧୦ ।
ଥୋକାଏକ ଦୂର ଗଲେ ପଥ ବନ୍ଧ ।
ଦେଖିଲେ ତାଡ଼କା ସେ ଆସୁଅଛି ଧାଇଁ । ୧୧୧ ।
ମୁନି ବୋଲନ୍ତି ରାମ ଅସୁରୀକ ଗୃହା ।
କୁଶଳ ଚନ୍ଦ ଜାଣି ବୁଲଉଅଛି ବାହା । ୧୧୨ ।
ମାରୁଅଛି ଅସୁରୀ ମୁନିଙ୍କ ମାଂସ ଖାଇ ।
ଏ ବୋଲ ଶୁଣିଣ ବୋଲନ୍ତି ରଘୁସାଇଁ । ୧୧୩ ।
ସ୍ତ୍ରୀବଧ ଦୋଷକୁ ଅଛି ମୁଂ ଅପସର ।
ନୋହିଲେ କି ଏତେବେଳ ଥାଆନ୍ତା ଅସୁରୀ । ୧୧୪ ।
ବିଶ୍ୱାମିତ୍ର ବୋଲନ୍ତି ଶୁଣ ରାମଚନ୍ଦ୍ର ।
ପୂର୍ବେ ସ୍ତ୍ରୀ ଏକ ମାରିଅଛି ଇନ୍ଦ୍ର । ୧୧୫ ।
ବାବୁ ଦୁଷ୍ଟ ଜନକଇ ନାଶିଲେ ଧର୍ମପାଇ ।
ବ୍ରାହ୍ମଣ ମୁବରୀ କି ହୋଇ ବାପସ୍ତୁଇ । ୧୧୬ ।
ଲକ୍ଷ୍ମଣ ପ୍ରତିବାଚ ଋଷିଙ୍କ ଉତ୍ତରେ ।
ମାର ରାକ୍ଷସୀକି ଶଣ ରଘୁବୀରେ । ୧୧୭ ।
ସେ ମୁନି ସାକ୍ଷାତେ ଧର୍ମଶାସ୍ତ୍ର ଜାଣଇ ।
ବେଦବିଦ୍ୟା ବହୁତ ଆଗମ ଜାଣଇ । ୧୧୮ ।
ସେ ଯେବେ ବୋଇଲେ ନାହିଂ ଯେଥି ଦୋଷ ।
ଯଦେଶ ଫିଟିଲା ତୁ ରାକ୍ଷସୀ କି ନାଶ । ୧୧୯ ।
ଶୁଣିଣ ରଘୁନାଥ ଧଇଲେ ନାରାଜ ।
ବୋଇଲେ ରାକ୍ଷସୀକି ମୁନି ମାରିବି ଆଜ । ୧୨୦ ।

Digitized by srujanika@gmail.com

ଶୁଣିଣ ତାଡ଼କା ଯେ ବୋଇଲାକ ହସି ।
ଆପଣେ ଆପଣେ ହୋଇ ପରଶଂସି । ୧୨୧ ।
ଆଜକ ହବୁରବ ମୋହର ମୁଖେ ପଡ଼ି ।
ଛୋଟି ରକତି ଖାଇବ ଅନ୍ତ କାଢ଼ି । ୧୨୨ ।
ଯେତେ ବୋଲି ଆଣି ବଧାସ୍ତେ ମାଇଲା ।
ଶ୍ରୀରାମ ଅଙ୍ଗ ଛାଳିଣ ଫେରିଲା । ୧୨୩ ।
ଯଣ୍ଡୁଂ ଶୂନ୍ୟ ତାର ହୋଇଲାକ ମୁଷ୍ଟି ।'
ଅଧର କାମୋଡ଼ିଣ ଦଇତୁଣୀ ଉଠି । ୧୨୪ ।
ବୃକ୍ଷେକ ଉପାଡ଼ି ଅଇଲାକ କରେ ।
ଆର ହାଥେ ଧଇଲା ଯେ ମହନ୍ତ ପଥରେ । ୧୨୫ ।
ଅନ୍ତରୀକ୍ଷେ ବୁଲାଇ ତାହାକୁ ମାଇଲା ।
ବଚନ୍ଦ୍ର ଗଢକରି ଶ୍ରୀରାମ ଫେରାଇଲା । ୧୨୬ ।
କୋପେଣ ରାକ୍ଷାସୁଣୀ କଲାକ ଅନ୍ଧକାର ।
ଅଦୃଶ୍ୟ ହୋଇଲା ବପୁନ୍ୟ ବନ ଘୋର । ୧୨୭ ।
ରାମ ପଚ୍ଚରନ୍ତ ଶୁଣ ମହାମୁନି ।
ଦିବସ ବେଳେ ତ ହୋଇଲା ରଜନୀ । ୧୨୮ ।
ବିଶ୍ୱାମିତ୍ର ବୋଇଲେ ନ ଡର ଦାଶରଥି ।
ସୂର୍ଯ୍ୟାବର୍ତ୍ତ ଅସ୍ତ୍ର ଯେ କରବା ଦାଶରଥି । ୧୨୯ ।
ଫିଟୁ ଅନ୍ଧକାର ଯେ ମୋହୋର ବୋଲକର ।
ଶ୍ରୀରାମ ସୁମରଲେ ଯେ ପେଶିଲେ ଯନ୍ତ୍ରାଶର । ୧୩୦ ।
ତକ୍ଷଣେ ତମିର ଗଲାକ ପଳାଇ ।
ଦିଶିଲା ସକଳ ହସନ୍ତ ରଘୁସାଇଂ । ୧୩୧ ।
ଅର୍ଦ୍ଧଚନ୍ଦ୍ର ବାଣ ଗୁଣରେ ବସାଇ ।
ପେଷନ୍ତ ରଘୁନାଥ କୋପ ମୁଖ ହୋଇ । ୧୩୨ ।
ପବନନ୍ତୁଂ ବେଗେ ଶସ୍ତ୍ର ଚଳଗଲା ।
ଅସୁରୀ କଣ୍ଠରେ ଯାଇଣ ପଡ଼ିଲା । ୧୩୩ ।
ଛୁଡ଼ିଲାକ ବକ୍ଷସ୍ଥଳ ପଡ଼ିଲାକ ଶିର ।
କାଟିଲା ବୃକ୍ଷ ଜାଣି ପଡ଼ିଲା ଭୂମିର । ୧୩୪ ।
ଗଲାକ ଜୀବନ ପାଥି ବ ଦେହ ଦେହଚୁଡ଼ି ।
ଅନାସ୍ତ ହୋଇଣ ରାକ୍ଷାସୁଣୀ ଭୂମିରେ ପଡ଼ି । ୧୩୫ ।
ଦେବତାସ୍ତେ ଆସି ଯୁଦ୍ଧ ଦେଖୁଥିଲେ ।
ଦଇତୁଣୀ ପଡ଼ିବା ଦେଖି ହରଷ ହୋଇଲେ । ୧୩୬ ।

Digitized by srujanika@gmail.com

ପୁଷ୍ପ ବୃଷ୍ଟି କଲେ ସେ ଶ୍ରୀରାମର ଶିରେ ।
ସାଧୁ ସାଧୁ ବଚନ ଶୁଭିଲା ସ୍ୱର୍ଗପୁରେ । ୧୩୭ ।
ବିଶ୍ୱାମିତ୍ର ମୁନିଙ୍କି ବୋଲନ୍ତି ସୁରଗଣ ।
ହେ କଉଶିକ ଆମ୍ଭର ବୋଲ ଶୁଣ । ୧୩୮ ।
ବ୍ରହ୍ମା ଚଳସ୍ୱେକ ଅସ୍ତ୍ରବିଦ୍ୟା ଯେତେ ।
ପୂର୍ବେ ମହାତମା ସମର୍ପିଲା ତୋତେ । ୧୩୯ ।
ଏବେ ତୁ ସେ ବିଦ୍ୟା ଶ୍ରୀରାମକୁ ଦେସି ।
ଏସନେକ ବୋଲିଗଲେ ସ୍ୱର୍ଗବାସୀ । ୧୪୦ ।
ସେ ଦିନ ଶ୍ରୀରାମ ଲକ୍ଷ୍ମଣ ବିଶ୍ୱାମିତ୍ର ।
ବିଶ୍ରାମ କରି ତହିଂ ବଞ୍ଚିଲେ ଏକ ରାତ୍ର । ୧୪୧ ।
ରଜନୀ ପ୍ରଭାତେ ସ୍ନାହାନ ତହିଂ କଲେ ।
ଶ୍ରୀରାମକୁ ବିଶ୍ୱାମିତ୍ର ବିଦ୍ୟା ସମର୍ପଲେ । ୧୪୨ ।
ଜୟା ବିଜୟା ଯେ ଦୁଇମନ୍ତ୍ର କହି ।
ବୋଲନ୍ତି ମହାମୁନି ଶୁଣ ରଘୁସାଇଂ । ୧୪୩ ।
ଆଦ୍ୟ ମନ୍ତ୍ରେ ହାଦେ ଚଳନ୍ତି ଅସ୍ତ୍ରେ ଏଣେ ।
ବିଷ୍ଣୁର ତେଜଂ ଜାତ କଲାକ ବ୍ରାହ୍ମଣେ । ୧୪୪ ।
ଏମନ୍ତେ ସକଳ ସସ୍ତ୍ର ସାଧ କରିପାରି ।
ପଦେ ପଦେ ପ୍ରତକ୍ଷେ ଅଛନ୍ତି ମୁରାରି । ୧୪୫ ।
ଏତେ ବୋଲିଣ ଯେ ଅସ୍ତ୍ର ସମର୍ପିଲା ।
ବ୍ରହ୍ମ ଅସ୍ତ୍ର ବିଦ୍ୟା ପ୍ରତକ୍ଷେ କହିଲା । ୧୪୬ ।
ପଶୁପତ୍ର ଶର ନାରାୟଣ ଅସ୍ତ୍ର ବେନି ।
ଯକ୍ଷ ଅସ୍ତ୍ର କାଳାନଳ ଅସ୍ତ୍ର ଦେଲେ ମୁନି । ୧୪୭ ।
ବରୁଣା ଅସ୍ତ୍ର ଅଗ୍ନି ସସ୍ତ୍ର ଇନ୍ଦ୍ର ଦିଅନ୍ତି ।
ଶଙ୍କର ଅସ୍ତ୍ର କୁବେର ଅସ୍ତ୍ର ଗର୍ଜନ ଶସ୍ତ୍ର ସମର୍ପନ୍ତି । ୧୪୮ ।
କପାଳ ବିମୋଚନା ସମୋକର୍ଷୀ ଅସ୍ତ୍ର ଦେଲେ ।
ମୋହୋନା ନାମ ଅସ୍ତ୍ର ସମସ୍ତ ସମର୍ପିଲେ ।
ଜୟା ଅସ୍ତ୍ର ବ୍ରହ୍ମା ବ୍ରହ୍ମାସ୍ୱେଣୀ କାଣ୍ଡ ବ୍ରହ୍ମଶିର ଛନି ।
କୁବେର ଅସ୍ତ୍ର ପନ୍ନଗା ଅସ୍ତ୍ର ଦେଲେ ମୁନି । ୧୫୦ ।
ଗରୁଡ଼ା ଅସ୍ତ୍ର ଦାନବା ଅସ୍ତ୍ର ଗନ୍ଧର୍ବା ମାନବା ।
ସର୍ଜନା ଗର୍ଜନା ସୋମ ସୂର୍ଯ୍ୟ ଆଗ୍ନେ । ୧୫୧ ।
ସାବିତ୍ରୀ କାଳ ବରୁଣା ଅଧାଚନ୍ଦ୍ର ବଜ୍ରମୁନା ।
ଛନିମୁଖା ଗୃଧ୍ରମୁଖା ନବମୁଖା ପଞ୍ଚକୃକନା । ୧୫୨ ।

Digitized by srujanika@gmail.com

ଜୟା ଶକ୍ତ ଯେ ବଜୟା ଶକ୍ତ ଦ୍ୟନ୍ତ ।
ଅମୋଦ୍ୱ ଶକ୍ତ ଯେ ବ୍ରହ୍ମଶକ୍ତ ସମର୍ପଣ କରନ୍ତ । ୧୫୩ ।
ଇନ୍ଦ୍ର ଶକ୍ତ ଯେ ସେ ଦ୍ୟନ୍ତ କୁମାର ଶକ୍ତ ।
ଏଥକୁ ତୁଳଣା ଯେ ନାହିଂ ଆନ ପ୍ରତ୍ତ । ୧୫୪ ।
କହୁଣିକ କୋଦଣ୍ଡ ଯମ ମୋଟ ଫର ।
ଲୌହ ମୋହ୍ୱ ଗଦା କାଳ ଗଦା ଆଦ କର । ୧୫୫ ।
କହ୍ମୋଦ୍ଧ ଗଦା ବଜ୍ର ମୁଦ୍ଗର ।
ବ୍ରହ୍ମପାଶ କାଳପାଶ ରୁଦ୍ରପାଶ ଶର । ୧୫୬ ।
ବରୁଣାପାଶ ମୋହ୍ୱୋନାପାଶ ନାଗପାଶ ଜୟା ପାଇଲ୍ଲ ।
ଅମୃତା ଅସ୍ତ୍ର ସ୍ୱେହାଙ୍କଇ ନୁଆସଇ । ୧୫୭ ।
ମହାମାୟାସ୍ତ୍ର ବଜଶୂଳ ଶିବଶୂଳ ।
ବ୍ରହ୍ମାଶୂଳ ସୁଦର୍ଶନ ଅସ୍ତ୍ରଙ୍କର ମୂଳ । ୧୫୮ ।
ବୈଷ୍ଣବା ଅସ୍ତ୍ରକୁ ଆନ ପଟାନ୍ତର ନାହିଂ ।
ଜୟା ବଜୟା ମନ୍ତ୍ରେଏ ଚଳନ୍ତ ରଘୁସାଇଂ । ୧୫୯ ।
ସ୍ୱେଥିରୁ ମେଘ ଯେ ସ୍ୱେଥିରୁ ପବନ ।
ଏଣେ ସେ ଆଡଜାତ ହୁଅନ୍ତ ରଘୁନାନ । ୧୬୦ ।
ଶୁଣିଣ ଶ୍ରୀରାମ ଘେନଲେ ସବବାଣ ।
ଶଲଶକଢ ବଜ୍ର ଶକଢ ଟୁଙ୍କଣ । ୧୬୧ ।
ସ୍ୱେ ବେନ ନଘେନଲେ କୌଶଲ୍ୟା ସୁତ ।
ଯେସନେ ସ୍ତୁଶଲ୍ଲ ବାନ୍ଧନାଚ ଭୂତ । ୧୬୨ ।
ମନ୍ତ୍ର ସୁମରିଲେ ଯେ ଜପିଲେ ତକ୍ଷଣେ ।
ଆସିଣ ଅସ୍ତ୍ରମାନେ ମିଳଲେ ଗଗନେ । ୧୬୩ ।
ବନ ପରବତ ନ ଦଶଇ କଚ୍ଛୁ ।
ତେଜହିନ ହୋଇଣ ଆଦିତ୍ୟ ଛଇଂଅଛୁ । ୧୬୪ ।
ଅସ୍ତ୍ରଙ୍କ ତେଜରେ ସେ କମ୍ପଇ ମେଦନ ।
ଅଗସ୍ତି ହୋଇଲ ଛଲ୍ଲକାପାତ ଜାଣି । ୧୬୫ ।
ସିନ୍ଧୁ ଛକୁଳଣ ଲଙ୍ଘିବାକୁ କୂଳ ।
ସର୍ପୀ ଶକ ହୃତ କ ହୋଇଣ ଅକାଳ । ୧୬୬ ।
ସ୍ୱଗ ପୁରେ ଡ଼ର କମ୍ପନ୍ତ ସୁରଗଣ ।
ଉସ୍ୱେ ଡର ବ୍ରହ୍ମାରେ ପଶିଲେ ଶରଣ । ୧୬୭ ।
ଧାତା ଅନ୍ତରୀକ୍ଷେ ବୋଇଲନ୍ତ ଆସି ।
ସ୍ୱେକାବେଳେ ସ୍ୱେମାନ କମ୍ପା ସୁମରଲ୍ଲ ରଘୁଶିଷି ।୧୬୮।

Digitized by srujanika@gmail.com

ଅସ୍ତ୍ରଙ୍କର ତେଜ କେହ୍ନୁ ସହ୍ଧ ଯେ ପାରବ ।
ସଂସାର ଆକୁଳ ଯେ ହୋଇଲା ସ୍ଥରେବ । ୧୬୯ ।
କାର୍ଯ୍ୟକାଳେ ରାମ ଏମାନ ସୁମରିବ ।
ସବୁ ସେକାବେଳେ ମନେ ନ ଧରିବ । ୧୭୦ ।
ସକଳ ଦେବତାଙ୍କର ତେଜ ସେ ଅସ୍ତ୍ରମାନ ।
ସେହ୍ନାଙ୍କର ଉଦୟେ ହୋଅନ୍ତେ କ ରହ୍ଣଇ ଭୁବନ ।୧୭୧।
ମୋହୋର ବୋଲ ତୁମ୍ଭେ ଶୁଣ ରଘୁବୀର ।
ସେ ସବ ଅସ୍ତ୍ର ତୁମ୍ଭେ ସଂହରଣ କର । ୧୭୨ ।
ରାମ ପଗ୍ଭରନ୍ତ ବହ୍ମାର ବୋଲ ଘେନ ।
କେମନ୍ତେ ସଂହରଣ କରବ ମହାମୁନ । ୧୭୩ ।
ବଶ୍ୱାମିତ୍ର ମୁନ ହରଷ ହୋଇ କହ୍ନ ।
ପଞ୍ଚବଂଶ ଶସ୍ତ୍ର ଯେ ସେଣେ ସଂହରଣ ହୋଇ । ୧୭୪ ।
ଉର୍ଦ୍ଧ୍ୱରେ ଶସ୍ତ୍ର ଡାକ ଦଅନ୍ତ ସେମାନେ ।
କ କ କରବୁ ଆଜ୍ଞା ଦଅସି ରଘୁନାନେ । ୧୭୫ ।
ଶ୍ରୀରାମ ବୋଇଲେ ହୋ ଶସ୍ତ୍ରମାନେ ଶୁଣ ।
ତୁମ୍ଭନ୍ତ ସୁମରିଲୁ ଆମ୍ଭେ ପରୀକ୍ଷା କାମ ଲାଗି । ୧୭୬ ।
ସେବେ ଯେ ଯାହାର ଆଶ୍ରମକୁ ଯିବ ।
ମୋହୋର ସୁମରଲେ ବହନ ଆସିବ । ୧୭୭ ।
ଶୁଣିଣ ଅସ୍ତ୍ରମାନେ ବାହୁଡ଼ିଣ ଯାନ୍ତ ।
ଘଡ଼ଘଡ଼ି ପ୍ରାୟେ ଶବଦ କରୁଛନ୍ତ । ୧୭୮ ।
ଅସ୍ତ୍ରଙ୍କର ଗଲେ ସେ ଅରଣ୍ୟି ଥିର ହୋଇ ।
ଆଦତ୍ୟର ହାଦେ ତେଜ ପ୍ରକାଶଇ । ୧୭୯ ।
ତହୁଂ ଦେବତାୟେ ଗଲେ ନଜ ସ୍ଥାନ ।
ଶ୍ରୀରାମ ଲକ୍ଷ୍ମଣଙ୍କର ହରଷ ବଦନ । ୧୮୦ ।
ବଶ୍ୱାମିତ୍ର ମୁନ ଯେ ହୋଇଲେ ଆନନ୍ଦ ।
ମୁଖ ପ୍ରକାଶଇ ପୌର୍ଣ୍ଣମୀର ଚନ୍ଦ୍ର । ୧୮୧ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ବହୁତ ପ୍ରଶଂସିଲ ।
ପ୍ରସନ ହୋଇ ମୁନ ବ୍ରହ୍ମଜ୍ଞାନ କହ୍ନଲ । ୧୮୨ ।
ଏଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ ।
ରାମ ଲକ୍ଷ୍ମଣଙ୍କୁ ବଦ୍ୟାଦେଲେ ନାଥ । ୧୮୩ ।
ସନ୍ତୋଷ ହୋଇଣ ତହୁଂ ଚାଲିଗଲେ ।
ଯାଉ ଯାଉ ଦବ୍ୟ ପର୍ବତେକ ଦେଖିଲେ । ୧୮୩ ।

Digitized by srujanika@gmail.com

ନାନା ତରୁବରେ ପଲ୍ଲବ ଅଛନ୍ତି ।
ବସନ୍ତ ଜାଣିଣ ଫୁଟନ୍ତି ଫଳନ୍ତି । ୧୮୫ ।
ଅପୂର୍ବ ବୃକ୍ଷ ଦେଖି ପଚ୍ଚରନ୍ତି ରାମ ।
କହ ମହାମୁନେ୍ୟ ସ୍ୱେ ବନସ୍ତର ନାମ । ୧୮୬ ।
ବୋଲନ୍ତି ମହାମୁନି ଶୁଣ ରଘୁବୀର ।
ଯାହା ତୁ ପଚ୍ଚରିଲୁ ଦଶରଥ କୁମର । ୧୮୭ ।
ବାରୁ ସତ୍ୟଯୁଗେ ବଳି ବୋଲିଣ ନୃପତି ।
ତିନିପୁରେ ସେ ଯେ ହୋଇଲା ସ୍ୱେକ ଛତ୍ରୀ । ୧୮୮ ।
ଦାନେ ଖାଣ୍ଡେ ସାଗୁ ବଢ଼ାଇଲା ଯଶ ।
ଇନ୍ଦ୍ରପଦ ଘେନିଲା ବଇଲୋଚନର ଶିଷ । ୧୮୯ ।
ଦେବେ ପଳାଇଣ ବୋଇଲେ ଏକ ଗୋଷ୍ଠୀ ।
ନାରାୟଣଙ୍କୁ ଧ୍ୟାଏ କଲେ ପରମେଷ୍ଠି । ୧୯୦ ।
ବ୍ରହ୍ମା ସ୍ତୁତି କରନ୍ତେଣ ଜାଣିଲେ ପଦ୍ମନାଭ ।
ଆସିଣ ମିଳିଲେ ସେ କଣ୍ଠେଣ କଉସ୍ତୁଭ । ୧୯୧ ।
ଦେଖିଣ ନମସ୍କାର କଲେ ଦେବଗଣ ।
ହସ ହସ ହୋଇଣ ବୋଲନ୍ତି ନାରାୟଣ । ୧୯୨ ।
କେବଣ କାର୍ଯ୍ୟ ତୁମ୍ଭର କରିବି ଯେବେ କହ ।
ତୁମ୍ଭେ ଦେବତାଏ ଅଟ ମୋର ଦେହ । ୧୯୩ ।
କର ଯୋଡ଼ିଣ ସେ ବୋଲଇ ବେଦପତି ।
ବଳିରାଜା ଦେବ କଲକ ଅନୀତି । ୧୯୪ ।
ଦାନେ ଖାଣ୍ଡେ ସାଧୁ ଅଟଇ ବଳିଆର ।
ତିନିପୁରେ ଗାରିମା କଲେ ମହାବୀର । ୧୯୫ ।
ଇନ୍ଦ୍ରପଦେ ବସିଣ କରିବ ବଇଭୋଗ ।
ଅସୁରେ ଆବୋରିଲେ ସକଳ ଦେଶ ଭାଗ । ୧୯୬ ।
କର ପ୍ରତିକାର ହରି ତାର ଦର୍ପ ।
ଦେବେ ମଣ୍ଡୁକି ଯେ ଅଟଇ କାଳ ସର୍ପ । ୧୯୭ ।
ଅତି ଉଗ୍ର ହୋଇଲା ବଇରୋଚନର ସୁତ ।
ସତ୍ୟ ଗୁଣ ଘେନିଣ ସେ ବାନ୍ଧିଲେ ଜଗତ । ୧୯୮ ।
କର ଅନୁଗ୍ରହ ଦଇତ ବଳ ନାଶ ।
କଶ୍ୟପର କୋଳେ ଜାତ ହୁଅ ପୀତବାସ । ୧୯୯ ।
ଅଦିତିର କୂଳେ ଅବତାର ହୋଇ ।
ସଂସାର ରକ୍ଷାକର କମଳାର ସାଇଁ । ୨୦୦ ।

Digitized by srujanika@gmail.com

ଶୁଣିଣ ବାସୁଦେବ ସନମତ କଲେ ।
ଚୋର ଛଳେ ଜାତ ହୋଇବ ବୋଇଲେ । ୨୦୧ ।
ସେଥୁ ଅନନ୍ତରେ ଗଲେ ନିଜ ସ୍ଥାନ ।
ଅଦିତିର ଗର୍ଭେ ବିଜୟେ ଭଗବାନ । ୨୦୨ ।
ଯଥା କାଳେଣ ଯେ ହୋଇଲେ ଦେବ ଜାତ ।
ବାଆନ ଆଙ୍ଗୁଳ ଅଟଇ ତାର ଗାତ୍ର । ୨୦୩ ।'
ଶୁକ୍ଳ ସ୍ଫଟିକକ ପ୍ରାୟ ତାର ବର୍ଣ୍ଣ ।
ନୀଳେନ୍ଦ୍ରୀ ଦଳ ଜାଣି ଦିଶଇ ନୟନ । ୨୦୪ ।
ବୋଲନ୍ତି ମହାମୁନି ଶ୍ରୀରାମଚନ୍ଦ୍ର ଶୁଣ ।
ଦିନେ ଦିନେ ତନୁ ଯେ ବଢ଼ାଇଲେ ନାରାୟଣ । ୨୦୫ ।
କର୍ଣ୍ଣବେଧ ବ୍ରତ ବିଧାନ ପାଠ ପଢ଼ି ।
ଧର୍ମଶାସ୍ତ୍ର ବେଦ ଆଗମ ନିବାଡ଼ି । ୨୦୬ ।
ଦେବଙ୍କର ଅର୍ଥେ ଗଲେ ଚକ୍ରପାଣି ।
ଦଇତ ପତିର ଯଜ୍ଞ ବେଳ ଜାଣି । ୨୦୭ ।
ବହୁତ ନୃପତି ଅଛନ୍ତି ତହିଁ ମିଳି ।
ଋଷି ବ୍ରାହ୍ମଣ ଯେ ଅଛନ୍ତି ପେଶାଳୀ । ୨୦୮ ।
ବୃହସ୍ପତିଙ୍କର ସଙ୍ଗତେ ଦେବ ଯାନ୍ତି ।
ଦେଖିଣ ପଚ୍ଚରଇ ବଳି ଯେ ନୃପତି । ୨୦୯ ।
ସେ ଦ୍ୱିଜ ଗୋଟି ଯେ ଅଟଇ ତୋର କିସ ।
ବାମନ ବୋଲଇ ମୁଂ କଶ୍ୟପର ଶିଷ୍ୟ । ୨୧୦ ।
ତୁହେ। ମହାରାଜା କରୁଅଛୁ ପାପ ।
ମାଗନ୍ତାମାନଙ୍କର ଅଟଇ ପରମ ଭାଗ୍ୟ । ୨୧୧ ।
ହସିଣ ବୋଇଲେ ହୋ ବଳି ନୃପମଣି ।
ତୁହି କିସ ମାଗୁ କହୁକନା ପୁଣି । ୨୧୨ ।
ଦାନ ଘେନିଣ କି ପାରିବୁ ପାରକର ।
ବସ୍ତୁସେଣ ଯାନ ନୋହୁନା ମନ୍ଦ ଉଗ୍ରର । ୨୧୩ ।
ବାମନ ବୋଲଇ ହୋ ଜାଣିମା କେମନ୍ତେ ।
ତୁ ଯେତେ ଶାସ୍ତ୍ର ଶୋଧିବୁ ଯେମନ୍ତେ । ୨୧୪ ।
ଯାହା ତୁ ପଚ୍ଚରିବୁ ପାରିବି ଯେବେ କହି ।
ସତ୍ୟ ଉତ୍ତର ଦେବୁ ତିନିପାଦ ମହୀ । ୨୧୫ ।
ବାମନ ଶରୀରେ ଉତ୍ତରି ପଇତା ।
କରେ କୁଶ ଗଣ୍ଠି ଧୋତି ସୁରୁଚତା । ୨୧୬ ।

Digitized by srujanika@gmail.com

ଲୋଟଣୀ ଜୁଡ଼ା ଗୋଟି ତାହାକୁ ଯେ ଶୋହ ।
ରୂପେଣ ପଟାନ୍ତର ସର୍ବଜନ ମୋହ । ୨୧୭ ।
ବଳ ମୁଖ ବ୍ରହ୍ମଂ କରନ୍ତ ଦେବ ଧୂନ୍ନ ।
ସ୍ୱର୍ଗେ ବ୍ରହ୍ମଂଣ ଅଛନ୍ତି ସୁର ମୁନି । ୨୧୮ ।
ସାମ ଗାୟନ ଯେ ଗାନ୍ଧାର ରାଗେ କରି ।
ଦକ୍ଷିଣ କରେ କରତାଳ ମାରି । ୨୧୯ ।
ଶୁଣି ମୋହମାନ ଯେ ହୋଇଲେ ନୃପତି ।
ସେକଥା ମନ୍ତ୍ରୀଙ୍କ ବ୍ରହ୍ମଣ ପୁଛନ୍ତି । ୨୨୦ ।
ଶୁକ୍ର ବୋଲନ୍ତି ତୁ ନବୁଝି ନୃପବର ।
ଅପୂର୍ବ ବ୍ରାହ୍ମଣ ସେ ଅଟଇ ଚକ୍ରଧର । ୨୨୧ ।
ଦେବେ ଯତ୍ନଂ କଲେ ତୋହୋର ଦୁଷ୍କପଣ ।
ତେଣୁ ସେ ସେବେ ଆସି ହୋଇଲେ ନାରାୟଣ । ୨୨୨ ।
ମାୟା ପ୍ରକାରେ ହରି ହରିବେ ତୋର ଶିରି ।
ଅମରଗଣଙ୍କ ଛଳେ ଜାତ ହୋଇଲା ମୁରାରି । ୨୨୩ ।
ତୁ କର୍ମା ସେହାକୁ ଦାନ ସେବେ ଯାଚୁ ।
ଆପଣାର ସଂପଦ ପରକୁ ଦେଇ ସଞ୍ଚୁ । ୨୨୪ ।
ରାଜା ବୋଇଲେ ସେ ଯେବେ ଦାମୋଦର ।
ଯଜ୍ଞ ସମ୍ପଦତ ହୋଇଲା ମୋହୋର । ୨୨୫ ।
ଦେବଇ ଦାନ ମୁଂ ଯେ ଯେନୁ ବନମାଳୀ ।
ପୂର୍ବରୁ ପାପ ମୋର ହୋଇବ ପଖାଳ । ୨୨୬ ।
ଶୁକ୍ର ଚଆଳି ଜାଣିଲେ ଜଗନାଥ ।
ଠାରଣ ତାହାଙ୍କୁ ଦେଲେ ବାମ ହସ୍ତ । ୨୨୭ ।
ଜାଣିଣ ତବଦ ହୋଇଲକ ହେନ୍ଥ ।
ଶ୍ରୀହରି ବୋଲନ୍ତି ସେ ତୁ ପୂନ୍ୟଦେହୀ । ୨୨୮ ।
ସତ୍ୟ ଯାହା କଲୁ ହୋଇଲୁ କର୍ମୀ ତୁନି ।
ସେ ମୋହୋର ବେଦନ୍ତ ଶୁଣିଲେ ସର୍ବମୁନି । ୨୨୯ ।
ତୋହୋର ସତ୍ୟ ଏବେ ସମସ୍ତେ ଶୁଣିଛନ୍ତି ।
ଦେବୁ କି ନଦେବୁ କହସି ନୃପତି । ୨୩୦ ।
ହସିଣ ବୋଇଲେ ବଳି ନୃପମଣି ।
ବାଇ କି ବାତୁଳ ଯେ କହୁ ତୁ ନ ଜାଣି । ୨୩୧ ।
ଯାହା ବୋଇଲି ମୁଂ ନୋହଇ ନା ଆନ ।
ନେସି ଧନରତ୍ନ ଯାନ ସୁଖାସନ । ୨୩୨ ।

Digitized by srujanika@gmail.com

ବାମନ ବୋଲନ୍ତି ମୋର ବଡ଼େ ଭାଗ୍ୟ ନାହିଁ ।
ପାଶୋରିଲୁ କି ରାଜା ଯାହା ମାଗିଲଇ ମୁହିଁ । ୧୩୩ ।
ରାଜା ବୋଇଲେ ତୋତେ ବିଶ୍ୱ କରାଇବି ।
ବାଡ଼ି ବୃତ୍ତି ଖଞ୍ଜିବି ଶାସନ ମଣ୍ଡପ ତୋଳାଇବି । ୧୩୪ ।
ସ୍ୱାମୀ ବୋଲନ୍ତି ତୁ ତ୍ରୁଟିଲୁ ପ୍ରକୃତି ।
ଅଜ୍ଞାନ ପ୍ରକାର ଯେ କହୁ ହୋ ନୃପତି । ୧୩୫ ।
ଯାହା ମାଗିଲି ମୁଂ ତାହା ନ ଚତୋଇ ।
କେମନ୍ତେ ଆନେ ତୁ ମହାଦାନୀ ବୋଲାଉ । ୧୩୬ ।
ଭଲ ଆଶାକରି ଅଇଲି ମୁହିଁ ତୋତେ ।
ତୁ ରେ ନିରପେକ୍ଷ କଲୁ ରାଜା ମୋତେ । ୧୩୭ ।
ଧିକ ହଉ ତୋର ସତ୍ୟଶୀଳ ପଣ ।
ଯାଗ ଦାନ ଧର୍ମ ଅଟଇ ଅକାରଣ । ୧୩୮ ।
ମାୟାରେ ଗର୍ବେ ତୁ ଜିଣିଲୁ ଜଗତ ।
ଅସୁରଙ୍କ ବଧିନକ ରଚନ୍ତି ଯତସତ । ୧୩୯ ।
ମତ୍ତଗଜ ଯେସନ୍ତେ ବେଣୁ ଘାଏ କମ୍ପଇ ।
ବାମନ କୋପ ଦେଖି ତେସନ୍ତେ ବଳି ନୃପଇ । ୧୪୦ ।
ଆସ ଆସ ବ୍ରାହ୍ମଣ ହୋ ଘେନ କୁଶପାଣି ।
ପ୍ରସନ୍ନ ହୋଇଣ ଯେ ବୋଲଇ ନୃପମଣି । ୧୪୧ ।
ଆହୋ ବ୍ରାହ୍ମଣ ତୁ ତ ନଜାଣୁ ଯେ କିଛୁ ।
ଅଳପ ଦାନ ଦେବାକୁ ମନ ମୋହର ନୋହୁଛୁ । ୧୪୨ ।
ତେଣୁ ସେ ଖିଲଇ ମୁଂ ମନେ ମନେ ପୁଣି ।
ବିମୁଖ ହୋଇଲୁ ତୁ ନ ଦେବା ପ୍ରାୟେ ମଣି । ୧୪୩ ।
ବ୍ରାହ୍ମଣ ବୋଇଲେ ମୁଂ ଯେତକୁ ଗର୍ଜନ ।
ସନ୍ତୋଷ ଅନରୂପେ ଘେନମି ସିନା ଦାନ । ୧୪୪ ।
ତିନି ଅଙ୍ଗୁଳି ତୁ ଦେବୁ ତିନିପାଦ ।
ହୋମ କରିବି ମୁଂ ତୋହୋର ପ୍ରସାଦ । ୧୪୫ ।
ଶୁଣିକରି ରାଜା ଘେନିଲା କୁଶ ପାଣି ।
ବାମନ କରେ ତାହା ସମର୍ପିଲା ଆଣି । ୧୪୬ ।
ଭୃଙ୍ଗାର ଘେନିଣ ଧୂଅନ୍ତେଣ ପାଦ ।
ଅସୁର ମନ୍ତ୍ରୀମାନେ ସେ ହୋଇଲେ ବିଷାଦ । ୧୪୭ ।
ରାଜାର ସମ୍ପଦ ସେହିକ୍ଷଣି ଯିବ ।
ମାୟା ବ୍ରାହ୍ମଣ ତ ଅଟଇ ମାଧବ । ୧୪୮ ।

Digitized by srujanika@gmail.com

କହିଲେଣ ରାଜା ବୋଲି ମୋ ନକଲା ।
ଅଛ ସତ୍ୟେ ସ୍ୱେଚ୍ଛେ ରାଜା ନାଶ ଗଲା । ୨୪୯ ।
ସ୍ୱେମନ୍ତ ମଣି ଶୁକ୍ର ବସ୍ତୁରଲା ବୁଦ୍ଧି ।
ଝଁରରେ ପଶି ମୁହ ମୁଖ ନରୋଧିବ । ୨୫୦ ।
ସ୍ୱେତେ ବୋଲିଣ ପାଣି ଝଁରଲେ ପଶିଲା ।
ଜଳ ନପଡ଼ୁ ବୋଲି ନାଳ ନରୋଧିଲା । ୨୫୧ ।
ମରେ ରହିଲାରୁ ଜାଣିଲେ ମୁରାର ।
କୋପେଣ କୁଶ ଅଗ୍ର ମାଇଲେ ଦଇତାର । ୨୫୨ ।
ଶୁକ୍ରର ଆଖିରେ ସେ ବାଜିଲାକ ଯାଇ ।
କଣା ହୋଇଣ ସେ ଗଲାକ ପଳାଇ । ୨୫୩ ।
ସନ୍ତୁଂ ସେ ଝଁରରୁ ଶୁକ୍ର ହୋଇଲା ବାହାର ।
ବାସ୍ତୁର ଚରଣେ ସେ ପଡ଼ିଲା ମାରଧାର । ୨୫୪ ।
ବାଲି ବୋଇଲେ ମୁଂ ସତ୍ୟେ ଦେଲି ଦାନ ।
ତିନପାଦ ମହୀ ସିନା ଘେନ ହୋ ବ୍ରାହ୍ମଣ । ୨୫୫ ।
ଶୁଣିକର ହର ଚରଣ ବଢ଼ାଇଲେ ।
ଏକା ପାଦକେ ମର୍ତ୍ତ୍ୟପୁର ଗୋପ୍ୟ କଲେ । ୨୫୬ ।
ଦେଖି ନୃପତି ସେ ହୋଇଲା ଚକିତ ।
ବୋଇଲା କେବଣ ଏ ହେଲା ବିପରୀତ । ୨୫୭ ।
ଶ୍ରୀହରି ବୋଲନ୍ତି ଶୁଣ ନୃପବର ।
କାହିଂ ବିଶ୍ରାମିବା ଆରେକ ପୟର । ୨୫୮ ।
ରାଜା ବୋଇଲା ସ୍ୱର୍ଗ ମୋର ଦେଶ ।
ତହିଂ ସେ ପାଦେକ ଘେନ ପୀତବାସ । ୨୫୯ ।
ଶୁଣି ବାମ ପାଦ ବଢ଼ାଇଲେ ହରି ।
ବ୍ରହ୍ମଲୋକ ଯାଏ ଗଲା ପାଦ ବଢ଼ି । ୨୬୦ ।
ଶ୍ରୀହରି ପାଦପଦ୍ମ ଦେଖିଣ ବିଧାତା ।
ଗଙ୍ଗା ଘେନି ଅଭିଷେକ କଲା ଜଗତର ପିତା । ୨୬୧ ।
ବଳି ବାସ୍ତୁରଇ ସ୍ୱେସେ ଅନନ୍ତ ଦେବ ହରି ।
ମୋହୋର ସତ୍ୟ ବନ୍ଧ ଅଇଲେ ମାୟା ରୂପଧରି । ୨୬୨
ରାଜା ଭାଳେଣି ଜାଣିଲେ ଶ୍ରୀପତି ।
କମ୍ପାଇ ବସ୍ତୁ ତୁ ହୋଇ ଚକ୍ରବର୍ତ୍ତୀ । ୨୬୩ ।
ଆରେକ ପାଦ ମୋତେ ଦଅସି ତୁ ଦାନ ।
ବଳି ବୋଇଲା ତୁ ଶୁଣସି ଜନାର୍ଦ୍ଦନ । ୨୬୪ ।

Digitized by srujanika@gmail.com

ଆବର ଚରଣ ଯେ ଅଛୁ ତୋର କାହିଁ ।
ଶୁଣିଣ ନାଭିରୁ ଯେ ପାଦେକ କାଢ଼ିଲେ ଗୋସାଇଁ । ୧୬୫ ।
ଦେଖିଣ ଆଶ୍ଚର୍ଯ୍ୟ ଯେ ହୋଇଲା ନୃପତି ।
ବିଗ୍ଭରଇ ହରି ମୋର ହରିଲେ ବିଭୂତି । ୧୬୬ ।
ଯେତେ ବୋଲି ଶିର ଯେ ପାତିଲାକ ଆଣି ।
ବଳିର ମଥାରେ ପାଦ ଦେଲେ ଚକ୍ରପାଣି । ୧୬୭ ।
ଅତି ଦୃଢ଼େ ଚପି ସେ ପାତାଳକୁ ନେଲେ ।
ଅତିକାଳ ଉପୁରେ ନେଇଣ ଥୋଇଲେ । ୧୬୮ ।
ସତ୍ୟର ଫଳେ ଦ୍ରବ୍ୟ ଭୁବନେକ ଦେଇ ।
ଆପଣେ ଜଗିଛନ୍ତି ମୂର୍ତ୍ତିଯେକ ହୋଇ । ୧୬୯ ।
ଯହୁଁ ସେ ବଳିରାଜା ପାତାଳକୁ ଗଲା ।
ସୁରଗଣ ଘେନି ବ୍ରହ୍ମା ସ୍ତୁତି କଲା । ୧୭୦ ।
ତ୍ରିବିକ୍ରମ ରୂପ ଧରି ସ୍ୱାମୀ ଏଥି ।
ଦୈତ୍ୟର ଦର୍ପ ସେ ହରିଲେ ଜଗନ୍ନାଥ । ୧୭୧ ।
ଦେବଙ୍କର ଇଚ୍ଛା ହୋଇଲା ଯହୁଁ ସିଦ୍ଧି ।
ସିଦ୍ଧବନ ନାମ ଯେହ୍ନାର ଦେଲେ ବିବୁଧ । ୧୭୨ ।
ଯେ ବନେ ସକଳ କାର୍ଯ୍ୟ ସିଦ୍ଧ ହୋଇ ।
ଯେଥେ ଯେ ଆଶ୍ରମ ମୁଁ କରିଥିଲି ରଘୁସାଇଁ । ୧୭୩ ।
ଚାଲ ଏବେ ରାମ ବାମନ ଦେଖିବା ।
ଯାବତ ଦୁଃଖ ହାଦେ ଦୁସ୍ତରୁ ତରିବା । ୧୭୪ ।
ପ୍ରତିମା ରୂପେ ହାଦେ ଅଛନ୍ତି ବ୍ରହ୍ମରାଶି ।
ଦେଖିବା ରଘୁନାଥ ସ୍ୱାମୀଛନ୍ତି ବସି । ୧୭୫ ।
ତହୁଁ ଚଳିଣ ଯେ ଗଲେ ତିନି ଜଣ ।
ଦେଖିଲେ ବିଜୟେ ବାମନ ନାରାୟଣ । ୧୭୬ ।
ପାଷାଣ ପିଣ୍ଡ ହାଦେ ବାମନ ମୂରତି ।
ଉତ୍ତରୀ ପଇତା ଯେ କରେଣ ଛତାଛତି । ୧୭୭ ।
କରେ କୁଶ ଗଣ୍ଡି ଶୁକଳ ବସନ ।
କୁଶ ବଟୁ ଜୁଡ଼ା ବଦନ ଶୋଭନ । ୧୭୮ ।
ଦେଖିଣ ନମସ୍କାର କରନ୍ତି ଜଣ ତିନି ।
ରାମ ବୋଲନ୍ତି ତୋହର ପ୍ରସାଦେ ହୋ ମୁନି । ୧୭୯ ।
ବିଷ୍ଣୁଙ୍କୁ ଦେଖିଲି ପାପ ମୋର ଗଲା ।
ଯେ ଜନ୍ମର ସୁଫଳ ଯେବେ ସେ ହୋଇଲା । ୧୮୦ ।

Digitized by srujanika@gmail.com

ହସିଣ ବିଶ୍ୱାମିତ୍ର ବୋଲନ୍ତି ହୋଇ ହୋଇ ।
ଆଜ ସେ ପାପ ମୋର ଗଲା ରଘୁସାଇଂ । ୨୮୧ ।
ଶୁଚବନ୍ତ ହୋଇ ସେ ଅଇଲେ ଗାଧିସୁତ ।
ବାମନ ପ୍ରସାଦ ଆଣି ଦେଲେ ଶ୍ରୀରାମ ହସ୍ତ । ୨୮୨ ।
ଲକ୍ଷ୍ମଣେ କରେ ଦେଲେ ବହ୍ମଗୃଷ୍ଟି ।
ପ୍ରଣାମ କରଣ ସେ ଶେଇଲେ ସୁପଧାଣ୍ଟି । ୨୮୩ ।
କୃତ କୃତ ହୋଇ ସେ ମୁନି ଅର୍ଘ୍ୟ ଦେଲେ ।
କନ୍ଦମୂଳ ଫଳ ଜଳ ସମର୍ପିଲେ । ୨୮୪ ।
ତହୁଂ ତିନିଜଣ ଚଲିଲେ ଅନୁକ୍ରମେ ।
ପ୍ରବେଶ ହୋଇଲେ ବିଶ୍ୱାମିତ୍ରର ଆଶ୍ରମେ । ୨୮୫ ।
ଏଥୁ ଅନନ୍ତରେ ଗଲା ଦିନ, ଦିନ ।
ଯଜ୍ଞ ଆରମ୍ଭିଲେ ବିଶ୍ୱାମିତ୍ର ମୁନି । ୨୮୬ ।
ଅନେକ ମୁନିମାନେ ଅଇଲେ ଯାଗ ଶୁଣି ।
ଏଥୁଅନନ୍ତରେ ଶୁଣିମା ରସବାଣୀ । ୨୮୭ ।
ଯହୁଂ ଘୃତ ତିଳ ଅଗ୍ନିରେ ହୋମ ଦେଲେ ।
ଶୁଣିଣ ଅସୁର ବଳ ଧାଇଂଣ ପଡ଼ିଲେ । ୨୮୮ ।
ମାରୁଚ ଆପଣେ ହୋଇଲା ଆଗୁସାର ।
ଶଡେପ୍ଟ୍ରୁର କର ବେଢ଼ିଲେ ହୋମଘର । ୨୮୯ ।
ମୁନି ବୋଲନ୍ତି ହୋ ଶ୍ରୀରାମଚନ୍ଦ୍ର ଶୁଣ ।
ଏହିକ୍ଷଣି ଅସୁରେ କରିବେ ମୂର୍ଖପଣ । ୨୯୦ ।
ଶୁଣି ରାମ ଲକ୍ଷ୍ମଣ ଧଇଲେ ଧନୁଶର ।
ତୀକ୍ଷ୍ଣ ବାଣେ ଛେଦିଲେ ଅନେକ ଅସୁର । ୨୯୧ ।
ଆଗଭର ହୋଇଣ ମୁହିଁଲା ମାରୁଚ ।
ପବନାଶର ରାମ ଧନୁରେ ଯୋଚ । ୨୯୨ ।
ମନ୍ତ୍ର ସ୍ମରି ସେ ପେଷିଲେକ ବାଣ ।
ଚଳିଲକ ବାଣ ଶବଦ ଗଭୂ ଛାଣ । ୨୯୩ ।
ଦଇତ୍ୟର ଅଙ୍ଗେ ସେ ବାଜିଲେକ ଯାଇଂ ।
ହୁଙ୍କାର ଶବଦକରି ଦେଲାକ ଉଡ଼ାଇ । ୨୯୪ ।
ବନ ପରବତ ଉପରେ ଉଡ଼ିଗଲା ।
ସହସ୍ର ଯୋଜନେ ନେଇ ତାହାକୁ ପକାଇଲା । ୨୯୫ ।
ମାରୁଚ ଅସୁର ଗଲାକ ଯହୁଂ ଉଡ଼ି ।
ସୁବାହୁ ଧାଇଂଲା ସେ ହୁଙ୍କାର ଧୁନି କରି । ୨୯୬ ।

Digitized by srujanika@gmail.com

ରାମର ଉପରକୁ ପଡ଼ିଲେକ ଧାଇଁ ।
ଅଗ୍ନି ଅସ୍ତ୍ର ଘେନି ତାହାକୁ ହେଲେ ଦଗ୍ଧ ରଘୁସାଇଁ ।୨୯୭
ଜଳଣ ଗଲା ସେ ସୁବାହୁ ଅସୁର ।
ମାନବା ଅସ୍ତ୍ରରେ ସେ ମାଇଲେ ରଘୁବୀର । ୨୯୮ ।
ମନ୍ତ୍ର ପଢ଼ିଣ ସେ ବନ୍ଧଲେ ରଘୁମଣି ।
ଆଦର ଅସୁର ସୈନ୍ୟ ପକାଇଲେ ହାଣି । ୨୯୯ ।
ରକତ ନଦୀ ସେ ବହିଲେକ ବନେ ।
ଅଧା ସ୍ୱର୍ଗେ ଥାଇଣ ଦେଖନ୍ତି ଦେବତାମାନେ । ୩୦୦ ।
ପ୍ରଶଂସା କରିଣ ସେ କୁସୁମ ବରଷି ।
ସାନନ୍ଦ ହୋଇ ଦେବେ ବାହୁଡ଼ିଗଲେ ଆସି । ୩୦୧ ।
ଏଥୁ ଅନନ୍ତରେ ଯାଗ ସମାପତ ।
ଅଭ୍ୟାନ୍ତ ସ୍ନାନ କଲେ ତପୋବନ୍ତ । ୩୦୨ ।
ମନ୍ତ୍ର ପଢ଼ିଣ ଆଶୀଷ ଦେଲେ ଶ୍ରୀରାମଙ୍କୁ ।
ନିର୍ଜରୀ ହୋଇଥାଅ ଅପାର କାଳକୁ । ୩୦୩ ।
ବିଶ୍ୱାମିତ୍ର ମନେ ବିସ୍ମରଇ ପୁଣି ।
ଦଶରଥ ପୁତ୍ର ସେ ଅଇଲେ ମୁହିଁ ଘେନି । ୩୦୪ ।
କିସ ଉପକାର କରିବି ମୁହିଁ ପୁଣ ।
ଅସୁର ମାରି ସେ ରଖିଲେ ମୋର ପଣ । ୩୦୫ ।
ଶ୍ରୀରାମଙ୍କୁ ଯେବେ ମୁଁ ଦେଇ ପାରନ୍ତି ସୀତା ।
ଏବେ ମହୀମଣ୍ଡଳେ ରହନ୍ତା ମୋର କଥା । ୩୦୬ ।
ରାମ ଲକ୍ଷ୍ମଣଙ୍କୁ ପଚାରଇ ଋଷି ।
ମିଥିଳା କଟକରେ ରାମ ଆସିବାକ ପଶି । ୩୦୭ ।
ଜନେକ ମହାମୁନି କରିଅଛୁ ଯାଗ ।
ମହନ୍ତଙ୍କ ତପ ଦେଖିଲେ ବଡ଼ ଭାଗ୍ୟ । ୩୦୮ ।
ଶ୍ରୀରାମ ବୋଇଲେ ମୁନି ସେ ତୋହର ଇଚ୍ଛା ।
ଏହୁ ମୋହୋର ମନ ସେ ମିଳଇ ସୁଇଚ୍ଛା । ୩୦୯ ।
ଶ୍ରୀରାମର ବଚନ ଯେ ଘେନିସନେକ ଶୁଣି ।
ବିଶ୍ୱାମିତ୍ର ସଙ୍ଗେ ଅନେକ ତପୀଜନ ଘେନି । ୩୧୦ ।
ରାମ ଲକ୍ଷ୍ମଣ ଘେନି ତହୁଁ ଗଲେ ଚଳି ।
ବାଟରେ ଦେଖିଲେ ଅସୁର ବଳ ଦଳି । ୩୧୧ ।
ଶ୍ରୋଣିତ ନଦୀ ତୀରେ ରହିଲେ ସେଦିନ ।
କନ୍ଦ ଫଳ ମୂଳ କରନ୍ତି ଭୋଜନ । ୩୧୨ ।

Digitized by srujanika@gmail.com

ରାମ ପଚ୍ଚରନ୍ତ ସେ କଉଶିକଙ୍କୁ ତହିଁ ।
କାହାର ଦେଶ ଏହିଟି କହ ତପସାଇଁ । ୩୧୩ ।
ମୁନି ବୋଲନ୍ତ ହୋ ଶ୍ରୀରାମ ଉତ୍ତରେ ।
କୁଶ ବୋଲି ବ୍ରହ୍ମାର ହୋଇଲା କୁମରେ । ୩୧୪ ।
ଏହାର ଚାରପୁତ୍ର ହୋଇଲେ ଉତପତ୍ତ ।
କୁଶା ନାମେଣ ଯେ ବ୍ରହ୍ମାର ଜ୍ୟେଷ୍ଠନାଥ । ୩୧୫ ।
ଦ୍ୱିତୀୟ ପୁତ୍ର ତାର କୁଶଲଭ ନାମ ।
ତୃତୀୟ ଅମୃତ ରଜ ଅନୁପାମ । ୩୧୬ ।
ବସୁ ବୋଲଣ ସବୁହିଁ ସାନ ପୁତ୍ର ।
ଚାରହେଁ ବଳବନ୍ତ ହୋଇଲେ ପବିତ୍ର । ୩୧୭
କୌଶାମ୍ବୀ ନାମେ ଦେଶେ କୁଶାମ୍ବ ଯେ ନୃପତ ।
ମହୋଦୟ ପୁରେ କୁଶ ଲଭ ନୃପତ । ୩୧୮ ।
କାମେର ପୁରେ ଯେ ମାର ଜୋତିଷ ପୁରେ ।
ଅମୃତରଜ ତହିଁ ହୋଇଲେ ନୃପବରେ । ୩୧୯ ।
ବେଦ୍ଧ ଦେଶେ ହାଦେ ବରାଜ ନାମେ ପୁଣ୍ୟ ।
ବସୁ ନାମେ ନୃପତ ଏଥି ରାଜ୍ୟ କର । ୩୨୦ ।
ପ୍ରତାପୀ ବନ୍ତ ଯେ ଅଟନ୍ତି ବସୁରାଜା ।
ଭରେ ଅଇବ ଚଳ କରନ୍ତ ପାଦପୂଜା । ୩୨୧ ।
କଣ୍ଟକ ନିକଣ୍ଟଣ ଅରେଜ ପୁର କଲା ।
ଧର୍ମପୁର ବୋଲି ତାହାର ନାମ ଦେଲା । ୩୨୨ ।
ଏହୁ ଯେ ଦିଶୁଅଛ ପଞ୍ଚହିଁ ପର୍ବତ ।
ସୁପଞ୍ଚ ଜଳ ଏଥି ବହଇ ରଘୁନାଥ । ୩୨୩ ।
ପାଞ୍ଚ ଗିରଙ୍କର ବେଢ଼ି ନଦୀ ବହେ ।
ସଦାଶିବ ମାଥେ ଯେହ୍ନେ ମାଳତ ମାଳ ଥାଇ । ୩୨୪ ।
ସହୁଁ ସେ ମାଗଧି ଆହଇ ଗିଣ ବୁଲି ।
ତହୁଁ ସେ ମଗଧ ଦେଶ ଏହାଙ୍କୁ ଯେ ବୋଲି । ୩୨୫ ।
ମୋହୋଦୟ ପୁରେ କୁଶାଲଭ ରାଏ ।
ଦେବକନ୍ୟାନ୍ତ ସେ ରମଣୀ ସୁନ୍ଦ-କାଏ । ୩୨୬ ।
ଘୃତାଚୀ ନାମେଣ ତାହାର ସୁନ୍ଦରୀ ।
ଶତେକ ଦୋହିତା ଯେ ତାହାର ଉତପତ୍ତ । ୩୨୭ ।
ରୂପେଣ ପଟାନ୍ତର ନାହିଁ ତନପୁର ।
ମନେ ବଡ଼ାଇ କୁଶଲଭ ନୃପବର । ୩୨୮ ।

Digitized by srujanika@gmail.com

ଦୁହିତାସ୍ତେ ସୁନ୍ଦର ଯୁବା ଯେ ବୟସ ।
ଅନୁରୂପେ ବର ନାହିଂ କରିବ ସ୍ୱେଚ୍ଛା କସ ।୩୨୯।
ସ୍ୱେତେକ ବୋଲିଣ ନଗ୍ର ଅଭ୍ୟନ୍ତରେ ।
ବିଚିତ୍ର ପୁରେକ ତହିଂ ରଞ୍ଚିଲା ନୃପବରେ ।୩୩୦।
ନାନା ତରୁବର ରୁପିଲା ଅଛି ତହିଂ ।
କନ୍ୟାସ୍ତେ ନାନାକ୍ରୀଡ଼ା କରନ୍ତି ତହିଂ ରହି ।୩୩୧।
ଦିନେକ କୁଶନାଭ ନନ୍ଦନୀ ଙ୍କ ଦେଖି ।
କାମଭରେ ପବନ ଲଜ୍ୟା ତ ଉପେଖି ।୩୩୨।
କନ୍ୟାଙ୍କୁ ଗୃହିଂଣ ବୋଲଇ ମରୁତ ।
ସ୍ୱର୍ଗର ଦେବତା ମୁଂ ରୂପରେ ଅନନ୍ଦତ ।୩୩୩।
ସର୍ବ ଜୀବରେ ଥାଇ ମୁଂ ବିଜେକର ।
ମୋହୋର ପ୍ରସାଦେ ଜୀବନ ସଭଙ୍କର ।୩୩୪।
ମୁହିଂ ସେ ପବନରେ ଦେଖ ମୋହୋର ମୁଖ ।
ମୋତେ ବରିହୋଇ ଭୁଞ୍ଜ ସ୍ୱର୍ଗ ସୁଖ ।୩୩୫।
ମୁହିଂ ତୁମ୍ଭନ୍ତ ବଶ ହୋଇଲିରେ ସୁନ୍ଦେଶି ।
ମଦନେ ଅଧୀର ଅଙ୍ଗ ଯେ ମୋହୋର ।୩୩୬।
ଶୁଣିଣ ସୁନ୍ଦେଶି ଲଜାଭର ହୋଇ ।
ଶତେକ ଯୁବତୀ ଓଲଗିଣ ଶୋଇ ।୩୩୭।
ବୋଲନ୍ତି ସୁନ୍ଦେଶି ଶୁଣ ହେ ମରୁତ ।
କୁଶନାଭ ରାଜାର ଆମ୍ଭେ ଅଟୁ ଯେ ଦୋହିତ ।୩୩୮।
ସର୍ବହେଂ ଅବିବାହୀ ତୃଥା ହିଂ ଜାଣି ନାହୁଂ ।
ପିତା ନ ଦେଲେ ତୋତେ ବରିବଇ କାହୁଂ ।୩୩୯।
ପିତାର ଆଜ୍ଞା ନଥିଙ୍କୁ ଆମ୍ଭେ କେହି ।
ପିତା ଅରକ୍ଷଲର ସିନା ଆମ୍ଭର ଦେହି ।୩୪୦।
ପିତା ନବରିଲେ ନ ବରିବୁ ତୋତେ ।
ବ୍ୟର୍ଥ ହୋଇବ ସିନା କହିବୁ ତୁ ଯେତେ ।୩୪୧।
ଶୁଣିଣ ସଙ୍କୋଚ ପାଇଲା ପବନ ।
ସୁନ୍ଦେଶୀଙ୍କି ଶାପ ଦେଲା କୋପମନ ।୩୪୨।
ସ୍ୱେ ମୋର ବଚନ ନ ପାଳିଲ ବାଳୀ ।
କୁବୁଜ ହୁଅ ତୁମ୍ଭେ ସୁନ୍ଦର ରୂପ ଛାଡ଼ି ।୩୪୩।
ସ୍ୱେତେ ବୋଲି ଅନ୍ତର୍ଦ୍ଧାନେ ଗଲାକ ମରୁତ ।
କୁବୁଜ ହୋଇଲେ ରାଜା ଶତେକ ଦୋହିତ ।୩୪୪।

Digitized by srujanika@gmail.com

ଲଜାସ୍ତେ ପୁରକୁ ନ ଗଲେ ସୁନ୍ଦେଶୀ ।
ବାରତା ପାଇଣ ଅଇଲେ କୁଶଲଭ ଦଣ୍ଡଧାରୀ । ୩୪୫ ।
ଦୋହିତାଙ୍କୁ ଦେଖି ବିକଳିତ ମନ ।
ପଚ୍ଚରଇ ତୁମ୍ଭେ କଂପା ହୋଇଲ ଏସନ । ୪୪୬ ।
ଦୋହିତାଏ ବୋଇଲେ ଶୁଣସି ପିଅର ।
ପୁରୁଷେକ ଆସି ହୋଇଲେ ଆମ୍ଭର ଆଗର । ୩୪୭ ।
ବୋଇଲାକ ମୋତେ ବରରେ ସୁନ୍ଦେଶୀ ।
ମୁହିଂ ତୁମ୍ଭ ଭର୍ତ୍ତା ହୋଇବାରେ ନାରୀ । ୩୪୮ ।
ଆମ୍ଭେ ନାସ୍ତି କଲୁ ତାହାର ବୋଲ ଶୁଣି ।
ବୋଇଲୁ ପିତା ସେ ଆମ୍ଭ ଜୀବର କାରେଣୀ । ୩୪୯ ।
ସେ ସେ ଯାହାକଇ ସମର୍ପଇ ଆମ୍ଭନ୍ତ ।
ସେ ସେ ଆମ୍ଭର ହୋଇବ ନିଜ କାନ୍ତ । ୩୫୦ ।
ଏହା ଶୁଣି ଆମ୍ଭନ୍ତ ସେ କଲା ବହୁତ କୋପ ।
ବୋଇଲା କୁବୁଜ ହୋଉଲେ ତୁମ୍ଭର ସ୍ୱରୂପ । ୩୫୧ ।
ଏତେ ବୋଲି ମହାତ୍ମା ଯେ ଅନ୍ତରୀକ୍ଷେ ଗଲା ।
ଶୁଣିଣ କୁଶଲଭ ହରଷ ହୋଇଲା । ୩୫୨ ।
ବୋଇଲା ମୋହର ଧନ୍ୟ ଅଟଇ କୁଳ ।
ତୁମ୍ଭର ପ୍ରସାଦେ ଲୋ ହୋଇଲି ନିର୍ମଳ । ୩୫୩ ।
ଅନେକ ପ୍ରଶଂସା କଲେକ ନୃପମଣି ।
ସାଧୁ ସାଧୁ କଲେ ନଗ୍ରଲୋକେ ଶୁଣି । ୩୫୪ ।
ଏଥୁ ଅନନ୍ତରେ ଦୋହିତାନ୍ତ ଘେନି ରାଏ ।
ନିଜ ନବରେଣ ପ୍ରବେଶ ଆସି ହୋଏ । ୩୫୫ ।
ରାମ ପଚ୍ଚରନ୍ତି ଶୁଣ ହେ ମହାମୁନି ।
ବଷ ହୋଇଲେଟି କି କୁଶଲଭ ନନ୍ଦନୀ । ୩୫୬ ।
ବିଶ୍ୱାମିତ୍ର କହନ୍ତି ଶୁଣ ହେ ରଘୁନାଥ ।
ଚୂଳି ନାମେଣ ଯେ ଏକଇ ତପୋବନ୍ତ । ୩୫୭ ।
ସେ ଯେ ଉର୍ଦ୍ଧରେତ ଯତ ସତ ଜ୍ଞାନ ।
ତାହାର ତପକୁ ଡରନ୍ତି ସହସ୍ରଯୋନି । ୩୫୮ ।
ମନେ ମନେ ଇନ୍ଦ୍ର ବିଚାରଇ ନିତି ।
ସ୍ୱର୍ଗର ସମ୍ପଦ ମୋର ହରଇ ନିକି ଯତି । ୩୫୯ ।
ଏତେ ଭାଳିଣ ଯେ ଶଚୀଦେବୀର ସାଇଂ ।
ଉନ୍ମାଜ ଗନ୍ଧର୍ବକୁ ବୋଇଲାକ ରାଇ । ୩୬୦ ।

Digitized by srujanika@gmail.com

ସୋମଦା ନାମେଣ ଯେ ତୋହୋର ଦୋହିତା ।
ଅବିଭାଇ ହୋଇତ ଅଛଇ ବନିତା । ୩୬୧ ।
ରୂପେଣ ସୁନ୍ଦରୀ ଅଟଇ ମୃଦୁବାକ୍ୟା ।
ମୋହୋର ବୋଲକରି ଯାଉ ସେ ସୁନ୍ଦରୀ । ୩୬୨ ।
ଚୂଳିକ ମୁନିର ସେ ତପକରୁ ନାଶ ।
ତୁ ଯେବେ ମୋହର ଗୋ ଅଟୁ ନିଜ ଦାସ । ୩୬୩ ।
ଶୁଣିଣ ଊର୍ମ୍ମିଳା ଅଇଲା ତତ୍ପର ।
ପାଶେଣ ବସାଇଣ ଡାଆରେ ଦୋହିତ । ୩୬୪ ।
ତୁ ମୋହର ନନ୍ଦନୀରେ ଅଟୁ କୁଳ ସାର ।
ମୋତେ ଶୁଣି ଯାହା ବୋଇଲେ ବଜ୍ରଧର । ୩୬୫ ।
ଚୂଳିକ ମହାମୁନି କରଇ ଘୋର ତପ ।
ଅବଶ୍ୟ ହୋଇବ ସେ ସୁରପୁରେ ନୃପ । ୩୬୬ ।
ଇନ୍ଦ୍ର ହତେ ତୁ ଯେବ୍ହୁଷଣି ଯିବୁ ।
ମୁନି ମନ ତୁ ହେଲେଣ ମୋହିବୁ । ୩୬୭ ।
ବଶ ହୋଇବୁ ତୁ ମୋହର ଯନମତ ।
ଶୁଭ ଯୋଗେ ଯାଇ ଭେଟ ତପୋବନ୍ତ । ୩୬୮ ।
ପିଅର ବଚନେ ଯେ ଅଇଲିକ ବାଳୀ ।
ଚୂଳିକ ଋଷିର ସନ୍ନିଧେ ଯାଇଂ ମିଳି । ୩୬୯ ।
ନିତ ସେବା କରିଥାଇ ମୁନି ପାଶ ।
ମଠିଆ ଲିପଇ ଆଣେଇ ଗନ୍ଧ ପୁଷ୍ପ । ୩୭୦ ।
ଧୂପ ଦୀପ ଜଳ କୁଶ ସକଳକରି ।
ଅନୁବ୍ରତେ ଖଟିଥାଇ ମନ୍ତ୍ରଧାରୀ । ୩୭୧ ।
ଯହୁଂ ସେ ସେବା କଲା ଅନୁଷ୍ଠନ ।
ଦିନେକ ପଚ୍ଛରିଲେ ଚୂଳି ତପୋଧନ । ୩୭୨ ।
କିସ ନାମ ତୋହୋର କାହାର କୁଳେ ଜାତ ।
କେବଣ କାରଣେ ତୁ ଏଥିକି ଆଗତ । ୩୭୩ ।
କନ୍ୟା ବୋଇଲା ଯେ ନମସ୍କାର କରି ।
ଊର୍ମ୍ମିଳା ଗନ୍ଧର୍ବ ପିଅର ମୋହୋର । ୩୭୪ ।
ପ୍ରମଦା ଅପସରୀ ଗର୍ଭେ ମୁହିଂ ଜାତ ।
ସୋମଦା ନାମ ମୋହୋର ଶୁଣ ତପୋବନ୍ତ । ୩୭୫ ।
ଅବିଭାଇ କନ୍ୟା ମୁଂ ପିତାଘରେ ଥିଲି ।
ବର ଲୋଡ଼ିବାରେ ମୁଂ ଯେଥିକୁ ଅଇଲି । ୩୭୬ ।

Digitized by srujanika@gmail.com

ବନସ୍ତ ଭିତରେ ମୁଂ ନ ଦେଖିଲି ଆନ ।
ତୋତେ ସେବା କରୁଅଛୁ ଅବଛିନ୍ନ । ୩୭୭ ।
ପତି ସନ୍ତୋଷ ହୋଇଲେ ତାହା ଶୁଣି ।
ହସି ବୋଇଲେ ପତି ଶୁଣରେ ତରୁଣୀ । ୩୭୮ ।
ଯେବେ ରୂପବନ୍ତୀ ଅଟୁ ଅବଶ୍ୟଇ ।
ଆମ୍ଭେ ବର ଯେବେ ତୋ ମନକୁ ଯୋଗାଇ । ୩୭୯ ।
ଶୁଣି କରଯୋଡ଼ି କହଇ ଯୁବତୀ ।
ଅନେକ ପୁତ୍ରେ ସିନା ପାଇବି ତୋତେ ପତି । ୩୮୦ ।
ତୋହୋର ଚିତ୍ତକୁ ଯେବେ ରୁଚଇ ଭୋ ମୁନି ।
ତୁଅ ବଶ୍ୟ ମୋତେ ଭଗତି ଭାବ ଘେନି । ୩୮୧ ।
ସେ କନ୍ୟାର କଥା ଶୁଣିଣ ତାହା ଋଷି ।
ଗନ୍ଧର୍ବମତେ ବଶ୍ୟ ହୋଇଲେ ଶୁଭ୍ରକେଶୀ । ୩୮୨ ।
ବନ ପରବତେ ଘେନିଣ ଭୋଗ କଲା ।
ଶୃଙ୍ଗାର ରସେଣ ମୁନିଙ୍କି ତୋଷିଲା । ୩୮୩ ।
କାଳେ ପୁତ୍ରେକ ଯେ ହୋଇଲା ତାର ଜାତ ।
ବ୍ରହ୍ମଦତ୍ତ ନାମ ଦେଲା ତାହାର ତାତ । ୩୮୪ ।
ରୂପେଣ ସୁନ୍ଦର ଯେ ନାହିଂ ପଟାନ୍ତର ।
ବ୍ରହ୍ମା ବିଷ୍ଣୁ ରୁଦ୍ର ସେ ସେକଇ ରୂପଧର । ୩୮୫ ।
ତେଜେଣ ଅଗ୍ନି କି ପ୍ରତାପସ୍ତେ ଯମ ।
ଧଇର୍ଯ୍ୟେଣ ମେରୁ ସେ ବଗ୍ରରେଣ ଧର୍ମ । ୩୮୬ ।
କ୍ଷତ୍ରି ହୋଇବାକୁ ନାହିଂ ସମସର ।
କାଶୀ ଦେଶେଣ ସେ ହୋଇଲେ ଦଣ୍ଡଧାରୀ । ୩୮୭ ।
ମହା ପ୍ରତାପବନ୍ତ ସେ ଅଇର ଭରସଲ ।
ଚବିତଲେ ସେକା ହୋଇଲା ମହାମଲ । ୩୮୮ ।
କୁଶନାଭ ରାଜାର ଯେତେକ ଝିଅ ଥିଲା ।
ବ୍ରହ୍ମଦତ୍ତ ରାଜାକୁ ବିଭାସ୍ତେଣ ଦେଲା । ୩୮୯ ।
ପବନର ଶାପେ କନ୍ୟା ସେହିକୁବୁଜ ହୋଇଥିଲେ ।
ବ୍ରହ୍ମଦତ୍ତ ଲଗି ସେ ସୁନ୍ଦର ହୋଇଲେ । ୩୯୦ ।
ଦେଖିଣ କୁଶନାଭ ହୋଇଲା ସନ୍ତୋଷ ।
ନିଜ ପୁରେ ଗଲା ଶୁଚକ ମୁନି ଶିଷ । ୩୯୧ ।
ବିଶ୍ୱାମିତ୍ର ବୋଇଲେ ଶୁଣ ରଘୁନାଥ ।
କନ୍ୟାଏ ଯେ କୁବୁଜ ହୋଇଥିଲେ ସେଥ । ୩୯୨ ।

Digitized by srujanika@gmail.com

କାନ୍ୟକୁବ୍ଜ ଯେ ଏ ଦେଶର ନାମ ହୋଇ ।
ଶ୍ରୀରାମ ଆଗେ ଯେହ୍ନା କଉଶିକ ମୁନି କହି । ୩୯୩ ।
ଅନେକ କାଳ ଯେଥି କୁଶଲାଭ ରାଜ୍ୟ କଲା ।
କର୍ମେଣ ତାହାର ପୁତ୍ର ଜାତ ନୋହିଲା । ୩୯୪ ।
ଶତେକ ଦୋହିତା ବ୍ରହ୍ମତେଜ କଇ ଦେଇ ।
ଯଜ୍ଞ ଆରମ୍ଭ ସେ କଲାକ ନରସାଇଂ । ୩୯୫ ।
ହୋମ କରନ୍ତେଣ ଆକାଶେ ଶୁଭଇ ବାଣୀ ।
ଯଜ୍ଞ ନ କରଉ ଶୁଣ ହୋ ନୃପମଣି । ୩୯୬ ।
ଅଳପ ସମୟେ ହୋଇବ ତୋର ପୁନ୍ଦ ।
ସେ ସେ ଉଧରବ ଯେ ତୋହୋର ଗୋନ୍ଦ । ୩୯୭ ।
ଆକାଶୁଂ ଯେସନେକ ଶୁଣିଣ ବଚନ ।
ଯାଗ ରୁହାଇଲା କୁଶଲାଭ ରାଜନ । ୩୯୮ ।
କାଳେଣ ପୁତ୍ରେକ ଯେ ହୋଇଲାକ ଜାତ ।
କଉସୁଭ ନାମ ତାକୁ ଦେଲାକ ବଧାତ । ୩୯୯ ।
ରୂପେଣ ମଦନ ପବନ ସମ ବଳୀ ।
ନାହିଂ ପଟାନ୍ତର ଅଛଇ ଶୁଦ୍ଧଶାଳୀ । ୪୦୦ ।
ଯେହ୍ନାର ତନୟେ କଉଶିକ ହୋଇ ।
କଉଶିକ କୋଳେ ଗାଧି ଉପୁଜଇ । ୪୦୧ ।
ଗାଧିର ତନୟେ ହୋଇଲାକ ଜାତ ।
ସେ ସେ ପୁତ୍ର ମୁହିଂ ଅଛଇ ରଘୁନାଥ । ୪୦୨ ।
ଯହୁଂ ସେ କଉଶିକ ରାଜାର ମୁଂ ଅଛଇ ନାତ ।
କଉଶିକ ବୋଲି ମୋତେ ଜଗତେ ବୋଲନ୍ତି । ୪୦୩ ।
ମୋହୋର ସାନ ଭଉଣୀ ଯେ ସତ୍ୟବତୀ ନାମ ।
ଋଷିଙ୍କି ପିତା ତାହା କଲାକ ପ୍ରଦାନ । ୪୦୪ ।
ପତିବ୍ରତା ପଣେ ସ୍ୱର୍ଗେ ବସିଥିଲା ।
ଅନେକ ପୁନ୍ୟେଣ ସେ ନଦୀଯେକ ବୋହିଲା । ୪୦୫ ।
ଶୁଭବାହିନୀ ନାମେଣ ହେମ ଭେଦଣ ଆସଇ ।
ବନଗିର କାଟିଣ ସାଗରେ ମିଶିଇ । ୪୦୬ ।
ନଦୀ ରୂପେଣ ଯେ ଜଗତ ପବିତ୍ର କଲା ।
ଅଜାର ନାମଯେ ଯେ କଉଶିକ ହୋଇଲା । ୪୦୭ ।
କଉଶିକ ନଦୀ ଯେ ଯେ ଜଗତେ ପ୍ରସିଦ୍ଧି ।
ପବିତ୍ର ଜଳ ଯେ ଯେ ଝରଇ ହେମ ମଝି । ୪୦୮ ।

Digitized by srujanika@gmail.com

ଭଉଣୀର ସଙ୍ଗ ମୁଂ ଛାଡ଼ି ନପାରିଲି ।
ହେମଗିରି ନିକଟେ ତେଣୁ ସେ ରହିଲି । ୪୦୯ ।
ଅନେକ କାଳ ମୁଂ ଥିଲଇ ତପକରି ।
ଭଗ୍ନିର ସଙ୍ଗେ ମୁହିଂ ଆନନ୍ଦ ମନଧରି । ୪୧୦ ।
ଯହୁଂ ଶୁଣିଲି ମୁଂ ସିଦ୍ଧବନର ମହାତମ ।
ତେଣୁ ସେ ସିଦ୍ଧବନେ ରହିଲି ଶ୍ରୀରାମ । ୪୧୧ ।
ଯେବେ ତୋହୋର ସେ କାର୍ଯ୍ୟସିଦ୍ଧ କଲି ।
ଯାଗ କରଣ ଅନେକ ଧର୍ମ ମୁଂ ପାଇଲି । ୪୧୨ ।
କଥା କୁହନ୍ତେଣ ହୋଇଲା ଅର୍ଦ୍ଧରାତ୍ର ।
ଅଷ୍ଟମୀ ନିଶାୟେ ଦିଶିଲା ଚନ୍ଦ୍ର ଜୋତ୍ର । ୪୧୩ ।
ମୁନିମାନେ ବୋଇଲେ ଶୁଣ ଗାଧିଶିଷ୍ୟ ।
ଶ୍ରୀରାମ ଅଳପ ଅଟଇ ବୟେସ । ୪୧୪ ।
ଅର୍ଦ୍ଧରାତ୍ର ଯେବେ ହୋଇଲାଣି ନିଶି ।
କେତେ ଉଜାଗର ହୋଇଥିବ ବସି । ୪୧୫ ।
କଥା ରୁଧାଅ ତୁମ୍ଭେ ଶ୍ରୀରାମ ନିଦ୍ରାଯାଉ ।
କୋମଳ ଦେହ ଗୋଟି ଆଶ୍ୱାସନା ପାଉ । ୪୧୬ ।
କଉଶିକ ବୋଇଲେ ହୋ କଥାଇ ସରିଲା ।
ରାତ୍ର ଯେବେ ଆସି ଅର୍ଦ୍ଧରୁ ଗଡ଼ିଲା । ୪୧୭ ।
ଶୁଣସି ଶ୍ରୀରାମ ହୋ ନିଦ୍ରା ବାରୁ ଯାଅ ।
ବାଟ ଚାଲିଯିବା ଅଳସ ଯେବେ ଛଡ଼ାଅ । ୪୧୮ ।
ଯେଥୁ ଅନନ୍ତରେ ଶୁଣିଲେ ସକଳ ।
ରଜନୀ ସରିଲା ଉଦୟେ କଶ୍ୟପର ବାଳ । ୪୧୯ ।
ଶେଯ୍ୟା ଛାଡ଼ିଣ ଯେ ଶୁଚବନ୍ତ ହୋଇ ।
ଶ୍ରୋଣିତ ନଦୀ ତୀରେ ମିଳିଲେକ ଯାଇ । ୪୨୦ ।
ନାବେ ବସିଣ ଯେ ହୋଇଲେ ନଦୀ ପାରି ।
ଶ୍ରୀରାମ ଲକ୍ଷ୍ମଣ ମୁନି ଆଦି କରି । ୪୨୧ ।
କେତେହେଁକ ଦୂରେ ଗଙ୍ଗାଯାଇ ।
ବୋଲନ୍ତି ବିଶ୍ୱାମିତ୍ର ଶୁଣ ରଘୁସାଇଂ । ୪୨୨ ।
ଯେ ସେ ପୁନ୍ୟନଦୀ ସ୍ନାହାନ ଯେଥି କରି ।
ପାପନାଶିନୀ ଯେ ଅଟଇ ରଘୁବୀର । ୪୨୩ ।
ଯେହାର ଅପାର ଯେ ଅଟଇ ମହିମା ।
ଚତୁର୍ମୁଖେ କହି ନ ପାରିଲେ ବ୍ରହ୍ମା । ୪୨୪ ।

Digitized by srujanika@gmail.com

ଶ୍ରୀରାମ ବୋଇଲେ ସେ କାହାର ବଂଶେ ଜାତ ।
ସଂଶୟ ଫେଡ଼ ମୋତେ କହିବା ତପୋବନ୍ତ । ୪୨୪ ।
ମୁନି ବୋଇଲେ ହେ ଶ୍ରୀରାମଚନ୍ଦ୍ର ଶୁଣ ।
ପୂର୍ବର କଥାୟେ ପୁରାଣେ ବଖାଣ । ୪୨୫ ।
ମେରୁର ଦୁହିତା ମେନକା ନାମେ ବାଳୀ ।
ହେମବନ୍ତଙ୍କର ବିଭା କଲାକ ସେ ଭାଳ । ୪୨୬ ।
ତାହାଂ ଜାତ ହୋଇଲେ ଝିଅ ଦୁଇ ।
ଗଙ୍ଗା ଜ୍ୟେଷ୍ଠ ହାଦେ ଗଉରୀ ସାନ ହୋଇ । ୪୨୭ ।
ରାମ ପଚାରନ୍ତି ଗଙ୍ଗା ଯେ ସ୍ୱର୍ଗବାସୀ ।
ମର୍ତ୍ତ୍ୟପୁରେ ସେ କେମା ବୋହିଲେ ଆସି । ୪୨୮ ।
ମୁନି ବୋଲନ୍ତି ତୁ ଶୁଣ ରଘୁସାଇଂ ।
ତୋହୋର ଉପର ବଂଶେ ସଗର ରଜାହୋଇ । ୪୨୯ ।
ବଇଧର୍ଭୀ ସବ୍ୟା ବୋଲି ତାହାର ବେନି ବାମା ।
ରବି ତଳେ ନୃପତି ସେ ବଡ଼ାଇ ଗାରିମା । ୪୩୦ ।
ପୁତ୍ର ନାହିଂ ବୋଲି ସବ୍ୟା ବଇଧର୍ଭୀ ।
କଶ୍ୟପ ଋଷିଙ୍କ ସେ ସେବନ୍ତି ବାଳୀ ହେବ । ୪୩୧ ।
କାଳେ ପ୍ରସନ୍ନ ହୋଇଲେ ମହାମୁନି ।
ଅନେକ ପୁତ୍ର ତୋର ହୋଇବେ କାମିନୀ । ୪୩୨ ।
ସବ୍ୟାକୁ ବୋଇଲେ ଯେ ପୁତ୍ରେକ ତୋର ହେଉ ।
ଏ ମୋହର ବଚନ ସଫଳ ଯେ ହୋଉ । ୪୩୩ ।
ଦଶମାସ ସମ୍ପୂର୍ଣ୍ଣେ ସବ୍ୟା ପ୍ରସବଇ ।
ପୁତ୍ରେକ ସେ ଜାତ କଲା ମହାବାଦ । ୪୩୪ ।
ଅଶ୍ୱଜା ନାମ ଯେ ହୋଇଲା ତାହାର ।
ରୂପ ଗୁଣେ ସୁନ୍ଦର ନାହିଂ ପଟାନ୍ତର । ୪୩୫ ।
ସେଥୁଂ ବଇଧର୍ଭୀର ଶୁଣିମା ଚରିତ ।
ତୁମ୍ବେକ ପ୍ରସୂଇଲା ସଗର ନୃପତି । ୪୩୬ ।
ବିମୋହ ହୋଇଣ ପକାଇତ ଦିନ ବାଲା ।
ସେମନ୍ତେ ସ୍ୱର୍ଗରେ ଶବଦେକ ଶୁଭିଲା । ୪୩୭ ।
ସେହୁ ତୁ ବିନାଶ ନ କର ଗୋ ନାରୀ ।
ଭିତର ଦେଖ ତୁ ହୋନି ଷଣ୍ଢ ଜାତ । ୪୩୮ ।
ଲାଭ ମଞ୍ଜି ସମାନେ ଅଛନ୍ତି ଦୁତ ।
ଘୃତ କୁଣ୍ଡେ ସେହୁ କରସି ଗୁପ୍ତ । ୪୩୯ ।

Digitized by srujanika@gmail.com

ଯେତେକ ମଞ୍ଜି ତେତେକ କୁମ୍ଭ ଘେନ ।
ଯତ୍ନ କରଣ ଥୁଅ ରଘୁକୁଳ ନନ୍ଦନ । । ୪୪୦ ।
ଶୁଣିଲେ ମହାମାଇ ସ୍ୱର୍ଗର ଶୂନ୍ୟବାଣୀ ।
ଅନେକ ଘୃତକୁଣ୍ଡ ସମ୍ପାଦିଲେ ଆଣି । ୪୪୧ ।
ତୁମ୍ବ କାଟିଣ ସେ ଭିତର ଦେଖିଲେ ।
କୁମ୍ଭେକ ମଞ୍ଜିଏ କରଣ କରାଇଲେ । ୪୪୨ ।
ଷାଠିଏ ସହସ୍ରେକ ହୋଇଲେକ ବୀଜ ।
ଘୃତକୁଣ୍ଡେ ଥୋଇଲେ ସାଗର ମହାରାଜ । ୪୪୩ ।
ରକ୍ଷା କରଣ ଯେ ଥୋଇଲେ ଯତ୍ନମତେ ।
ଦଶମାସ ସମ୍ପୂର୍ଣ୍ଣେ ଜନ୍ମେ ହୋଇଲେ ପୁତ୍ରେ । ୪୪୪ ।
ଷାଠିଏ ସହସ୍ର କୁମର ଉପୁଜିଲେ ।
ତେଜ ପ୍ରତାପେ ସେ ଅଗ୍ନିକି ଗଞ୍ଜିଲେ । ୪୪୫ ।
ଦିନେ ଦିନେ ବଳା ହୋଇଲେ ବର୍ଦ୍ଧମାନ ।
ଦେଖିଣ ଆନନ୍ଦ ସଗର ରାଜନ । ୪୪୬ ।
ନୃପତି ବିଚାରଇ କରିବଇ ଯଜ୍ଞ ।
ଏ ମହୀମଣ୍ଡଳେ ରହୁ ମୋର ଭାଗ୍ୟ । ୪୪୭ ।
ଏତେକ ବୋଲି ସେ ଆରମ୍ଭ କଲେକ ଯଜ୍ଞଶାଳ ।
ସବ ଭଳି ସମିଧ ସର୍ବ ସଞ୍ଚିଲେ ମହୀପାଳ । ୪୪୮ ।
ଇଷ୍ଟବନ୍ଧୁ ନିମନ୍ତ୍ରଣ କଲାକ ନୃପତି ।
ଆସିଣ ପ୍ରବେଶ ସେ ହୋଇଲେ ସର୍ବ ଯତି । ୪୪୯ ।
ଅଶ୍ୱମେଧ ଋଷି କଲେକ ବରଣ ।
ନାନା ଦ୍ରବ୍ୟମାନ ସମ୍ପାଦିଲେ ନୃପରାଣ । ୪୫୦ ।
ଲକ୍ଷଣବନ୍ତ ଅଶ୍ୱ ବାନ୍ଧିଲେ ପୂଜା କରି ।
ନଗର ପୁର ମଣ୍ଡଇଲେ ସଗର ଦଣ୍ଡଧାରୀ । ୪୫୧ ।
ଏଥୁ ଅନନ୍ତରେ ଶୁଣ ରଘୁନାଥ ।
ଚତୁର୍ଥ ରୂପ ଧରି ଅଇଲେ ପୁରୁହୂତ । ୪୫୨ ।
ଯାଗଶାଳାରୁ ଅଶ୍ୱ ଘେନିଗଲେ ଫେରି ।
କପିଳ ମୁନି ପଛେ ବାନ୍ଧିଲେକ ନେଇ । ୪୫୩ ।
ରାଜ ଚାହିଁଲାରୁ ଦେଖିଲେ ନାହିଁ ଅଶ୍ୱ ।
ସଗର ବିଚାରଇ କାରଣ ଏ କିସ । ୪୫୪ ।
ପୁତ୍ରଙ୍କୁ ରାଜନ୍ତି ବୋଲଇ ନୃପତି ।
ଏହେ ଧର୍ମ ମୋର ହୋଇଲେ ଅଗତି । ୪୫୫ ।

Digitized by srujanika@gmail.com

ତୁମ୍ଭର ଆଜ୍ଞେ ବାବୁରେ ଅଶ୍ୱ କେ ଘେନିଗଲା ।
ପୁତ୍ରଙ୍କ ମୁଖ ଗୁହିଂ ନୃପତି ବୋଇଲା । ୪୫୬ ।
ଶୁଣିଣ କୁମରେ ଯେ କହନ୍ତି କରଯୋଡ଼ି ।
ନୁହସି ବସ୍ମୟେ ରାଜା ଆଣିମୁ ଅଶ୍ୱଲୋଡ଼ି । ୪୫୭ ।
ପିତାକୁ ପ୍ରବୋଧିଣ ଚଳିଗଲେ ବୀରେ ।
ଲୋଡ଼ନ୍ତି ଘୋର ବନ ପର୍ବତ ଉପରେ । ୪୫୮ ।
କେଣେହେଂ ନ ଦେଖି ଯେ ଖୋଜିଲେ ବସୁନ୍ଧରୀ ।
ପାତାଳେ କେ ଅବା ଥୋଇଲା ଗୁପତ କରି । ୪୫୯ ।
ଲକ୍ଷେ ବିଦାରିଲେ ମେଦିନୀର ଦେହ ।
ଅଶ୍ୱ ନ ପାଇଣ କଲେ ଗରୁ କୋହ । ୪୬୦ ।
ଜୀବଜନ୍ତୁ ଦେଖିଣ ସେ କରନ୍ତି ପ୍ରାଣେ ହତ ।
ଭୟେ ଥରହର ସେ ହୋଇଲା ଜଗତ । ୪୬୧ ।
ବ୍ରହ୍ମାର ଅଗ୍ରତେ କହିଲେ ପୃଥ୍ୱୀଯାଇ ।
ସଗରର ପୋଏ ଧ୍ୱଂସିଲେ ଗୋସାଇଂ । ୪୬୨ ।
ବନଗିରି ଖୋଜିଣ ମେଦିନୀ ଖୋଳିଲେ ।
ଯାଗ ଘୋଡ଼ା ଚିହ୍ନ ନ ପାଇ ଖାଳିଲେ । ୪୬୩ ।
ବାହୁଡ଼ିଣ କହିଲେ ପିତାର ଆଗେ ଯାଇଂ ।
ଅନେକ ଲୋଡ଼ିଲୁ ଦେବ ଅଶ୍ୱ କାହିଂ ନାହିଂ । ୪୬୪ ।
ପିତା ବୋଇଲେରେ ପୁତ୍ରେ ହୋଇଲଟି ଅଜ୍ଞାନ ।
ଜୀଇଂ କସ କରିବରେ ହୁଅସି ଧାହନ । ୪୬୫ ।
ଷାଠିଏ ସହସ୍ର ଯାହାର ଅଛଇ ତନଏ ।
ତୁମ୍ଭନ୍ତି ଆଆଜ୍ଞେ କେହୁ ନେଲା ଯଜ୍ଞ ହୟେ । ୪୬୬ ।
ଏଥିଡ଼େ ଧର୍ମ ମୋର ହେଲେଣ ନାଶ ଗଲା ।
ନିଜ କପୋଳେ ହାଥ ମାରି ସଗରରାଜ ବୋଇଲା ।୪୬୭।
ପିତା ଏସନେକ ବୋଇଲେ ଯନ୍ତୁଂ ବାଣୀ ।
ଖାଲିଣ କୁମରେ ଯେ ଲୋଡ଼ିଗଲେ ପୁଣି । ୪୬୮ ।
ବନ ପର୍ବତ ସେ ନଦୀ ଜିଣିଗଲେ ।
ପୂର୍ବ ଦିଗରେ ସେ ପ୍ରବେଶ ହୋଇଲେ । ୪୬୯ ।
ଦେଖିଲେ ହସ୍ତୀ ଏକ ଅଛଇ ପୃଥ୍ୱୀ ଧରି ।
ବିରୂପାକ୍ଷ ନାମ ଅଟଇ ତାହାରି । ୪୭୦ ।
ସେ ଯେବେ ଚଳଇ ହଲଇ ବସୁମତୀ ।
ଦେଖିଣ କୁମରେ ଯେ ନମସ୍କାର କରନ୍ତି । ୪୭୧ ।

Digitized by srujanika@gmail.com

ତହୁଂ ଚଳିଗଲେ ସଗର ରାଜାସୁତ ।
ଦକ୍ଷିଣ ଦିଗକଇ କଲେକ ଗମନ୍ତ । ୪୭୨ ।
ପଦ୍ମଗଜ ବୋଲି ଅଛଇ ଏକ ହସ୍ତୀ ।
ମନ୍ଦର ଗିରି ସମାନ ଦିଶଇ ଦିଗଦନ୍ତୀ । ୪୭୩ ।
ତାହାକୁ ନମସ୍କାର କରିଣ ତହୁଂ ଗଲେ ।
ପଶ୍ଚିମେ ମଣିଭଦ୍ରା ହସ୍ତୀକି ଦେଖିଲେ । ୪୭୪ ।
କପିଳାଂସ ପରବତ ସମାନ ଦେହ ଦିଶି ।
ତାହାକଇ ଓଳଗ ମେଲ୍ଲଇଲେ ସଗରର ଶିଷି । ୪୭୫ ।
ଉତ୍ତର ଦିଗେ ସେ ଦେଖିଲେ ଭଦ୍ରାଗଜ ।
ହେମଗିରି ଜିଣିଣ ଯେ ଦିଶଇ ଧଉଳି । ୪୭୬ ।
ନମସ୍କାର କରିଣ ପୁଚ୍ଛିଲେ ତାହାକୁ ।
ସେ ମହାଗଜ ଯେ କହିଲ୍ଲ ସେହାଙ୍କୁ । ୪୭୭ ।
ଏହୁକ୍ଷଣି ପାଇବ ନୁହସି ବିମନ ।
ଶୁଣିଣ ସନ୍ତୋଷ ଯେ ସଗର ନନ୍ଦନ । ୪୭୮ ।
ଲୋଡ଼ନ୍ତେଣ ବମ୍ବର ଦେଖିଲେ ଭୟଙ୍କାର ।
ଖୋଳି ମହାବାଟରେ ପଶିଲେ ଭିତର । ୪୭୯ ।
ଅନେକ ଦୂର ଯେ ନେଲେ ମହୀ ଖୋଳି ।
ଦେଖିଲେ କୁମର ଯେ କପିଳ ତପଶାଳୀ । ୪୮୦ ।
ଧ୍ୟାନେ କରିଣ ଯେ ଅଛଇ ମୁନି ବସି ।
ଘୋଡ଼ା ବାନ୍ଧି ତାର ଅଛଇ ପଛକଡ଼ । ୪୮୧ ।
ଦେଖିଣ କୁମାରେ ଯେ କୋପମୁଖ ହୋଇ ।
ଭାଳନ୍ତି ସେହୁ ଋଷି ଆଣିଲ୍ଲ ଚୋରାଇ । ୪୮୨ ।
ସେହୁଡ଼େ ଧର୍ମ ଆମ୍ଭର କଲାକ ସେହୁ ନାଶ ।
ଭଣ୍ଡ ତପସ୍ୱୁ କି ନ ଯାଇ ବଣ ସ । ୪୮୩ ।
ଏତେ ବୋଲି କୋପ ସେ ଯେ କଲେ ରାଜପୁତ୍ରେ ।
ଋଷିକି ଭର୍ତ୍ସନା ସେ କଲେକ ଅନେକ ମତେ । ୪୮୪ ।
ଦାଢ଼ି ଧରି ବାରେ ଝିଙ୍ଗିଲେ ରୋଷଭରେ ।
ଘୋଡ଼ା ଚୋରାଇଲୁରେ ମାୟା ମୁନିବରେ । ୪୮୫ ।
କେହୁ ମୁଗଲୁଲ ଉଚ୍ଛୁଡ଼ିଣ ନିଅନ୍ତି ।
ଅଧାର ନେଇ କେ କାନ ଉଗଣ୍ଡ ଦିଅନ୍ତି । ୪ ୬ ।
ଧ୍ୟାନ ଭାଙ୍ଗିଣ ଯେ କପିଳ ମୁନି ଗୃହୁଂ ।
ସଗରର ପୁତ୍ରେ ସେ ସର୍ବେ ହେଲେ ଦଗ୍ଧ । ୪୮୭ ।

Digitized by srujanika@gmail.com

ହେଥୁ ଅନନ୍ତରେ ଶୁଣିମା ରଘୁପତି ।
ସଗର ପୁତ୍ର ସେ ଅସଜା ଦୁଷ୍ଟମତି । ୪୮୮ ।
ତାହାକଇ ପିତା ନବରୁ ବାହାର କଲା ।
ତାହାଙ୍କ ସଙ୍ଗେ ସେ ମାତ୍ର ଯେ କାହିଂ ନଗଲା । ୦୮୯ ।
ତାହାଙ୍କର ତନଏ ସେ ନାମ ଅଶୁବନ୍ତ ।
ନାଉକ ଦେନେଧ ଟୁଣ୍ଡିଲା ନୃପତ୍ୟ । ୪୯୦ ।
ଯହୁଂ ସେ କ୍ରମରେ ହୋଇଲେ ସର୍ବେ ଦନ୍ଧ ।
ଅଶୁବନ୍ତ ଆଗେ ନାରଦ ଯାଇ କହୁ । ୪୯୧ ।
ଖୁଡ଼ୁ ତାମାନ ତୋହୋର ଅଶ୍ୱ ଲୋଡ଼ିଗଲେ ।
କପିଲମୁନି କୋପେ ଦର୍ହନ ହୋଇଲେ । ୪୯୨ ।
ଶୁଣିଣ ଅଶୁବନ୍ତ ପିତାକୁ କହିଲ । ।
ଶୁଣିଣ ସଗର ସଜା ବିସ୍ମୟ ହୋଇଲ । । ୪୮୩ ।
ବୋଇଲା ବିପତ୍ତି ହୋଇଲା ମୋତେ ଆସି ।
ଆକାରଣେ କୁଟୁମ୍ବିତ ହୋଇଲେ ମୋର ଧ୍ୱଂସି । ୪୯୪ ।
ଯଜ୍ଞ ନ ପୂରିଲା କରନ୍ତ ବନବାସ ।
ଆବର ସଜ୍ୟକୁ କି ଅଛଇ ମୋର ଆଶ । ୪୯୫ ।
ଅଶୁବନ୍ତ ବୋଇଲା ତୁ ଶୁଣ ମହୀପତି ।
ମଲାର ପ୍ରାଣୀ ହାଦେ କେବେହେଂ ନ ଆସନ୍ତି । ୪୯୬ ।
ଯେବେ ସେ ଅଶ୍ୱକୁ ମୁଂ ଆଣିମଇଂ ଯାଇଂ ।
କର ତୁ ଯଜ୍ଞ ହୋ ହରଷ ମନ ହୋଇ । ୫୯୭ ।
ଯେତେ ବୋଲି ଅଶୁବନ୍ତ ଅଶ୍ୱ ଲୋଡ଼ିଗଲା ।
ପୂର୍ବଦିଗେ ବିରୂପାକ୍ଷ ଗଜକୁ ଦେଖିଲା । ୪୯୮ ।
ତାହାକୁ ପୁଚ୍ଛିଲା ସେ ବୋଇଲା ଏଥେ ନାହିଂ ।
ଯେଣ୍ଡି ବାଟେ ଗଲେ ଦେଖିଲଇଂ ମୁହିଂ । ୪୯୯ ।
ଶୁଣିଣ କ୍ରମର ଦକ୍ଷିଣ ଦିଗେ ଯାଇ ।
ପଦ୍ମଲାଭ ଗଜକୁ ଯାଇଣ ଦେଖଇ । ୫୦୦ ।
ସେହି ସେ କହିଲା ଯେ ଯେଣ୍ଡିଦିଗେ ଗଲେ ।
ବାରତା ନ ପାଇଲୁ କାହିଂ କଥ କଲେ । ୫୦୧ ।
ତହୁଂ ଅଶୁବନ୍ତ ଗମନ କରିଗଲା ।
ପଶ୍ଚିମ ଦିଗେ ଯାଇ ପ୍ରବେଶ ହୋଇଲା । ୫୦୨ ।
ମଣିବନ୍ତ ଗଜକୁ ଦେଖିଲାକ ଯାଇ ।
ବାରତା ପୁଚ୍ଛଇ ସେ କୃତାଞ୍ଜଳି ହୋଇ । ୫୦୩ ।

Digitized by srujanika@gmail.com

ସେହି ବୋଲେ ସେ ସେହି ଦଗେ ଗଲେ ।
ସଙ୍ଗ ତୁରଙ୍ଗମ ଲୋଡ଼ି ଆସିଥିଲେ । ୫୦୪ ।
ଶୁଣିଣ ଅଂଶୁବନ୍ତ ମନରେ ବିରସ ।
ଉତ୍ତର ଦଗେ ଯାଇ ହୋଇଲା ପରବେଶ । ୫୦୫
ସେ ସେ ମହାତ୍ମା ସକଳ କହିଲା ।
ଉର୍ଦ୍ଧ୍ୱ ଗଜଙ୍କଇ ଦେଖିଣ ପୃଚ୍ଛାକଲା । ୫୦୬ ।
ବୋଇଲ ତୁ ସେଥୁ ଥୋକାଏ ଦୂର ଯାଅ ।
ପିତା ଭ୍ରାଥାମାନଙ୍କୁ ନିକଟେ ଭେଟ ପାଅ । ୫୦୭ ।
ତଥ୍ୟ ବାରତା ଯେ ପାଇଲା ଅଂଶୁବନ୍ତ ।
କେତେହେଂକ ଦୂରେ ଦେଖିଲା ଅଛୁ ପାତାଳକୁ ପଥ । ୫୦୮ ।
ତହିଂ ପଶିଲା ସେ ଭୟେ ଶ୍ରୀଅ ତୁଣ୍ଡକର ।
ଦେଖିଲା ପିତାମାହେ ଯାଇଛନ୍ତି ଜଳ । ୫୦୯ ।
କୁମର ପଗୁରଇ ତବେ ମନ ହୋଇ ।
କାହିଂର କର୍ମ୍ମା ତୁମ୍ଭେ ହୋଇଅଛ ଦହି । ୫୧୦ ।
ଜଳବାର ଲୋକେ ବୋଇଲେ ତାହା ଶୁଣି ।
ଇକ୍ଷ୍ୱାକୁରୁ ବଂଶେ ସେ ଯେ ସାଗର ନୃପମଣି । ୫୧୧ ।
ତାହାର ଆମ୍ଭେ ଯେ ଷାଠିଏ ସହସ୍ର ସୁତ ।
କର୍ମର ବିପାକେ ଯେ ହୋଇଲୁ ବିପଗ୍ରତ । ୫୧୨ ।
ପିତା ଆମ୍ଭର ଯେ ଅଶ୍ୱମେଧ ଯାଗ କଲା ।
ଲକ୍ଷଣବନ୍ତ ଅଶ୍ୱକୁ କେ ନେଇ ଘେନିଗଲା । ୫୧୩ ।
ପିତାର ବଚନେ ଆମ୍ଭେ ହେ ଲୋଡ଼ିତ ଅଇଲୁ ।
ପାତାଳ ବିମ୍ବର ଭିତରେ ଠାବ କଲୁ । ୫୧୪ ।
ସ୍ୱେ ସେ ମହାମୁନି ଯେ ଅଛଇ ସେଥେ ତପେ ।
ଚଳି ପାଇଲୁ ଅଶ୍ୱ ସେହାଙ୍କ ସମୀପେ । ୫୧୫ ।
ପଗୁରଲୁ ସଭ ଯେ ନଜାଣି କୋପକଲା ।
କୋପ ଅଗ୍ନି ଯେନ ଆମ୍ଭନ୍ତ ଦହିଲା । ୫୧୬ ।
ଆବର କଥାଏକ ବୋଇଲା ନ ବିସ୍ମର ।
ଯେତେକ ଦହନ ହୋଇବ ଉନସର । ୫୧୭ ।
ଦଶାଙ୍ଗେ ପୁଣ କଅଂଳୁଥିବ ଦେଖ ।
ଆରେକ ଭାଗ ପୁଣ ହୋଇଥିବ ଦହି । ୫୧୮ ।
ଜଳ ହୀନ କର୍ମ ଆମ୍ଭଙ୍କୁ ମୁନି ଦେଲା ।
ଶୁଣି ଅଶ୍ୱବନ୍ତ ଅନେକ ଶୋକ କଲା । ୫୧୯ ।

Digitized by srujanika@gmail.com

କପିଳ ମୁନିଙ୍କି ସେ ପଚାରିଲା ଯାଇ ।
ସେ ସେ ଦହନ ହୋଇଅଛନ୍ତି ଗୋସାଇଁ ।
କେବଣ ପ୍ରକାରେ ସେ ହୋଇବେ ଶୀତଳ ।
ପ୍ରତିକାର ବଚନ କହିବା ତପଶୀଳ । ୫୨୧ ।
ମୁନି ବୋଇଲେ ଏ ପୂର୍ବର ଭବିଷ୍ୟ ।
ଯେହ୍ନେ ପାପ କରିଅଛଇ ପୂର୍ବଦୋଷ । ୫୨୧ ।
ସେ ଫଳ ଭୁଞ୍ଜୁଅଛନ୍ତି ସର୍ବପ୍ରାଣୀ ।
ଆକାଶର ଗଙ୍ଗାକୁ ଯେ ପାରଇ ମର୍ତ୍ତ୍ୟକୁ ଆଣି । ୫୨୩ ।
ତେବେ ସେ ଶୀତଳ ହୋଇବ ସେହ୍ନାଙ୍କର ଦେହି ।
ଆନ ସର୍ଜନ ଯେ ନୁହନ୍ତି ଜାଣ କେହି । ୫୨୪ ।
ସେହ୍ନାଙ୍କର ତନୟେ ଯେ ହୋଇବ ଭଗୀରଥି ।
ଜଗତେ ବିଖ୍ୟାତ ହୋଇବ ସେହ୍ନାଙ୍କର କୀର୍ତ୍ତି । ୫୨୫ ।
ସେ ସେ ଆକାଶୁଁ ପାରିବ ଗଙ୍ଗା ଆଣି ।
ସପତ ସମୁଦ୍ର ସେ ପୂରେଇବ ପାଣି । ୫୨୬ ।
ପିତୃଗଣେ ସନ୍ତୋଷ ଯେ ହୋଇବେ ସେହ୍ନାଙ୍କର କୃତ୍ୟେ ।
ଆନ କେ ସର୍ଜନ ହୋଇ ରଖିବ ସେହ୍ନାର ଗୋତ୍ରେ । ୫୨୭ ।
ଶୁଣିଣ ଅଶ୍ୱବନ୍ତ ଆସଇ ଅଶ୍ୱ ଘେନି ।
ପ୍ରବେଶ ହୋଇଲା ଆସି ଆପଣା ମେଦିନୀ । ୫୨୮ ।
ଅକାର ବ୍ରହ୍ମରେ ସେ ତୁରଙ୍ଗ ଆଣି ଦେଲା ।
ଯେ ବିଧି ବିଧାନ ସେ ସକଳ କହିଲା । ୫୨୯ ।
ଶୁଣିଣ ସଗର ନୃପତି ମନେ ଭାଳି ।
ସେତେ କୁଳ ମୋର ଅକାରଣେ ଜଳି । ୫୩୦ ।
ସେତ ବିଚାରିଣ ଯାଗ ଆରମ୍ଭିଲା ।
ଅଶ୍ୱମେଧ ଧର୍ମ ସେ ପ୍ରାପତ ହୋଇଲା । ୫୩୧ ।
ଯହୁଁ ସେ ଯାଗ ହୋଇଲା ସମାପତ ।
ଅଭୃତ ସ୍ନାହାନ କଲା ନୃପନାଥ । ୫୩୨ ।
ପୁତ୍ରଙ୍କର ପାଇଁ ଅନେକ ଦାନ ଦେଲା ।
ଅଶ୍ୱବନ୍ତକଇ ରାଜ୍ୟ ସମର୍ପିଲା । ୫୩୩ ।
କାଳେଣ ରାଜାଙ୍କଇ ଯେ ସ୍ୱର୍ଗ ପ୍ରାପତ ।
ସେଥୁ ଅନନ୍ତରେ ଶୁଣ ରଘୁନାଥ । ୫୧୪ ।
ଅଶ୍ୱବନ୍ତ ରାଜା ହୋଇଲାଙ୍କ ଯହୁଁ ।
ସମସ୍ତଙ୍କେ ସୃଷ୍ଟି ପାଳିଲାଙ୍କ ତହୁଁ । ୫୩୫ ।

Digitized by srujanika@gmail.com

ଅନେକ ତପ ଯାଗ ଧର୍ମ କଲା ।
ଦିଳୀପ ନାମେ ତାର ପୁତ୍ରେକ ଜନମିଲା । ୫୩୬ ।
କାଳେକ ତାହାକଇ ଯୁଗରାଜା କରି ।
ସ୍ୱର୍ଗକଇ ଗଲା ଅଶ୍ୱବନ୍ତ ଦଣ୍ଡଧାରୀ । ୫୩୭ ।
ଦିଳୀପି ରାଜା ଯେ ପ୍ରତିଜ୍ଞା ବଳବନ୍ତ ।
ସ୍ତିର ସମୁଦ୍ରେ ସେ ଅଟଇ ନୃପତୀ । ୫୩୮ ।
ତାହାର ତନୟେ ଯେ ଭଗୀରଥି ହୋୟେ ।
ପୁତ୍ରକଇ ରାଜା ଦେଇ ଦିଳୀପି ସ୍ୱର୍ଗ ଯାୟେ । ୫୩୯ ।
ଭଗୀରଥି ରାଜେ ଅଟଇ ସତ୍ୟବାଦୀ ।
ପୁତ୍ରସମ କରି ଯେ ପ୍ରଜାଙ୍କୁ ସେ ଅଚ୍ଛାଦି । ୫୪୦ ।
ଦାନେ ଖାଣ୍ଡେସାରୁ ହୋଇଲାକ ରାଜ୍ୟେ ।
ଅଇରି ନୃପତି ଯେ ପଳାନ୍ତି ପ୍ରାଣ ଭୟେ । ୫୪୧ ।
ଦିନେକ ନୃପତି ମୃଗୟା ବିଜେ କଲା ।
ଅଶ୍ୱେକ ଚଢ଼ିଣ ସେ ବିପୁନେ୍ୟ ବୁଲିଲା । ୫୪୨ ।
କୃଷ୍ଣାଜିନ ମୃଗେକ ଆଗେଣ ରାଜା ଦେଖି ।
ଶର ତୂଣଇଣ ବନ୍ଧିଲା ରାଜା ଯୋଖି । ୫୪୩ ।
ବାଣ ପଡ଼ନ୍ତେଣ ମୃଗ ପଳାଇଲା ।
ତୁରଙ୍ଗମ ଧୁଆଁଇଣ ରାଜା ଗୋଡ଼ାଇଲା । ୫୪୪ ।
ଅତ୍ୟନ୍ତ ଅରତ ହୋଇଲା ମୃଗ ଗୋଟି ।
ପାତାଳ ବିମ୍ବରେ ସେ ପଶିଲା ଯାଇ ଫୁଟି । ୫୪୫ ।
ରାଜାଇ ଗୋଡ଼ାଇଣ ତାହାର ସଙ୍ଗେ ଗଲା ।
ପାତାଳ ବିମ୍ବରେ ଯାଇଣ ଦେଖିଲା । ୫୪୬ ।
ତାହାର ପିତୃଗଣେ ହୋଇଛନ୍ତି ଦଗ୍ଧ ।
ତରସ୍ତ ହୋଇଣ ଯେ ନୃପତି ବାହୁଡ଼ଇ । ୫୪୭ ।
ନିଜପୁରେ ଯାଇ ପ୍ରବେଶ ହୋଇଲା ନୃପତି ।
ସ୍ନାହାନ ଭୋଜନ ହେ ସାରିଲା ତତ୍‌କ୍ଷଣ । ୫୪୮ ।
ଅସ୍ଥାନେ ବିଜେ କଲା ମନ୍ତ୍ରୀଗଣେ ରାଇ ।
କହଇ ରାଜା ସଭା ନିଶବଦ କରାଇ । ୫୪୯ ।
ଅପୂର୍ବ ପଦାର୍ଥେ ହୋ ଦେଖିଲୁ ଅମ୍ଭେ ଆଜ ।
ଅନେକ ଲୋକ ହୋଇଛନ୍ତି ଦହନ । ୫୫୦ ।
ମୃଗ ପଳ ନ୍ତେଣ ଗୋଡ଼ାଇ ମୁଂ ଗଲି ।
ପାତାଳପୁରେ ମୁଂ ହୋୟେନେକ ରଚତ ଦେଖିଲି । ୫୫୧ ।

Digitized by srujanika@gmail.com

ଶୁଣିଲା ଥିଲେ ମୋହୋର ଆଗେ କହ ।
କପସ୍ଥିତ ଦେଖିଲୁ ମଣିଲୁ ସନ୍ଦେହ । ୫୫୨ ।
ସ୍ଵାଜାଉ ବଚନ ଶୁଣିଣ ମନ୍ତ୍ରୀଗଣ ।
ବୋଲନ୍ତି ସ୍ଵାଜା ତୁମ୍ଭେ ସାବଧାନେ ଶୁଣ । ୫୫୩ ।
ତୋହୋର ଉପର ବଂଶେ ନୃପତି ।
ସଗର ନାମେଣ ଅଟଇ ଚକ୍ରବର୍ତ୍ତୀ । ୫୫୪ ।
ଷାଠିଏ ସହସ୍ର ଯେ ଅଟଇ ତାହାର ପୁତ୍ର ।
ଯେକେ ଯେକେ ଜଣି ପାଳନ୍ତି ଜଗତ । ୫୫୫ ।
ଅଶ୍ୱମେଧ ଯାଗ ସଗର ସ୍ଵାଜା କଲା ।
ଲକ୍ଷ୍ମଣବନ୍ତ ଅଶ୍ୱ ଚୋରାଇ ଘେନଗଲା । ୫୫୬ ।
ସ୍ଵାଜାଉ ବଚନେ ସେ ଲୋଡ଼ିଲେ ପୁତ୍ରମାନେ ।
କପିଳ ମୁନି କୋପେ ସେ ହୋଇଲେ ଦହନେ । ୫୫୭ ।
ଶ୍ରୀରାମ ପଶୁରନ୍ତି ଶୁଣ ଗାଧିସୁତ ।
କମ୍ପା ସେ ଅଶ୍ୱ ହରନେଲା ପୁରୁହୂତ । ୫୫୮ ।
ପୁତ୍ରେ ଜଳଲେ ସେ କେବେ ମୁନି ପାଇ ।
ସେହା ହଞ୍ଚପି ମୋତେ କହନା ତପସାଇଂ । ୫୫୯ ।
ମୁନି ବୋଲନ୍ତି ହୋ ଶ୍ରୀରାମଚନ୍ଦ୍ର ଶୁଣ ।
ପୂର୍ବର କଥାଏ ପୁରାଣେ ବଖାଣେ । ୫୬୦ ।
କାଳକେୟ ଅସୁର ଦୁଷ୍ଟପଣ ମନେ ଧର ।
ଅନେକ ଉପଦର୍ପ କଲା ଯେନ୍ତ ପୁରା । ୫୬୧ ।
ଦିବସ କାଳେ ସମୁଦ୍ରେ ପଶିଥାନ୍ତି ।
ନିଶାରେ ବାହାରହୋଇ ପଚଜା ଦୁଃଖ ଦ୍ୟନ୍ତି । ୫୬୨ ।
ଋଷି ବ୍ରାହ୍ମଣ ଯେ ଗୋରୁ ସ୍ତ୍ରୀ ସଜ୍ଜନ ।
ରଜନୀ ଭାଗେ ସେହା କରନ୍ତି ଭୋଜନ । ୫୬୩ ।
ପଳାଇଣ ଲୋକେ ପଶନ୍ତି କୋଣେ କୋଣେ ।
ଖୋଜିଣ ଭକ୍ଷନ୍ତି ସେ ଯେବେ ଦେହ ଆପଣେ । ୫୬୪ ।
ସମସ୍ତେକ ଲୋକେ ତୁଟିଲେ ମାଣ୍ଡୀଆଳୀ ।
ଅସ୍ଥିମଧ୍ୟେ ପୃଥ୍ୱୀ ଦେଖେ ବିସ୍ମାଳିଲା । ୫୬୫ ।
ଦେବଗଣ ଘେନ ଦେଖନ୍ତି ଧାଇଁର ।
ସୃଷ୍ଟି ନଶଗଲା କହିବା ଯେବେ ହର । ୫୬୬ ।
ସେତେ ବୋଲି ଗଲେ କାପିଳାଦ ପୁରା ।
ବୋଇଲେ ରକ୍ଷାକର ଦେବ ତ୍ରିପୁରାରି । ୫୬୭ ।

Digitized by srujanika@gmail.com

କାଳେକ ଆପଣେ ଯେ ସିନ୍ଧୁ ମଧ୍ୟେ ଥାନ୍ତି ।
ଚନ୍ଦ୍ରଂ ବାହାର ହୋଇ ନିଜ ପ୍ରଜା ଖାନ୍ତି । ୫୬୮ ।
ଅସ୍ଥିମଧ୍ୟେ ପୃଥ୍ୱି ହୋଇଲା ଶୋଷାଇଂ ।
ଜନ ଜନ୍ତୁ ବୋଲି ଦେଖିବାକୁ ନାହିଂ । ୫୬୯ ।
ତୁହ୍ୟୋ ଜଗତର ଅଟୁ ଅଧିପତି ।
କର ପ୍ରତିକାର ହ୍ୟୋ ପଞ୍ଚଇ ମୂରତି ।୫୭୦ ।
ବ୍ରହ୍ମାର ବଚନ ସେ ଶୁଣିଣ ତ୍ରିପୁରାରି ।
ହୃଦପଦ୍ମ ମଧ୍ୟେ ସେ କଥାନ୍ତି ବିଚାରି । ୫୭୧ ।
ବ୍ରହ୍ମାଙ୍କୁ ବୋଇଲେ ସେ କହିବା ଯାଇ ହରି ।
ସେ ସେ ଅସୁରବଳ ପାରିବ ସଂହାରି । ୫୭୨ ।
ଆନେ କ ସଂସାର ହୋଇବାକ ଥିର ।
ସେ ସେ ଅଟଇ ନା ଆମ୍ଭର ଠାକୁର । ୫୭୩ ।
ଯେତେ ବୋଲି ହର ସନଧେ ଦେବଗଣ ।
ବିଷ୍ଣୁ ଚରଣେ ଯାଇ ପଶିଲେ ଶରଣ । ୫୭୪ ।
କହିଲେ ସଂସାର ଦୁଃଖ ଗରୁଡ଼ଧ୍ୱଜ ।
ହେ ଦେବ ନାରାୟଣ ପ୍ରତିକାର କର । ୫୭୫ ।
ଅସୁରେ ପ୍ରବଳ ପରଜା ଜନ ଖାନ୍ତି ।
ଦିବସେ ସମୁଦ୍ର ଭିତରେ ଲୁଚିଥାନ୍ତି । ୫୭୬ ।
ତୁ ଦେବ ଜଗତ ଧାରଣ ବ୍ରହ୍ମରଣି ।
ସୃଷ୍ଟି ରକ୍ଷାକର ଦେବ ଦଇତ ବିନାଶି । ୫୭୭ ।
ସ୍ୱାମୀ ବୋଲନ୍ତି ତୁ ଶୁଣ ପିତାମହ ।
ମୋହ୍ୟୋ ବୋଇଲି ବୋଲି ଅଗସ୍ତିଙ୍କି କହ । ୫୭୮ ।
ସେ ଯେ ନିବର୍ତ୍ତି କରିବ ଅବଶ୍ୟ ।
ଶୁଣିଣ ଦେବତାମ୍ୟେ ଗଲେ ମୁନି ପାଶ । ୫୭୯ ।
ବ୍ରହ୍ମା ବୋଇଲେ ସେ ଅଗସ୍ତିଙ୍କ ଗୃହଂ ।
ବାସୁଦେବ ଅଜ୍ଞା ଯେ ଅଟଇ ତୋର ତହିଂ । ୫୮୦ ।
ଦିବାକାଳେ ଅସୁରେ ସମୁଦ୍ରେ ପଶିଥାନ୍ତି ।
ନିଶା ହୋଇଲେ ସେ ପରଜା ଜନ ଖାନ୍ତି । ୫୮୧ ।
ଯେତେକଙ୍କ କାରଣେ ତୁ କର ତପସ୍ୟା ।
ବ୍ରହ୍ମାଙ୍କୁ ବୋଇଲେ ତୁମ୍ଭେମାନେ ଚଳ ଦେବପୁରୀ । ୫୮୨ ।
ଅବଶ୍ୟ କରିବଇଂ ଯେ ଆଜ୍ଞା କହିଲେ ଦେବହରି ।
ଶୁଣି ଦେବତାଏ ଗଲେ ନିଜ ପୁରୀ । ୫୮୩ ।

Digitized by srujanika@gmail.com

ଦେବଙ୍କର ବୋଲେ ଗଲା ସିନ୍ଧୁକୂଳକୁ ।
ଏକ ଚଳୁକରେ ଧଇଲା ମହାଜଳ । ୫୮୪ ।
ସପ୍ତସିନ୍ଧୁ ମୁନି ପିଇଲେ ଅବହେଳେ ।
ଅଗୋଚର କର୍ମ କଲା ତପଶୀଳେ । ୫୮୫ ।
ପାଣି ଶେଷନ୍ତେଣ ଦିଶିଲେ ଅସୁର ।
ଦେବତାଙ୍କ ସଙ୍ଗେ ଅନେକ ସମର ଘୋର । ୫୮୬ ।
ଧର୍ମବଳ ଘେନି ଅମରଗଣେ ଯେ ବଳ ।
ଯୁଦ୍ଧ କରନ୍ତି ଯେ ଅସୁରଗଣ ଦଳ । ୫୮୭ ।
ଦାନବ କୁଳ ହୋଇଲେ ସମସ୍ତେ ହତ ।
ପୁଣି ସଂସାର ଯେ ରହିଲେ ବିଧାତ । ୫୮୮ ।
ଅଗସ୍ତିଙ୍କି ଦେବତାଏ ପ୍ରଶଂସା ଯେ କରି ।
ଧନ୍ୟ ଧନ୍ୟ ମହିମା ତୋହର ତପଶ୍ରୀ । ୫୮୯ ।
ସପ୍ତସିନ୍ଧୁ ମୁନି ଏକ ଚଳୁ କଲୁ ।
ମହାଯୋଗବଳେ ଉଦରେ ଭସ୍ମ କଲୁ । ୫୯୦ ।
ତୋହୋର ପ୍ରସାଦେ ଯେ ଅସୁର ବଳ ହତ ।
ଏବେ ସେ ସ୍ଥିର ହୋଇଲା ଜଗତ । ୫୯୧ ।
ସିନ୍ଧୁ ଶୋଷିଲୁ ତୁ ଜଗତର ହିତେ ।
ପୁନରପି ସମୁଦ୍ର ପୂରିଅ ତପୋବଳେ । ୫୯୨ ।
ଅଗସ୍ତି ବୋଇଲେ ମୁଂ ଦେବ କାହୁଂ ଆଣି ।
ଜୀର୍ଣ୍ଣ ହୋଇଲାଣି ସପତସିନ୍ଧୁ ପାଣି । ୫୯୩ ।
ଶୁଣିଣ ଦେବତାଏ କହିଲେ ମୁରାରି ।
ଅଗସ୍ତି ପିଇଲା ସପତ ସିନ୍ଧୁ ବାରି । ୫୯୪ ।
ମାଗିଲେ ନଦେଲା ସେ ଜୀର୍ଣ୍ଣ କଲା ଦେହ ।
ତାହା ଶୁଣି ହସିଲେ ଦେବ ଚତୁର୍ବାହୁ । ୫୯୫ ।
ତୁମ୍ଭେ ଦେବତାଏ ନିଜପୁରେ ଯାଅ ।
କେତେହେଂକ କାଳ ପଠାଇଣ ଥାଅ । ୫୯୬ ।
ମୁହିଂ ଏଥକଇ ଜାଣଇ ନ ବୁଦ୍ଧି ।
ଯେଣେ ସେ ପୂରିବ ସପତ ପୟୋଧି । ୫୯୭ ।
ଲକ୍ଷ୍ମୀପତି ତହୁଂ ଏସନ ବୋଲି ପାଇ ।
ଦେବଗଣେ ଘେନି ଧାତା ଗଲେ ତୋଷହୋଇ । ୫୯୮ ।
ଶୁଣ ତୁ ଶ୍ରୀରାମ ହୋ ଗାଧିସୁତ କହେ ।
ତହୁଂଣ ଶ୍ରୀହରି କପିଳମୁନି ରୂପ ହୋଏ । ୫୯୯ ।

Digitized by srujanika@gmail.com

ପାତାଳ ପୁରେ ସେ ତପ କରଇ ଯେକା ବସି ।
ସେ ଯେବେ ସଗର ପୁତ୍ର ହୋଏ ଧ୍ୱଂସି । ୭୦୦ ।
ସେ କଥା ହେତୁ ହାଦେ ହରଲ୍ଲ ଇନ୍ଦ୍ର ଅଶ୍ୱ ।
କପିଳ ମୁନି ପାଶେ ବାନ୍ଧିବାର ଅଶ୍ୱ । ୭୦୧ ।
ପିତାର ଆଜ୍ଞା ଯେବେ ପୁତ୍ର ଲଙ୍ଘି ଗଲେ ।
ପୂର୍ବକର୍ମ ଯେନେ ଦହନ ହୋଇଲେ । ୭୦୨ ।
ସେହାଙ୍କର ଅଂଶେ ଭଗୀରଥ ଜାତ ।
ମୃଗୟା ଜମିଯେ ସେ ଗଲ୍ଲ ନରନାଥ । ୭୦୩ ।
ପାତାଳ ଭୁବନେ ଦେଖିଲକ ଯାଇ ।
ଅଗ୍ନି ଜଳୁଅଛୁ ପ୍ରତାପ ତେଜ ହୋଇ । ୭୦୪ ।
ତ୍ରୈଲୋକ୍ୟ ଦହିବ କି ସେ ପ୍ରଳୟ ଅନଳ ।
ଦେଖି ଭୟେ କଲେ ଭଗୀରଥ ମହୀପାଳ । ୭୦୫ ।
ବାହୁଡ଼ି ଆସି ରାଜା ନିଜପୁରେ ଯାଇ ।
ମନ୍ତ୍ରୀ ଅମାତ୍ୟ ରାଇଣ ପଚ୍ଚରଇ । ୭୦୬ ।
ପାତ୍ର ମନ୍ତ୍ରୀ କହିଲେ ପୂର୍ବର ସିସ କଥା ।
ଶୁଣିଣ ବିସ୍ମୟେ ହୋଇଲେ ମହାରଥୀ ୭୦୭ ।
ବୋଇଲ୍ଲ କେମନ୍ତ ଶୀତଳ ହୋଇବ ମୋହର ବଂଶ ।
ପ୍ରତିକାର ନକଲେ ଜୀବନେ କାର୍ଯ୍ୟ କିସ । ୭୦୮ ।
ମନ୍ତ୍ରୀ ବୋଇଲେ ତୁ ଶୁଣ ନୃପମଣି ।
ଆକାଶୁଂ ଗଙ୍ଗାକୁ ତୁ ପାଶରୁ ଯେବେ ଆଣି । ୭୦୯ ।
ତେବେ ସେ ରକ୍ଷା ହୋଇବ ତୋର କୁଳ ।
ଶୁଣିଣ ସନ୍ତୋଷ ଯେ ହୋଇଲ୍ଲ ମହୀପାଳ । ୭୧୦ ।
ମନ୍ତ୍ରୀଙ୍କର ଗୋଚରେ ରାଜ୍ୟ ସମର୍ପିଲ୍ଲ ।
ଗୋକର୍ଣ୍ଣିକା ତୀର୍ଥକୁ ହେଂ ତପ କରଗଲ୍ଲ । ୭୧୧ ।
ବିରଜା ମଣ୍ଡଳେ ଦଶ ସହସ୍ର ପୁରୀ ।
ବାରେହା ମୂର୍ତ୍ତି ରୂପେ ଅଛନ୍ତି ଶ୍ରୀହରି । ୭୧୨ ।
ଆଖଣ୍ଡଳେଶ୍ୱର ମୂରତି ତ୍ରିଲୋଚନ ।
ବିରଜା ବିଜୟେ ପାପ ବିମୋଚନ । ୭୧୩ ।
ବଇତରଣୀ ନଦୀ ଦଶାଶ୍ୱମେଧ ଘାଟ ।
ଗଙ୍ଗା ଭେଦିଅଛୁ ପାତାଳକୁ ବାଟ ୭୧୪ ।
ବହ୍ନିଲିଙ୍ଗ ଆସ୍ଥାନ ଦୃଷ୍ଟି ବାଣରାଶି ।
ଭଗୀରଥ ପ୍ରବେଶ ହୋଇଲ୍ଲ ତହିଂ ଆସି । ୭୧୫ ।

ଊର୍ଦ୍ଧ୍ୱବାହୁ ହୋଇଣ ତପ କରଇ ରାଏ ।
ଶୀତ ଖରା ବରଷା ଷଡ଼ଋତୁ ସହେ । ୬୧୬ ।
ଯୋଗେଣ ବ୍ରହ୍ମା ସେ ପୁରକୁ ଆସିଥିଲେ ।
ଗୋକର୍ଣ୍ଣିକା ତୀର୍ଥେ ଭଗୀରଥଙ୍କ ଦେଖିଲେ । ୬୧୭ ।
ବ୍ରହ୍ମା ବୋଇଲା ରାଏ କମ୍ପା କରୁ ତପ ।
ମୁହିଂ ସେ ବିଧାତା ଜଗତର ବାପ । ୬୧୮ ।
ଶୁଣିଣ ନମସ୍କାର କଲାକ ନୃପତି ।
କର ଦୁଇ ଯୋଡ଼ିଣ ସେ ବୋଲଇ ଭଗୀରଥ । ୬୧୯ ।
ହେ ପିତାମହ କର ତୁ ମୋତେ ଦୟା ।
ଦହନ ହୋଇଅଛୁ ପିତୃଲୋକଙ୍କର କାୟା । ୬୨୦ ।
କପିଳ ମୁନି କୋପେ ସର୍ବେ ହୋଇଲେ ହତ ।
ବଂଶ ରକ୍ଷ କର ମୋର ଜଗତର ତାତ । ୬୨୧ ।
ଆକାଶରୁ ଗଙ୍ଗା ମୋତେ ଆଣିତ ବୁଦ୍ଧି କହ ।
ରାଜା ବଚନ ଶୁଣିଣ ବୋଲନ୍ତି ପିତାମହ । ୬୨୨ ।
ବିଷ୍ଣୁର ଚରଣେ ସେ ଅଛନ୍ତି ସୁରସୁରୀ ।
ବାମନ ମୂରତି ଯହୁଁ ଧଇଲେ ମୁରାରି । ୬୨୩ ।
ବଳିର ଠାରୁଁ ସେ ଘେନିଲେ ଭୂମିଦାନ ।
ତ୍ରିବିକ୍ରମ ରୂପ ଧଇଲେ ନାରାୟଣ । ୬୨୪ ।
ଆକାଶକୁ ପାଦ ବଢ଼ାଇଲେ ହରି ।
ମୁହିଂ ତହିଁ ଅଭିଷେକ କଲଇ ମୁରାରି । ୬୨୫ ।
ବାସୁଦେବର ବିଶ୍ୱରୂପ ଲକ୍ଷ ଯୋଜନେ ।
ତହିଁ ଗଙ୍ଗା ଦେବୀ ଦେଖିଲେ ସୁରଗଣେ । ୬୨୬ ।
ତୁ ଏବେ ନୃପତି ବିଷ୍ଣୁକୁ ଧ୍ୟାନ କର ।
ଏକ ଚିତ୍ତ ହୋଇ ନାରାୟଣଙ୍କୁ ସୁମର । ୬୨୭ ।
ଅବଶ୍ୟ ପ୍ରାପତ ହୋଇବ ଗଙ୍ଗା ତୋତେ ।
ଯୋଗବଳେ ଦୃଶ ହୋଇଲାକ ମୋତେ । ୬୨୮ ।
ଏତେ ବୋଲି ଧାତା ନିଜପୁରେ ଯାଇ ।
ଭଗୀରଥ ବିଷ୍ଣୁଚରଣେ ଚିତ୍ତ ଦେଇ । ୬୨୯ ।
କଠୋର ତପ ସେ ଯେ କରଇ ନରସାଇଂ ।
ଏକା ଅଙ୍ଗୁଷ୍ଠିରେ ବରଷେ ଉଭା ହୋଇ । ୬୩୦ ।
ନାରାୟଣ ନାମ ଜପଇ ଅନୁବ୍ରତେ ।
କାଳେଣ ପ୍ରସନ୍ନ ହୋଇଲେ ପଦ୍ମନେତ୍ରେ । ୬୩୧ ।

Digitized by srujanika@gmail.com

ନୀଳ ଜଳଧର ତନୁ ଶୋଭାବନ ।
ବିଜୁଳି ରେଖା ଜାଣି ପୀତବସନ ପରିହରଣ । ୭୩୨ ।
କଟିମେଖଳା ମଣି ଉଡ଼ୁପ ଗଣ କାନ୍ତ ।
କମଳା ବଲ୍ଲଭ କଣ୍ଠେ କଉସ୍ତୁଭ କୋଳ । ୭୩୩ ।
ବାଟୁଳି ମୁକୁତା ଶତେ ସରି ମାଳ ।
ନବରତ୍ନ ପଦେକ ଶ୍ରୀହରି କଣ୍ଠେ ଲୁଳ । ୭୪୩ ।
କର୍ଣ୍ଣରେ କୁଣ୍ଡଳ ଶୁଦ୍ଧ ହେମ ମୟେ ।
ସୁରୁ ଶୁକ୍ର ଯେହ୍ନ କି ପୂର୍ଣ୍ଣିମୀ ଉଦୟେ । ୭୩୫ ।
ନୀଳ ପଦ୍ମଫଳ ଯେହ୍ନେ ପଦ୍ମକର ବେଢ଼ ।
ଗୋବିନ୍ଦର ମୁଖ ତେସନ ଶୋଭାବନ । ୭୩୬ ।
ସୁଦୀର୍ଘ ନାସା କସ୍ତୁରୀ ରେଖ ଦିଶ ।
ଦରଫୁଟି କୁସୁମ ଜାଣି ହୁଅନ୍ତି ହସହସ । ୭୩୭ ।
ସିନ୍ଦୂରେଣ ଗଜବନ୍ତ ମୁକୁତାର ଆଭା ।
ନୀଳମଣି ଦୀପିତ ଦାଢ଼ୀ ହେମ ପ୍ରଭା । ୭୩୮ ।
ଲଲାଟେ କସ୍ତୁରୀ ଚିତା ଶୋଭାବନ ।
ଶିରରେଣ ମୁକୁଟ ଯେ କରନ୍ତି ବିଜପନ । ୭୩୯ ।
ରତ୍ନଙ୍କର ଗନ୍ଧର୍ବ କି ଗନ୍ଧଙ୍କର ମେଳା ।
ଗଳାରେ ଲମ୍ବଇ ପଞ୍ଚପୁଷ୍ପ ମାଳା । ୭୪୦ ।
ସର୍ବାଙ୍ଗେ ଚନ୍ଦନ ଅଗ୍ରଗନ୍ଧ ମିଶି ।
ନବଘଡ଼ କସ୍ତୁରୀ ପାଣ୍ଡୁର ବର୍ଣ୍ଣଦିଶି । ୭୪୧ ।
ଶ୍ରୀବତ୍ସ ଲାଞ୍ଛନ ଉରେ ବିରାଜଇ ।
ବିପୁଳ ଚତୁର୍ହସ୍ତେ ଶଙ୍ଖ ଚକ୍ର ସାଜଇ । ୭୪୨ ।
ସାରଙ୍ଗ ଧନୁ ଶୋହେ କୌମୋଦ ଗଦା କରେ ।
ଗରୁଡ଼ ପିଠିରେ ବିଜୟେ ଚକ୍ରଧରେ । ୭୪୩ ।
ଭଗୀରଥ ସମ୍ମୁଖରେ ମିଳିଲେ ସ୍ୱାମୀ ଆସି ।
ବର ମାଗ ବୋଲି ଯେ କହିଲେ ଅଳପ ହସି । ୭୪୪ ।
ଦେଖି ନୃପମଣି କରଇ ନମସ୍କାର ।
ବୋଲଇ ହେ ନାଥ ମୋତେ କର ପ୍ରତିକାର ।
କପିଲମୁନି କୋପେ ବଂଶ ମୋର ଦହି ।
ଇହ ପରଲୋକେ ଗୋତ୍ରକୁ ଲଜ ହୋଇ । ୭୪୬ ।

Digitized by srujanika@gmail.com

ତୋହୋର ଚରଣେ ଅଛଇ ସୁରନଦୀ ।
ତାହା ମାଗି ତ କରଇ ଦେବ ବୁଧି । ୪୭୭ ।
ତେବେ ସେ ଶୀତଳ ହୋଇବ ମୋର କୁଳ ।
ଦେଖି ଗଙ୍ଗାଦେବୀ ଗୋବିନ୍ଦ ଗୋପାଳ । ୬୪୮ ।
ସ୍ୱାମୀ ବୋଇଲେ ଯେବେ ଦେବୀ ସୁରସୁରୀ ।
ତାହାର ଅର୍ଦ୍ଧୋଳ କି ସହିବ ବସୁନ୍ଧରୀ । ୬୪୯ ।
ରୁଦ୍ର ଅବା ବଳେ ଧରିପାରଇ ଶିରେ ।
ତାହା ମଣାଇ ତୁ ଆଣ ନୃପବରେ । ୬୫୦ ।
ତାହାର ଅଇଲେ ଟସ ଦେବଇ ଗଙ୍ଗା ମୁହିଂ ।
ସେତେ ବୋଲି ଅନ୍ତର୍ଦ୍ଧାନେ ଗଲେ ଶ୍ରୀପ୍ରକାଶ ଇଂ । ୬୫୧ ।
ହରଚ୍ଛ ଏସନ ବଚନ ଶୁଣି ରାସେ ।
ଗଙ୍ଗାଧରକଇ ସୁମରି ତପକଯେ । ୬୫୨ ।
ନୀର ଆହାର କରି ବାଲୁକା ଲିଙ୍ଗ ଥାପି ।
ହୃଦ କମଳେ ମନ ନୟନ ନରୋପି । ୬୫୩ ।
ବୃକ୍ଷର ମୂଳେ ତମ୍ବାର ସୂଚୀ ଫୋଡ଼ି ।
ବସ୍ତ୍ର ତଇଲ ଦେଇ ଜାଳଇ ଦହୁଡ଼ି । ୮୫୪ ।
ଅନେକ କଠୋର ତପ ଯହୁଂ କଲା ।
ସଦାଶିବ ଜାଣି ପ୍ରସନ୍ନ ହୋଇଲା । ୬୫୫ ।
ବୃଷଭ ବାହାନ ଏଡ଼ଙ୍ଗ ଚର୍ମବାସ ।
ତ୍ରିଶୂଳ ଡମ୍ବରୁ କରେ ଅନ୍ଧ ଫାଶ । ୬୫୬ ।
ବାସୁକି ନାଗ ଯେ କଣ୍ଠେଣ ତାହାର ।
ଜଟା ମୁକୁଟ ଅର୍ଦ୍ଧ ଚନ୍ଦ୍ର ଶୋହଇ ଶିରର । ୬୫୭ ।
ଶୁଦ୍ଧ ସ୍ଫଟିକର ଦିଶଇ ତନୁବର୍ଣ୍ଣ ।
ନୃପଙ୍କର ଅଗେ ବିଜୟେ ତ୍ରିଲୋଚନ । ୬୫୮ ।
ଶଙ୍କର ବୋଲନ୍ତି ହୋ କସ ଅର୍ଥେ ସେବା ।
ମାଗ ହୋ ନୃପଙ୍କ ବର ତୋତେ ଦେବା । ୬୫୯ ।
ଶୁଣିଣ ରାଜନ ନମସ୍କାର କରନ୍ତେ ଶୋଇ ।
କର ଦୁଇ ଯୋଡ଼ି କହଇ ଉଭା ହୋଇ । ୬୬୦ ।
ଦେବାଦିଦେବ ସଦାଶିବ ଶଙ୍କର ଶୂଳଧାରୀ ।
କପିଳ ଋଷି ମୋର ଗୋଷ୍ଠୀକୁ ଲୋପ୍ୟ କଲା । ୬୬୧ ।
ସଗର ରାଜାର ଷାଠିଏ ସହସ୍ରେ ସୁତ ।
ନୟନ ତେଜେ ସେ ଦହିଲେ ଅପାବନ୍ତ । ୬୬୨ ।

Digitized by srujanika@gmail.com

ତେଣୁ ଦୁଃଖୀ ମୁହିଂ ହୋଇଲି ଗୋସାଇଂ ।
ରାଜ୍ୟ ସୁଖ ଭୋଗେ ପ୍ରୟୋଜନ ନାହିଂ । ୭୬୩ ।
ଗଙ୍ଗା ଆଣିଲେ ଯେ କୁଟୁମ୍ବ ହୋଇବେ ସୁସ୍ଥ ।
ତେଣୁ ଯେ ଅନେକ ପାଇଲଇ ଦୁଃଖ । ୭୬୪ ।
ଶ୍ରୀହରି ପ୍ରସନ୍ନ ହୋଇଲେ ଆସି ମୋତେ ।
ଗଙ୍ଗା ମାଗିଲି ମୁଂ ବଂଶରକ୍ଷା ନିମିତ୍ତେ । ୭୬୫ ।
ଶ୍ରୀହରି ବୋଇଲେ ମୁଂ ଦେବଇ ସୁରପୁର ।
ଶଙ୍କର ସେ ତାହା ପାରିବେ ଧରି । ୭୬୬ ।
ପୃଥ୍ୱୀ ନ ରହଇ ତାହାର ପାଦଭରେ ।
ଆନନ୍ଦେ ଭଜନ ହୋଇବ ତାହାରେ । ୭୬୭ ।
ସେବ ତୁ ମଣାଇ ଆଣ ଦେବ ହର ।
ଦେବଇ ଗଙ୍ଗା ସତ୍ୟ ହୋଇଲା ମୋହୋର । ୭୬୮ ।
ତେଣୁ ଯେ ସ୍ୱାମୀ କଲି ତୋତେ ପୂଜା ।
ତୁ ହୋ ତ୍ରିଲୋଚନ ଲିଙ୍ଗ ମହାରାଜା । ୭୬୯ ।
କର ଅନୁଗ୍ରହ ସ୍ୱାମୀ ଧର ସୁରପୁର ।
ଗୋତ୍ର ମୋର ରକ୍ଷାକର ହେ ତ୍ରିପୁରାରି । ୭୭୦ ।
ଏତେ ବୋଲି ରାଜା ସଦାଶିବ ପୟରେ ।
ପ୍ରଣମନ୍ତ ଭରଇ କର ଦୁଇ ଦେଇ ଶିରେ । ୭୭୧ ।
ଅନେକ ସ୍ତୁତି କରଇ କାପେଁ ମଉହୋଇ ।
ରାଜା ବଚନ ଦେଖି ସଦାଶିବ ବୋଲଇ । ୭୭୨ ।
ଧରିବିଂ ଗଙ୍ଗା ଦେଉ କମଳାର ସାଇଂ ।
କହୁଅଛୁ ସତ୍ୟ ବଚନ ମୋର ଏହୁ । ୭୭୩ ।
ସୁମରିଲେ ଆସିବା ବୋଲି ଗଲେ ଶୂଳପାଣି ।
ବାସୁଦେବ ଧ୍ୟାୟେ ସେ ଜହ୍ନୁ ନୃପମଣି । ୭୭୪ ।
ପ୍ରସନ୍ନ ହୋଇଲେ ତାହା ଦେବ ଚକ୍ରଧାରୀ ।
ଭଗୀରଥ ହସ୍ତେ ହରି ଛାଡ଼ିଲେ ପବିତ୍ର ବାରି । ୭୭୫ ।
ଜାଣିଣ ସଦାଶିବ ଧରିଲେ ତାହା ଶିରେ ।
ରହିଲା ଗଙ୍ଗା ବୁନ୍ଦ ଜଟାର ଭିତରେ । ୭୭୬ ।
ବିଷ୍ଣୁର ପାଦୁକ ପାଇଣ ଶିବ ତୋଷ ।
ଭଗୀରଥ ହସ୍ତେ ତାହା ଧଇଲେ ମହେଶ । ୭୭୭ ।
ଜଟା ମେଲାଇଣ ଗଙ୍ଗା ଦେଲେ ଛାଡ଼ି ।
ମେରୁର ଭିତରେ ଯାଇ ସୁରପୁର ପଡ଼ି । ୭୭୮ ।

Digitized by srujanika@gmail.com

ଆସି ନପାରଣ ସେ ରହିଲା ଗୁପତେ ।
ମେରୁକୁ ସ୍ତୁତି ପୁଣ କରଇ ନୃପତେ୍‌ୟ । ୬୭୯ ।
ହେ ମହାମେରୁ ମୁହିଂ ଅଟଇ ମହାଦୁଃଖୀ ।
ତୁ ଯେବେ ଛାଡ଼ିବୁ ଟେବେଳ ମୁଖୀ । ୬୮୦ ।
ପିତୃଲୋକେ ମୋହୋର ହୋଉଛନ୍ତି ଦଗ୍ଧ ।
ତାହାଙ୍କର କଷ୍ଟେ ମୁଂ ନ.ଗ୍ରଯୁକେ ଧ୍ୟାଇ । ୬୮୧ ।
ସେ ମୋତେ ପ୍ରସନ୍ନ ହୋଇଣ ଗଙ୍ଗା ଦେଲେ ।
ସଦାଶିବ ତାହା ଶିରରେ ଧଇଲେ । ୬୮୨ ।
ମୋହୋର ଭଗତି ଦେଖିଣ ପୁଣ ଛାଡ଼ି ।
ତୋହୋର ଉପରେ ଆସି ଜଳ ପଡ଼ି । ୬୮୩ ।
ତୁସେ ମହାଦଶ ନକର ଗୁପତ ।
ଦେଖି ଗଙ୍ଗା ମୋହୋର ଶୀତଳ ହୋଉ ଗୋତ୍ର । ୬୮୪ ।
ମେରୁ ବୋଇଲା ହୋ ଯାଇତ ବାଟ ନାହିଂ ।
ଦେଖ ସେ ଗଙ୍ଗା ଦେବୀ ଅଛଇ ଯେଥେ ରହି । ୬୮୫ ।
ତୁଂହା ନୃପତି ପ୍ରବୋଧନା ତାଙ୍କୁ କର ।
ମେରୁର ଉତ୍ତର ଶୁଣିଣ ନୃପବର । ୬୮୬ ।
ହେମବନ୍ତ ନନ୍ଦନଙ୍କ ସେ ବହୁତ ସ୍ତୁତି କଲା ।
କାରୁଣ୍ୟ ମତ ହୋଇ ଭଗୀରଥ କହିଲା । ୬୮୭ ।
ଅନେକ ଦୁଃଖେ ମାଗୋ ଆଣିଲି ତୋତେ ମାଗି ।
ତୁ କ୍ଷମା ନହୁ ମ ଗୋ ସ୍ୱେଣେ ତେବେ ଲାଗି । ୬୮୮ ।
ଯେ ମୋର ଆକୁଳ ନ ଦେଖୁ କ୍ଷମା ମାୟେ ।
କ ଅନୁଗ୍ରହ ଯିବା ତହିଂ ଘାୟେ । ୬୮୯ ।
ଗଙ୍ଗା ବୋଇଲେ ମୁଂ ଅଟଇ ମୂବତୀ ।
ବାଟ ନ ପାଇଣ ଯିବି କେଉଂ କତ । ୬୯୦ ।
ତୁ ଯେବେ ପାରୁ ସଜା ଅଇରାବତ ଅଣି ।
ସେ ଯେବେ ଦାନ୍ତେଣ ପାରଇ ମେରୁ ହାଣି । ୬୯୧ ।
ତେବେ ସେ ବାହାର ହୋଇ ମୁହିଂ ଯିବି ।
ତୋହୋର ବଚନ ନିଷ୍ଟଯେ ପାଳିବି । ୬୯୨ ।
ଶୁଣି ଭଗୀରଥ ବିସ୍ମୟ ମନ ହୋଇ ।
ଅଇରାବତ ହସ୍ତୀଙ୍କ ଭେଟିଲେ ସ୍ୱର୍ଗେ ଯାଇ । ୬୯୩ ।
ବୋଇଲା ମହାତମା ହୋ ମୋତେ ଦୟାକର ।
ଗଙ୍ଗା ପଶିଅଛି ମେରୁର ଭିତର । ୬୯୪ ।

Digitized by srujanika@gmail.com

ବାଟ ନ ପାଇଣ ନୁଅରଇ ଆସି ।
ତୁହ୍ମେ ମହାରାଜ ଆମ୍ଭଙ୍କୁ ପଥ ଦେଖି । ୬୯୫ ।
ଗଙ୍ଗା ନେଲେ ମୋହୋର ବଂଶ ରକ୍ଷାହୋଇ ।
କର ଦୁଇ ଯୋଡ଼ି ନୃପତି ସ୍ତୁତି କରଇ । ୬୯୬ ।
ଶୁଣିଣ ଅଇରାବତ ସନମତ କଲା ।
ନୃପତିକ ରାଇ ସ୍ନେକାନ୍ତେ ବୋଇଲା । ୬୯୭ ।
ଇନ୍ଦ୍ର ଯେ ସ୍ୱାମୀ ମୋର ଅଟଇ ବିଶ୍ୱାସ ମିତ୍ର ।
ତାହାକୁହିଂ କଅସ୍ତେ କହହୋ ନୃପତୀ । ୬୯୮ ।
ନ କହୁଣ ଗଲେ ବୋଲିବ ମତେ ମନ୍ଦ ।
ଯାଅ ନୃପବର କହ ଯାଇ ଇନ୍ଦ୍ର । ୬୯୯ ।
ଶୁଣିଣ ମହାରଥୀ ଗଲା ଝର କରି ।
ବାସେବ ଅଗ୍ରେ ଯେ କହଇ କରଯୋଡ଼ି । ୭୦୦ ।
ଶ୍ରୀଦେବ ସୁରପତି କଅସ୍ତେ ମୋତେ ଦେବା ।
ତନୁପୁରେ ସ୍ୱାମୀ ଅଟୁ ତୁ ମଘବା । ୭୦୧ ।
ପିତୃଲୋକମାନେ ଦହ୍ୟ ହେଉଛନ୍ତି ।
ଗଙ୍ଗା ଦେଲେ ସେ ଯେ ମୁକତି ଲଭନ୍ତି । ୭୦୨ ।
ବାସୁଦେବ ତୁମ୍ଭେ ମୋତେ ଦେଲେ ସୁରସୁରୀ ।
ମହେଶ୍ୱର ମସ୍ତକେ ଧଇଲେ ପଚାଶ ବାର । ୭୦୩ ।
ମୋହୋ ହିତେ ରୁଦ୍ର ବେଗେ ଛାଡ଼ିଦେଲେ ।
ମେରୁର ଶିଖରେ ସେ ଆସିଣ ପଡ଼ିଲେ । ୭୦୪ ।
ବାଟ ନ ପାଇଣ ସେ ନ ପାରନ୍ତି ଆସି ।
ତୁ ସ୍ନେହେ ସ୍ୱାମୀ ଅଇରାବତ ଦେସି । ୭୦୫ ।
ତାହା ଦନ୍ତେଣ ଫୁଟିବ ମେରୁ ଶୃଙ୍ଗ ।
ତେଣୁ ପ୍ରାପତ ମୋତେ ହୋଇବ ଦେବ ଗଙ୍ଗ । ୭୦୬ ।
ଶୁଣିଣ ପ୍ରସନ୍ନ ଯେ ହୋଇଲେ ସୁରପତି ।
ଅଇରାବତ ଦେଇ ବୋଇଲେ ତଡ଼ିତ । ୭୦୭ ।
ଯାଅ ତୁ ମହାରାଜ ଭଗୀରଥ ସଙ୍ଗେ ।
ମେରୁ ଫଟାଇଣ ତୁ ବାହାର କର ଗଙ୍ଗେ । ୭୦୮ ।
ଇନ୍ଦ୍ର ଆଦେଶ ପାଇଣ ମହାଗଜ ।
ଗର୍ଜନ କରନ୍ତେ ଯେ ପାଇଂଲା ମହାତେଜ । ୭୦୯ ।
ଥୋକାସ୍ତେକ ଦୂରେ ସେ ଗଜାକଇ ରାଇ ।
ସ୍ନେକାନ୍ତେ କହେଶ ସେ ସୁପତେ କହଇ । ୭୧୦ ।

Digitized by srujanika@gmail.com

ତୁ ହୋ ନୃପବର ଶୁଣ ମୋହୋର ବାଣୀ ।
ମେରୁକୁ ମୁହିଂ ଯେ ପକାଇବ ହାଣି । ୭୧୧ ।
ଗଙ୍ଗା ରମଣୀ କରାଇବୁ ହାଦେ ମୋତେ ।
ନୋହିଲେ ଯେତେ କର୍ମ ମୁଂ କରିବ କେମନ୍ତେ । ୭୧୨ ।
ସେ ଯେ ଗିରିବର ପୃଥୀକ ଧରଣା ।
ଅଦୋଷେ ପାଇବା କର୍ମା ଯେତେହେକ ହୋଲଣା । ୭୧୩ ।
ରାଜା ବୋଇଲେ ଯେ ଗନ୍ଧର୍ବେ ଶ୍ରିଷ୍ଟି ।
ମୁହିଂ କେମନ୍ତେ ଜାଣିମି ହୋ ଚରିତ ତାହାର । ୭୧୪ ।
ହେ ମତଗଜ ତୁ ନ ଧର ଆନ ମନ ।
ମୁହିଂ ସେ କରେଖ ଅଟଇ ଆରତ ଜନ । ୭୧୫ ।
ଗୃଳ ଯେବେ ଯିବା ହୋ ଦୁଷ୍ଟପଣ ଛାଡ଼ି ।
ତଇଲୋକେ ତୋତେ ବୋଲନ୍ତି ମହାଗାଢ଼ । ୭୧୬ ।
ଧର୍ମ ନୋହି ତୁ ଅଯାଷ୍ଟମ କଥା କହିଲୁ ।
ନଜାଣି କର୍ମା ତୁ ଦେଉଳ ମୁଣ୍ଡେ ପେଲୁ । ୭୧୭ ।
ହସ୍ତୀ ବୋଇଲା ତୁ ପଗ୍ଭର ଅସ ଯାଇ ।
ଯେତେକେ କଥା ନୋହିଲା ମୁଂ କେବେହେଂ ନ ଯାଇ ।୭୧୮।
ଶୁଣିଣ ନୃପତି ଭାଳଇ ପଞ୍ଚଭୂତ ।
କେମନ୍ତେ ପୂଚ୍ଛିବ ସେ ଅଟଇ ଦେବମାତ । ୭୧୯ ।
ପୋଡ଼ୁ ମୋହୋର କର୍ମ କର୍ମା ମୁଂ ଜଇଂଅଛୁ ।
ଯେତେକଥା କେହ୍ନେ ଯିବ ଗଙ୍ଗାକଇ ପୂଚ୍ଛି । ୭୨୦ ।
ବସ୍ତୁ ଯେ ଚଢ଼େ ସେ ଗଲା ରାହେ ଚଳ ।
କରଦୁଇ ଯୋଡ଼ି ସୁରସୁରୀ ଆଗେ ମିଳ । ୭୨୧ ।
ଦେଖି ପଗ୍ଭରନ୍ତି ହୋ ଅଇଲ୍‌କ କଥା ।
ଲଜେଣ ଶିର ଲୁଚ୍ଛଇଲା ଭଗୀରଥ । ୭୨୨ ।
ଯୋଗବଳେ ଗଙ୍ଗା ଜାଣିଲେକ ତାହା ।
ଭଗୀରଥ ଆଗେ ଗଜ କହିଲାକ ଯାହା ଯାହା । ୭୨୩ ।
କୋପେଣ ସୁରସୁରୀ କର୍ମଇ ଥରହର ।
ତରଙ୍ଗ ରଙ୍ଗେ ଯେ ତେଜ ପରଖର । ୭୨୪ ।
ଦେବୀ ବୋଇଲା ତୁ ଆଣ ତାକୁ ରାଇ ।
ଧରି ପାରିବ ଯେବେ ହୋଉ ମୋହୋର ସାଇଂ । ୭୨୫ ।
ଆମ୍ଭେ ସ୍ତ୍ରିରି କହେ ଅବଳା ନାମ ବହୁ ।
ବଳେଣ ଯେ କଅଇ ତାହାର ତହିଂ ରହୁ । ୭୨୬ ।

Digitized by srujanika@gmail.com

ନାଗର ଲୋକଙ୍କଙ୍କ ଆମ୍ଭେ ନଯାଉଁ ବିଶ୍ୱାସ ।
ସ୍ନେହ କଥା କହ ଯେ ବୁଦ୍ଧି ଘେନ ଆସ । ୭୨୭ ।
ରାଜା ପଞ୍ଚରଇ ଶୁଣିମା ମହାମାୟେ ।
ମୁହିଂ ସ୍ନେହ କହିବାକୁ କରଇ ମହାଭୟେ । ୭୨୮ ।
ସେ ଯେ ଗଜଇନ୍ଦ୍ର ତୁ ଯେ ଦ୍ୱିରାସ୍ୱର ।
ମୁହିଂ ପାମର ଯେ ଅଟଇ ଦଣ୍ଡଧାରୀ । ୭୨୯ ।
ତାହାଙ୍କୁହିଂ ଧାନ ବେଳତ ନପାରଇ ।
ସ୍ନେହକଥାକୁ ସଙ୍କୋଚ ମାଗୋ ବହୁତ କରଇ । ୭୩୦ ।
ଲୋକପ୍ରବେଶୀ ବୋଇଲେ ରାସ୍ୱେ ଶୁଣ ।
ଗଜମୂର୍ଖ ବୋଲି ପୁରାଣେ ବଖାଣ । ୭୩୧ ।
ତୋହୋର ନମିତ୍ତେ ତାକୁ ବଚନେ ବୋଲିବା ।
କେତେକ ବଳ ବହଇ ତାହା ବିସ୍ତରିବା । ୭୩୨ ।
ଯାଅ ତୁ ଅଳସ ନକର ନୃପତ୍ତ ।
ସ୍ନେହ କଥା କହ ଘେନ ଆସ ହସ୍ତୀ । ୭୩୩ ।
ଗଙ୍ଗାର ଚରଣେ ରାଜା ନମସ୍କାର କରି ।
ଅଇରାବତ ସନାଧିକୁ ଗଲା ଖର କରି । ୭୩୪ ।
ଦେଖି ଗଜଇନ୍ଦ୍ର ବୋଇଲେକ ହସି ।
କସ ବୋଇଲା ସେ ସ୍ୱରୁ ଶୁଭ୍ରକେଶୀ । ୭୩୫ ।
କଲ୍ପିକ ସନମତ ତୋହୋର ଭକ୍ତ ଘେନ ।
ନାସ୍ତି ବୋଇଲା ଅବା ଚତୁ କାମେନା । ୭୩୬ ।
କହସି ନୃପବର ଶୁଣିମା ତାର କଥା ।
କର ଦୁଇ ଯୋଡ଼ି ସେ ବୋଇଲା ମହାରଥୀ । ୭୩୭ ।
ଯାହା ତୁ ପ୍ରକାଶିଲୁ କହିଲି ତାହା ମୁହିଂ ।
ଶୁଣିଣ ହସିଲା ସେ ଶରଦ ଚନ୍ଦ୍ରମୁହିଂ । ୭୩୮ ।
ବୋଇଲା ବରୁଣ ଯେ ଅଟଇ ମୋହୋର ନାହା ।
ତାହା ଗୁଡ଼ି କେମନ୍ତେ ବଦିବଇ ସ୍ନେହା । ୭୩୯ ।
କସ ବୋଲି ମୋତେ ବୋଲିବେ ଜଗତ ।
ମୋହୋର ଯିବାର ନମିଳଇ ଯୁଗତ । ୭୪୦ ।
ତାହାର କାର୍ଯ୍ୟ ଥଲେ ଧର ମୋତେ ନେଇ ।
ଲୋକାଗ୍ରରକୁ ସେ ମୋହୋ ଦୋଷ ନୋହୁ । ୭୪୧ ।
ଶୁଣିଣ ହରଷ ଯେ ଗଜରାଜ ହୋଇ ।
ବୋଇଲେକ ତୋର କାର୍ଯ୍ୟ ସୁଫଳ ନରସାଇଂ । ୭୪୨ ।

Digitized by srujanika@gmail.com

ଶୁଳ ଦେଖା ମୋତେ ଗଙ୍ଗା ଅଛୁ କାନ୍ଧଂ ।
ମେରୁ ଫୋଡ଼ି ତାକୁ ଆଣିମି ବୁହାଇ । ୭୪୩ ।
ବଳେ ଧର ଭାର୍କ୍ କରିବ ମୁବର୍ଣ୍ଣ ।
ଆଗ ହୋଇ ବାଟ କଢ଼ାଅ ମହାପନ୍ଥ । ୭୪୪ ।
ଶୁଣିଣ ସନ୍ତୋଷ ଯେ ହୋଇଲା ନରସାଇଂ ।
ଗଜବାଜକୁ ଘେନ ସେ ହରଷେ ଚଳଇ । ୭୪୫ ।
ଯାନ୍ତେଣ ମାତଙ୍ଗ ଯେ ଫୁଙ୍କାରଇ ରବ ।
ଥୋର ହସ୍ତ ଟେକି ଧାମଇଂ ବେଗ ବେଗ । ୭୪୬ ।
ଲମ୍ଫି ବିଂଚଣ ଯେ ବେପ ଗରୁଡର ।
ଯାନ୍ତେଣ ଖୀରଘଣ୍ଟ ବାଜଇ ପ  ଖର । । ୭୪୭ ।
ଭେଦନ୍ତ ଘାତ ଯେ କୋପେ ମାଇଲାନ୍ତି ନେଇ ।
ମେରୁ ଫୁଟିଣ ଯେ କମ୍ପିଲକ ମହୀ । ୭୪୮ ।
ଲବଣ ପର୍ବତେ ଯେହ୍ନେ ଖାଷଖାଲ ବସେ ।
ତେସନ ଘଣ୍ଟାନ୍ତର ଚଉଦନ୍ତ ଦଶେ । ୭୪୯ ।
ସହସ୍ରଂ ଗିରିବର ଶିଖର ଫୁଟିଲା ।
ଚତୁର୍ଦନ୍ତ ମୁନ ଗିର ଶୃଙ୍ଗରେ କମ୍ପିଲା । ୭୫୦ ।
ଦ୍ୱାର ପାଇ ଗଙ୍ଗା ହୋଇଲା ବାହାର ।
ଦଶନ କାଢ଼ି ନ ପାରିଲା କରିବର । ୭୫୧ ।
ଗର୍ଜନ କରି ଗଙ୍ଗା ଝଲକ ଅଇଲା ।
ଗଜଇନ୍ଦ୍ରକ କଇ ସେ ବଳେ ପେଲିଇଲା । ୭୫୨ ।
ଆରତେ ଅଇରାବତ ଗଜ ନ ପାରିଲା ସମ୍ଭାଳି ।
ଚଉଦାନ୍ତ ବଳେ ଉପାଡ଼ିଲା ମହାବଳୀ । ୭୫୩ ।
ନୀର କର୍ଦ୍ଦନ ନ ପାରିଲା ସହି ।
ଦାନ୍ତେକ ଭାଙ୍ଗିଣ ମେରୁରେଣ ରହି । ୭୫୪ ।
ହେଠକୁ ଧାଇଂଣ ପଡ଼ିଲକ ପାଣି ।
ସୋହୋଖିର ଘାତେ କମ୍ପିଲା ଧରଣୀ । ୭୫୫ ।
କୋପଭର ହୋଇ ଗଙ୍ଗା ସହସ୍ରଂ ବହି ।
ଅଇରାବତ ଗଜ ନ ପାରିଲା ସହି । ୭୫୬ ।
ଅସମ୍ଭାଳ ହୋଇ ଖସିଲା ମାତଙ୍ଗ ।
ଅତି ପ୍ରବଳହୋଇ ବହିଲା ଦେଖୀ ବେଗ । ୭୫୭ ।
କ୍ଷଣେ ବୁଡ଼ି କ୍ଷଣେ ଦିଶଇ କାହୁ ଦୂରେ ।
ମନ୍ଦର ପରବତ କନ୍ଦ ସିନ୍ଧୁର ଭିତରେ । ୭୫୮ ।

Digitized by srujanika@gmail.com

ତେଢ଼େ ମହାଗଜ ହୋଇଲ ଜସତ ।
ଗୌରବ ଘିଷି ଯନ୍ତୁ ଲେଡ଼ିଲ ରମିତ । ୭୫୯ ।
ତେଢ଼େ ମହାଗଜ ନଜ ତେଜ ଚୁଡ଼ା ।
ଗଙ୍ଗା ବିଷ୍ଣୁରୂପେ ଗଜଇନ୍ଦ୍ର ବୁଡ଼ା । ୭୬୦ ।
ଚଉଷଠେ କାଠି ଅଟଇ ସୁରସୁଷି ।
ଖସଇ ଗଜଇନ୍ଦ୍ର ସ୍ଥଳ ନପାଇ କରି । ୭୬୧ ।
ଦନ୍ତେକ ଭଜଅଛୁ ତେଣେ ଶିଘ୍ର ହତ ।
ବଣେଷେଣ ଲେଭ ଧରଥିଲ ଚତ୍ତି । ୭୬୨ ।
ମେରୁ ତାହାକଇ ଅଟଇ ଜର୍ଦ୍ଧେ ।ଷୀ ।
ପର ବୋଲେ ଗଲ ସେ ତାହାକଇ ଧ୍ୱଂସୀ । ୭୬୩ ।
ଢନଗୁଣେ ଯନ୍ତୁ ହୋଇଲକ ଛନ୍ଦ ।
ତେଣୁକରି ଲଜ ପାଇଲ ଗଜଇନ୍ଦ୍ର । ୭୬୪ ।
କେତେହେଂକ ଦୂରେ ଯୋହୋଶରେ ଗଲ ।
ଧର୍ମ ବଳେ ହାତ୍ତି ଚେତନା ପାଇଲ । ୭୬୫ ।
ସମ୍ଭାଳହୋଇ ହାତ୍ତି ଲଗିଲ କେତେ ଦୂର ।
ତାହାର ନାମ ହୋଇଲ ହସ୍ତିନା ନଗର । ୭୬୬ ।
ଶୁଣିମା ଶ୍ରୀରାମ କହନ୍ତ ଗାଧିସୁତ ।
ଅଇରାବତ ମେରୁରେ ଯେ ମାଇଲ ଚଉଦନ୍ତ । ୭୬୭ ।
ଦନ୍ତେକ ବଳେ ଧଇଲ ଗିରବର ।
ସେ ଦନ୍ତେକ ରହିଲ ମେରୁର ଭିତର । ୭୬୮ ।
ଆବର ଢନଦାନ୍ତେ ସେ ଢନବାଟ ଫୁଟି ।
ଢନଧାର ହୋଇ ବାହାର ବମ୍ବରୁଟି । ୭୬୯ ।
ସ୍ୱର୍ଗେ ସାଧୁ ସାଧୁ କରନ୍ତ ସୁରମୁନ ।
ଚତୁର୍ବେଦ ଓଂକାର କରନ୍ତ ପଦ୍ମଯୋନ । ୭୭୦ ।
ଅପସରାମାନେ ହୁଳୁହୁଳ ଢ଼ଅନ୍ତ ।
ଗନ୍ଧର୍ବ କନ୍ନର କୁସୁମ ବରଷନ୍ତ । ୭୭୧ ।
ଦୁନ୍ଦୁଭି ବଜାଇଣ ଇନ୍ଦ୍ର ତୋଷ ଚତ୍ତି ।
ସ୍ୱେତବେ ସେ ମିରହା ପୂରବ ସିନ୍ଧୁ ଘାତ । ୭୭୨ ।
ସ୍ୱେଥୁ ଅନନ୍ତରେ ସୁରସୁଷି ଦେବୀ ।
ଢନ ମୂରତ୍ତି ଧରି ବହିଲ ଭଇରୋବୀ । ୭୭୩ ।
ଆକାଶେ ଗଙ୍ଗା ଯେ ବହିଲ ସୁରସୁଷି ।
ମନ୍ଦାକନୀ ନାମ ଯେ ହୋଇଲ ତାହାର । ୭୭୪ ।

Digitized by srujanika@gmail.com

ଆରେକ ଧାର ଯେ ପାତାଳକଇ ଗଲା ।
ଭଗବତୀ ନାମ ତାହାଂ ଯେ ପାଇଲା । ୭୭୫ ।
ଭଗୀରଥ ଘେନ ଅଇଲା ଯେବଣ ଧାର ।
ଭଗୀରଥି ଗଙ୍ଗା ନାମ ହୋଇଲା ତାହାର । ୭୭୬ ।
ମୃତ୍ୟୁ ଲୋକେଣ ଯେ ବହିଲା ଯେକ ମୂର୍ତ୍ତି ।
ଆଗେଣ ବାଟ ଯେ କଢ଼ାଇଅଛନ୍ତ ଭଗୀରଥି । ୭୭୭ ।
ହେମଗିର ପ୍ରଦକ୍ଷିଣ କରଣ ବାଲୀ ଆସି ।
ହୁଂକାର ଶବଦେ କରଣ ଶୁଭ୍ରକେଶୀ । ୭୭୮ ।
ମଞ୍ଚେଣ ବାହମୀ ସେ ଆସଇ ସୁରାସୁରୀ ।
ତରଙ୍ଗର ଘାତେ କମ୍ପଇ ବସୁନ୍ଧରୀ । ୭୭୯ ।
ଅଶ୍ୱେକ ଆରୋହି ନୃପତ୍ତ ହୋସ୍ୟେ ଆଗ ।
ପ୍ରବେଶ ହୋଇଲେ ପବିତ୍ର ଥାନ ପ୍ରୟାଗ । ୭୮୦ ।
ଉତ୍ତର ପଶ୍ଚିମକୁ ପଡ଼ିଲା ଦେବୀ ଯାସି ।
ଯମୁନାର ସଙ୍ଗେ ସଙ୍ଗ ହୋସ୍ୟେ ଆସି । ୭୮୧ ।
ସେହି ଦିନ ମକର ପ୍ରବେଶ ଦିନକର ।
ସଂକାଳ ହୋଇଲେ ହୋଇଛି ନକର । ୭୮୨ ।
ବିଶେଷେ ସ୍ତ୍ରିଙ୍କ ସ୍ତ୍ରିଙ୍ଗର ବଡ଼ପ୍ରୀତ ।
ଦେଖିଣ ଶରଧା କଲାକ ଯୁବତୀ । ୭୮୩ ।
କୁଳ ସମ୍ଭାଷଣ କୁଶଳ ପୃଚ୍ଛପୃଚ୍ଛ ।
ଯେକ ଆରେକ ସେ ଛାଡ଼ି ନ ପାରନ୍ତ ମୂର୍ଚ୍ଛି । ୭୮୪ ।
ଯେସନେକ ଗଙ୍ଗା ରହିଲା ତାହାଂ ମାସେ ।
ଭଗୀରଥି ରହିଥାଇ ତାହାର ବିଶ୍ୱାସେ । ୭୮୫ ।
ଯାହାଂ ବହୁତ ଦିନ ଦେବୀ ରହିଲା ।
କର ଦୁଇ ଯୋଡ଼ି ନୃପତ୍ତ କହିଲା । ୭୮୬ ।
ଶୁଣ ମାତ ଲୋକପାବେନୀ ସୁରାସୁରୀ ।
ମୋତେ କମ୍ପା ଅଦୟା ଅଛଇ ତୋହର । ୭୮୭ ।
ଯେତେକ ଦୁଃଖେ ତୋତେ ଆଣିଲି ଗୋ ମାସ୍ୟେ ।
ଯେତେ ବୋଲ ରାଜା ପଡ଼ଇ ତାର ପାସ୍ୟେ । ୭୮୮ ।
ଯମୁନାହିଂ ଗଙ୍ଗାକୁ ଅନେକ କହିଲା ।
ଶୁଣିଣ ସୁରାସୁରୀ ଘନମତ କଲା । ୭୮୯ ।
ପୁର୍ବମୁଖ ହୋଇ ଅଇଲା ତାହାଂ ବହି ।
କାଳନ୍ଦୀ ସଙ୍ଗେ ହାଥ ଧରାଧର ହୋଇ । ୭୯୦ ।

Digitized by srujanika@gmail.com

ଶତଧେନୁ ପଶଯନ୍ତେ ଅଇଲେ ବେଦ ବାମା ।
ତାହାଂ କୋଳ କଲେ ବରୁଣର ବାମା । ୭୯୧ ।
ଯାଅସି ସୁଲକ୍ଷଣୀ କଲ୍ୟାଣ ହୁଅସି ।
କୋଟିଏ ତୀର୍ଥର ପୂଜା ପାଅସି । ୭୯୨ ।
ମୁହିଂ ତୋତେ ବରପେକେ ଭେଟ ହୋଉଥିବ ।
ମକର ଆଦିତ୍ୟେ ତୋର ଘରକଇଂ ଯିବ । ୭୯୩ ।
ସେହିନ ସ୍ନାହ ନ କରିବ ଯେତୁ ଆସି ।
ବହ୍ମାର ସମାନେ ସେ ସ୍ୱର୍ଗରେ ଥିବ ବସି । ୭୯୪ ।
ଅମୃତ ଭୁଞ୍ଜିବ ସେ ଦେବତାଙ୍କର ସଙ୍ଗେ ।
ଅପଛରୀ ଘେନ ବିହାକ ରଙ୍ଗେ । ୭୯୫ ।
ଅଗ୍ନିରେ ପଖାଳଣ ପିନ୍ଧିବ ଝୀନବାସ ।
ଶ୍ରୀଖଣ୍ଡୀ ଚନ୍ଦନ କେଶେ ପାରିଜାତ ପୁଷ୍ପ । ୭୯୬ ।
ଶୁଦ୍ଧ ସୁବର୍ଣ୍ଣର ଅଳଙ୍କାର ଲଇ ।
ଅନେକ ଭୋଗ କରିବ ସୁରପୁରେ ଥାଇ । ୭୯୭ ।
ସେନକା ହବସେକେ ସ୍ନାହାନେ ଯେତେ ପୁନ୍ୟ ।
ଯେ ଅବା ମାସେକ କରିବ ସ୍ନାହାନ । ୭୯୮ ।
ବ୍ରହ୍ମା ସେ ଜାଣେ ମହିମା ଯେତେ ଯିଏ ।
ପ୍ରଜାପତି କଲେ ବିଷ୍ଣୁର ସଙ୍ଗବାସ । ୭୯୯ ।
ଯେତେ ବୋଲି ଦେବୀ ଯମୁନାକୁ ପ୍ରବୋଧି ।
ପୂର୍ବମୁଖ ହୋଇ ସେ ଚଳଇ ମନ୍ଦାକିନୀ । ୮୦୦ ।
ଯେତେବେଳେ ଠାବରୁ ଦୁହେଂ ଛଡ଼ାଛଡ଼ି ହୁଅନ୍ତି ।
ସମତୀର୍ଥ ବୋଲି ତାହାଂର ନାମ ଦେନ୍ତି । ୮୦୧ ।
କଲଧୀ ଗଲେ ତାହାଂ ଯେ ଅକାଳେ ସୁରଯୁଗୀ ।
ଆଗେ ହୋଇଅଛୁ ଭଗୀରଥ ଦଣ୍ଡଧାରୀ । ୮୦୨ ।
କେତେହେଂକ ଦୂରେ ଲୋକ ପାବେନୀ ପୁଛଇ ।
ବାମଭାଗେ ରାଜା କେବଣ ପୁରୀ ଅଛଇ । ୮୦୩ ।
ସୁବର୍ଣ୍ଣ କଳସ ଧବଳ କାନ୍ଥ ଘର ।
ବିଚିତ୍ର ଚଉଳ ଉଡ଼ଇ ଫରହର । ୮୦୪ ।
ନୃପତି ବୋଇଲେ ବାରାଣସୀ ପୁରୀ ।
ସେଥେ ବାସ କରିଛନ୍ତି ତ୍ରିପୁରାରି । ୮୦୫ ।
ବାରାଣସି ବୋଲି ଦୁଇ ନଦୀର ମଧ୍ୟେ ।
ସେଥି ସେ ମରଣ ଇଛନ୍ତି ବିବୁଧେ । ୮୦୬ ।

Digitized by srujanika@gmail.com

ପାଞ୍ଚକୋଶ ନଗ୍ର ଧନୁ ଆକାର ପୁଣ ।
ରୁଦ୍ରଦେବ ବଟକ ସେଥି ପାବଂଶ କୋଳେ ଧର । ୮୦୭ ।
ବିଷ୍ଣୁଙ୍କ ଲାଗି କର ଯୋଗୀଜନେ ଆନ୍ତି ।
ସେଥେ ମଲେ ପ୍ରାଣୀ କୁରୁମି ନୁହନ୍ତି । ୮୦୮ ।
ଥାବର ଜଙ୍ଗମ କୀଟ ପକ୍ଷୀମାନ ।
ଯେତେକ ହୁଅନ୍ତି ଦେହ ଅବସାନ । ୮୦୯ ।
ପ୍ରାଣ ଗଲାବେଳେ ଶ୍ରୀରାମର ବାଣୀ ।
ପ୍ରାଣୀଙ୍କର କର୍ଣ୍ଣେ କହନ୍ତି ଶୂଳପାଣି । ୮୧୦ ।
ତେଣେ ଜୀବଜନ୍ତୁ ମୁକତି ଗତି ପାଇ ।
ପୃଥୀର ମଧ୍ୟେ ସେ ଅଟଇ ସାର ମହୀ । ୮୧୧ ।
ଚକ୍ରଯେନ ଶ୍ରୀହରି ଖୋଳିଲେ ଯେବଣ ସର ।
ଚକ୍ର ପୁଷ୍କରଣୀ ନାମ ଅଟଇ ତାହାର । ୮୧୨ ।
କାଳେଣ ସଦାଶିବ ଦେଖିଲେକ ଅସି ।
ଚକ୍ର ପୁଷ୍କରଣୀକି ଗୃହଂ ବୋଇଲେକ ହସି । ୮୧୩ ।
ତୁ ଯେ ବାସୁଦେବର ଚକ୍ର ପୁଷ୍କରଣୀ ।
ସେସନେକ ବୋଲି ଶଙ୍କର ଶିର ଧୁଣି । ୮୧୪ ।
ମୁଣ୍ଡ ହଲନ୍ତେ ଯେ କର୍ଣ୍ଣର କୁଣ୍ଡଳ ।
ଖସି ଫିଟିଯାଇ ପଡ଼ିଲେକ ଜଳ । ୮୧୫ ।
ତେଣୁ ସେ ମଣିକର୍ଣ୍ଣିକା ନାମ ବନ୍ଧ ।
ଗଙ୍ଗାର ଆଗରେ ସେହି ଭାଗୀରଥି କନ୍ଧ । ୮୧୬ ।
ଶୁଣ ତୁ ଶ୍ରୀରାମ କହନ୍ତି ଗାଧିସୁତ ।
ପୁଣ ନୃପବର କଲ ସିଦ୍ଧ କୃତ୍ୟ । ୮୧୭ ।
ସୁରାସୁର ଶୁଣଇ ନୃପବର ବାଣୀ ।
ଆନନ୍ଦେଣ ଦଇପା ତନସେ ବଖାଣି । ୮୧୮ ।
ଭୋ ମ ତ ଗଙ୍ଗାସେ ପୁର ଅନ୍ତରୀକ୍ଷ ।
ପ୍ରଳୟ କାଳେ ସେ ଧର ବରୂପାକ୍ଷ । ୮୧୯ ।
କପାଳ ବିମୋଚନ ତୀର୍ଥ ସେଥେ ଅଛୁ ।
ବ୍ରହ୍ମହତ୍ୟା ଦୋଷ ଶଙ୍କର କ୍ଷଣକେ ଲେଛୁ । ୮୨୦ ।
ଋଣ ବିମୋଚନ ସେଥି ସ୍ନାହାନ କଲେ ଯାଇ ।
ସୂର୍ଯ୍ୟ କୁଣ୍ଡଳ ନାମେ ତୀର୍ଥେକ ଅଛଇ । ୮୨୧ ।
ଅର୍କବାରେ ସେଥି ସୂର୍ଯ୍ୟ ଅର୍ଘ୍ୟ ଦେଲେ ।
ହବିସ ଭୋଜନ ସାୟଂକାଳେ କଲେ । ୮୨୨ ।

Digitized by srujanika@gmail.com

ସୂର୍ଯ୍ୟଲୋକେ ବସି ଅମୀୟ ପାନ କର ।
ସହସ୍ର ଯୁଗ ଥାଇ ଯୋଗମୂର୍ତ୍ତି ଧର । ୮୨୩ ।
ତହୁଁ ଆସି ଉତ୍ତମ କୂଳେ ଜାତ ହୋଇ ।
ରଜାହୋଇ ସାତ ଜନମ ହୁଅଇ । ୮୨୪ ।
ପାପପୁନ୍ୟ ଅନରୂପେ ହୁଅଇ ପୁଣ ଜନ୍ମ ।
ଶୁଣିମା ଭଇରବୀ ଯେଥି କଥାହେନ ପୁଣ୍ୟ । ୨୫ ।
କର୍ଣ୍ଣ କୁଣ୍ଡଳ ବୋଲି ଅଛଇ ଯେବଣ ହ୍ରଦ ।
ସୋମବାରେ ସ୍ନାହାନ କରବ ତହିଂର ମଧ । ୮୨୬ ।
ଶ୍ୱେତଦୁବ ଦେଇ ପୂଜବ କଳାନିଧି ।
ଯେ ଯାହାର ବାଞ୍ଛାସେ ହୋଇବାକ ସିଦ୍ଧି । ୮୨୭ ।
ଗୁରୁବାରେ ସ୍ନାହାନ ଲକ୍ଷ୍ମୀ କୁଣ୍ଡେ କର ।
ଦଧି ଗୁଡ଼ ଅନ୍ନ ସମକର ଭର । ୮୨୮ ।
ବୃହସ୍ପତି ସୁମରଣ ବ୍ରାହ୍ମଣେ ଦେବ ତାହା ।
ଆପଣେ ପାଲଣା କରିବାକ ଯାହ । ୮୨୯ ।
ସେହୁ ଶାଳୀ ଅନ୍ନ ଦଧିଗୁଡ଼ ଯୋଗେ ।
ନକ୍ଷତ୍ର ଗ୍ରହୁଁ ସେ କରିବ ବଇଭୋଗେ । ୮୩୦ ।
ଲକ୍ଷ୍ମୀ ନ ଛାଡ଼ଇ କନ୍ଦରୁ ତାହାର ।
ଅନ୍ନବସ୍ତ୍ର ମିଳଇ ଅତୁଟ ଆହାର । ୮୩୧ ।
କୁଣ୍ଡଳୀ କର୍ଣ୍ଣ ବୋଲି ଯେବଣ ତୀର୍ଥନାମ ।
ବୁଡ଼ି ଯେବେ ଦଣ୍ଡେ କରିବ ସ୍ନାହାନ । ୮୩୨ ।
ହର୍ଗର ଦୁନ୍ଦୁଭି ଶବଦ କର୍ଣ୍ଣେ ପଶି ।
ଯେହ୍ନୁଂ ସ୍ୱେକ ତୀର୍ଥେ ଅଛନ୍ତି ଚଉହଂସୀ । ୮୩୩ ।
ସ୍ୱର୍ଗମର୍ତ୍ତ୍ୟ ପାତାଳେ ଅଛଇ ଯେତେ ଜଳ ।
ପୁଷ୍କର ସହିତେ ଯେ ତୀର୍ଥ ସକଳ । ୮୩୪ ।
ଯେହାଙ୍କ ଉପରେ ହାଦେ ପ୍ରୟାଗ ଅଧିପତି ।
ମଧ୍ୟାହ୍ନ କାଳେ ସେ ନିତଥାଇ ଏଥି । ୮୩୫ ।
ମଣି କାର୍ତ୍ତିକାଯେ କରିବ ସ୍ନାହାନ ।
ନିଜ ପୁରକୁ ଯାଇ ପ୍ରୟାଗ ରଜନ । ୮୩୬ ।
ଅସିଂ ବରୁଣ ଯହୁଂ ବହଇ ଦୁଇନଦୀ ।
ବାରଣସୀ ନାମ ତହୁଂ ହୋଇଲା ପ୍ରସିଦ୍ଧି । ୮୩୭ ।
ସମସ୍ତେକେ ଈଶ୍ୱର ରହିଲେ ଯେଥି ଆସି ।
ତେଣୁ ସେ ସ୍ୱେ ପୁର ବୋଲାଇଲା କାଶୀ । ୮୩୮ ।

Digitized by srujanika@gmail.com

ଯେବଣ ଜନ ସେ ହାରଇ ଯେତ୍ଥି ଦେହି ।
ଅନ୍ତ୍ରେଣ ଶମ୍ଭୁ ସ୍ୱରୂପ ହୁଅନ୍ତି ସେହି । ୮୩୯ ।
ପୂର୍ବେ ଦେଇଥିଲେ ଭୋଗଭାଗ୍ୟ ପାଆନ୍ତି ।
ନ ଦେଇଥିଲେ ଅଭୋଗ୍ୟ ମୂର୍ତ୍ତିମା ଯେ ହୁଅନ୍ତି । ୮୪୦ ।
ବ୍ରହ୍ମାର ଦିବସେକେ କଳପେ ଭୋଗ ଯାଇ ।
ତେତେ ସମସ୍ତ ରୁଦ୍ର ତନୁ ବହୁଥାଇ । ୮୪୧ ।
ମୃତ୍ୟୁ ଲୋକକଇ ଯେବେ ନକରଇ ଜ୍ଞାନ ।
ସେ ଦୋଷେ କାତରେଣୀ ଅଟଇ ଈଶାନ୍ୟ । ୮୪୨ ।
ସେ କଥା ଅବଶ୍ୟ ପାଳଇ ଶୂଳଧାରୀ ।
ବିଷ୍ଣୁର ଆଗେ ସେ ଅଛଇ ସତ୍ୟକରି । ୮୪୩ ।
ସ୍ନେହକ ଯତ୍ନେ ସେ ବ୍ରହ୍ମଚର୍ଯ୍ୟ ବ୍ରତ ।
ଧ୍ୟାନେ ଧାରଣା ସେ ପାଳଇ ସତସତ । ୮୪୪ ।
ପାଦ୍ୟେ ପାନେଣ ସେ ତୋଷଇ ନିଜ କାୟେ ।
ଗଙ୍ଗା କୂଳେ ଥାଇ ଦେଲ ଅସ୍ତ୍ରଯାୟେ । ୮୪୫ ।
ଦିନ ଶେଷେଣ ଆସଇ ନିଜବାସ ।
ନିଶାୟେ ଉଜାଗର କନ୍ଦମୂଳ ଗ୍ରାସ । ୮୪୬ ।
ଦିନେକ ଗଙ୍ଗାକୂଳରେ ତପେ ଅଛୁ ।
ସ୍ନେକାନ୍ତ ହୋଇଣ ସେ ଜଞ୍ଜାଳନ୍ତ ଲେଛୁ । ୮୪୭ ।
ରୁଦ୍ର ଜପଇ ସେ ଆହ୍ନିକ ସାର ।
କ୍ଷଣେ ଚକ୍ଷୁ ବୁଜିଣ କ୍ଷଣେ ଗୃହାଂଇ ତପଗ୍ରସ୍ତ । ୮୪୮ ।
ଶୁଣୀର ବୋହୂ ହାଦେ ଗଲା ପାଣି ଆଣି ।
ରୂପ ଗୁଣେ ସୁନ୍ଦେଶ୍ୱ ସେ ଅଟଇ ତରୁଣୀ । ୮୪୯ ।
ନିତ୍ୟ ସ୍ନାହାନ ସେ କରଇ ଗଙ୍ଗାଜଳେ ।
ତେଣୁ ସେ ତନୁ ତାର ଅଟଇ ନିର୍ମଳେ । ୮୫୦
ବିଶେଷେ ଲାବନ୍ୟ ତନୁ ତା ଅଟଇ ।
ପିନ୍ଧିଣ ଅଛଇ ଦେବାଙ୍ଗ ସ୍ୱରୁ ପାଟଇ । ୮୫୧ ।
ଅଲଙ୍କାର ଯୋଗଇ ସେ କୁମ୍ଭ କରେ ଘେନି ।
ସୁରନଦୀରେ ସେ ମିଳିଲାକ କାମେମୀ । ୮୫୨ ।
ପାପ ଆଣନ୍ତେଣ ତାକୁ ଦେଖିଲାକ ତପୀ ।
ପାଣି ଆଟନ୍ତୋଣିଲା ମଦନ ମନେ ବ୍ୟାପି । ୮୫୩ ।
ମନ ନୟନ ଚତ୍ରୁ ସେ ଧାରଣା ନ ଯାଇ ।
କାମଭରେ ମହାତ୍ମା ସେ ହୋଇଲାକ ବାଇ । ୮୫୪ ।

Digitized by srujanika@gmail.com

ଧର୍ମ ପୁଣ ସୁମତ ସେ ଆସନୁ ଉଠିଲା ।
ସୁଦେଷ୍ଣା ଆସନ୍ତେଣ ଆଗେ ଓଗାଳିଲା । ୮୫୫ ।
ବୋଇଲା ସଖି ଆରେ ମୋର ପ୍ରାଣ ରଖ ।
ମଦନ ଶରେ ମୁଂ ଯେ ହୋଇଲି ନିରେଖ । ୮୫୬ ।
ତୋତେ ଦେଖି ମୋର ମନସ୍ଥିର ନୋହେ ।
ପଞ୍ଚ ପ୍ରାଣ ମୋହୋର ତୋହର ରୂପ ମୋହେ । ୮୫୭ ।
ଶୁଣିଣ ସୁଦେଷ୍ଣା ଯେ ହୋଇଲା ଆଶ୍ଚର୍ଯ୍ୟ ।
ବୋଇଲା ତପୀ କିନା ହୋଇଲୁ ଅଧର୍ଯ୍ୟ । ୮୫୮ ।
ତୁହି ବ୍ରହ୍ମସ୍ତ୍ରୀ ମୁହିଂ ଜାତିହୀନ ।
ଏହେନେକ ଛାର କଥାକୁ ବଳିଲା ତୋର ମନ । ୮୫୯ ।
ତପୀ ବୋଇଲା ମୁଂ ହୋଇଲି ସଖି ବାଇ ।
ତୋ ରୂପ ଦେଖି ଚିତ୍ତ ଧରଣା ନଯାଇ । ୮୬୦ ।
କର ଅନୁଗ୍ରହ ନକର ନିରାଶ ।
ମୋହୋର ମୁଖରେ ତୁ ଚୁମ୍ବନ୍ୟ ଦିଅ ଆସ । ୮୬୧ ।
ହସିଣ ସୁଦେଷ୍ଣା ଯେ ବୋଇଲା ତୁମ୍ଭେ ଶୁଣ ।
ଦଇବ ଯେବେ ଆଣି କଲାକ ନିର୍ମାଣ । ୮୬୨ ।
ଏ ତୋହୋର ବୋଲ ଭାଙ୍ଗିତ ମୋର ନାହିଂ ।
ଦେବଇ ସୁରତି ମୁଂ ବେଳକାଳ ଚାହିଂ । ୮୬୩ ।
ଏବେ ତ ଦିବସ ସୁଭାବେଣ ନଦୀକୂଳ ।
ଅନେକ ଲୋକ ଏଥି ହୋଉଛନ୍ତି ଚହଳ । ୮୬୪ ।
ଘରେ ତ ଶାଶୁ ନଣନ୍ଦ ମୋର ଥାନ୍ତି ।
ମୁଂତ ସୁଭାବେତ ଅଟଇ ରୂପବନ୍ତୀ । ୮୬୫ ।
ତେଣୁ କର ମୋତେ ଥାନ୍ତି ଅନୁମାନ ।
ସଭାବେ ମୁଂତ ଆସି ନ ପାରଇ ରଜନୀ । ୮୬୬ ।
ଏ ଯେ ଆସନ୍ତା ପୂର୍ଣ୍ଣିମୀର ତିଥି ।
ଚନ୍ଦ୍ର ଗ୍ରହଣ ଯେ ହୋଇବାକ ଏଥି । ୮୬୭ ।
ସେଦିନ ରଜନୀ ଗଙ୍ଗାକୁ ଲୋକେ ଯିବେ ।
ସ୍ନାହାନ ଭୋଜନ ବାହ୍ମଣେ ଦାନ ଦେବେ । ୮୬୮ ।
ମୁହିଂ ଏକା ଘର ଥିବି ରକ୍ଷାକରି ।
ସେହିକାଳ ଜାଣି ତୁ ଆସିବୁ ତପସ୍ବୀ । ୮୬୯ ।
ଏତେ ବୋଲିଣ ସେ ଗଲାକ ସୁଦେଷ୍ଣା ।
ଗ୍ରହଣ ଲେଖା ଯେ କରଇ ତପସ୍ବୀ । ୮୭୦ ।

Digitized by srujanika@gmail.com

ସେମନ୍ତେ କେତେ ହେଂ ଦ୍ୱନ ବନ୍ଧୁଗଣ ।
ପୌର୍ଣ୍ଣମୀ ତଥି ସେ ଅଦିନ ହୋଇଲା । ୮୭୧ ।
ନଶି ପାଞ୍ଚ ଘଡ଼ିରେ ହୋଇଲା ଚନ୍ଦ୍ରଗ୍ରାସ ।
ତପୀ ରମଣୀକ କରୁଅଛୁ ଆଶ । ୮୭୨ ।
ଗଙ୍ଗାକୁ ସ୍ନାହାନ କରନ୍ତ ଲୋକେ ଗଲେ ।
ଘରେକ ଜଣେ ଜଣେ ମାନଙ୍କ ରହିଲେ । ୮୭୩ ।
ସେସନ ସମୟେକ ଜାଣିଣ ବ୍ରହ୍ମଶ୍ରୀ ।
ପ୍ରବେଶ ହୋଇଲା ସେ ଶୁଣ୍ଢୀର ଦୁଆର । ୮୭୪ ।
ସେସନ ସମୟେ ଘରର ଗୁରସ୍ତେ ।
ଶତେଶ୍ୱର ସୁଗ୍ର ଘେନ ମିଳିଲା ତୁରନ୍ତ । ୮୭୫ ।
ନଜପୁରେ ପ୍ରବେଶି ଜାଣିଲା ତାର ବୋଦ୍ଧୁ ।
ନୋଇଲକ ସୁଗ୍ର ବାହାରେ କ୍ଷଣେ ରହୁ । ୮୭୬ ।
ସେତେ ବୋଲି ସନ୍ଧକ ଲୁଗ୍ରଇଲା ନେଇ ।
ତୁଚ୍ଛ ସୁଗ୍ର ଖଣ୍ଡ ଭିତରେଣ ଥୋଇ । ୮୭୭ ।
ସ୍ନାହାନ କରନ୍ତ ଯେ ଯେଣେ ଯାଇଥିଲେ ।
କ୍ରମେ କ୍ରମେ ଆସି ପ୍ରବେଶ ହୋଇଲେ । ୮୭୮ ।
ଘରେ ଶବ୍ଦ ଶବ୍ଦ ପୂରିଲେ ସର୍ବଜନ ।
ସେ ବେନ ପ୍ରାଣୀଙ୍କର ବିକଳିତ ମନ । ୮୭୯ ।
ସେଥୁ ଅନନ୍ତରେ ଗୃହର ନାୟେକ ।
ସଂଗ୍ରହଣ କର ସୁଗ୍ର ଦ୍ରବ୍ୟ ଥୋଏକ । ୮୮୦ ।
ଯେବଣ ଖଣ୍ଡେ ଜେ ତପୀ ବସିଥିଲା ।
ତୁଚ୍ଛ ବୋଲି କରି ମହାବ୍ର ପୂରେଇଲା । ୮୮୧ ।
ବହୁତ ଡର ତପୀ ନକହଇ କଥା ।
ସୁଗ୍ର ପ୍ରବନ୍ଦେ ମନରେ ମହାବ୍ୟଥା । ୮୮୨ ।
ଲୋକେଣ ସମସ୍ୟା ସେ ନ ଦେଲା ସନ୍ୟାସୀ ।
ଆଖି କାନ ତୁଣ୍ଡ ବୁଜିଣ ଅଛୁ ବସି । ୮୮୩ ।
ଦଶଦ୍ୱାର ସହୁଂ ହୋଇଲାକ ନରୋଧ ।
ସାହାସ ପ୍ରବେଶ ଯେ ହୋଇଲାକ ଉର୍ଦ୍ଧ । ୮୮୪ ।
ମୂର୍ଦ୍ଧୁନ୍ନ ଫାଟିଣ ଯାଆନ୍ତେ ତାର ପ୍ରାଣ ।
ଶୂଳପାଣି ଯାଇ ଧଇଲେ ତତକ୍ଷଣ । ୮୮୫ ।
ସେହୁ ତପୀ କଣ୍ଠେ ମହାମନ୍ତ୍ର କହୁ ।
ଶିବକଇଂ ନ ଦେଖି ପାବର୍ତ୍ତୀ ବିକଳ ହୋଇ । ୮୮୬ ।

Digitized by srujanika@gmail.com

ଯେତେକ୍ଷଣି ଥିଲେ ସ୍ୱାମୀ ଗଲେ କାହିଂ ।
ଯୋଗେ ଜାଣିକରି ଅଇଲେ ଦେବୀ ଧାଇଂ । ୮୮୭ ।
ରୁଦ୍ର କଇ ଆସି ଦେଖିଲେ ଭବାନୀ ।
ପ୍ରିଆକର ଧରି ବାହୁଡ଼ିଲେ ମହାଜ୍ଞାନୀ । ୮୮୮ ।
ବାଟେଣ କହନ୍ତି ରୁଦ୍ର ଶୁଣ ଗୋ ଗଉରୀ ।
ତପୀ ଯାଇଥିଲା ପରନାରୀ ହରି । ୮୮୯ ।
ଲୋକ ଦେଖି ଡ଼ରେ ଲୁଚିଲାକ ଯହିଂ ।
ବଣିଜାର ମୁରା ପୂରିଗଲା ତହିଂ । ୮୯୦ ।
ଲାଜେ ମହାତମା ଛାଡ଼ିଲା ଜୀବନ ।
ମୁହିଂ ଯାଇ ରାମ ନାମ କହିଲି ତା କର୍ଣ୍ଣି । ୮୯୧ ।
ଶୁଣିଣ ସନ୍ତୋଷ ହୋଇଲେ ପାର୍ବତୀ ।
କରତାଳି ମାରି ହସିଲେ ଉମା ସତୀ । ୮୯୨ ।
ଯହିଂ ସେ ଶଙ୍କର ଗଲେ ମନ୍ତ୍ର କହି ।
ପ୍ରାଣ ଛାଡ଼ିଲା ସତି ମୁରାଭାଣ୍ଡେ ଥାଇ । ୮୯୩ ।
ଶ୍ରୀରାମ ନାମ ଯହିଂ ଈଶ୍ୱର କହିଗଲେ ।
ମୁରା ଭାଣ୍ଡେଶ୍ୱର ବୋଲି ଲିଙ୍ଗେକ ହୋଇଲେ । ୮୯୪ ।
ସେ ସେଥିରେ ମଲେଣ ଲିଙ୍ଗେ ଅବଶ୍ୟ ରୁଦ୍ର ହୋଇ ।
ପୂର୍ବେ ଦେଇଥିଲେ ଭୋଗ୍ୟ ହିଂ କରଇ । ୮୯୫ ।
ଯମେଶ୍ୱର ଦେବତା ଅଛଇ ବଳେ କରି ।
ତାହାର ପ୍ରସନ୍ନେ ହାଦେ ନଯାଇ ଯମପୁରୀ । ୮୯୬ ।
କୁବେର ପୂଜିଲାକ କୁବେରଶ୍ୱର ବାଣ ।
ଆବର ଅଛଇ ସେ ଦେବ ନାରାୟଣ । ୮୯୭ ।
ବିଘ୍ନରାଜ ବିଜୟେ ବିନାୟକ ରୂପେ ।
କାଳାନଳ ଅଗ୍ନି ପ୍ରତକ୍ଷେ ସ୍ୱରୂପେ । ୮୯୮ ।
ବରେହା ମୂର୍ତ୍ତିଧରି ଦାମୋଦର ଯେ ଥାନ୍ତି ।
ବ୍ରହ୍ମ ପ୍ରଳୟେ ମହୀ ଦନ୍ତରେ ଧରନ୍ତି । ୮୯୯ ।
ଯେତେକ ଜନ ତହିଂ ନାଶନ୍ତି ସର୍ବେ ଶିବ ।
ନାରୀଙ୍କର ଅଙ୍ଗେ ହମାର ତେଜ ସର୍ବ । ୯୦୦ ।
କାର୍ତ୍ତିକେଶ୍ୱର ଆବର ଗଣପତି ।
ନଗ୍ର ପୁଅଙ୍କର ସଙ୍ଗରେ ଖେଳନ୍ତି । ୯୦୧ ।
ଯେସନେକ ବାଟେ ଯେ ଅଛନ୍ତି ଯେଥେ ହର ।
ଯେ ମହା ଭୈରବ ଯେ ରଖଇ ସିଂଘଦ୍ୱାର । ୯୦୨ ।

Digitized by srujanika@gmail.com

ଦଣ୍ଡପାଣି ଯେଣୁ ବୁଲନ୍ତି ନଗ୍ରପୁର ।
ପାପଙ୍କଲେ ସେଥି ପଳାଇ ପଶେ ପୁର । ୧୦୩ ।
ବିଷ୍ଣୁ ଯନ୍ତ୍ରେ ସେହୁ ନଗ୍ର ଜାତ କଲ୍ଲ ।
ଅନେକ ଓପ୍ରୋଧେ ସେ ବୁଦ୍ଧ କଇ ଦେଲ୍ଲ । ୧୦୪ ।
ସେସନେ ଧର୍ମ ଦେଶ ଅଟଇ ଶିଧ୍ୟ କ୍ଷେତ୍ର ।
ସେଥେ ବସନ୍ତେ ଜନ ସଭିଏ ପବିତ୍ର । ୧୦୫ ।
ଭାଗୀରଥି ମୁଖୁ ଏସନ ବାଣୀ ଶୁଣି ।
ସନ୍ତୋଷ ହୋଇଲେ ଯେ ବରୁଣ ପାଟରାଣୀ । ୧୦୬ ।
ହେ ନୃପମଣି କଥାଏ ମୋତେ କର ।
ମଣୀକର୍ଣ୍ଣିକା ଦେଖିବାକୁ ଶରଧା ମୋହୋର । ୧୦୭ ।
ବାଟ କଢାଅ ତୁ ଯିବା ତେଣେ ହୋଇ ।
ଦେଖିବା ପ୍ରତକ୍ଷେ ସେ ପାବଷାର ସାଇଂ । ୧୦୮ ।
ଅଶ୍ୱ ପିଠି ଚଢି ରାଜା ଆଗୁସାର ।
ପଛେ ପଛେ ବହି ଆସଇ ଗଙ୍ଗାଧର । ୧୦୯ ।
ପୁର୍ବ ମଖେ ସେ ଯେ ଯାଉଥିଲ ବୋହୁ ।
ବାହୁଡ଼ି ବୋହିଲ ସେ ଉତ୍ତରମୁଖ ହୋଇ । ୧୧୦ ।
ଯହିଂ ବିଶ୍ରାମଇ ତହିଂ ତୀର୍ଥ ହୋଇ ।
କାହିଂ ପଞ୍ଚ ନଦୀ ସ୍ନାହାନ ଫଳ ପାଇ । ୧୧୧ ।
କାହିଂ ଦଶାଶ୍ୱମେଧ ଯଜ୍ଞ ପୁଣ୍ୟ ।
କେବଣ ଠାବରେ ଯେ ମହିମା ଅକଥନ । ୧୧୨ ।
ମଣୀକର୍ଣ୍ଣିକାକୁ ଦେଖି ଦେବୀ କଲ୍ଲ କୋଳ ।
ଅନ୍ୟାଅନ୍ୟ ହୋଇ ଯେ ପୁଛନ୍ତି କୁଶଳ । ୧୧୩ ।
ଗଙ୍ଗା ବୋଇଲେ ମଣୀକର୍ଣ୍ଣିକାକୁ ଗୃହିଂ ।
ତୁ ଗୋ ହୁଅସି କଲ୍ୟାଣ ସୁଲକ୍ଷଣୀ କ୍ଷେମ ହୋଇ । ୧୧୪ ।
ବାର ବରଷେ ଯେ ଭେଟିବ ବେଳେ ତୋତେ ।
ମୋକ୍ଷୋଦୋଷ୍ଣ ବୋଲି ହୋଇଲ୍ଲ ସେ ତୀର୍ଥେ । ୧୧୫ ।
ଯେଉଁ ନର ଅବା ଝାସିବ ଦାନ ଦେଇଂ ।
ମୁକତ ହୋଇ ବସିବ ଜନ୍ମ ତାର ନାହିଂ । ୧୧୬ ।
ଏତେ ବୋଲିଣ ସେ ଗଲେ ତହିଂ ଚଳି ।
ଚନ୍ଦ୍ରବତୀ କଟକ ନିକଟେ ଯାଇ ମିଳି । ୧୧୭ ।
ଉତ୍ତର ବାହିନୀ ହୋଇ ଯେତେ ଦୂର ଗଲା ।
ପୁଣ ପୂର୍ବମୁଖ ହୋଇଣ ବହିଲ୍ଲ । ୧୧୮ ।

Digitized by srujanika@gmail.com

ବାରାଣସୀ ବାଟେ ଗଲା ସହୁଁ ସୁରସୁରୀ ।
ଧନୁ ଅଁକାର ଯେ ଢଗିଲକ ପୁରୀ । ୯୧୯ ।
ପୁଣ୍ୟଗଙ୍ଗା ନାମ ଯେ ହୋଇଲା ତାହାର ।
ମଣିକର୍ଣ୍ଣିକା ତହିଁ ହୋଇଲକ ସର । ୯୨୦ ।
ଈଶ୍ୱର ସେ ଧନୁ ବହନ୍ତି ସେ ଧର ।
ପାପ କୂଳଧନ ବିଧ୍ୱଂସେ ନିପ୍ରସର । ୯୨୧ ।
ସେଥୁ ଅନନ୍ତରେ ଶୁଣ ରଘୁନାଥ ।
ଗଉଡ଼ ଦେଶେ ପ୍ରବେଶ ଗଙ୍ଗା ଭଗୀରଥ । ୯୨୨ ।
ସିନ୍ଧୁଘୋଷ ଦେବୀ ଶ୍ରବଣକୁ ଶୁଭିଲା ।
ରାଜାକୁ ନଦେଖି ସେ ତେଣିକି ଧାଇଁ ଗଲା । ୯୨୩ ।
କାମଶ୍ୱ ଦେଶର ସେ ସନ୍ନିଧେ ଯାଇହୋଇ ।
ଥୋକାଏକ ଦୂରେ ରାଜା ଲେଉଟି ଅନାଇ । ୯୨୪ ।
ଗଙ୍ଗା ନ ଦେଖି ସେ ଲେଉଟିଲା ଧାଇ ।
ଦକ୍ଷିଣେର ମୁଖେ ବହଇ ମହାପତି । ୯୨୫ ।
ଅଶ୍ୱ ଧୂଆଇଣ ନୃପତି ବେଗେ ଗଲା ।
ଆଗେ ଓଗାଳିଣ ସେ ଅନେକ ସ୍ତୁତି କଲା । ୯୨୬ ।
ହେ ମାତ ସୁରସୁରୀ ନୁହଇ ଏ ବାଟ ।
ତୁ କମ୍ପା ମୋତେ ମାଗୋ ଦେଉଅଛୁ କଷ୍ଟ । ୯୨୭ ।
ଯେତେ କଷ୍ଟେ ଆଣିଲି ତାହା ତୁତ ଜାଣୁ ।
ବାକୃତ ପ୍ରକୃତି ଧର ଆନ ଆନ ମଣୁ । ୯୨୮ ।
ଏବେଣେ ମୋହର କାର୍ଯ୍ୟ ନାହିଁ ଗୋ ଧବଳମୁଖୀ ।
ସ୍ଥଳ ବାହୁଡ଼ିଣ ଯିବା ସେ ନକର ମୋତେ ଦୁଃଖୀ ।୯୨୯।
ଦେବୀ ବୋଇଲେ କେ ଜାଣଇ କେଣେ ଯାଇ ।
ତୁ ରାଜା ଯାଉଛୁ କି କାହାଳ ବଜାଇ । ୯୩୦ ।
ତେବେ ସେ ଥିବି ମୁଁ ତୋହୋର ସଙ୍ଗେ ସଙ୍ଗେ ।
ଏସନେକ ବୋଲି ସେ ବୋଇଲେ ଦେବୀ ଗଙ୍ଗେ ।୯୩୧।
ଶୁଣିଣ ଭଗୀରଥ ଯୋଡ଼ିଲା ବେନିକର ।
ଯେ ତୋହୋର ଆଜ୍ଞା ପାଳିବ ନକର । ୯୩୨ ।
ଏତେକ ବୋଲି ରାଏ କାହାଳ ବଜାଇ ।
ଶବଦ ଶୁଣି ଦେବୀ ସୁରସୁରୀ ଧାଇଁ । ୯୩୩ ।
ଗଙ୍ଗାର ଆଜ୍ଞା ଯେ ପାଳିଲା ସର୍ବବଂଶ ।
ରାଜା ଆପଣେ ସେ କଲା କାହାଳ ନିଘୋଷ । ୯୩୪ ।

Digitized by srujanika@gmail.com

ନୀର କାହାଳା ସେ ବୋଲଣ ବୋଲ ଯାହା ।
ଲୋକପାବେନୀ ବୋଲି ପାଳିଲା ନରନାହା । ୯୩୫ ।
ଏଥୁ ଅନନ୍ତରେ ଶୁଣ ରଘୁକ୍ଷିତି ।
ବାହୁଡ଼ି ଗଉଡ଼ ଦେଶେ ପ୍ରବେଶ ହୋ'ଏ ଆସି । ୯୩୬ ।
କାହାଳୀ ବଜାଇ ରାଜା ଆଣିଲା ଯେବଣ ଧାର ।
କାହାଳିଆ ଗଙ୍ଗା ନାମ ହୋଇଲା ତାହାର । ୯୩୭ ।
ଯାନଭଗ୍ନ ହତେ ସେ ମୂର୍ତ୍ତିଏକ ରହିଲା ।
ତାହାର ନାମ ସେ ଗଉରୀ ହୋଇଲା । ୯୩୮ ।
ଭାଗୀରଥି ବୋଲଇ ଗୋ ଶୁଣ ମହାମାଇ ।
ଆଗ ହୋଇ ବାଟ ଜାଣି ଆସଇ ମୁହିଂ ଯାଇ । ୯୩୯ ।
ଏହି ଠାବରେ ମାଗୋ କ୍ଷଣେ ରହ ଆସି ।
ମୋହୋର ଶପଥଟି କେଣିକି ନ ଯାସି । ୯୪୦ ।
ସତ୍ୟ କରାଇଣ ନୃପତି ଛାଡ଼ିଗଲା ।
ଠାବକର ପୁଣି ବାହୁଡ଼ି ଅଇଲା । ୯୪୧ ।
ଦେଖିଣ ଗଙ୍ଗାଦେବୀ ବିସ୍ମୟ ମୁଖ ହୋଇ ।
ସିନ୍ଧୁ ସନ୍ନିଧିକୁ ମୂର୍ତ୍ତିଏକା ଗଲା ବୋହି । ୯୪୨ ।
ତାହାର ନାମ ସେ ମହା ଭଇରବୀ ।
ତାହାର ଚରଣ ସେ ସୁରନର ସେବି । ୯୪୩ ।
ଦେଖିଣ ନୃପତି ସେ ହୋଇଲା ଚକିତ ।
କେବଣ କାରଣେ ମାଗୋ କଲୁଁ ବିପରୀତ । ୯୪୪ ।
ଗଙ୍ଗା ବୋଇଲେ ମୁଁ ଅଟଇ ଯୁବତୀ ।
ସ୍ୱଭାବେ ଚଞ୍ଚଳ ମୋର ଅଟଇ ପ୍ରକୃତି । ୯୪୫ ।
ଏକ ଠାବେ ହୋଇ ନପାରଇ ରହି ।
ତେଣୁ ସେ ଧାରେକ ଗଲା ଏଣେ ବୋହି । ୯୪୬ ।
ଏବେ ତୋ ପିତୃକୁ ଆଣିଲୁ ଯେବେ ଖୋଜି ।
ଆଗ ହୋଇଣ କଢ଼ାଅ ମହାରାଜେ । ୯୪୭ ।
ଶୁଣି ନୃପତିବର ଗଲା ଆଗ ଧର ।
ତାହାର ପଛେ ପଛେ ଗୋଡ଼ାଇ ସୁରସରି । ୯୪୮ ।
ଯେବଣ ଠାବରେ ରୁହାଇ ରାଜା ଗଲା ।
କେଣିକି ନ ଯିବି ବୋଲି ନିୟମ ଗଙ୍ଗା କଲା । ୯୪୯ ।
ତାହାର ନାମ ସେ ହୋଇଲା ନିୟମ ଘାଟ ।
ସ୍ନାହାନ କରନ୍ତେ ତହିଁ ଦଣଇ ସ୍ୱର୍ଗ ବାଟ । ୯୫୦ ।

Digitized by srujanika@gmail.com

ପବିତ୍ର ସ୍ଥାନ ଦେଖି ଇନ୍ଦ୍ର ତହିଁ ସ୍ନାହାନ କଲ୍ଲ
ଶଚି ସହିତେଣ ସେ ତୀର୍ଥରେ ନହିଲ୍ଲ । ୧୫୧
ଇନ୍ଦ୍ର ଘରଣୀ କ ଦେଖିଲ୍ଲ ସୁରାସୁରୀ ।
ଅନେକ କୁଶଳ ପୁଚ୍ଛିଲ୍ଲ କୋଳ କରି । ୧୫୨ ।
ଶଚି ବୋଇଲ୍ଲ ମୋ ଧେନମାକ ସେବା ।
ପ୍ରସନ୍ନ ହୋଇ ମାଗୋ କଥାୟେ ମୋତେ ଦେବା ।୧୫୩।
ଯେ ଥାନରେ ତୋହୋର ମୋହୋର ହୋଇଲ୍ଲ ଭେଟ ।
ଏ ଥାନର ନାମ ହୋଇବ ଇନ୍ଦ୍ରାଣୀ ଘାଟ । ୧୫୪ ।
ସନ୍ତୋଷ ହୋଇଣ ଗଙ୍ଗା ସନମତ କଲ୍ଲ ।
ସେ ଘାଟ ଇନ୍ଦ୍ରାଣୀ ନାମ ବୋଲଇଲ୍ଲ । ୧୫୫ ।
ତହୁଁ ଭଗୀରଥି କଢ଼ାଇଲ୍ଲ ବାଟ ।
ପିତୃଲୋକଙ୍କର ହୋଇଲ୍ଲ ନିକଟ । ୧୫୬ ।
ଦେଖିଲ୍ଲ ମଣ୍ଡୋଳ ଯେ ପୋଡ଼ଇ ପିତୃଗଣ ।
ଘୋଡ଼ା ଧୂଆଇଣ ଗଲ୍ଲ ଭଗୀରଥି ମହାରାଣ । ୧୫୭ ।
ଗଙ୍ଗାକୁ ବୋଇଲ୍ଲ ମାଗୋ ଅଗ୍ନି କ ଶାନ୍ତ କର ।
ଶୁଣିଣ ସୁରାସୁରୀ ବୋଲଇ ଉତ୍ତର । ୧୫୮ ।
ତୁ ଯେଣିକି ଯିବୁ ମୁଂ ତେଣିକି ଯିବା ଯାଇ ।
ଆଣିଅଛୁ ତୁ ଯେ ମୋତେ ସତ୍ୟ କରାଇ । ୧୫୯ ।
ତୁ ଯେବେ ଅଗ୍ନିରେ ଝାସିବୁ ରାୟେ ଆଗ ।
ତେବେ ସେ ପଶିବ ମୁହିଂ ତୋର ସଙ୍ଗ । ୧୬୦ ।
ସ୍ୱର୍ଗେ ସୁରଗଣ ଯେ କରନ୍ତି ବିଚାର ।
ଘୋଡ଼ା ଧୂଆଂଇଣ ସେ କେବଣ ଅଶୁଆର । ୧୬୧ ।
ବ୍ରହ୍ମା ବୋଇଲେ ଯାହାର ପୋଡ଼ଇ ମଣ୍ଡୋଳ ।
ସେ ସେ ଘୋଡ଼ା ଧୂଆଇଂଛି ଭଗୀରଥି ମହୀପାଳ । ୧୬୨ ।
ଶୁଣିଣ ଦେବତାୟେ ସାଧୁ ସାଧୁ କଲେ ।
ଧନ୍ୟ ତୁ ନୃପତି ହୋ ବୋଲିଣ ବୋଇଲେ । ୧୬୩ ।
ଯେଥୁ ଅନନ୍ତରେ ହଲ୍ଲି ପିରି ସୁତ ।
ଅଗ୍ନିରେ ପଶିଲ୍ଲ ଯେ ଧରିଣ ଶୁଦ୍ଧ ଚିତ୍ତ । ୧୬୪ ।
ଯହୁଂ ନୃପତିବର ପଶିଲାକ ଯାଇ ।
ସାଙ୍ଗେ ସାଙ୍ଗେ ଗଙ୍ଗା ପଶିଲ୍ଲକ ଧାଇ । ୧୬୫ ।
ହୋଇଲେ ଶୀତଳ ଯେ ସାଗର ରଜା ପୋୟେ ।
ଦେବାସୁର ମୁନି ସାଧୁ ସାଧୁ କୟେ । ୧୬୬ ।

Digitized by srujanika@gmail.com

ରାଜା ଭଗୀରଥ ହୋଇଲା ବାହାର ।
କୁଳେଣ ବଳଯ୍ୟେ କଲାକ ନୃପବର । ୧୬୭ ।
ସାନନ୍ଦେଣ ଭକ୍ତସଲ୍ୟ ସୂର୍ଯ୍ୟବଂଶ ନୃପତ୍ତ ।
ସ୍ୱର୍ଗେ ଦେବତାଯ୍ୟେ କୁସୁମ ବରଷନ୍ତ । ୧୬୮ ।
ଦକ୍ଷିଣାବର୍ତ୍ତି ହୋଇ ଯେ ବହିଲା ସୁରସୁରୀ ।
ଦହନ ଲୋକଙ୍କୁ ଶୀତଳ ଯେ କରି । ୧୬୯ ।
ହୋଇଲେ ମୁକତ ସଗର ରାଜା ସୁତ ।
ଯୋଗ ମୂର୍ତ୍ତିରେ ବସିଲେ ଦେବଙ୍କ ସଙ୍ଗାତ । ୧୭୦ ।
ଚକ୍ର ଆକାର ହୋଇ ବୁଲିଲେ ସୁରେଶ୍ୱରୀ ।
ଚକ୍ରଘାଟ ନାମ ହୋଇଲା ତାହାର । ୧୭୧ ।
ଭଗୀରଥ କାର୍ଯ୍ୟ ଦେବୀ ନିର୍ଭାକଲା ।
ଦେବଙ୍କର ଅର୍ଥେ ପୃଥ୍ୱିକୁ ବହିଲା । ୧୭୨ ।
ସାତକୋଶ ତହୁଁକ ଅଟଇ ସିନ୍ଧୁକୂଳ ।
ଯାଇଣ ଗଙ୍ଗା ଯେ ଭେଟିଲେ ମହାଜଳ । ୧୭୩ ।
ପଣ୍ଡର ସଙ୍ଗେ ସନ୍ଧୁଂ ଭେଟ ଯେ ହୋଇଲା ।
ସାଗର ସଙ୍ଗମ ବୋଲି ନାମ ବୋଲାଇଲା । ୧୭୪ ।
ତହୁଁ ସ୍ନାହାନ କରନ୍ତ ଯେବଣ ପ୍ରାଣୀ ।
ସ୍ୱେହ ଦେହେ ମୁକତ ପୁରାଣେ ବଖାଣି । ୧୭୫ ।
ଗଙ୍ଗାର ସଙ୍ଗତେ ଯେ ସଙ୍ଗମ ତୀର୍ଥ ରାଜା ।
ଦର୍ଶନ କରନ୍ତେ ସକଳ ସୁଫଳ କାର୍ଯ୍ୟ । ୧୭୬ ।
ମ୍ଳେଚ୍ଛ ମୁକତ ଯେ ପୁଣ୍ୟ ତନୁ ବନ୍ଧ ।
କଳା ପଦାର୍ଥ ଯେ ଶୁକ୍ଳ ମୂର୍ତ୍ତି ହୁଅଇ । ୧୭୭ ।
ପକ୍ଷୀ ନିମିତ୍ତେ ଯେ ଅଇଲେ ଦେବଗଣ ।
ରଜତ ମନ୍ଦାର ପୁଷ୍ପ ମାଳେକ ଘେନିଣ । ୧୭୮ ।
ଜଳେଣ ଝେପନ୍ତେ ଯେ ହୋଇଲାକ ଶେତ ।
ଦେଖି ଦେବତାଯ୍ୟେ ହୋଇଲେ ଉଷତ । ୧୭୯ ।
ଗଙ୍ଗା ସାଗରେ ଯେ କଲେକ ସ୍ନାହାନ ।
ସନ୍ତୋଷ ଚିତ୍ତ ଯେ ହୋଇଲେ ସୁରଗଣ । ୧୮୦ ।
ସେ ସେ ସ୍ଥେ ଗଙ୍ଗା ସପତ ସାଗର ପୂରିଲା ।
ତେଣୁ ସେ ଜଗତ ଆନନ୍ଦ ହୋଇଲା । ୧୮୧ ।
ସଙ୍ଗମ ସ୍ଥାନେ ଅଛୁ ମାଧେବ ପ୍ରତିମା ।
ତାହାକୁ ଦର୍ଶନ କଲେ ନଯାଇ ଯମ ସୀମା । ୧୮୨ ।

Digitized by srujanika@gmail.com

କାର୍ତ୍ତିକେଶ୍ୱର ପାଷାଣ ଦ୍ରବ୍ୟକାୟେ ।
ସେ ଯେହ୍ନ ଦେଖେ ସେ କପିଳାସ ପାୟେ । ୯୮୩ ।
ଯେବଣ ଠାବରେ ସେ ସଗର ପୁତ୍ରେ ଥିଲେ ।
ସେ ସେ ସପ୍ତଦ୍ୱୀପ ପୁରାଣେ ବୋଲାଇଲେ । ୯୮୪ ।
ସଙ୍କେତ ମାଧବ ସଙ୍କେତ ହର ଅର୍କ୍କି ।
ଉତ୍ତର ଅଭିମୁଖେ ବଜଯେ ଶିଖିବଚ୍ଛ । ୯୮୫ ।
ଚନ୍ଦଘାଟକଇ ଯେ ଶତେକ ଧେନୁ ଅନ୍ତେ ।
ଶ୍ରୀସ୍ନାନ ଦେନ ତହ୍ନଂ ବାଞ୍ଛଯେ ଅନନ୍ତେ । ୯୮୬ ।
ମୁକ୍ତି କୁଣ୍ଡଲେ ଯେ ମୁକ୍ତ ହୋନ୍ତି ପ୍ରାଣୀ ।
ସେହ୍ନ ତୀର୍ଥ କଥା ପୁରାଣ ବଖାଣି । ୯ ୭ ।
ମୃତ୍ୟୁଜୀବମାନେ ସ୍ନାହ୍ନାନ କଲେ ପ୍ରାଣ ପାଇ ।
ଅନ୍ତକାଳେ ସେ ପ୍ରାଣୀ ସ୍ୱର୍ଗକଇ ଯାଇ । ୯୮୮ ।
ଗଙ୍ଗାକଇ ଯୋଜନେ ବୋଲନ୍ତି ଜାଣ ସ୍ୱର୍ଗ ।
ପ୍ରୟାଗକୁ ଦୁକୋଶ ଦେବା ନଳ ମାର୍ଗ । ୯୮୯ ।
ଶ୍ରୀପୁରୁଷୋତ୍ତମଙ୍କ କୋଶେ କହ୍ନ ।
ହାଥ ବଢାଇଲେଣ ସାହାରେଣ ପାଇ । ୯୯୦ ।
ଗଙ୍ଗାଜଳେ ମଲେ ଦ୍ୱୀପଡ ହୋନ୍ତି ପ୍ରାଣୀ ।
ନଷ୍ଟଯେ ଏହ୍ନ କଥା ପୁରାଣେ ବଖାଣି । ୯୯୧ ।
ବାରାଣସୀ ପୁରେ ଜଳ ସ୍ଥଳେ ମୁକ୍ଷ ।
ଯହ୍ନଂ ବଜେ କରନ୍ତି ବିରୂପାକ୍ଷ । ୯୯୨ ।
ସାଗରେ ସ୍ଥଳେ ଅନ୍ତରୀକ୍ଷେ ଯେବେ ମରି ।
ପ୍ରତକ୍ଷେ ଚଢ ମୁକ୍ତି ପାଆନ୍ତି ନରନାରୀ । ୯୯୩ ।
ସେ ଚନ୍ଦଘାଟେ ଦିଅନ୍ତି ଯେବେ ଦାନ ।
କହିଲେ ନ ସରଇ ତହ୍ନଂର ପୁଣ୍ୟ ମାନ । ୯୯୪ ।
ସର୍ବଦେବେ ଯହ୍ନଂ ହୋଇଛନ୍ତି ଯେକ ଗୋଷ୍ଠୀ ।
ଢେବେ ସେ ଗଙ୍ଗା ବୋଲଇଲା ତୀଥ ଶ୍ରେଷ୍ଠୀ । ୯୯୫ ।
କପିଳ ମହାମୁନି ସେ ଦକ୍ଷିଣ ପାଟୁଣେ ।
ବସିଣ ତପ କରଇ ସୁବର୍ଣ୍ଣରେଖା ପାଶେ । ୯୯୬ ।
ସେ ଧାରେର ନାମ ତାରଣ ଗଙ୍ଗା ହୋଇ ।
ଅନନ୍ତ ମୂରତି ହୋଇ ବହୁଅଛି ନଈ । ୯୯୭ ।
ଶୁଣ ତୁ ଶ୍ରୀରାମ ହୋ ଯେଥିର କାହାଣୀ ।
ଯେହ୍ନାର ମହିମା ଯେ ବିଧାତା ନ ଜାଣି । ୯୯୮ ।

Digitized by srujanika@gmail.com

ସେହି ପୂର୍ବେ ନନ୍ଦୀ ପୂର୍ବେ କରଇ ଶଙ୍କର ।
ତେଣୁ ସେ ନାମ ହୋଇଲା ସୁରପୁରୀ । ୯୯୯ ।
ସ୍ନାନଦାନ କରନ୍ତେ ଅପାବନେ ପାବେନ ହୁଅନ୍ତି ।
ଲୋକପାବେନୀ ବୋଲି ତେଣୁ ସେ ବୋଲନ୍ତି । ୧୦୦୦ ।
ବିଷ୍ଣୁର ପାଦେ ଜନ୍ମେ ଥିଲା ଯହୁଁ ରଙ୍ଗ ।
ବିଷ୍ଣୁପାଦୀ ନାମ ତେଣୁ ନାମ ବନ୍ଧ । ୧ ।
ହେହାଙ୍କୁ ଶିରେ ଘେନଇ ତ୍ରିପୁରାରି ।
ଗଙ୍ଗାଧର ନାମ ବହଇ ତ୍ରିପୁରାରି । ୨ ।
ସେହିକାଳଇ ଆନ ତୀର୍ଥ ପଟାନ୍ତର ନାହିଁ ।
ସେଠାରେ ତୁ ସ୍ନାନଦାନ କର ରଘୁସାଇଁ । ୩ ।
ବିଶ୍ୱାମିତ୍ରର ସେମନ ବଚନ ଶୁଣି ।
ଶ୍ରୀରାମ କରଯୋଡ଼ି ପଚାରନ୍ତି ପୁଣି । ୪ ।
ଗଙ୍ଗା ସ୍ନାନ ଭକ୍ତେଶୀ ଅଛଇ ମହିମା ଦେଇ ।
କାର୍ତ୍ତିକେଶ୍ୱର ତାତ କେମନ୍ତେ ପୁତ୍ର ହୋଇ । ୫ ।
ବିଶ୍ୱାମିତ୍ର ବୋଇଲେ ଶୁଣ ରଘୁନାଥ ।
ଦକ୍ଷର ଯଜ୍ଞ ଧ୍ୱଂସିଣ ଶୂଳହସ୍ତ । ୬ ।
ପାର୍ବତୀ ନ ପାଇଣ ବିକଳ ତ୍ରିପୁରାରି ।
ହେମବନ୍ତେ ଯାଇ ଅନେକ ତପ କରି । ୭ ।
ତାଡ଼କାସୁର ବୋଲି ସେ ଦଇତେ ହୋଇ ।
ଭୋଗ କଲା ବଳେ ସେ ଧନପୂର ମହୀ । ୮ ।
ବ୍ରହ୍ମାର ଆଗେ କହିଲେ ଦେବେ ଯାଇ ।
ଜଗତ ସଂସାର ରଖ ତୁ ଗୋସାଇଁ । ୯ ।
ତାଡ଼କାସୁର ବୋଲି ଅସୁରେକ ଉତପନ୍ନ ।
ତ୍ରୈଲୋକ୍ୟ କ୍ଷୋଭ କଲାକ ନୃପନନ୍ଦ । ୧୦ ।
ବିଧାତା ବୋଇଲେ ପଚାର ହୋ କାଳ ।
ସଦାଶିବର ଯେବେ ହୋଇବ ଦୁଲଣ । ୧୧ ।
ସେ ସେ ଦଇତ୍ୟ ଜୀବ ବିନାଶ ।
ଶୁଣି ଅମରଗଣେ ସେ ହୋଇଲେ ହରଷ । ୧୨ ।
ବୋଇଲେ ହର ଯେ ଅଛଇ ତପେ ବସି ।
କେ ତାହାର ଯୋଗ ଭଙ୍ଗ ଆସି ନାଶି । ୧୩ ।
ତେବେ ସେ ହେମବନ୍ତ ନନ୍ଦନୀକ ବିଭା ହୋଇ ।
ପୁତ୍ର ଉପୁଜିଲେ ଦନୁଜ ନାଶ ହୋଇ । ୧୪ ।

Digitized by srujanika@gmail.com

ଏହିକ ସ୍ଥାନ ହୋଇ ବସିଲେ ସୁର ।
କାମଦେବକୁ ସେହିଂ ବୋଇଲେ କୁଶଧର । ୧୫ ।
ତୁ ହୋ ମଦନ ଦେବକାର୍ଯ୍ୟ ପାଇ ।
ସଦାଶିବର ତପ ଭଗ୍ନ କର ଯାଇ । ୧୬ ।
ତେବେ ସେ ହରଗଉରୀ ବିଭା ହୋନ୍ତି ।
ପୁତ୍ର ଉପୁଜିଲେ ଅସୁର ନାଶ ଯାନ୍ତି । ୧୭ ।
ଶୁଣି କରଯୋଡ଼ି ବୋଲଇ ପଞ୍ଚଶର ।
କେ ଦେବ ଦ୍ରୋହ କରିବ କେହ୍ନେ ଦେବ ହର । ୧୮ ।
ସୋମ ସୂର୍ଯ୍ୟ ବହ୍ନି ଯାହା ତିନି ନେତ୍ର ।
ଚାହିଁଲେଣ ଦହନ ହୋଇବ ମୋର ଗାତ୍ର । ୧୯ ।
ତୁମ୍ଭର ଆଜ୍ଞା କି ପାରିବି ମୁହିଂ ଲଙ୍ଘି ।
ଏହି ମୋହୋର ଦେହ ହଉ ପଛେ ଗଞ୍ଜି । ୨୦ ।
ଏହିତେ କହି ବ୍ରହ୍ମାକଇ କଲା ନମସ୍କାର ।
ହେମଗିରି ନିକଟେ ଚଳଇ କାମବୀର । ୨୧ ।
ଏଥୁ ଅନନ୍ତରେ ଶ୍ରୀରାମଚନ୍ଦ୍ର ଶୁଣ ।
ତହିଂ ତପେ ଶିବ ସେ ଅଛଇ ବସିଣ । ୨୨ ।
ହେମର ନନ୍ଦନୀ ଯେ ଉମା ତହିଂ ଅଛି ।
ବନ ବୁଲି ଅଇଲା ସେ ସମାନ୍ୟ ମୃଗାକ୍ଷୀ । ୨୩ ।
ଶଙ୍କରକୁ ଦେଖି ତୋଷ ତାହାଙ୍କର ମନ ।
ବିଚାରଇ ଏହି ମୋତେ ବରପଣେ ଯୋଗ୍ୟ ନ । ୨୪ ।
ଶୁଦ୍ଧ ସ୍ଫଟିକ ଗୋକ୍ଷୀର ବର୍ଣ୍ଣ ଗାତ୍ର ।
ନିକଳଙ୍କ ଚନ୍ଦ୍ରମା ଜାଣି କାନ୍ତି ପବିତ୍ର । ୨୫ ।
ବାସୁକି ନାଗ ଯେ ଅଛଇ କଣ୍ଠେ ହାର ।
ସର୍ବାଙ୍ଗେ ଅଛଇ ଯେ ବ୍ୟାଳ ଅଲଙ୍କାର । ୨୬ ।
ଶାର୍ଦ୍ଦୂଳ ରୋମ ଯେ ଅଛଇ କଟିତଟ ।
ଶିରରେ ଶୋଭିବନ ଦିବ୍ୟ ଗୁରୁ ଜଟ । ୨୭ ।
କର୍ଣ୍ଣରେ ମଣିକୁଣ୍ଡଳ ଶିରରେ ଦୁଜା ଶଶୀ ।
ଯୋଗତଳୟେ କରିଅଛନ୍ତି ବସି । ୨୮ ।
ଉମା ବିଚାରଇ ଏହି ଅପୂର୍ବ ପୁରୁଷ ।
ନିଶ୍ଚୟେ ଜାଣିଲି ଏହି ଅଟନ୍ତି ଦିଗବାସ । ୨୯ ।
ଜନ୍ମେ ଜନ୍ମେ ଏହି ଅଟଇ ମୋର ପତି ।
ମୁହିଂ ସେ ଏହାର ଅଟଇ ଅର୍ଦ୍ଧଅଙ୍ଗ ଯୁବତୀ । ୩୦ ।

Digitized by srujanika@gmail.com

ସେହ୍ନାକର ଗୁଣ୍ଡ଼ ପିବଇ ଆର କାହିଂ ।
ପିଅର ଜନମରେ ମୋହୋର କାଯିଁ ନାହିଂ । ୩୧ ।
ସେତେ ବୋଲି ଦେବୀ ହରର ନିକଟେ ।
ସେହୁ ତପ କଲା ଗନ୍ଧ ନଦୀର ତଟେ । ୩୨ ।
ସେଥୁ ଅନନ୍ତରେ ଶୁଣ ତୁ ଶ୍ରୀରାମ ।
ତହିଂ ଯାଇ ପ୍ରବେଶ ହୋଇଲାକ କାମ । ୩୩ ।
ସଦାଶିବ ଦେଖି ଯେ ପଞ୍ଚବାଣ ମାର ।
ତପଭଗ୍ନ ହୋବଣ ବୃହିଂଲେ ତ୍ରିପୁରାର । ୩୪ ।
କପାଳ ନୟନ ଯେ କାମକୁ ଦୃଷ୍ଟି ଦେଇ ।
ପାଉଂଶ କୃତ ହୋଇଲା କନ୍ଦର୍ପର ଦେହ । ୩୫ ।
ଯହିଂ ଧ୍ୟାନ ଭଗ୍ନ ହୋଇଲେ ତ୍ରିପୁରାର ।
ଆଗେ ଦେଖିଲେ ଅଛୁ ଯେ ହେମବନ୍ତ କୁମାରୀ ।୩୬।
ରୂପ ଦେଖି ଦେବ ହୋଇଲେ ହରଷ ।
ପୁଚ୍ଛନ୍ତି ଶଙ୍କର କେ ତୋହୋର କୁଳ ଗୋତ୍ର ।୩୭।
ଉମା ବୋଇଲେ ମୁଂ ହେମବନ୍ତର ଦୋହିତା ।
ମେନକା ନାମେ ହାଦେ ଅଟଇ ମୋହୋର ମାତା ।୩୮।
ଗଙ୍ଗା ଜ୍ୟେଷ୍ଠ ଭଗ୍ନୀ ଅଟଇ ମୋହର ।
ଗଉରୀ ନାମ ମୁଂ ଯେ ବହଇ ତ୍ରିପୁରାର । ୩୯ ।
କ୍ରୀଡ଼ା କରନ୍ତ ମୁଂ ଯେ ଅଇଲି ଏ ବନ ।
ତୋତେ ଦେଖି ମୋର ମୋହିତ ହେଲା ମନ । ୪୦ ।
ଯୋଗେ ଜାଣିଲି ତୁ ଅଟୁ ବିଶ୍ୱନାଥ ।
ସେ ମୋହର ଠାକୁର ତୁ ଅଟୁ ଶୂଳହସ୍ତ । ୪୧ ।
ତୁ ଅସି ବୀର ନାଥ ମୁହିଂ ସୁବାନାରୀ ।
ଶୁଣିଣ ସନ୍ତୋଷ ଯେ ହୋଇଲେ ତ୍ରିପୁରାର । ୪୨ ।
ରୁଦ୍ର ବୋଇଲେ ସେ ଅଟଇ ପାର୍ବତୀ ।
ପ୍ରାଣର ଧାରଣୀ ସେ ମୋ ଅର୍ଦ୍ଧଅଙ୍ଗ ମୂରତି । ୪୩ ।
ବ୍ରହ୍ମାଙ୍କର ସୁମରଣା କଲେ ଶୂଳପାଣି ।
ଅଇଲେକ ପିତାମହ ହଂସ ପିଠି ଚଢ଼ି । ୪୪ ।
ସଦାଶିବ ବୋଇଲେ ଶୁଣସି ହୋ ବ୍ରହ୍ମା ।
ସେ ମୋହୋର ପୂର୍ବର ରମଣୀ ଅଟଇ ବାମା । ୪୫ ।
ଅନେକ ଦୁଃଖ ପାଇଲି ମୁଂ ସେହ୍ନାର ବିହୁନେ ।
ସେତେ କାଳେ ଭେଟପାଇଲି କେବଣ ପୁଣ୍ୟେ ।୪୬।

Digitized by srujanika@gmail.com

ତୁହ୍ମୋ ପିତାମହ କରସି ମୋତେ ବଶ ।
ଗୁରୁ ସ୍ୱଦେଶେ ସ୍ୱେ ହୋଇଲନ ଯୁବା । ୪୭ ।
ଶୁଣି ବିଧାତାର ପ୍ରମୋଦିତ ଚିତ୍ତ ।
ଦେଶ କାଳ ବାକ୍ୟ ଯେ ବିଧି ଉଚିତ । ୪୮ ।
ହର ଗଉର କନକଯୋଡ଼ିଣ କୃଣ ବାନ୍ଧ ।
ହୁଅନ୍ତି ବେନ ଜନେ ପରମ ସାନନ୍ଦ । ୪୯ ।
ଆଶିଷ ଦେଇ ବ୍ରହ୍ମା ଫେଡ଼ଇ କୃଣଗଣ୍ଠି ।
ବିଶ୍ୱ ବିଧି ଉଗଲା ପରମେଷ୍ଠୀ । ୫୦ ।
ଯହୁଂ ସେ ପିତାମହ ନିଜପୁର ଗଲା ।
ପାର୍ବତୀଙ୍କି ଶମ୍ଭୁ ଈଶ୍ୱର ବୋଇଲା । ୫୧ ।
ହେ ସଖୀ ମୋତେ ଗୋ ରମଣୀ ଭୋଗଦେସି ।
ଅନେକ କାଳହୁଂ ମୁଂ ବ୍ରତ ଉପବାସୀ । ୫୨ ।
ଉମା ବୋଇଲେ ସ୍ୱାମୀ ଆହାର ତୋର ନାହୁଂ ।
ଅନେକ କାଳ ତପେ ଥିଲ ଯେ ଗୋସାଇଂ । ୫୩ ।
ବଳହୀନ ହୋଇ ଅଛଇ ତୋହର ଦେହ ।
ସେ କାଳେ ରମଣୀ କି କରୁଅଛୁ କେହ୍ନେ ସ୍ନେହ । ୫୪ ।
ନିର୍ବଳ ମନୁଷ୍ୟଙ୍କ ପାରଇ ରତି କରି ।
ସେ ବଚନ ଶୁଣି ବୋଇଲେ ତ୍ରିପୁରାରି । ୫୫ ।
ତୁ ଗୋ ସଖି ମୋତେ ମଣିଲୁ କି ସାନ ।
ମୁହିଂ ସେ ଅଟଇ ମହାଦେ ଜଗତ ଈଶାନ୍ୟ । ୫୬ ।
ଆହାର ବିହୀନେ କି ମୋହୋର ବଳ ତୁଟଇ ।
ସେ କଥା କି ସଖିରେ ତୋ ଚିତ୍ତକୁ ଆସଇ । ୫୭ ।
ଆସ ଆସ ରମଣ କରିବା ପ୍ରାଣେଶ୍ୱରୀ ।
ଯେ ସେଥେ ହାରଇ ସେ ତାହାର ଭୃତ୍ୟ ହୋଇ । ୫୮ ।
ହସି ଶୁଭ୍ରକେଶୀ ସନମତ କଲେ ।
ହସ୍ତ ଧରି ରୁଦ୍ର ଉମାଙ୍କୁ ନେଲେ । ୫୯ ।
ନଦୀର ତଟରେ ବିପୁଳ ଗୁରୁବନ ।
ଦର୍ପଣ ଶିଳାରେ ବିଜେ ସେ ବେନିଜନ । ୬୦ ।
ରତି ଆରୁହିଲେ ଲଜା ଛାଡ଼ି ଗୁଡ଼ି ।
ସେ ଜାଣଇ ଆରେକ ବିବାଧ ଗଢ ଭଙ୍ଗି । ୬୧ ।
କରନ୍ତି ରମଣ ସେ ନ ଧୁଟନ୍ତି କେହ୍ନ ।
ସେମନ୍ତେଣ ଅନେକ ବିବଧ ଗଲ୍ଲ ବହୁ । ୬୨ ।

Digitized by srujanika@gmail.com

ଦେବ ବରଷେଣ ଶସ୍ତେ ବରଷ ଗଲା ।
ଶଙ୍କର ଗିରିଜାଙ୍କର ଶୃଙ୍ଗାର ନ ସରିଲା । ୬୩ ।
ପୃଥିବୀ କଂପିଲା ଡରିଲେ ଦିଗପାଳ ।
ମିଳିଣ ଦେବତାଏ ହୋଇଲେ ଏକମେଳ । ୬୪ ।
ବ୍ରହ୍ମା ସହିତେଣ ଅଇଲେ ଦେବଗଣ ।
ସ୍ତୁତି କରନ୍ତି ଯେ ହୋଇଣ କାପୁନ୍ୟ । ୬୫ ।
ରଖ ସଦାଶିବ ରମଣୀ ଭୋଗ ଲେଛ ।
ସଂସାର ଦହନ ଯେ ହୋଇଅଛୁ ବିରୂପାକ୍ଷ । ୬୬ ।
ଶୁଣିଲା ସଦାଶିବ ଦେବଙ୍କର ବାଣୀ ।
ରତିଭୋଗ ଛାଡ଼ିଲେ କାଳରୁଦ୍ର ବାଣ ଶୁଣି । ୬୭ ।
ବୀର୍ଯ୍ୟ ଉଛୁଳିଣ ପଡ଼ିଲାକ ମହୀ ।
ପୃଥିଦେବୀ ହରିଶ୍ୱରେଣ ବୋଧଇ । ୬୮ ।
ତୁମ୍ଭେ ଦେବତାଏ କରୁଅଛ ଅନୀତି ।
ହର ବୀର୍ଯ୍ୟ ବହିବାକୁ ନ ମୁଂ ଯେ ଶକତି । ୬୯ ।
ପାରିଲେ ଆନଠାରେ ଥୁଅ ଏହା ନେଇ ।
ଶାପାନ୍ତଲେ ପଡ଼ି ମୋହର ଦୋଷ ନାହିଂ । ୭୦ ।
ପୃଥ୍ୱୀର ଆକୁଳ ଦେଖି ଜଗତର ପିତା ।
ଅଗିନିକି ଚାହିଂଣ ଯେ ବୋଇଲା ବିଧାତା । ୭୧ ।
ପୃଥ୍ୱୀ ନ ସହଇ ହରର ବୀର୍ଯ୍ୟ ଭାର ।
ବେଗକରି ଧର ତୁ ସଂସାର ରକ୍ଷାକର । ୭୨ ।
ଅଗ୍ନି ବୋଇଲା ମୁଂ ପାରିବିନିକି ଦହିଂ ।
ଦେଖୁ ଦେଖୁ କାମ ହୋଇଲାକି ଦହିଂ । ୭୩ ।
ତୋହର ଆଗ୍ୟା ତ ନ କରିବି ଆନ ।
ଏତେ ବୋଲି ବୀର୍ଯ୍ୟ ଧଇଲା ହୁତାଶନ । ୭୪ ।
ପାର୍ବତୀ ବସ୍ତ୍ରରଇ ସ୍ୱେତ ସାର ବୀର୍ଯ୍ୟ ।
ମୋହର ଗର୍ଭେ ଯେବେ ରହନ୍ତା ସୁତେଜ । ୭୫ ।
ପୁତ୍ର ପ୍ରସବନ୍ତି ମହାଦେବ ସମ ।
ଦେବତାଏ ଆସି ମନ୍ଦବୁଦ୍ଧି କରି । ୭୬ ।
ଏତେକ ବୋଲି ଦେବୀ ମନେ କୋପ କଲେ ।
ସୁରଗଣଙ୍କର ମୁଖ ଚାହିଂଣ ବୋଇଲେ । ୭୭ ।
ସୁତ ବନ୍ଧ୍ୟା ଗୁଣ ଯେ ଭାଙ୍ଗିଲ ତୁମ୍ଭେ ଆସି ।
ନାରଖାର କଲ ଏତେ ଚକ୍ର ଭୋଗଯାଗି । ୭୮ ।

Digitized by srujanika@gmail.com

ନିଜ ପତିର ପାଇଁ ମୋ ଗର୍ଭରେ ରହନ୍ତା ପୁତ୍ର ।
ଏବେ ମୋହର ଗର୍ଭ ହୁଅନ୍ତା ନା ପବିତ୍ର । ୭୯ ।
ତୁମ୍ଭର ଘରଜାଙ୍କ ରମଣେ ପୁତ୍ର ନୋହୁ ।
ଏବେ ମୋହୋର ବଚନେ ଅସ୍ତୁବାଣୀ ହୋଉ । ୮୦ ।
ଶୁଣିଣ ଦେବତାଏ ହୋଇଲେ ମଉନ ।
କରପତ୍ର ଯୋଡ଼ିଣ ବୋଲଇ ହୁତାଶନ । ୮୧ ।
ତୁମ୍ଭର ବଚନ ତ ନ କରଇ ଆନ ।
ମୋହୋର ଶରୀର ହୋଇଲା ଦହନ । ୮୨ ।
କର ପ୍ରତିକାର ଏବେ କରିବଇ କିସ ।
ନୋହିଲେଣ ପ୍ରାଣ ହୋଇବଟି ବିନାଶ । ୮୩ ।
ବ୍ରହ୍ମା ବୋଇଲେ ଯେ ଅଗ୍ନିର ଉତ୍ତରେ ।
ଗଙ୍ଗାର ଗୋଚରେ ତୁ ଦେସି ବୈଶ୍ୱାନରେ । ୮୪ ।
ଶୁଣିଣ ହୁତାଶନ ସୁରସୂକ୍ଷ୍ମକ ଦେଲା ।
ବ୍ରହ୍ମା ବୋଇଲେ ବୋଲଣ ସମର୍ପିଲା । ୮୫ ।
ଗଙ୍ଗାଦେବୀ ବୋଇଲା ପାରିବକି ମୁହିଂ ଧରି ।
ଏମ୍ଭେ ସେ ତେଜ ପାଇଁ ସ୍ୱୟଂ ତ୍ରିପୁରାରି । ୮୬ ।
ଦେବଙ୍କର ଆଜ୍ଞା ମୁଁ ପାଳିବି ଅବଶ୍ୟ ।
ନୋହିଲେ ନା ମୋର ହୋଇବ ନା ଦୋଷ । ୮୭ ।
ଏମନ୍ତେ ବୋଲି ଦେବୀ କର ଯେ ପ୍ରସାରି ।
ଯେଣଲୋକ ପାଇଁ ସଙ୍କୁଚ ମନେ ଧରି । ୮୮ ।
ମୁଖେ ଭରିଣ ଯେ ଭୋଜନ କଲେ ବାଳୀ ।
ପେଟେ ପଡ଼ନ୍ତେଣ ହୋଇଲା ଅନ୍ତରାଳି । ୮୯ ।
ଦେହ ବୁଲଇଣ ଯେ ଅଇଲା ଉପୁଚିଆଇ ।
କଣ୍ଠତଟେ ପାଇଁ ହୋଇଲକ ଯାଇ । ୯୦ ।
ମୁଖେ ଉଦ୍‌ଗାରି ଯେ ପକାଇଲା ମହାରସ ।
ଉଛୁଳି ପଡ଼ିଲା ନ ରହିଲା ଗର୍ଭବାସ । ୯୧ ।
ବିକଳେଣ ଗଙ୍ଗା ଯେ ଆଞ୍ଜୁଳି କରିଧରି ।
କପିଳାସ କନ୍ଦରକୁ ଧକାଇଲା ତୋଳି । ୯୩ ।
ବିଛୁଳି ହୋଇଣ ଯେ ପଡ଼ିଲକ ପାର୍ଶ୍ୱେ ।
ସେ ସେ ପାଷାଣ ଖଣ୍ଡେ ଲଗ୍ନେ ଭଗ୍ନେ ତେଜ । ୯୩ ।
ଅଷ୍ଟଧାତୁ ତହୁଁ ହୋଇଲା ଉତପତି ।
କାଚ ହେଙ୍ଗୁଳା ହରିତାଳ ମୂର୍ତ୍ତି । ୯୪ ।

Digitized by srujanika@gmail.com

ମଣିଶିଳ ଆସେ ପାର୍ବଣିଳା ମୂତ୍ର ।
ସ୍ୟଟିକ ଘେନଣ ଅନେକ ମୂର୍ତ୍ତି ଜାତ । ୯୫ ।
ସେ ସେ ମହାରସ ଗିରବରେ ପଡ଼ି ।
ଠାବେ ଠାବେ ହୋଇଣ ସେ ଅଷ୍ଟଧାତୁ ଜଡ଼ି । ୯୬ ।
ଦେବେ ବସ୍ତୁରଲେ କରିବା ବୁଦ୍ଧି କସ ।
ଅକ୍ଷୟେ ମହାବୀର୍ଯ୍ୟ ହେଉଅଛୁ ବିନାଶ । ୯୭ ।
ବ୍ରହ୍ମା ବସ୍ତୁରଣ ଯେ ଷଡ଼ କୃତ୍ତିକାକୁ ଗ୍ରଲ ।
ବହୁତ ଭୁସ୍ତି ଧାତା କଲ ତାଙ୍କୁ ଗୃହଂ । ୯୮ ।
ବୋଇଲେ ଜଗତ ଯେ ତୁମ୍ଭେ ରକ୍ଷାକର ।
ହରବୀର୍ଯ୍ୟ ନେଇ ଗର୍ଭରେ ତୁମ୍ଭେ ଭର । ୯୯ ।
ଯେହ୍ଣାର ଜନମ ହୋଅନ୍ତେ ତାଡ଼ିକା ଜୀବହତ ।
ତୁମ୍ଭେ ସେ ହୋଇବ କୁମାରଙ୍କର ମାତ । ୧୦୦ ।
ପୂର୍ବେଣ ଶାପ ଯେ ତୁମ୍ଭକଇ ଅଛୁ ।
ସପତଋଷିଙ୍କର ଭରଜା ହୋଇଥିଲ ପଙ୍କଜାକ୍ଷି । ୧୦୧ ।
ଅଗ୍ନି ତୁମ୍ଭକଭରେ କପଟେ ଭୋଗ କଲା ।
ନିଜ ନାରୀ ବୁଦ୍ଧିରେ ତୁମ୍ଭନ୍ତ ଏହା କଲା । ୧୦୨ ।
ତାହା ଜାଣି ଭୁଥାଏ ତୁମ୍ଭନ୍ତ ଶ୍ୟାପ ଦେଲେ ।
ଯାଅ ବୋଲି ପୁଣ ଅନୁଗ୍ରହ କଲେ । ୧୦୩ ।
ବୋଇଲେ ହରବୀର୍ଯ୍ୟ କରିବ ସମ୍ଭାଳଣ ।
ତେବେ ସେ ତୁମ୍ଭେ ଗୋ ପାଇବ କାରଣ । ୧୦୪ ।
ଯେ ଅଗ୍ନି ମାୟାରେ ଯେ ମନ୍ଦକର୍ମ କର ।
ଯେ ଯାଇ ତୁମ୍ଭର ପୁତ୍ର ହୋଉରେ ସୁନ୍ଦରୀ । ୧୦୫ ।
ତେଣୁ ସେ ହରର ରମଣର କାଳେ ।
ବୀର୍ଯ୍ୟ ପତନ ହୋଇଲା ଅଗ୍ନିର ବେଳେ । ୧୦୬ ।
ତେଜମଧ୍ୟେ ଧାତୁ କେହି ସଂହରି ନପାରିଲେ ।
ପୃଥ୍ୱୀ ହୁତାଶନ ଗଙ୍ଗା ଭସ୍ମେ କଲେ । ୧୦୭ ।
କପିଳାସ କନ୍ଦରେ ଯେବେ ପଡ଼ିଅଛୁ ।
ତୁ ଜାଣି ସମ୍ଭାଳ ସେ ହୋଇ ତୋହୋର ବଛୁ । ୧୦୮ ।
ବ୍ରହ୍ମାର ବଚନେ ଷଡ଼ କୃତ୍ତିକାଏ ଗଲେ ।
ସେ ସେ ମହାରସ ଗର୍ଭରେ ଧଇଲେ । ୧୦୯ ।
ତତକ୍ଷଣେ ପୁତ୍ର ସେ ପ୍ରସବିଲା ନାରୀ ।
ଆଦିତ୍ୟ ଅଇଲୁକ ତମିର ବିଦାରି । ୧୧୦ ।

Digitized by srujanika@gmail.com

ଛଡ଼ମୁଖ ସୁନ୍ଦର ଦ୍ୱାଦଶ ଭୁଜଅଛୁ ।
ଦେଖି କୃତ୍ତିକାଏ ନ ପାରନ୍ତି ମୂର୍ଛି । ୧୧୧ ।
କୋଳରେ ଧରି ପୁତ୍ର ମୁଖେ କ୍ଷୀରଦେଲେ ।
ଏ ବଚନ ଶୁଣି ଶ୍ରୀରାମ ବୋଇଲେ । ୧୧୨ ।
ଛଡ଼ କୃତ୍ତିକାଏ କ ଅଟନ୍ତି ଏକ ଦେହ ।
କହ୍ମା ଷଡ଼ ଶରୀର ସଞ୍ଚଗି ମୋତେ ଭଦ୍ର । ୧୧୩ ।
ଏକା ଜଣକ କ ଗର୍ଭରେ ଧଇଲା ।
କଅବା ଛଡ଼ଙ୍କର ଗର୍ଭରେ ରହିଲା । ୧୧୪ ।
ଛଡ଼ ମୁଖ ହୋଇ ହୋଇଲେ କହ୍ମା ଜାତ ।
ଆବର ବିଶେଷେ ଯେ ହୋଇଲା ବୀରହସ୍ତ । ୧୧୫ ।
ମୁନି ବୋଇଲି ହୋ ଶ୍ରୀରାମଚନ୍ଦ୍ର ଶୁଣ ।
କୃତ୍ତିକାଙ୍କୁ ଗୃହଂ ଯେ ପେଷିଲେ ଦେବଗଣ । ୧୧୬ ।
ବ୍ରହ୍ମାର ଆଜ୍ଞାରେ ଯେ ଅଇଲେ ଷଡ଼ନାରୀ ।
ବୀର୍ଯପାନ କଲେ ଯେ ଷଡ଼ଭାଗ କରି । ୧୧୭ ।
ଷଡ଼ଗର୍ଭ ଜାତ ହୋଇଲେ ଷଡପୁତ୍ର ।
ସ୍ନେହ କରି ନେଇ ଥୋଇଲେ ପଦ୍ମନେତ୍ର । ୧୧୮ ।
ଚୁମ୍ବକ ଲୁହାପଥରେ ଯେସନେ ଲାଗଇ ।
ସେ ଛଡ଼ ଶରୀର ହୋଇଲା ଏକଇ । ୧୧୯ ।
ତେଣୁକରି ପୁତ୍ର ହୋଇଲା ଛଡ଼ ଶିର ।
କୁମାର ନାମ ତାର ହୋଇଲା ପ୍ରଚୁର । ୧୨୦ ।
ଦ୍ୱିତୀୟ ଦିବସ ହୋଅନ୍ତେଣ ପୁତ୍ର ।
ବିଧାତା ଆଣିଣ ଯେ ଦେଲା ଦେବ ସହସ୍ର । ୧୨୧ ।
ହେମବଲ୍ଲର ଯେ ଅଟଇ ସନ୍ଥଂ ନାଥ ।
ମୟୂରେକ ଆଣି ଦେଲା ଗିରପତ୍ତି । ୧୨୨ ।
ତାହାର ପିଠିରେ ଆରୋହିଲା ବୀର ।
କ ଜାଣି ଧରଇ ଦୁଷ୍ଟ ଚକ୍ରଧର । ୧୨୩ ।
ଦେବତାଏ ଆସି ଅଭିଷେକ କଲେ ।
ଅମୋଘ ଶକତ୍ତି ଆଣିଣ ସମର୍ପିଲେ । ୧୨୪ ।
ତେଣୁ ସେ ନାମ ଅଟଇ ଶକ୍ତିଧର ।
ଦେବ ସୈନ୍ୟ ସେନାପତ୍ତି କଲେ ଦେବବର । ୧୨୫ ।
ଅନେକ ସ୍ତୁତି ସନ୍ଥଂ କଲେ ସୁରଗଣ ।
କୁମାର ବୋଲଇ ତୁମ୍ଭେ ସର୍ବଦେବ ଶୁଣ । ୧୨୬ ।

Digitized by srujanika@gmail.com

କେବଣ କାର୍ଯ୍ୟ ତୁମ୍ଭର କରିବଇ କହ ।
ଆଗ ହୋଇଣ ବଚନ କହନ୍ତି ପିତାମହ । ୧୨୭ ।
ତାଡ଼କାସୁର ଯେ ଦଇତ ମହାବଳ ।
ତାହାର ଭୟେ ହାଦେ କମ୍ପନ୍ତି ଦିଗପାଳ । ୧୨୮ ।
ସ୍ୱର୍ଗେ ସୁରପତି ନପାରନ୍ତି ରହି ।
ତାଡକାର ବେଗ ହୋଇଲା ସ୍ୱର୍ଗମହୀ । ୧୨୯ ।
ଶୁଣିଣ କୁମର କଲେକ ଯନମତ ।
ଦତ୍ୟର ଉପରକୁ ଧାଇଲା ତ୍ୱରନ୍ତ । ୧୩୦ ।
ଦେବସନ୍ୟ ଯେନ ବହୁତ ଯୁଦ୍ଧ କଲେ ।
ଯେ ଯାହା'ର ଅସ୍ତ୍ର ଯେନଣ ମାଇଲେ । ୧୩୧ ।
ଅଦ୍ଭୁତ ସମର କାର୍ତ୍ତିକେଶ୍ୱର କଲା ।
ଦେବ ବରଷେ ଶଏ ବରଷ ମୁଝିଲା । ୧୩୨ ।
ଶକତି ଯେନ ବୀର ମାଇଲା କୋପଭରେ ।
ପଡ଼ିଲା ଦତ୍ୟର ହୃଦସ୍ତ ଉପରେ । ୧୩୩ ।
ଚୂର୍ଣ୍ଣ ଫୁଟି ପିଣ୍ଡିକ ହୋଇଲା ତାହାର ।
ଜ୍ଞାନ ହାରିଣ ସେ ପଡ଼ିଲା ନିଶାଚର । ୧୩୪ ।
ପ୍ରାଣଗଲା ତାର ପାର୍ଥିବ ଦେହ ଲେଛୁ ।
ଦେଖି ଦେବତାଏ କୁମରକୁ ପୂଜି । ୧୩୫ ।
ଜୟ ଶଙ୍ଖ ବଜାଇଣ ସ୍କନ୍ଦ ତହୁଁ ଚଳିଗଲା ।
କପିଳାସେ ମାତା ପିତାଙ୍କୁ ଦେଖିଲା । ୧୩୬ ।
ନମସ୍କାର କରି ପିତାର ପାଦେ ପଡ଼ି ।
ଜନନୀଙ୍କ ଦେଖି କୋଳରେ ଯାଇବସି । ୧୩୭ ।
ହର ଗଉରୀ ପୁତ୍ରକୁ ବହୁତ ସ୍ନେହ କରି ।
ଉତ୍ତର ଦ୍ୱାରେ ତାକୁ ଦ୍ୱାରପାଳ କରି । ୧୩୮ ।
ଶୁଣସି ଭବାନୀ ଗୋ କହନ୍ତି ସଦାଶିବ ।
ଏହି ସର୍ବ କଥା କଉଶିକ ରାମକୁ କହିବ । ୧୩୯ ।
ରାଘବ ସନ୍ତୋଷ ସେ ହୋଇଲେ ଏହା ଶୁଣି ।
ଗଙ୍ଗାରେ ସ୍ନାହାନ କରନ୍ତି ରଘୁମଣି । ୧୪୦ ।
ଧନ୍ୟ ସେ ନଦୀ ବାବୁ ଧନ୍ୟ ତାର ରୂପ ।
ପୃଥ୍ୱୀ କି ପରିହରି ଯିନ ବସ୍ତ୍ର ରୂପ । ୧୪୧ ।
ମଧ୍ୟେ ସେ ଶୁକ୍ଳ ହଂସ ଦିଶେ ସୁରସ୍ୱସା ।
କେଜାଣି ପିଙ୍ଗଳ ଦିଶଇ ହରେ ହର । ୧୪୨ ।

Digitized by srujanika@gmail.com

ପିନ୍ଧଣ ଅଛଇ ଯେ ପୃଥୀ ଦେବୀ ତାହା ।
ଆପଣେ ମନକୁ ଶଂସଇ ଇଚ୍ଛାହା । ୧୪୩ ।
ଶାଢ଼ୀର ଖଞ୍ଜଣୀକ ପାଟଡ଼ଣ୍ଡୀ ହୋଏ ।
ଦୁଇ ତଟ ବାଲି ସୁବର୍ଣ୍ଣ ରଜ ପ୍ରାଏ । ୧୪୪ ।
ଧୀର ଧୀର ହୋଇ ବହନ୍ତ ଲହରୀ ।
ପାଟ ଜାଲି ବୋଲି ପଟାନ୍ତର କରି । ୧୪୫ ।
ନାନା ପକ୍ଷୀ ଜନ୍ତୁ କ୍ରୀଡ଼ନ୍ତ ସେ ଜଳେ ।
ଫୁଲ ପଡ଼ିଲେ କି ଶାଢ଼ୀର ଅଞ୍ଚଳେ । ୧୪୬ ।
ପବନହୁଂ ବେଗେ ସୋହୋଇ ଖରତର ।
କେଜାଣି ପଟାନ୍ତର ଦିଶଇ ଫରହର । ୧୪୭ ।
ସାଧୁ ଧବଳମୁଖୀ ଧବଳ ତନୁ ଦିଶି ।
ତହିଂ ସ୍ନାହାନ ଯେ କରନ୍ତ ରଘୁଶିଷି । ୧୪୮ ।
ବିଶ୍ୱାମିତ୍ର ମୁନି ଯେ ସକଳ ଋଷିଗଣ ।
ସୁରନଦୀ ଜଳେ କରନ୍ତ ସ୍ନାହାନ । ୧୪୯ ।
ନିତ୍ୟକର୍ମ ସାରି ନାବରେ ବସନ୍ତ ।
ଦକ୍ଷିଣ ତଟକଇ ପାରି ହୋଇଯାନ୍ତ । ୧୫୦ ।
ନାବୁ ଓହ୍ଲାଇଣ ବିପୁନ୍ୟେ ପରବେଶ ।
ମୁହିଂ ବଳରାମ ଶ୍ରୀରାମର ଦାସ । ୧୫୦ ।
ସେଥୁ ଅନନ୍ତରେ ବିପୁଳ ବନେ ପଶି ।
ଶ୍ରୀରାମ ଲକ୍ଷଣ ସହିତେ ମହାଋଷି । ୧୫୧ ।
ଦେଖିଲେ ତପୀଗଣେ ତପ କରୁଛନ୍ତି ।
ଶ୍ରୀରାମ ଲକ୍ଷ୍ମଣ ତାଙ୍କୁ ନମସ୍କାର କରନ୍ତ । ୧୫୨ ।
କଲ୍ୟାଣ ପାଇଣ ତହୁଂ ଚଳିଗଲେ ।
ବୈଶାଳୀ ରାଜ୍ୟେ ଯାଇ ପ୍ରବେଶ ହୋଇଲେ । ୧୫୩ ।
ଦେଖିଲେ ସେ ଦେଶ ଅତି ଶୋଭାବନ ।
ବିଚିତ୍ର ଚଉରା ହିଡ଼ନ୍ତ ଛନଛନ । ୧୫୪ ।
କାହିଁ ସୁବର୍ଣ୍ଣ କଳସ କାହିଁରେ ଯେ କାଚ ।
ବିଚିତ୍ର ଲେଖନ ଘର ଦିଶଇ ସୁହାଞ୍ଚ । ୧୫୫ ।
ତୋଟା ଉପବନ ମଣ୍ଡପ ଜଗତୀ ।
କୂପ ବାମ୍ପୀ ନଦୀ ପୋଖରୀ ଅଛନ୍ତି । ୧୫୬ ।
ଦେଉଳ ଅଟ୍ଟାଳି ଯେ ମେଢ଼ ମେଘନାଦ ।
ସୁସ୍ୱର ଗାୟନ ମଧୁର ଗୀତୁ ବାଦ୍ୟ । ୧୫୭ ।

Digitized by srujanika@gmail.com

ପୁର ଶୋଭାବନ ଗହଳ ହାଟ ବାଟ ।
ରଥ ଗଜ ଅଶ୍ୱ ଚତୁରଙ୍ଗ ଥାଟ । ୧୫୮ ।
ମନୋହର ଦେଖି ପୁଚ୍ଛନ୍ତି ଶ୍ରୀରାମ ।
ହେ ମୁନି କହ ଏ ନଗର କାସ ନାମ । ୧୫୯ ।
ରଘୁନାଥଙ୍କର ଏସନ ବାଣୀ ଶୁଣି ।
କହନ୍ତି ଗାଧିସୁତ ଅମୃତ ରସ ବାଣୀ । ୧୬୦ ।
ଶୁଣ ତୁ ଶ୍ରୀରାମ ହୋ ରଘୁବଂଶ ନାହା ।
ମୋହର ଆଗରେ ଇନ୍ଦ୍ର କହିଅଛି ଯାହା । ୧୬୧ ।
ତାହା ମୁଁ ତୋହୋ ଆଗେ କହଇ ରଘୁସାଇଁ ।
ଦକ୍ଷ ପ୍ରଜାପତିଙ୍କର ଷାଠିଏ ଦୋହିତା ଜନମହୋଇ।୧୬୨
କାଶ୍ୟପ ଋଷିଙ୍କି ବାରଏ କନ୍ୟା ଦେଲେ । ।
ଧାର୍ମିକ ବୋଲିଣ ତାକୁ ଦୋହିତା ଦାନ ଦେଲେ ।୧୬୩।
ଦିତି ଅଦିତି ଯେ ଉତ୍ତମ ବେନି ନାରୀ ।
ଦେବେ ଅସୁରେ ଏହାଙ୍କ ଗର୍ଭ ଅବତାରୀ । ୧୬୪ ।
ଦିତିର ଗର୍ଭ ଯେ ଦେବମାନେ ଜାତ ।
ଅଦିତିର ଗର୍ଭ ହାଦେ ଦଇତେ ସମ୍ଭୂତ । ୧୬୫ ।
ବୈମାତ୍ରି ଗୁଣେ ସେ କରଥାନ୍ତି କଳି ।
ପୁଣି ବସ୍ତୁରନ୍ତି ହୋଇ ଏକ ମେଳି । ୧୬୬ ।
କ୍ଷୀର ସମୁଦ୍ର ଯେ ମନ୍ଥିବା ଗୁଳ ଯାଇ ।
ବହ୍ମା ବିଷ୍ଣୁ ରୁଦ୍ର ସେ ଭାଳିଲେ ସର୍ବେ ଆଇ । ୧୬୭ ।
ଅନେକ ଅପୂର୍ବ ଅଛନ୍ତି ସାର ଆଏ ।
ଆସ ଆସ ସମସ୍ତେ ହେଁ ଯିବା ତହିଁଯାଏ । ୧୬୮ ।
ଏତେ ବୋଲି ଦେବ ଦଇତେ ମେଳ ହୋଇ ।
ମନ୍ଦର ଗିରି ତଳେ ମିଳିଗଲେ ଯାଇଁ । ୧୬୯ ।
ବୋଇଲେ ଏହାଦେଇ ମନ୍ଥିବା ସାଗର ।
ସଭିଏଁ ହୋଇଣ ଉପାଡ଼ିବା ଗିରିବର । ୧୭୦ ।
ନଟାଇ ପରବତ ଦୁଷ୍ଟେ ମେରୁ ଜାଣି ।
ସର୍ବେ ହୋଇ ଧଇଲେ କବଡ଼ି କର୍ପି ଟାଣି । ୧୭୧ ।
ପୁଣି ହୁକା ହୁକା ହୋଇଣ ଗୁଳନ୍ତି ।
ବଳାସ ଧରଣ ମନ ନ ଭାଙ୍ଗନ୍ତି । ୧୭୨ ।
ଭୂମି ଭଡ଼ା ଦେଇ ଲେଉଟିଲେ ସହୁଁ ତୋଳି ।
ସବୁଙ୍କର ମୁଖରୁ ରୁଧିର ନଉଳି । ୧୭୩ ।

Digitized by srujanika@gmail.com

ବ୍ରହ୍ମା ବୋଇଲେ ବାସୁଦେବ ଗୁହ୍ମଂ ।
କମ୍ପାଇ ତୁନ୍ନ ଯେ ହୋଇଲ ଗୋସାଇଂ । ୧୭୪ ।
ଉଛର ମୁଣ୍ଡେ କ ପର୍ବତ ହୋସ୍ତେ ତୋଳ ।
ତୋହର ନ ଉପାଡ଼ିଲେ କେ ଉପାଡ଼ିବ ବନମାଳୀ ।୧୭୫।
ହରଇ ଅଚଳ ଯେ ବୋଇଲେ ହରଙ୍କି ।
କମ୍ପାଇ ଓପ୍ରୀ ହୋ କର ତୁ ଗିରିକ । ୧୭୬ ।
ନ କର ହେଳ ଦେବ ନ ଦେଖ ସେହାଙ୍କର ଦୁଃଖ ।
ବ୍ରହ୍ମା ବୁଦ୍ଧ ଗୁହ୍ମଂ ହସନ୍ତ ପଦ୍ମମୁଖ । ୧୭୭ ।
ହର ବୋଲନ୍ତ ମେ ମାରନ୍ତ ନା ପୁଣି ।
କେ କାହାର ବଳ ଅଛଇ ହୋ ଜାଣି । ୧୭୮ ।
ସେହାକୁ ଆରେକ ଅଛନ୍ତ ମହାବୀର ।
ମିଶାମିଶି ହୋଇଅଛନ୍ତ ସୁର ଅସୁର । ୧୭୯ ।
ସେହୁକେ ସେହୁକେ ସହୁଂ ପାରନ୍ତ ପୃଥ୍ବୀଧର ।
ଆଜ ଯେ ପ୍ରକର୍ମ ହୋ ଜାଣିମା ସବୁଙ୍କର । ୧୮୦ ।
ଶୁଣିଣ ସମସ୍ତେ ହୋ ଶିରେ କର ଦେଲେ ।
ଭୋ ସ୍ୱାମୀ ନାରାୟଣ ଦେଖିସି ବୋଇଲେ । ୧୮୧ ।
ଦେବ ଅସୁରଙ୍କର ଆକୁଳ ଭାବ ସହୁଂ ।
ବାମ କରେ ମନ୍ଦର ଧଇଲେ ଦେବ ତହୁଂ । ୧୮୨ ।
କଅା ଭଳ ଯେହ୍ନେ ଉପାଡ଼ଇ ମତ୍ତହସ୍ତୀ ।
ପର୍ବତ ଉପାଡ଼ିଲେ ଦେବ ଶିଖିପଚ୍ଛ । ୧୮୩ ।
ଦେଖିଣ ପ୍ରଶଂସା କଲେ ସର୍ବଜନ ।
ସାଧୁ ସାଧୁ ବୋଲି ଉଠିଲା ବଚନ । ୧୮୪ ।
ସହୁଂ ମନ୍ଦର ଗିରି ଉପାଡ଼ିଲେ ହରି ।
ସଭିଏ ହୋଇ କନ୍ଧେ ନେଲେ ତାହାଙ୍କର । ୧୮୫ ।
କ୍ଷୀର ସମୁଦ୍ର କୂଳରେ ଥୋଇଲେ ।
ବାସୁକି ନାଗ ହକାରି ବ୍ରହ୍ମା ଯେ ବୋଇଲେ । ୧୮୬ ।
ତୁହେ ମହା ଅଛ ସେଥିକି ରଜୁ ହୁଅ ।
ଦେବ ଦାନବଙ୍କ ତହୁଂ ପୂଜା ପାଅ । ୧୮୭ ।
ବାସୁକି ବୋଇଲେ ଯେ ମନ୍ଦର ମହାଗିରି ।
ଧରିତ ଶରୀର କ ହୋଇବ ମୋହର । ୧୮୮ ।
ଧାତା ବୋଇଲେ ତୁ ମହା ଭାରି ବଳ୍ପୁ ।
ସେତେବ ପୁଣି ଅମୃତ ବୋଲେ ସେହା କହୁ । ୧୮୯ ।

Digitized by srujanika@gmail.com

ତୋ ତହୁଂ ସାମରଥ ଅଛୁ କେହୁ ଅନ ।
ପୃଥ୍ୱି ଧରିବାକୁ ବୁଦ୍ଧ ସେ ଖର୍ଜନ । ୧୯୦ ।
ଆସ ଆସ ସ୍ୱେବେ ଦେବ କାର୍ଯ୍ୟ କର ।
ଶୁଣିଣ ସନ୍ତୋଷ ସେ ହୋଇଲ୍ଲ ମହୀଧର । ୧୯୧ ।
ଦେବ ଦାନବେ ମିଳି ଗିରି ତୋଳି ଧଇଲେ ।
ରଜୁ ପ୍ରାୟେ କରି ବାସୁକି ବେଢ଼ାଇଲେ । ୧୯୨ ।
ଗିରିପଛଗିରି ମୁଣ୍ଡି ମନ୍ଥିବାକୁ କରି ।
ଖୁଆ ପ୍ରାୟେ କରି ତୋଳଣ ତାହା ଧରି । ୧୯୩ ।
ନାଗର ଲଞ୍ଜ ଯାଇ ଧଇଲେ ସର୍ବସୁର ।
ମୁଣ୍ଡ ଆଡ଼ ଧରିଅଛନ୍ତି ଅସୁର । ୧୯୪ ।
ଦଧି ମଥିବା ପ୍ରାୟେକ ମନ୍ଥନ୍ତି ।
ହଙ୍କାହଙ୍କି ହୋଇ ରେଜୁ ଓଟାରନ୍ତି । ୧୯୫ ।
ସମୁଦ୍ର ତଳେ ଯାଇ ପଶିଲେ ପରବତ ।
କୂର୍ମ ରୂପେ ପିଠି ପାତିଲେ ପଦ୍ମନେତ୍ର । ୧୯୬ ।
ସେ ସେ ହୋଇଲ୍ଲ ଦଧି ଭାଣ୍ଡର ଖପର ।
ନବୃତ୍ତି ବିଶ୍ରାମ ସେ କଲ୍ଲକ ମହୀଧର । ୧୯୭ ।
ଦେବଙ୍କର ସଙ୍ଗେ ସ୍ୱାମୀ ମୂର୍ତ୍ତିଏକ ହୋଇ ।
ଦଣ୍ଡକପ୍ରାୟେ ଧରିଣ ସେ ଉଠିଲେ ଶ୍ରୀସ୍ୱାସାଇଂ । ୧୯୮ ।
ପୁଣି ମଥନ୍ତେ କୁରୁମ ପିଠିଲଗି ।
ଉପରକୁ ପର୍ବତ ଉଠିଗଲ୍ଲକ ବେଗି । ୧୯୯ ।
ପୁଣି ଦାମୋଦର ସେ ପୁରୁଷେକ ହୋଇ ।
ମହାଗିରି ଉପରେ ବସିଲେ ଗୋସାଇଂ । ୨୦୦ ।
ତେବେ ସେ ସୃଷ୍ଟି ଯେ ହୋଇଲ ଖୁଆଦଣ୍ଡ ।
ଦେବ ଦାନବ ସେ ମଥନ୍ତି ପରଚଣ୍ଡ । ୨୦୧ ।
ଶଙ୍ଖ ନୃପତି ଯେ ଜନ୍ମେବ ତହିଂ ଆଇ ।
ତାହାକଇ ବ୍ରହ୍ମା ବୋଇଲ୍ଲକ ରାଇ । ୨୦୨ ।
ଯେତେ ଦୂରେ ହୋ ଅଛନ୍ତି ମଉଷଧି ।
ବେଗକରି ଛେଚ ପକାଅ ବାରିନିଧି । ୨୦୩ ।
ପିତାର ବଚନେ ଜନ୍ମେବ ରାୟେ ଗଲ୍ଲ ।
ସ୍ୱେକା ଦ୍ୱବସେକେ ପୃଥିବୀ ବୁଲିଲ୍ଲ । ୨୦୪ ।
ଯାବତ କଲ୍ପ ପଦାର୍ଥ ରଣ୍ଡି ଆଇ ।
ଛେଚ ମହାରସ ସମୋଦ୍ରେ ପକାଇ । ୨୦୫ ।

Digitized by srujanika@gmail.com

ସେସନ ସମୟେ ବରୁଣ ଦୋହିତ ।
ସୁରାକୁମ୍ଭ ଘେନ ସେ ସମୁଦ୍ର ଉତପତ୍ତି । ୨୦୬ ।
ଦେବତାଙ୍କୁ ବୋଇଲେ ଆମ୍ଭଙ୍କୁ ସେହା ଦିଅ ।
ପୁଣି ଯାହା ପାଇବ ତାହା ତୁମ୍ଭେ ନିଅ । ୨୦୭ ।
ଦେବଙ୍କର ବଚନେ ଶାନ୍ତ ହୋଇଲେ ଅସୁର ।
ଦେବଗଣେ ସୁରା ଘେନି ଗଲେ ସିନ୍ଧୁତୀର । ୨୦୮ ।
ବରୁଣର ତହିଁ ଥୋଇଲେ ମହାରସ ।
ତେଣୁ ସେ ହରଷ ହୋଇଲେ ତ୍ରିଦଶ । ୨୦୯ ।
ପୁଣ ମଥନ୍ତେଣ ଧନ୍ୱନ୍ତର ନାସ୍ତ ।
ଅମୃତ କୁମ୍ଭ ଘେନଣ ଅବତର । ୨୧୦ ।
ଯେବଣ ମଉଷଧ୍ୱ ଜମ୍ମେବ ପକାଇଲେ ।
ସେ ସେ ବେନ ପଦାର୍ଥ ହୋଇଲେ । ୨୧୧ ।
ଦେଖିଣ ଦାତ୍ୟ ଆବୋରିଲେ ଯାଇ ।
ଦେବତାଙ୍କୁ ଗୃହାନ୍ତ ଯେ ଆଶିର୍ଷ ମୁଖ ହୋଇ । ୨୧୨ ।
ପୁଣ ମଥିଲେ ଯେ ଲକ୍ଷ୍ମୀ ହୋଏ ଜାତ ।
କୋଠରେ ଥୋଇଲେ ସକଳ ପଦାର୍ଥ । ୨୧୩ ।
ନାନା ମଣି ରତ୍ନ ଉପୁଜିଲେ ପୁଣି ।
ଅପଛରା ବୃନ୍ଦ ଗଜ ଶିରମଣି । ୨୧୪ ।
କଳ୍ପତରୁ ଅମୃତ କୁଣ୍ଡଳ ବେଦମନ୍ତ୍ର ।
ଉଚ୍ଚୈଃଶ୍ରବା ହସ୍ତ ବିବିଧ ଅସ୍ତ୍ର ଶସ୍ତ୍ର । ୨୧୫ ।
ମୂର୍ଚ୍ଛି ନପାରଣ ବୋଲନ୍ତି ଦେବଗଣ ।
ତୁମ୍ଭେ ଅସୁର ହୋ ଆମ୍ଭର ବୋଲ ଶୁଣ । ୨୧୬ ।
ସେ ଅମୃତ ତୁମ୍ଭେ ଆମ୍ଭକଇ ଦିଅ ।
ସେବେ ଯାହା ଉପୁଜିବ ତାହା ପଛେ ନିଅ । ୨୧୭ ।
ଦଇତେ ବୋଇଲେ ତୁମ୍ଭର ଲୋଭ କଥା ।
ଯାହା ପାଇ ତାହା ମାଗ ହୋ ଦେବତା । ୨୧୮ ।
ଆଗେ ସୁରକୁମ୍ଭ ନେଲ ବଳ କରି ।
ସେବେ ଅମୃତ ମାଗି ଲୋଭ କର । ୨୧୯ ।
କିମ୍ପା ଦେବୁ ସେବେ ଭକ୍ଷିବୁ ତାହା ।
ସେ ବଚନ ଶୁଣି ବୋଇଲେ ଚଉବାହା । ୨୨୦ ।
ତୁମ୍ଭେ ହୋ ଲୋଭ ନ କର ସେକା ହୋଇ ।
ବାଣ୍ଟିଣ ଭୁଞ୍ଜିବା ପରଶିବ ମୁହିଂ । ୨୨୧ ।

Digitized by srujanika@gmail.com

ଶୁଣି ସନମତ ଦାନବମାନେ କଲେ ।
ଦେବେ ନେଇ ଅମୃତ କୋଠକଣ ଥୋଇଲେ । ୨୨୨ ।
ଈଶ୍ବର ବୋଇଲେ ପୁଣ କରିବା ମଥନ ।
ତୁମ୍ଭେ ସମସ୍ତେ ହେ କରିଥିବ ନିୟମ । ୨୨୩ ।
ଯେବେ ଯାହା ପାଇବା ସେ ଆମ୍ଭର ହୋଇବ ।
ହୋଉ ହେ ଉ ବୋଲି ବୋଇଲେ ସର୍ବଦେବ ଦାନେବ ।୨୨୪।
ଏତେ ବରିଷଣ ମଥିଲେ ସର୍ବେ ପଣି ।
ବିଷ ଜାତ ହୋଇଗଲା କାଳାନଳ ଜାଣି । ୨୨୫ ।
ଦେଖିଣ ଡରିଲେ ଅସୁର ସୁରଗଣ ।
ପର୍ବତ ପକାଇ ଗଲେ ପଳାଇଣ । ୨୨୬ ।
ତ୍ରୈଲୋକ୍ୟ ବହନ କରଣ ବିଷ ଆସଇ ।
ଡରି ସମସ୍ତେହେଂ ଈଶ୍ବରଙ୍କୁ ଗୃହଂ । ୨୨୭ ।
ହେ ଦେବ ଶଙ୍କର ସଂସାର ରକ୍ଷାକର ।
ଯେ କାଳକୂଟ ତୋ ଗର୍ଭରେ ସଂହର । ୨୨୮ ।
ବ୍ରହ୍ମା ନାରାୟଣ କଲେ ବହୁତ ସ୍ତୁତ ।
ହେ ଦେବ ବିରୂପାକ୍ଷ କପାଳି ପଶୁପତ । ୨୨୯ ।
ଜୟ ଜୟ ମୃତ୍ୟୁଜଂୟ ଜୟ ସଦାଶିବ ।
ଜୟ ଜୟ ଚନ୍ଦ୍ର ଶେଖର ମହାଦେବ । ୨୩୦ ।
ପ୍ରଳୟ କାଳ ଅନଳ ପ୍ରାୟେ ବିଷ ।
ଦେଖ ଦେଖ ବହି ଆସଇ ଦଶଦିଶ । ୨୩୧ ।
ଶୁଣିଲେ ଶଙ୍କର ବ୍ରହ୍ମା ବିଷ୍ଣୁଙ୍କ ସ୍ତୁତ ।
ଚଳୁକରି ବିଷ ଧଇଲେ ପଶୁପତ । ୨୩୨ ।
ମୁଖକଇ ଯେନ କଣ୍ଠକଇ ଠୋକଲେ ।
ନୀଳକଣ୍ଠ ନାମ ସର୍ବଦେବ ଦେଲେ । ୨୩୩ ।
ଯେଥୁ ଅନନ୍ତରେ ବାଣ୍ଟିଲେ ସର୍ବଦେବ ।
କ୍ଷୁଣ୍ଣକରି ଥୋଇ ପୂଜା କରିଦେଲେ ସର୍ବ । ୨୩୪ ।
କର୍ମେଣ ଲକ୍ଷ୍ମୀକି ପାଇଲେ ଦେବହରି ।
ଆବର କଉସ୍ତୁଭମଣି ଆଦିକରି । ୨୩୫ ।
ଆଦିତ୍ୟ ପାଇଲେ ସ୍ୟମନ୍ତକ ମଣି ।
ଆବର ଉଚ୍ଚୈଶ୍ରବା ଅଶ୍ବ ସୂର୍ଯ୍ୟ ଜାଣି । ୨୩୬ ।
ଇନ୍ଦ୍ର ପାଇଲେ ଯେ ଅଷ୍ଟ ଅପଛରା ।
କଳପତରୁ ଐରାବତ ଆଦି କରି । ୨୩୭ ।

Digitized by srujanika@gmail.com

ଅମୃତ କୁଣ୍ଡଳ ଯେ ଆବର ବେଦମନ୍ତ୍ର ।
ସୁରାକୁମ୍ଭ ଆବର ଅସ୍ତ୍ର ଯେ ସହସ୍ର । ୨୩୮ ।
ବରୁଣର ଗୋଚରେ ଥୋଇଲେ କୋଠକରି ।
ଅମୃତ ଖାଇବେ ବୋଲି ମନେଛନ୍ତି ଧରି । ୨୩୯ ।
ସୁରେ ଅସୁରେ ଯେ ଅଛନ୍ତି ଦୁଇପନ୍ତି ।
ଶ୍ରୀହରି ଅମୃତ ନେଇଣ ପରଷନ୍ତି । ୨୪୦ ।
ଆଗ ଦେବତାଙ୍କ ଆଡ଼ରୁ ଦେଇଆଣି ।
ମାୟା ହୋଇଲା ବୋଲି ରାହୁ ତାହା ଜାଣି । ୨୪୧ ।
ବ୍ରାହ୍ମଣ ଦେବତାଙ୍କ ସଙ୍ଗେ ଯାଇ ମିଶି ।
ଚନ୍ଦ୍ର ସୂର୍ଯ୍ୟଙ୍କର ମଧ୍ୟରେ ଆଇ ବସି । ୨୪୨ ।
ନାରାୟଣ ପରଷନ୍ତି ସୁଧାରସ ନେଇ ।
ଲହକେ ରାହୁର ପତରେ ଦେଲେ ନେଇ । ୨୪୩ ।
ଅମୃତପାନ ଆଗେ କଲାକ ଦଇତ ।
ସେ କଥା ଜାଣିଲେ ଚନ୍ଦ୍ର ଯେ ଅଦିତ । ୨୪୪ ।
ବିଷ୍ଣୁଙ୍କୁ ବୋଇଲେ ଦେବ ମନ୍ଦକୃତ୍ୟ କଲ ।
ନଜାଣି ଅମୃତ ରାହୁକୁ ଦେଇଗଲ । ୨୪୫ ।
ଶୁଣିଣ ଶ୍ରୀହରି ତାହା ମୁଖକୁ ଚାହିଁଲେ ।
ନିଶ୍ଚଳ ନୋହଇ ଆଖି ବୋଲିଣ ଜାଣିଲେ । ୨୪୬ ।
ଚକ୍ର ଘେନିଣ ଯେ ମାରିଲେ ରୋଷକରି ।
ତତକ୍ଷଣି ପକାଇଲେ ବେନିଖଣ୍ଡ କରି । ୨୪୭ ।
ଅମୃତ ଖାଇଣ ସେ ନୋହିଲାକ ହତ ।
ପ୍ରସନ୍ନ ହୋଇ ବର ଦେଲେ ପଦ୍ମନେତ୍ର । ୨୪୮ ।
ଯାଇ ଚେନି ଖଣ୍ଡହୁଅ ବେନି ଗ୍ରହ ।
ସାତବାର ଆଦିତ୍ୟଙ୍କ ସଙ୍ଗେ ରହ । ୨୪୯ ।
ସେତେ ବୋଲି ହରି ଅମିଅ ପରଷନ୍ତି ।
ଅସୁରେ ବସିଥାନ୍ତି ଦେବଙ୍କର କତି । ୨୫୦ ।
ସିଏ ଅବା ଥିଲ ଆପଣେ ତାହା ଭୁଞ୍ଜି ।
ଦାନବେ ଲଜ ଯେ ପାଇଲେ ସଖ୍ୟ ମଣି । ୨୫୧ ।
ବିଷ୍ଣୁଙ୍କୁ ବୋଇଲେ କୋପମୁଖେ କରି ।
ସେ ତୋହୋର ବଇରକୁ ମିଳଇ କହୋ ହରି । ୨୫୨ ।
ସେତେ ଦୁଃଖେଣ ସେତେ କୃତ୍ୟ କଲୁ ।
ଜାଣି କହାକରେ ଯୋଗ୍ୟତା ନୋହିଲୁ । ୨୫୩ ।

Digitized by srujanika@gmail.com

ଥୋକାଏକ ସୃଷ୍ଟି କରଣ ମାଗି ଘେନଗଲ୍ଲ ।
ଥୋକାଏକ ଦ୍ରବ୍ୟ ଯେ ବଳେ ପଶିନେଲ୍ଲ । ୧୫୪ ।
ଥୋକାଏକ ବରୁଣ ତହିଁ କଲ୍ଲ କୋଠ ।
ଥୋକାଏକ ଦ୍ରବ୍ୟ ଆପଣେ କଲ୍ଲ ବାଣ୍ଟ । ୧୫୫ ।
ଏବେ ଆଶଙ୍କର ଅଛୁ ଆମ୍ଭେ ବସି ।
ଦେବତାଙ୍କୁ ଆଗେ ଆସିଲ୍ଲ ପରଷି । ୧୫୬ ।
ବିଷ ଉଗାଳିଲ୍ଲ ଆପଣେ ଖାଇଲ୍ଲ ।
ଆମ୍ଭ ବେଳକୁ କିଛୁ ନାହିଁ ନା ବୋଇଲ୍ଲ । ୧୫୭ ।
ରୁଦ୍ର ଯେବେ ଆମ୍ଭର ଅଷ୍ଟୁ ନା ବଇର ।
ମାର ସେ ଏହାକୁ ବୋଲି ଦୈତ୍ୟ କଲେ ସ୍ତୁତ ।୧୫୮।
ଦେବ ଦାନବରେ ବାଜିଲ୍ଲ ରଣଗୋଳ ।
ଅସ୍ତ୍ରେ ଅସ୍ତ୍ରେ ଯେ କରନ୍ତି ପଣ୍ଡତାଳ । ୧୫୯ ।
ଅମୃତ ଖାଇଣ ଦେବେ ବଳୀଆର ।
ଦନୁଜ ବଳକୁ ପକାଇଲେ ମାର । ୧୬୦ ।
ବିଷ୍ଣୁଙ୍କ ହାଥେ ଦନୁଜେ ଯହୁଁ ମଲେ ।
ଦେବତାଏ ମିଳି ଦୈତ୍ୟାର ନାମ ଦେଲେ । ୧୬୧ ।
ଯହୁଁ ସେ ଅସୁରେ ହୋଇଲେ ସର୍ବେ ହତ ।
ଶୁଣିଣ କୋପକଲ୍ଲ ଅସୁରଙ୍କର ମାତ । ୧୬୨ ।
ହାର ଛିଡ଼ାଇଣ ନ ସମ୍ଭାଳଇ ବାନ୍ଧ ।
ପୁତ୍ରଙ୍କର ମୁଖ ସ୍ମରି ପଡ଼ିଲ୍ଲକ ମହୀ । ୧୬୩ ।
ଅନେକ ବିକଳ ହୋଇ ସେ କରଇ କାରୁଣ୍ୟ ।
ନିଜ ପତି କଶ୍ୟପ କରନ୍ତି ଉଆରଣ । ୧୬୪ ।
ରୁଦ୍ର ସେ ସୁନ୍ଦେରି ନଧର ମନେ କ୍ରୋଧ ।
ପୋଏ ତୋର ଯତୀ ସେ ମଲେ ରଣ ମଧ । ୧୬୫ ।
ଏଥିକି ଶୋଚନା ତୁ ସେ କରୁ କାହିଂପାଇଂ ।
ଘେନ ମୋର ବର ଶୁଚମନ୍ତ ହୋଇ । ୧୬୬ ।
ପୁତ୍ରେକ ହୋଇବ ସେ ଅତି ବଳବାନ ।
ଦେବତାଏ ରଣେ ନୋହିବେ ସମାନ । ୧୬୭ ।
କଳପି ହୋଇବ ଯେ ନୋହି ଆର ମୃତ୍ୟୁ ।
ପୁତ୍ରବନ୍ତୀ ଲେଖାଏ ଗଣିତା ହୋଇବୁ ତୁ । ୧୬୮ ।
ଏ ମୋହୋର ବଚନ ତୁ ତଥ୍ୟ କରିଥିବୁ ।
ଅବେଶ୍ବର କଥାକୁ ରୁ କେବେହେଂ ନ ଯିବୁ । ୧୬୯ ।

Digitized by srujanika@gmail.com

ଅମାର୍ଗେ ଚଳିଲେ ହୋଇବ ବିପତ୍ତି ।
ଧର୍ମବଳେ ପୁତ୍ର ହୋଇବ ଉତ୍ପତ୍ତି । ୨୭୦ ।
ପ୍ରାଣନାଥଙ୍କର ଆଂଗ୍ୟା ଶିରେ ଧରି ।
ପାଳିବ ତୋହୋର ବୋଲି ବୋଲିଣ ସତ୍ୟକରି । ୨୭୧ ।
କାଳେ ସେ ନାରୀ ହୋଇଲା ଗର୍ଭବାସ ।
ଜାଣି ଦେବତାସ୍ୱେ ପାଇଲେ ମନେ ତ୍ରାସ । ୨୭୨ ।
ବ୍ରହ୍ମା ଦଇଆଡ଼ିଲେ ଇନ୍ଦ୍ରକଇ ରାଇ ।
ଦିତିର ପାଶେ ତୁ ଗୁପତେ ଥିବୁ ରହି । ୨୭୩ ।
ଯେମନ୍ତେ ପୁତ୍ରକଇ ପ୍ରାଣେ କରୁ ହତ ।
ତେସନ ପ୍ରକାର ତୁ କର ପୁରୁହୂତ । ୨୭୪ ।
ଶୁଣିଣ ଦିତିର ସନ୍ନିଧେ ଇନ୍ଦ୍ର ଗଲା ।
ଗୁପତେ ରହିଣ ସବୁ ଠାବ କଲା । ୨୭୫ ।
ଗର୍ଭରେ ରହିଲା ଶତେକ ବରଷ ।
ପ୍ରସବ ନିକଟେ ସେ ହୋଇଲା ଅଳସ । ୨୭୬ ।
ଅଳସେ ସେହୁ ଶେ ସୁମରେ ଆଇ ଆଇ ।
ପେଟ ଚଡ଼ଚଡ଼ ମୁଖରୁ ଆସଇ ହାଇ । ୨୭୭ ।
ସୀମ ସ୍ଥାନ ପାଖରେ ଚରଣ କରି ଶୁଇଲା ।
ଅବେଗ୍ଭର କଥା ତାର ଇନ୍ଦ୍ରହିଂ ବୁଝିଲା । ୨୭୮ ।
ଛିଦ୍ରପାଇ ତାର ଗର୍ଭରେ ପ୍ରବେଶ ।
ପେଟର ପୁତ୍ରକୁ ବଜ୍ରେ କଲା ନାଶ । ୨୭୯ ।
ସାତଖଣ୍ଡ କରି କାଟି ପକାଇଲା ।
ପୁଣି ଖଣ୍ଡକ ଯେ ସାତଖଣ୍ଡ କଲା । ୨୮୦ ।
ସ୍ୱେତୋ ସେ ଅଣଚାଶ ଖଣ୍ଡ ଯେ ହୋଇଲା ।
ପୂର୍ବର ଉବିଷ ସ୍ୱେ କାହାର ଆନ କଲା । ୨୮୧ ।
କଶ୍ୟପ ଦେଲା ଯେ ଅକ୍ଷସ୍ୱେ ଶରୀର ।
ଗର୍ଭେ ଆଇ ବେଢ଼ିଲେ ଯେ ଗର୍ଭର କୁମର । ୨୮୨ ।
ମାତା ଜାଣିକରି ଇନ୍ଦ୍ରକୁ ଶାପ ଦ୍ୟନ୍ତେ ।
ତରେଣ ଚ୍ଛମୁରେ ମିଳିଲେ ଶଚୀନାଥେ । ୨୮୩ ।
ଦିତ ବୋଇଲା ତୁ ଏଡ଼େ କୃତ୍ୟ କଲୁ ।
ଗର୍ଭେ ପଶି ମୋର ପୁତ୍ରକୁ ମାଇଲୁ । ୨୮୪ ।
ତରେଣ ସହସ୍ରାକ୍ଷ କମ୍ପିଲ ଥରହର ।
ଭୋ ମାତା ଦୋଷ ଗୋ ହୋଇଲାକ ମୋର । ୨୮୫ ।

Digitized by srujanika@gmail.com

ନ ଦେବ' ଶାପ ଗୋ କଲଇ ମୁହିଂ ଦ୍ରୋହ ।
ଶୁଣିଣ ଅସୁର ମାତା ଗୁଡ଼ିଲକ କୋହ । ୨୮୬ ।
ବୋଇଲ ତୋହୋର ଘଇକ ସେବେ ଖାଥାଅ ।
ଅମୃତ ଆଣି ତୁ ସେହିଙ୍କୁ ବେଗେ ଦିଅ । ୨୮୭ ।
ଶୁଣି ତା ବଜ୍ରଧାରୀ ଆଣିଲ ଅମୃତ ।
ଭୁଞ୍ଜିଣ ପୋଷ୍ଟେ ତାହା ହୋଇଲେ ବଳବନ୍ତ । ୨୮୮ ।
ଅଣଗୁଣ ଖଣ୍ଡ ଭିନ୍ନ ଭିନ୍ନ ମୂର୍ତ୍ତି ।
ସ୍ୱତନ୍ତ୍ର ପ୍ରସବ କଲକ ଦେବୀ ଦିତି । ୨୮୯ ।
ତହିଂ ସେ ପବନ ହୋଇଲ ଅବତାର ।
ସଦା ଚଞ୍ଚଳ ଯେ ପ୍ରକୃତି ତାହାର । ୨୯୦ ।
ଶ୍ରୀରାମ ଆଗେ ସେହି ବିଶ୍ୱାମିତ୍ର କହି ।
ସଦାଶିବ କହନ୍ତି ପାର୍ବତୀ ଶୁଣଇ । ୨୯୧ ।
ଶ୍ରୀରାମ ପଗ୍ଭରିଲେ କହିଲେ ମୁନି ସେହି ।
ଶୁଣ ତୁ ରଘୁନାଥ ପଗ୍ଭରିଲୁ ଯାହା । ୨୯୨ ।
ଉଦ୍‌ଦେଶ ଶର୍ବିଣ କହକର ନାମ ।
ଆଁନ ଠାବ ଏଠାକୁ ବୋଲେ ସରସମ । ୨୯୩ ।
ସେଥି ସେ ଦିତି ଯେ କରିଥିଲେ ତପ ।
ସେଥି ଅବତାର ପବନଙ୍କ ସ୍ୱରୂପ । ୨୯୪ ।
ଶରୀର କାଟନ୍ତେଣ ଅଣଗୁଣ ଖଣ୍ଡି ହୋଇ ।
ତେଣୁ ସେ ସେ ପୁର ବିସ୍ତାର ନାମ କହି । ୨୯୫ ।
ଇନ୍ଦ୍ର ବଜ୍ରଘାତେ କାଯେ କ୍ଷୟ ଯେ ନୋହିଲ ।
ପବନର କାଯେ ଯେ ବିସ୍ତାର ହୋଇଲ । ୨୯୬ ।
ଯେତେ ଖଣ୍ଡି ହୋଇଲ ତେତେ ମୂର୍ତ୍ତିବନ ।
ବିସ୍ତାର ଦେଖି ତୁଷ୍ଟ କଲ ପଞ୍ଚମନ । ୨୯୭ ।
କଉଶିକ କହନ୍ତି ତୁମେ ଶୁଣ ରଘୁନାଥ ।
ତୋହୋର ବଂଶେ ବସା କରିଥିଲେ ଏଥ । ୨୯୮ ।
ରାମ ବୋଇଲେ ସେ ହୋଇଥିଲେ ରାଜା ।
କେତେ ପାଟ ସେଥି ପାଇଥିଲେ ପୂଜା । ୨୯୯ ।
କହ ମହାମୁନି ପୁଣ୍ୟ ରସ କଥା ।
ସେ ଭୂମିରେ ପିତୃ ମୋର ହୋଇଥିଲେ ମହାରଥା ।୩୦୦।
ଅଯୋଧ୍ୟା ତାହାଙ୍କର ଅଟଇ ନଜ ମହୀ ।
ସେଥି ରାଜ୍ୟ ଆସି କେମନ୍ତ କଲେ ସେହି । ୩୦୧ ।

Digitized by srujanika@gmail.com

ମୁନି ବୋଇଲେ ତାହା ଶୁଣ ଇକ୍ଷ୍ୱାକୁ ନୃପତି ।
ଅଳଂଭୁସଂ ନାମେଣ ଯେ ତାହାର ଯୁବତୀ । ୩୦୨ ।
ବଇଶଙ୍କା ନାମେଣ ଯେ ପୁତ୍ରେକ ଅନୁପାମ ।
ପିତା ବସ୍ତୁରଇ ପୁତ୍ର ଅତି ବଳବାନ । ୩୦୩ ।
ମନେ ମନେ ବସ୍ତୁର ଯେ ଏଥି ରାଜା ତାକୁ କଲି ।
ତହୁଂ ଏ ବଇଶାଳୀପୁର ବୋଲ୍ଲଇଲି । ୩୦୪ ।
ବୃଷାଳର ପୁତ୍ର ହେମଚନ୍ଦ୍ର ନାମେ ।
ସୁଚନ୍ଦ୍ର ନୃପତି ତାହାର ତନଯ୍ୱେ । ୩୦୫ ।
ବଡ଼ାଇ ପ୍ରତାପୀ ଯେ ଜାଣନ୍ତି ତ୍ରିଭୁବନ ।
ସ୍ୱର୍ଗରେ ପ୍ରଶଂସା କରନ୍ତି ସୁରେଶ୍ୱର । ୩୦୬ ।
ଧର୍ମ ବୋଲି କରି ତାହାର ତନଯ୍ୱେ ।
ପିତାର ଅନ୍ତେ ସେ ମହୀପତି ହୋଯ୍ୱେ । ୩୦୭ ।
ସେହା ତହୁଂ ଜାତ ଶୃଗଯ୍ୱେ ନୃପତି ।
ଅଶ୍ୱମେଧ କରି ସେ ହୋଇଲେ ଚକ୍ରବର୍ତ୍ତୀ । ୩୦୮ ।
ସେହାର ତନଯ୍ୱେ ଯେ ବଜଯ୍ୱେ ନରବର ।
ବୃହଦନ୍ତ ବୋଲି ହୋଇଲି ସେହାର । ୩୦୯ ।
ବୃହଦନ୍ତର ପୁତ୍ର ଯେ ସୁରଜନ ବୀର ।
ସୋମଦତ୍ତ ବୋଲି ସେହାର କୁମର । ୩୧୦ ।
ସୋମଦତ୍ତର ପୁତ୍ର କକୁଜଯ୍ୱେ ହୋଇ ।
ସେହାର ତନଯ୍ୱେ ପ୍ରମତ୍ତି ସାଧଇ ମହୀ । ୩୧୧ ।
ମୁନି ବୋଲନ୍ତି ତୁ ଶୁଣ ରଘୁନାଥ ।
ସେତେ ପାଞ୍ଚ ତୋର ରାଜହିଂ କଲେ ଏଥ । ୩୧୨ ।
ଶୁଣିଣ ସନ୍ତୋଷ ଯେ ହୋଇଲେ ରାଘବ ।
ବଇଶାଳୀପୁରେ ପ୍ରବେଶ ରାମଦେବ । ୩୧୩ ।
ପ୍ରମତ୍ତି ଆସିଣ ଯେ ପାଦ୍ରେଟି ଘେନିଗଲି ।
ଗଉରୋବ କରି ମୁନିଙ୍କି ପଗ୍ଧରଲି । ୩୧୪ ।
ହେ ମୁନି ସେ ପୁତ୍ର କାହାର ସେ ବେନି ।
ହରହର ଜନମିଲେ କି ମାନେବ ଦେହ ଘେନି । ୩୧୫ ।
କାହାର ପୁତ୍ର ସେ କାହାର ବଂଶେ ଜାତ ।
କାହାର ନନ୍ଦନ ସେ ସେଙ୍କର କେହୁ ମାତ । ୩୧୬ ।
ଶୁଣି ବିଶ୍ୱାମିତ୍ର କହିଲେ ସକଳ ।
ଦଶରଥ ନାମେଣ ଅଯୋଧ୍ୟା ମହୀପାଳ । ୩୧୭ ।

Digitized by srujanika@gmail.com

ତାହାର ପୁତ୍ର ଏ ରାମ ଲକ୍ଷ୍ମଣ ବେନି ।
ଯାଗ ରଖିବା ନିମିତ୍ତେ ଅଇଲୁ ଆମ୍ଭେ ଘେନି । ୩୧୮ ।
ଧନୁ ଉଚ୍ଛବ ଯାଗ ଜନେକ ରାଜା ଘରେ ।
ଦେଖିବ ବୋଲି ଏ ଯାଉଛନ୍ତି ଖରେ । ୩୧୯ ।
ଶୁଣିଣ ପ୍ରମତ୍ତ ଗଉରେବ କଲା ।
ଆଦର କରିଣ ସେବନ ବୁହାଇଲା । ୩୨୦ ।
ରାତ୍ର ପ୍ରଭାତେଣ ତହୁଂ ଚଳିଗଲେ ।
ବିପୁଳ ବନେ ଯାଇ ପ୍ରବେଶ ହୋଇଲେ । ୩୨୧ ।
ଘୋର ବନ ଦେଖି ପଚ୍ଚରନ୍ତି ରାମ ।
କହ ମହାମୁନି ଏ ବନର କିସ ନାମ । ୩୨୨ ।
ରାଘବ ବଚନେ ବୋଲନ୍ତି ବିଶ୍ୱାମିତ୍ର ।
ବିପୁଳ ବନ ଏ ଅଟଇ ପବିତ୍ର । ୩୨୩ ।
ଗଉତମ ଋଷି ଏଥି ତପ କରୁଥିଲା ।
ତାହାର ଭାର୍ଯ୍ୟା ନାମ ଯେ ଅଟଇ ଅହଲ୍ଲା । ୩୨୪ ।
ତୁଚ୍ଛା ପର୍ଣ୍ଣକୁଟୀ ଅଛଇ ଏବେ ଦେଖ ।
ଗଉତମ ଅହଲ୍ଲାକୁ କଲେ ଏଥି କୋପ । ୩୨୫ ।
ଯାଗକୁଣ୍ଡର ଏଥି ଥିଲା ସମ୍ଭାମାନ ।
ଶ୍ରୀରାମଙ୍କୁ ଦେଖାନ୍ତି ଗାଧିର ନନ୍ଦନ । ୩୨୬ ।
ବୋଇଲେ ଷଡ଼ଋତୁଏ ନ ବାଧଇ ଏଥ ।
ଏ ସେ ବିପୁଳ ବନ ହୋ ଦେଖ ରଘୁନାଥ । ୩୨୭ ।
ଦେଖ ତୁ ଶ୍ରୀରାମ ଆଗେ ପଥରେକ ଅଛୁ ।
ଏହୁ ଅହଲ୍ୟା ବୋଇଲେ ଗାଧିବଚ୍ଛ । ୩୨୮ ।
ଗୌତମ ନାରୀ ଏ ଯେ ଅହଲ୍ଲା ଏହା ନାମ ।
ପୁରାଣର କଥା ତୁ ଶୁଣ ହୋ ଶ୍ରୀରାମ । ୩୨୯ ।
ପୂର୍ବେ ବିଧାତା ଯେ ମନରେ ବିଚାରି ।
ସକଳ ରୂପଗୁଣ ଏକ ଠାବ କରି । ୩୩୦ ।
ଲାବଣ୍ୟମୟେ କରି କନ୍ୟାଏକ କଲା ।
ଅହଲ୍ୟା ରୂପ ତାର ଅହଲ୍ଲ ନାମ ଦେଲା । ୩୩୧ ।
ଦେଖିଣ ମୋହି ଗଲେ ସକଳ ସୁରମୁନି ।
ଦେବତାଙ୍କୁ ଗୃହଂ ବୋଲଇ ପଦ୍ମଯୋନି । ୩୩୨ ।
ଯେ ଅବା ପୃଥିବୀ ପ୍ରଦକ୍ଷିଣ କରି ଆସଇ ।
ତାହାର ଏ ନାରୀ ବୋଲି ପିତାମହ ଭାଷଇ । ୩୩୩ ।

Digitized by srujanika@gmail.com

ଶୁଣିଣ ସୁର ଅସୁର ମୁନିଗଣ ।
ପୃଥ୍ୱି ବୁଲିବାକୁ ଗଲେ ତତକ୍ଷଣ । ୩୩୪ ।
ବ୍ରହ୍ମା ବୋଇଲେ ଯେ ଗଉତମ ଗୃହଂ ।
କମ୍ପା ପୃଥ୍ୱି ଅବା ଅଛ ଉଭା ହୋଇ । ୩୩୫ ।
ଗୃହ ଯେବେ ମଣ୍ଡ ପ୍ରଦକ୍ଷିଣ କର ଆସ ।
ଆଗ ହୋଇ ଅଇଲେ କନ୍ୟା ତୋହୋର ଅବଶ୍ୟ ।୩୩୬।
ଶୁଣିଣ ଗଉତମ ହରଷ ମନ ହୋଇ ।
ପ୍ରଦକ୍ଷିଣ କଲ୍ଲ ତନବେଳ ସୁରଭିକ ଯାଇଂ । ୩୩୭ ।
ବ୍ରହ୍ମାର ଆଗରେ ଯେ ମିଳଲେ ମହାଋଷି ।
ଦେଖି ପିତାମହ ଯେ ମନେ ମନେ ହସି । ୩୩୮ ।
ହୋଇଲ୍ଲ ପ୍ରାପତ ତୋତେ ଅହଲ୍ଲ ଯୁବତୀ ।
ଯେତେ ବୋଲି କନ୍ୟା ଯେ ସମର୍ପିଲେ ବେଦପତ୍ତ ।୩୩୯।
ବାହା କରାଇଲେ କୁଳଗୋତ୍ର ସୁମର ।
ଦେବ ଅଇଲେ ପୃଥ୍ୱି ପ୍ରଦକ୍ଷିଣ କର । ୩୪୦ ।
ଦେଖିଲେ ଗଉତମ ହୋଇଲେକ ବାହା ।
ମନେ ମନେ କୋପ କଲେ ସୁରନାହା । ୩୪୧ ।
ଏଥୁଅନନ୍ତରେ ଯେ ବିଧାତା ଆଜ୍ଞାପାଇ ।
ଅହଲ୍ୟାକୁ ଘେନ ଯେ ଅଇଲେ ଗଉତମ ଗୋସାଇଂ ।୩୪୨।
ଯେ ବନେ ଆସି ଅନେକ କାଳ ଥିଲ୍ଲ ।
ରମଣୀ ଘେନ ଯେତ୍ତୁ ଅନେକ ଭୋଗ କଲ୍ଲ । ୩୪୩ ।
ସତ୍ୟାନନ୍ଦ ବୋଲି ଯେ ହୋଇଲ୍ଲ ଯେକ ପୁତ୍ର ।
ସାକ୍ଷାତେ ଧାର୍ମିକ ଅଟଇ ନ୍ୟାୟେବନ୍ତ । ୩୪୪ ।
ଯେଥୁଅନନ୍ତରେ ଶୁଣସି ଶ୍ରୀରାମ ।
ଅହଲ୍ୟା ବଇଦନୁ ଇନ୍ଦ୍ର ଭାଳଇ ମନେ ମନ । ୩୪୫ ।
କତ ସହସ୍ରାକ୍ଷ ଯେ ଭାଳଇ ପଞ୍ଚୁମନ ।
ଅହଲ୍ଲ ରମିଲେ ଯେ ସୁଫଳ ଜୀବନ । ୩୪୬ ।
ଯେତେ ବିଚାରି ଯେ ଆଶ୍ରମକୁ ଗଲ୍ଲ ।
ଯେସନେକ ସମୟେ ଋଷି ସ୍ନାହାନକୁ ଗଲ୍ଲ । ୩୪୭ ।
ଜର୍ଜନବେଳ ଜାଣିଣ ବଜ୍ରଧର ।
ପ୍ରବେଶ ହୋଇଲ୍ଲ ଯାଇଂ ଗଉତମ ଘର । ୩୪୮ ।
ଅହଲ୍ୟାକୁ ଦେଖି ସେ ବୋଲଇ ଶୁଣ ସଖି ।
କାମ ପଞ୍ଚୁଶରେ ହୋଇଲୁଇଂ ମୁଂ ଦୁଖି । ୩୪୯ ।

Digitized by srujanika@gmail.com

ଯେବେ ତୋହୋର ଅଧର ଯେ ଚୁମ୍ବିତ ମୋର ମନ ।
କର ଦୁଇ ଛନ୍ଦ କରସି ବନ୍ଧନ । ୩୫୦ ।
ଯେବେ ମୋହୋର ହୃଦରେ କୁଚ ତୋର ଲାଗୁ ।
ପ୍ରସନ୍ନ ହୁଅ ସଖି ବିରହ ଜ୍ୱର ଭାଙ୍ଗୁ । ୩୫୧ ।
କନ୍ୟା ବୋଇଲା ତୁ ସୁରପତି ହୋଇ ।
ଯେବେତେ ଅବିଗ୍ନର କଥା କହୁ କାହିଁପାଇଁ । ୩୫୨ ।
ମୁହିଁ ଋଷିଆଣୀ ତୁହି ଦେବରାଜ ।
କେମନ୍ତେ ସୁରପତି ନ ପାଇଲୁ ଲାଜ । ୩୫୩ ।
ଯତିର ଭାରିଜା ମୁଁ ପତିବ୍ରତା ସତୀ ।
ମତେ ହରିବୁ ତୁ ଯେବେଁ ତୋର ମତି । ୩୫୪ ।
ଯାଅ ସ୍ୱର୍ଗପୁର ନ ଥାଅ ତୁ ଯେଥ ।
ଯେବେହୁ କ୍ଷଣି ଆସିବେ ଯେ ମୋହୋର ପ୍ରାଣନାଥ । ୩୫୫ ।
ଈଶ୍ୱର ଯୋଗେଣ କାମ ଧ୍ୱଂସ ଗଲା ।
ତୁହି ଆଜ ନାଶଯିବୁ ଅହଲ୍ୟା ବୋଇଲା । ୩୫୬ ।
ଅହଲ୍ୟାର ବଚନେ ଯେ ଚଳ୍ଲା ସୁରପତି ।
ଅହଲ୍ୟାର ରୂପଗୁଣ ବିସ୍ମରଇ ମତି । ୩୫୭ ।
କେତେହେଁକ ଦିନେ ପୁଣ ଇନ୍ଦ୍ର ଯେ ଆସଇ ।
ଗଉତମ ବନ ନିକଟେ ମିଳଇ । ୩୫୮ ।
ଯେସନ ସମୟେ ଆହ୍ନିକ ବେଳ ହୋଇ ।
ଗଉତମ ସ୍ନାହାନ କରଗଲେ ନଈ । ୩୫୯ ।
ତକ୍ଷେଣ ବାସେବ ମାୟା ରୂପ ଧରି ।
ଅହଲ୍ୟା ଛାମୁରେ ମିଳିଲେ ବଜ୍ରଧାରୀ । ୩୬୦ ।
କନ୍ୟା ବୋଇଲା ଋଷି ସ୍ନାହାନ କରିତ ଗଲ ।
ଜରମ ନ ସାରିଣ ଲେଉଟି ଅଇଲ । ୩୬୧ ।
ମାୟା ରୂପଧର ବୋଲଇ ବଜ୍ରପାଣି ।
ଶୁଣ ଶଶୀମୁଖୀ ଗୋ ଭୂପତ ବସବାଣୀ । ୩୬୨ ।
ଜଳଘାଟେ ଦେଖିଲି ଅଛଇ ଉର୍ବଶୀ ।
ସ୍ନାହାନ କରଇ ସେ ପବନ ଜଟିଳ ପଶି । ୩୬୩ ।
ଜାନୁ ଯଉବନ ମର୍ମଥାନ ଦେଖି
ବାହୁଡ଼ି ଅଇଲି ମୁଁ କାମଭରେ ଦୁଖି । ୩୬୪ ।
ଦେସି ଆଲିଙ୍ଗନ ଦିଅ [illegible] ।
ଯେବେ ମୋହୋର ଅଧୀର ପଞ୍ଚ ଯେ ପ୍ରାକୃତ । ୩୬୫ ।

Digitized by srujanika@gmail.com

ଯେତେ ବୋଲି ଯାଇ ଅହଲ୍ୟାକୁ ଧରି ।
ବିବିଧ ରତି କରି ରମଣୀ ଭୋଗକରି । ୩୬୬ ।
ଯେମନ୍ତ ସମୟେ ଗଉତମ ଋଷି ।
ସ୍ନାହାନ ସାରି ମୁନି ମିଳିଲେ ଦ୍ୱାରେ ଆସି । ୩୬୭ ।
ଦେଖିଣ ଦେହ ଜଂନ ହୋଇଲେ ତରନ୍ତ ।
ମାର୍ଜାରୀ ରୂପେକ ଯେ ଧଇଲେ ପୁରୁହୂତ । ୩୬୮ ।
ଜଳାକବାଟି ବାଟେ ଗଲ ପଳାଇନ୍ତି ।
ମାୟା ଚରିତ ଯେ ଅହଲ୍ୟା ବୋଇଲ୍ଲ । ୩୬୯ ।
ତତକ୍ଷଣେ ସତୀ ଯେ ସମ୍ଭାଳଲେ କେଶବାସ ।
ମୁନିଯାଇ ଭିତର ପୁରେଣ ପରବେଶ । ୩୭୦ ।
ଇନ୍ଦ୍ର ଯେ ମାର୍ଜାରୀ ରୂପଧରି ଗଲ ।
ଅହଲ୍ୟାକୁ ସେ କଥା ଗଉତମ ପଚାରିଲ୍ଲ । ୩୭୧ ।
ଜଳାର ବାଟେ କେ ହୋଇଲ୍ଲ ବାହାର ।
ଅହଲ୍ୟା ବୋଇଲ୍ଲ ସେ ଅଟଇ ମାର୍ଜାର । ୩୭୨ ।
ଶୁଣି ଗଉତମ ଯେ ସମ୍ପ୍ରତେ ନ ଗଲ୍ଲ ।
ଧ୍ୟାୟେ କରି ଋଷି ଯୋଗେଣ ଜାଣିଲ୍ଲ । ୩୭୩ ।
ବୋଇଲ୍ଲ ଇନ୍ଦ୍ର ଆରେ ଦେବଗିଲୁ ମୋର ନାରୀ ।
ଯେତେ ଅକର୍ମ କଥା କରୁ ନ ବିଚାରି । ୩୭୪ ।
ଯନ୍ତର ରାଜା ତୁ ଏମନ୍ତ ଦ୍ରୋହ କଲୁ ।
ଦେବରାୟେ ହୋଇ ଯେ ଅନ୍ୟାୟେ ଆଚରିଲୁ । ୩୭୫ ।
ଅନେକ ଅପକ୍ଷରୀ ବିଦ୍ୟାଧରୀମାନ ।
କନ୍ଦରୀ ତୋର ଆଗେ କରନ୍ତି ଶାସନ । ୩୭୬ ।
ସୁର ସୁନ୍ଦରୀ ଯେ ତ୍ରିଭୁବନେ ନାହିଂ ।
ଯେମାନ ଭୋଗ୍ୟ ତୁରେ କରୁ ସୁରସାଇଂ । ୩୭୭ ।
ସ୍ୱର୍ଗର ସମ୍ପଦ ତୁ ହେବେ ବଳସିଲୁ ।
ଯେକ ସ୍ତ୍ରିୟେ ମୋର ମୂରୁଛି ନ ପାରିଲୁ । ୩୭୮ ।
ଜାଣିଲି ଯୋନକ ଶରଧା ତୋର ହୋଇ ।
ଯେତେ କାଳ ତୋର ଶରୀରେ ପ୍ରାଣ ଥାଇ । ୩୭୯ ।
ତେତେକ ସମୟ ତୁ ଅନେକ ଯୋନି ଧରି ।
ସହସ୍ର ଭଗ ହେଉ ତୋହୋର ଶରୀର । ୩୮୦ ।
ଯେବଣ ଅଙ୍ଗେ ତୁ ହରିଲୁ ମୋର ନାରୀ ।
ସେ ଅଣ୍ଡ ଛୁଡ଼ି ତୋହୋର ପଡ଼ୁରେ ବଜ୍ରଧାରୀ । ୩୮୧ ।

Digitized by srujanika@gmail.com

କୋପେ ମହାଋଷି ଶାପ୍ୟ ତାଙ୍କୁ ଦେଲ ।
ସୁରପତ୍ତ ଅଣ୍ଡ ତତକ୍ଷଣେ ଛୁଣ୍ଡିଲ । ୩୮୨ ।
ସହସ୍ରେକ ଯୋନ ହୋଇଲା ତାର କାଏ ।
ଦେଖି ଦେବରାଏ ବହୁତ ଭୟ ପାୟେ । ୩୮୩ ।
ପଳାଇ ଯାଇ ମାନସରୋବରରେ ପଶି ।
ଶଙ୍କୁଚ ପାଇ ତହିଂ ଅଛଇ ଗୀର ବସି । ୩୮୪ ।
ରଜା ନ ଥିବେ ଯେ ରାଜ୍ୟ ହୋଇ ଗୋଳ ।
ବୃଷାଳ ଦୁଷ୍ଟଜନେ କରନ୍ତି ତହିଂ ଗୋଳ । ୩୮୫ ।
ବଣିକାର ଧନ ଚୋର ନେଲେ ବନ୍ଧୁ ।
ପରଜାୟେ ସେ କଥା ଯେକତେ ନ କହୁ । ୩୮୬ ।
ଦଣ୍ଡ ଦଣ୍ଡିଲେ ସେ ସାଧୁତ ଜନ ଦେଖି ।
ସନ୍ତ ଜନ ପ୍ରାଣୀ ହୋଇଲେ ମାହା ଦୁଃଖି । ୩୮୭ ।
ଦିଗପାଳେ ଯାଇ ବ୍ରହ୍ମାଙ୍କୁ କହିଲେ ।
ହେ ଦେବ ଦୁର୍ଜନୟେ ପ୍ରବଳ ହୋଇଲେ । ୩୮୮ ।
ସୁରପତ୍ତ ନାହିଂ ହତ ପାଟ ରାଜ୍ୟ ।
କାହାକୁହିଂ କେହି ନ କରନ୍ତି ପୂଜ୍ୟ । ୩୮୯ ।
ବିଧାତା ବୋଇଲେ ମୁଂ ଅଇଲି ତାହା ଜାଣି ।
ଗଉତମ ନାରୀକ ହରିଲ ବଜ୍ରପାଣି । ୩୯୦ ।
ଜାଣି ମହାଋଷି କୋପେ ଶାପ୍ୟ ଦେଲ ।
ସହସ୍ରେକ ଯୋନି ତୁ ବହସି ବୋଇଲ । ୩୯୧ ।
ତପୀର କୋପେ ଯେ ଛୁଣ୍ଡିଲା ତାର ଅଣ୍ଡ ।
ତେଣେ ସେ ଗୋଳ ହୋଇଲ ସ୍ୱର୍ଗଖଣ୍ଡ । ୩୯୨ ।
ମାନସରୋବରରେ ଇନ୍ଦ୍ର ଅଛୁ ପଶି ।
ଦୁଷର କୋପ ଯେ କଲକ ମହାଋଷି । ୩୯୩ ।
ଚଲ ଆମ୍ଭେ ଯିବା ହୋ ଗଉତମ କଣ୍ଠ ।
ତେବେ ସେ ଇନ୍ଦ୍ର ଯେ ପାଇବ ସଦ୍‌ଗତ୍ତ । ୩୯୪ ।
ଯେତେକ ବିଚାର ବ୍ରହ୍ମା ସୁରଗଣ ଘେନ ।
ଗଉତମଙ୍କ ଆଶ୍ରମେ ମିଳିଲେ ପଦ୍ମଯୋନ । ୩୯୫ ।
ଦେବ ଇନ୍ଦ୍ର ପାଇଂ କହିଲେ ଅନେକ ମତେ ।
ପ୍ରବୋଧ ହୋଇଲେ ମହାତପେ ବନ୍ତେ । ୩୯୬ ।
ମୁନି ବୋଇଲେ ମୋ ବଚନ ନୁହିଂଇ ଯେ ଆନ ।
ସହସ୍ରେ ଯୋନି ହୋଇବ ସହସ୍ରେ ଲୋଚନ । ୩୯୭ ।

Digitized by srujanika@gmail.com

ମେଷ ଅଣ୍ଡେକ ଲଗାଅ ତାହା ତହୁଂ ।
ଗଉତମ ବୋଇଲେ ପ୍ରସ   ମୁଖ ହୋଇ । ୩୯୮ ।
ଶୁଣିଣ ସୁରଗଣ ଧାତାକୁ ଘେନିଗଲେ ।
ମାନସସରୋବରେ ଯାଇଂ ଇନ୍ଦ୍ରକୁ ଦେଖିଲେ । ୩୯୯ ।
ଗଉତମ ଆଗ୍ୟାଂ କହିଲେକ ସହୁଂ ।
ସହସ୍ରେ ଲୋଚନ ହୋଇଲାକ ତହୁଂ । ୪୦୦ ।
ଜଳୁ ବାହାର ହୋଇଲା ସୁରପତି ।
ମେଷର ଅଣ୍ଡ ଆଣି ଲଗାଇଲେ ଧାତି । ୪୦୧ ।
ସ୍ୱର୍ଗରେ ନେଇଣ ତାକୁ କଲେ ଅଭିଷେକ ।
ତହୁଂ ସେ ପାଳିଲା ସଂସାର ତ୍ରିଲୋକ୍ୟ । ୪୦୨ ।
ଅହଲ୍ୟାକୁ ଶାପ୍ୟ ଦେଲେ ମହାଋଷି ।
ବୋଇଲା ତୋହୋରେ ହୋଇଲି ମୁହିଂ ଦୋଷୀ ।୪୦୩।
ତୁହିଲେ ଦୋଷ୍ଟ ନ ଛୁଅଂ ମୋର ଦେହ ।
ପାଷାଣ ହୋଇଂ ତୁ ବନସ୍ତେ ପଡ଼ି ରହ । ୪୦୪ ।
ଶୁଣିଣ ସୁନ୍ଦରୀ ଯୋଡ଼ଇ ବେନି କର ।
ମୁନି ଦୋଷ ଯେ ନାହିଂ ନା ମୋହୋର । ୪୦୫ ।
ମାୟା ହୋଇ ଅଇଲା ତୁମ ରୂପ ଧରି ।
ମୁହିଂ କେମନ୍ତେ ଜାଣିମି ସେ ଅଟଇ ବଜ୍ରଧାରୀ । ୪୦୬ ।
ପୂର୍ବେ କାହାର ମୁଂ ଛୁନାଇଥିଲି ଆଣ ।
ତେଣୁ ସେ ଘର ବରେ ହୋଇଲି ଜବଣ । ୪୦୭ ।
ଢ଼ାଳେ ହେଂ ନରେଖ ସ୍ୱାମୀ କୃପା ମୋତେ କର ।
ଜାଣିମାରେ ଦୋଷ କଲି ନାହିଂ ନା ମୋହୋର ।୪୦୮।
ପ୍ରତିକାରକ୍ର କାରଣ କହ ମହାମୁନି ।
ଖରଯା ବିକଳ ଦେଖି ବିରସ ମହାଗ୍ୟାନି । ୪୦୯ ।
ବୋଇଲେ ତୁ ଯେବେ ପାଷାଣ ହୋଇଥିବୁ ।
ରାମଚନ୍ଦ୍ରଙ୍କୁ ଦେଖିଲେ ମୁକତି ହୋଇବୁ । ୪୧୦ ।
ଦଶରଥ ନନ୍ଦନ ସଂସ୍ତେ ବ୍ରହ୍ମବାଣୀ ।
ଜନମ ହୋଇବେ ସେ ରାବଣ ଦର୍ପ ଧ୍ୱଂସି । ୪୧୧ ।
ଯାଗ ରଖିବାକୁ ତାକୁ ଆଣିମେ ଗାଧିସୁତେ ।
ମିଥିଲାକୁ ଯାଉଂ ବାଟେ ଦେଖିବେ ତୋତେ । ୪୧୨ ।
ଚରଣ ଲଗାଇବେ ପୂର୍ବର କଥା ଶୁଣି ।
ପାଇବୁ ନିଜ ତନୁ ଯୁବତୀ ଶିରୋମଣି । ୪୧୩ ।

Digitized by srujanika@gmail.com

ଶ୍ରୀରାମ ଛୁଅନ୍ତେ ଦୋଷ ତୋର ଯିବ ।
ତେବେ ସେ ତୋହୋର ସଙ୍ଗେ ମୋହୋର ଯେ ଭାବ ।୪୧୪
ଏତେ ବୋଲି ମୁନି ଆଶ୍ରମକୁ ଗଲେ ।
ନାନା ତୀର୍ଥ କରି ଅନେକ ତପ କଲେ । ୪୧୫ ।
ଗଉତମର ଯାନ୍ତେ ଅହଲ୍ୟା ବକଲ ।
ପାଷାଣ ହୋଇଲା ସେ ଅଛଇ ଏତେକାଳ । ୪୧୬ ।
ହେ ରାମ ଦେବେ ତୋ ଚରଣ ଏଥେ ଲଦ ।
ଭାଙ୍ଗୁଂ ଗଉତମକୁ ମନ୍ତ କୋପ ଦ୍ୱନ୍ଦ୍ୱ । ୪୧୭ ।
ଏ କନ୍ୟା ମୁକତ ହୋଇ ତୋର ଫଳେ ।
କଥା ରହିଥାଉ ଏ ମହୀମଣ୍ଡଳେ । ୪୧୮ ।
ଶୁଣିଲେ ଶ୍ରୀରାମ ବିଶ୍ୱାମିତ୍ର ବାଣୀ ।
ପାଷାଣ ଉପରେ ବଜାଏ ରଘୁମଣି । ୪୧୯ ।
ଶ୍ରୀରାମ ଚରଣ ଲାଗନ୍ତେ ପାଷାଣ ।
ଦିବ୍ୟ ସ୍ତ୍ରୀ ସ୍ୱଏକ ହୋଇଲେ ତତକ୍ଷଣ । ୪୨୦ ।
ପର୍ବର ତହୁଂ ଶତେ ଗୁଣ ଉଜ୍ଜ୍ୱଳ ।
ଅର୍ଘ୍ୟ ଘେନି ଉଭା ଯେ ହୋଇଅଛି ବାଳୀ । ୪୨୧ ।
ଶ୍ରୀରାମ ଶିରେ ଦୁର୍ବାକ୍ଷତ ଦେଲା ।
ସ୍ୱର୍ଗେ ସାଧୁ ସାଧୁ ଶବଦ ଶୁଭିଲା । ୪୨୨ ।
ନିଜ ତନୁ ପାଇଲା ଗଉତମ ନାରୀ ।
ତେବେ ସେ ସଂଶୟେ ଫିଟିଲା ମୋହୋର । ୪୨୩ ।
ଶ୍ରୀରାମଙ୍କୁ ଅର୍ଘ୍ୟ ଦେଇଟଲା ବାଳୀ ।
ଯହୁଂ ଛନ୍ତି ଗଉତମ ତହୁଂ ଯାଇ ମିଳି । ୪୨୪ ।
ଦେଖିଣ ହରଷ ଯେ ହୋଇଲେ ଗଉତମ ।
ବୋଇଲେ ସଖି ତୁ ଭେଟିଲୁ ଶ୍ରୀରାମ । ୪୨୫ ।
ଆସ ଆସ ସଖି ତୁ ହୋଇଲୁ ସଉଭାଗି ।
ବିଷ୍ଣୁର ଶ୍ରୀପଦ୍ମର ତୋହୋର ଶିରେ ଲାଗି । ୪୨୬ ।
ଏତେ ବୋଲି ଅହଲ୍ୟାକୁ ପୂଜାବିଧି କଲେ ।
ସଂଗ୍ରହଣ କରି ଦୋଷ ନ ଘେନିଲେ । ୪୨୭ ।
ଏଥୁଅନନ୍ତରେ ଶୁଣ ଗୋ ପାର୍ବତୀ ।
ଅହଲ୍ୟାକୁ ମୁକତ କରାଇଣ ରଘୁପତି । ୪୨୮ ।
ବିଶ୍ୱାମିତ୍ର ସଙ୍ଗେ ଗଲେ ତହୁଂ ଚଳି ।
ଆବର ଅନେକ ଯେ ଅଛନ୍ତି ତପଶାଳୀ । ୪୨୯ ।

Digitized by srujanika@gmail.com

ମିଥିଲା ନଗରେ ହୋଇଲେ ପ୍ରବେଶ ।
ଦେଖିଲେ ଚନ୍ଦ୍ରକିରଣ ଜାଣି ଦେଶ । ୪୩୦ ।
ମେଘ ମଣ୍ଡୋପ ଯେ ପ୍ରାସାଦ ଜଗତି ।
ସୁବର୍ଣ୍ଣ କଳସ ଦିଶନ୍ତି ପନ୍ତି ପନ୍ତି । ୪୩୧ ।
ବିଚିତ୍ର ଚାମର ଯେ ଉଡ଼ଇ ଫର ଫର ।
ଚିତ୍ରଲେଖନ ଯେ ସବୁଙ୍କର ଘର । ୪୩୨ ।
ସ୍ଫଟିକର ଧାବଳ୍ପ ବାନ୍ଧିଲି ଅଛି ଦ୍ୱାର ।
ସାଧୁ ସରଜନ ବାଣ ବଣିକାର । ୪୩୩ ।
ଦାଣ୍ଡେ ପଦ୍ମରାଗ କର୍ପୂର ଧୂଳି ବିଞ୍ଚି ।
ଚନ୍ଦନର ଛେରା ଦେଇ କର୍ପୂର ପାଣି ସିଞ୍ଚି । ୪୩୪ ।
ନଗ୍ର ପରିମଳ ରାଜ ବାଟ ଘାଟ ।
ରଥ ଗଜ ଅଶ୍ୱ ଚତୁରଙ୍ଗ ଥାଟ । ୪୩୫ ।
ନଦୀ ପୁଷ୍କରଣୀ କୂପ ବାମ୍ପି ତଳା ।
ପୁଷ୍ପ ଫଳ ତୋଟା କେ କରବ ଶଙ୍ଖଳା । ୪୩୬ ।
ଗହଗହ ଶବଦ ଶୁଭଇ ମୁଖ ବାଣୀ ।
କଟକେ ପ୍ରବେଶ ହୋଇଲେ ରଘୁମଣି । ୪୩୭ ।
ରାଜମାର୍ଗେ ଯାନ୍ତେ ଦେଖନ୍ତି ସର୍ବଜନ ।
ସାଧୁ ସାଧୁ ଧ୍ୱନି ବୋଲନ୍ତି ବଚନ । ୪୩ ।
ଏକ କହନ୍ତେ ଆରେକ ଆଗ ସର ।
ରାମଙ୍କଇ ବେଢ଼ି ଦେଖନ୍ତି ନର ନାରୀ । ୪୩୯ ।
ନଗ୍ର ନରନାରୀ ଧୂଂଆଧୋଇ ହୋନ୍ତି ।
ଏକ ତୁଣ୍ଡେ ଆରେକ ଶୁଣିଣ ଧାମନ୍ତି । ୪୪୦ ।
ଯୁବା ସୁନ୍ଦରୀ ଯେ ଶ୍ରୀରାମଙ୍କୁ ଦେଖି ।
ମଦନ ଶରଘାତେ ହୋଇଲେ ସର୍ବେ ଦୁଖି । ୪୪୧ ।
ବସ୍ତ୍ର ଆଢ଼େକର ଦେଖାନ୍ତି ଯଉବନ ।
କେବଣ ଯୁବତୀଙ୍କର ଦିଶଇ ଜଘନ । ୪୪୨ ।
କେହୁ ଅଳପ ହସି ଆଖିଠାରା ମାର ।
କେ କାଖ ଦେଖାଇଣ ଢଅନ୍ତି ଅଙ୍ଗମୋଡ଼ି । ୪୪୩ ।
କାହାର ମୁଣ୍ଡେ ଖୋସା ନହାଇ ପାରଇ ।
ଆସିବାର ବେଗେକେ ବାମକରେ ଧରଇ । ୪୪୪ ।
କାହାର ଖୋସା ଯେ ଧାଉଁ ଧାଉଁ ଫିଟି ।
ବଉଳର ମାଳ ପଡ଼ିଲା ଭୂମି ଲୋଟି । ୪୪୫ ।

Digitized by srujanika@gmail.com

କାହାର ମୁକୁତା ସୀମନ୍ତିରୁ ତୁଟିଲା ।
ସ୍ତମୁକୁ ଲମ୍ବୁଅଛୁ ଖଞ୍ଜା ଫିଟିଗଲା । ୪୪୬ ।
କାହାର ଜାଲ ବେଣ୍ଟୁଲା ଖସି ପଡ଼ି ।
କାହାର ଗଳାରୁ ଗୁପସର ପଡ଼େ ଛୁଡ଼ି । ୪୪୭ ।
କେବଣ ସୁନ୍ଦରୀ ଯେ ସୁବେଶ ହୋଉଥିଲା ।
ରାମଙ୍କୁ ଦେଖିବ ବୋଲି ଧାଇଁଣ ଅଇଲା । ୪୪୮ ।
ଆଖିର କଜ୍ଜଳ ଯେ ନୁଆରିଲା ଘେନ ।
ଅଙ୍ଗୁଷ୍ଟିର ଅଗ୍ରେ ଲମ୍ବାଇଲା କାମିନୀ । ୪୪୯ ।
କାହା ହସ୍ତେ ଅଛୁ ହାଦେ ଗନ୍ଧପେଡ଼ି ।
ତରତରେ ଆସୁ ନ ପାରିଲା ଫେଡ଼ି । ୪୫୦ ।
କେ ପାନପିକ ଚରଣେ ଲଗାଇଲା ।
ଅଳତା ନୁହଇ କି ହୋଇ ଜାଣି ନ ପାରିଲା । ୪୫୧ ।
ସିନ୍ଦୂର ଟୀକା କେ ଘେନୁଥିଲା ନାରୀ ।
ଗନ୍ଧ ଗୁଣ୍ଡି ବୋଲି ଦେହେ ଲିପିଲା ପାଶୋରି । ୪୫୨ ।
କେବଣ ଚତୁରୀ ହସି ହସି ଧାଇଁ ।
ମୁଖ ପାନପିକ ରଙ୍ଗ ଲୋଥ ବଳି ପଡ଼ଇ । ୪୫୩ ।
କେବଣ ସ୍ତିରୀ ବସ୍ତ୍ର ପିନ୍ଧନ୍ତେ ଆସଇ ଖର କରି ।
ଅଧିକ ପିନ୍ଧି ଅର୍ଦ୍ଧେକ ଧରିଅଛୁ ଶାଢ଼ୀ । ୪୫୪ ।
ହୁଆର ବସ୍ତ୍ର ଯେ ଉଡ଼ଇ କାହାର ବାତ୍ୟେ ।
ନେପୁର ପଡ଼ିଲା କାହାର ଧାଇଁମାର ଘାତ୍ୟେ । ୪୫୫ ।
କେବଣ ନାଗେରୀ ବୋଲଇ ପଛେ ଥାଇଁ ।
ଆଗ ହୋଇ କେଣେ ଯାଉଛ ପଳାଇ । ୪୫୬ ।
କ୍ଷଣେ ପଠାର ହୋ ଦୁଇ ସଖୀ ସଙ୍ଗ ହୋଇଯିବା ।
ହସ୍ତ ଧରାଧରି ହୋଇ ଶ୍ରୀରାମଙ୍କୁ ଦେଖିବା । ୪୫୭ ।
ସପତ ମେଣ୍ଟିଣ ଗଲା କେବଣ ନାରୀ ।
ଉଲଟ ଛନ୍ଦେଣ କେ ପିନ୍ଧିଛନ୍ତି ଶାଢ଼ୀ । ୪୫୮ ।
କାହାର ନାସାରୁ ବଇଣୀ ଗଲା ଖସି ।
କେବଣ ନାଗରୀ ଯେ ମୁଗେ ହସାହସି । ୪୫୯ ।
କେହୁ ନ ମାନିଲେ ଗୁରୁ ଗଉରେବ ।
ମାନନ୍ତି ଲୋକଙ୍କୁ ହାବୋଡ଼ିଣ ଯିବ । ୪୬୦ ।
କେ ମଳାପୁରକୁ ପୁଛଇ ରାମ କାହିଁ ।
ନିକଟେ ଦେଖିଣ ସେ ଜଭ କାମୋଡଇ । ୪୬୧ ।

Digitized by srujanika@gmail.com

କେଷ୍ଟ ଶଙ୍କରଙ୍କୁ କେ ପୁଛଇ ରାମ କାହିଁ ।
ଶ୍ରୀରାମଙ୍କୁ ତୁମ୍ଭେ ଦେଖିଲଣି ଯାଇ । ୪୬୨ ।
ସେତେ ବୋଲନ୍ତେ ସେ ପାଶରେ ହୋଇ ଯାଇଁ ।
ମାନତ ଦେଖି ଜଣ କାମୋଡ଼ୁ ପକାଇ । ୪୬୩ ।
କେହୁ ଶଙ୍କରଙ୍କ ଯେ ହାଦେ ଗୁଡ଼ଣ ଗଲା ।
ଥୋକାଏ ଦୂର ଯାଇଁ ଲେଉଟି ଲଏ କଲା । ୪୬୪ ।
କାହାର ହସ୍ତେ ଘେନ ଅଛଇ ଗୋଡ଼ ବଲା ।
କଟିରେ ଖଞ୍ଜଇ କେ ଚଉସରୀ ମାଳା । ୪୬୫ ।
କେ ପାଟବ୍ରତ ଯେ ବାହେ ବାନ୍ଧୁଥିଲା ।
ରାମ ଦେଖିବାକୁ ଧାଇଁଣ ଅଇଲା । ୪୬୬ ।
କେବଣ ସୁନ୍ଦରୀ ଯେ ଯଉବନେ ଭର ।
ଧାଇଁ ଆସନ୍ତେଣ ଦୁଇହସ୍ତେ ଧର । ୪୬୭ ।
ଝୁଆ ହଲନ୍ତେଣ ଗୁପଇ ପୁଣି ପୁଣି ।
ସେକଙ୍କୁ ଆରେକ ଯେ ଧାପରେ ଯାନ୍ତ୍ରି ଜାଣି । ୪୬୮ ।
କାହାର ଆନନ୍ଦ ଯେ ନୟନ୍ତୁ ଜଳ ଧାର ।
ସରୁ ଲୁଗା ଛନ୍ତ ଦୁଇ କୁଚ ଜଡ଼ । ୪୬୯ ।
କାହାର କଙ୍କଣ ବାଜଇ ଠୁଣୁଣୁ ।
କେବଣ ନାଗରୀ କୁଙ୍କୁମ ବଲେପନ । ୪୭୦ ।
କେବଣ ନାଗରୀ ନହାଇ ଉଙ୍କୁଟାଇ ଘଣ୍ଟି ।
ବସ୍ତ୍ର ଉଡ଼ୁଣ କାହାର ଦଣ୍ଡଅଛୁ ପିଠି । ୪୭୧ ।
ଦାଣ୍ଡ ଗହଳି ଯେ ଯେ ପଶିତ ଠାବ ନାହିଁ ।
କେ ବୋଲଇ ଆହୋ ଶ୍ରୀରାମଚନ୍ଦ୍ର କାହିଁ । ୪୭୨ ।
କେ ବୋଲଇ ଦେଖ ବଶ୍ୱାମିତ୍ର ପାଶେ ।
ନୂଆ ଦୁର୍ବାଦଳ ପ୍ରାୟେକ ତନୁ ଦଶେ । ୪୭୩ ।
ଶରଦ ପୂର୍ଣ୍ଣିମୀ ଚନ୍ଦ୍ରମା ପ୍ରାୟେ ମୁଖ ।
ରାଜୀବ ପତ୍ରକ ଦୁଇ ନେତ୍ର ଦେଖ । ୪୭୪ ।
ଅଜାନୁ ବାହୁ ବସ୍ତାର ବକ୍ଷସ୍ଥଳ ।
ଫରହର ଉଡ଼ଇ ବସ୍ତ୍ରର ଅଞ୍ଚଳ । ୪୭୫ ।
ଉପରେ ରଙ୍ଗବସ୍ତ୍ର ଅଛଇ ବେଢ଼ାଇଲା ।
ଧନୁବାଣ ସଖି ଗୋ ସେହାକୁ ମୋହିଲା । ୪୭୬ ।
ଜାଇଫୁଲରେ ଗୋ ଶିରରେ ଗଭାଗୋଟି ।
ହେଲେ ନୋହିଲା ସେ ସଂସାର ନବସୃଷ୍ଟି । ୪୭୭ ।

Digitized by srujanika@gmail.com

କର୍ଣ୍ଣରେ କୁଣ୍ଡଳ ଯେ ଗଳାରେ ମୋତିମାଳା ।
ନିର୍ମଳ ଶଶୀରେ କି ଉଦୟେ ଲକ୍ଷେ ତାରା । ୪୭୮ ।
ଚମ୍ପାପୁଷ୍ପ ବର୍ଣ୍ଣ ଦିଶଇ ସ୍ଥାନ ଭାଇ ।
ଧନ୍ୟ ଯେହ୍ବାର ଯେ ଗର୍ଭଧାରୀ ଆଇ । ୪୭୯ ।
ଆମ୍ଭ ମିଥିଳାରେ ଗୋ ବଡ଼ ପୁଣ୍ୟ ଆଜ ।
ଯାହୁଂ ଆସି ପ୍ରବେଶ ହୋଇଲେ ରୂପରାଜ । ୪୮୦ ।
ଦେହଯାକ ଚମ୍ପା ଆମ୍ଭର ନାହିଂ ନୟନ ।
ଯେହ୍ବାଙ୍କୁ ଦେଖିଲେ ତ ଶାନ୍ତ ନୋହେ ମନ । ୪୮୧ ।
କେ ବୋଲଇ କେମନ୍ତେ ଛୁଇଂବା ଯେହ୍ବାର ଦେହ ।
ଯେଥକୁ ଂଖି ଆରେ ଉପାୟେ ମୋତେ କହ ।୪୮୨।
କେ ବୋଲଇ ଯେହ୍ବାକୁ ଗୋ ଚୁମ୍ବନ ଆମ୍ଭେ ଦେବା ।
ଯେହ୍ବା ସଙ୍ଗେ ଯେବେ ଗୋ ଗୋଡ଼ାଇଣ ଥିବା ।୪୮୩।
କେ ବୋଲଇ ଆମ୍ଭର ଗୋ ଜୀବନ ଧିକ ହେଉ ।
ଶ୍ରୀରାମ ଯେବେ ଆମ୍ଭର ନୋହିଲେକ ପ୍ରଭୁ । ୪୮୪ ।
ଯେକୃ ଯେବେ ଗୋ ମର୍ଦ୍ଦିବଟି କରେ ଧରେ ।
ତେବେ ସେ ସୁଫଳ ଗୋ ଜୀବନ ଆମ୍ଭର । ୪୮୫ ।
ଯେହ୍ବା ସଙ୍ଗେ ଯେବେ ଗୋ କରିବା ରମଣୀ ।
ତେବେ ସେ ବର୍ତ୍ତିବାର ଗୋ ହଙ୍କାରୁଣୀ । ୪୮୬ ।
ଯେହ୍ବାକୁ ଘେନି ଯେବେ ଗୋ ପଲଙ୍କେ ଶୋଇଥିବା ।
ସ୍ୱର୍ଗେ ଯେବେ ଯାଇ ଆମ୍ଭେ କି ଭୋଗ କରିବା । ୪୮୭ ।
ଗୃଲନ୍ତେ ଶ୍ରୀରାମର ହଲଇ ବଦନ ।
ଯୁବା ଯୁବତୀଙ୍କି ଘାରିଲା ମଦନ । ୪୮୮ ।
କେ ବୋଲଇ ଘର ଦ୍ୱାରେ କାର୍ଯ୍ୟ ନାହିଂ ।
କେ ବୋଲଇ ଆଉ ଥିବା କସ ପାଇଂ । ୪୮୯ ।
ଯାହୁଂ ପରବେଶ ହୋଇଲେ ଯେ ପୁରୀ ।
ଯୁବା ଯୁବତୀଙ୍କ ପ୍ରାଣ ନେମ ହରି । ୪୯୦ ।
ନିଶ୍ଚୟେ ଆଜ ଯେ କରିବ ସ୍ତ୍ରୀ ବଧ ।
ସୃହିଂବା ଛଟକେ ଯେଥି ପଡ଼ିବ ପରମାଦ । ୪୯୧ ।
ହସି କଥା କହିଲେ ମରିବେ ଅନେକ ନାରୀ ।
ଅବଶ୍ୟ ପ୍ରାଣ ଯେ ଘେନିମ ସଭଙ୍କର । ୪୯୨ ।
ଯେ ଣ ସୁନ୍ଦରୀ ଯେ ହୋଇଛନ୍ତି ଯୁବା ।
ବଞ୍ଚରନ୍ତି ଯେବେ ନୋହିଥାନ୍ତି ବନ୍ଧ । ୪୯୩ ।

Digitized by srujanika@gmail.com

ଆଗହୁଂ ଆସିଥିଲେ ହୁଅନ୍ତୁ ଆମ୍ଭେ ନାରୀ ।
ପିତା ମାତା ନ ଜାଣୁ ଥାନ୍ତୁ ଆମ୍ଭେ ବର । ୪୯୪ ।
ବୃଥା ସ୍ତ୍ରୀରୀମାନେ ସନ୍ତାପି ହେଉଛନ୍ତି ।
ବୟସ ଥିଲେ ସେ ହୁଅନ୍ତେ ଆମ୍ଭ ପତି । ୪୯୫ ।
ସେହ୍ନାଙ୍କୁ ଯେଜନ ଅ ମ୍ଭେ କରନ୍ତୁ ବଇଭୋଗ ।
ସେହ୍ନ ସେ ଆତ୍ମକଇଣ ଭୁଥା ପଣେ ଯୋଗ । ୪୯୬ ।
ସୁରୂପେ ବୋଲନ୍ତି ଯେ ସାଧୁ ସେହ୍ନାର ମୂର୍ତ୍ତି ।
ଦେଖିଲୁ ନ ଥିଲୁ ଶୁଣିଲୁ ନାହିଁ ଶ୍ରୁତି । ୪୯୭ ।
ଅପୂର୍ବ ସୁନ୍ଦର କୁମାର ବୟସ ।
ସେଥିକି ଅଛିଲୁ ଧନ୍ୟ ସେହ୍ନ ଦେଶ । ୪୯୮ ।
ଯୋଗ୍ୟେ ବସ୍ତରନ୍ତି ଯେବେ ସେହ୍ନାଙ୍କ ସଙ୍ଗେ ଖେଳ ।
ତେବେ ସେ ସୁନ୍ଦର ହଣଇ ବାଳ ମେଳ । ୪୯୯ ।
ବୃଦ୍ଧ ଜନେ ବୋଇଲେ ଏହୁ ଦେବତା ସ୍ୱରୂପ ।
ମନୁଷ୍ୟର କାହିଁ ହୋଇବ ଏହେ ଦର୍ପ । ୫୦୦ ।
ନାରୀଗଣେ ମନ ମୂର୍ଚ୍ଛି ନ ପାରନ୍ତି ।
ଶ୍ରୀରାମର ସଙ୍ଗେ ଗୋଡ଼ାଇଣ ଅଛନ୍ତି । ୫୦୧ ।
ସାମନ୍ତ ପାତ୍ରଙ୍କର ସୁବନ୍ତମାନେ ମିଳି ।
ଜଗତ୍ରରେ ହଠି ଗୃହାଂନ୍ତ ସର୍ବ ବାଳି । ୫୦୨ ।
ଅଙ୍ଗୁଷ୍ଠି ଦେଖାଇ କେ ଚାହାନ୍ତି ରଘୁନାଥ ।
କଳାମେଘର ବର୍ଣ୍ଣ ଗୋ ଧନୁ ଶସ୍ତ୍ର ହସ୍ତ । ୫୦୩ ।
ସିଦ୍ଧ ହୁଆ ପ୍ରାୟେ ଗୃହିବାର ଠାଣି ।
ପାଷାଣ ଫୁଟଇ ଗୃହାନ୍ତେ ଗୃହାଣୀ । ୫୦୪ ।
ସେଥୁଅନନ୍ତରେ ବିଶ୍ୱାମିତ୍ର ମୁନି ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ଗଲେ ତହୁଂ ଘେନି । ୫୦୫ ।
ଅନେକ ନରନାରୀ ଅଛନ୍ତି ଗୋଡ଼ାଇ ।
ରଜାର ନଗରେ ପ୍ରବେଶ ହୋଇଲେ ଯାଇଂ । ୫୦୬ ।
ଯାଗ କରଇ ସେ ଜନେକଂ ମହାଋଷି ।
ଶ୍ରୀରାମ ଲକ୍ଷ୍ମଣ ହୋଇଲେ ତହୁଂ ଆସି । ୫୦୭ ।
ବିଶ୍ୱାମିତ୍ର ସଙ୍ଗେ ଅନେକ ମୁନିଗଣ ।
ଦେଖନ୍ତି ପ୍ରଚଣ୍ଡ ଜଳଇ ହୁତାଶନ । ୫୦୮ ।
ମୂଷଳ ପ୍ରମାଣେ ପଡ଼ଇ ଘୃତ ଧାର ।
ସମ୍ପତ୍ତି କହିବ କେ ଯାଗର ସମ୍ଭାର । ୫୦୯ ।

Digitized by srujanika@gmail.com

ଅନ୍ନ ବସ୍ତ୍ର ତାହାଂ ପଇଡ଼ ପାଣି ପଣା ।
ଅନେକ ଦୂରୁ ଆସି ଅଛନ୍ତି ରାଜ୍ୟେ ରଣା । ୫୧୦ ।
ବ୍ରାହ୍ମଣେ ବହୁତ ହୋ ଯତ୍ତ ଯେ ସନ୍ନ୍ୟାସୀ ।
ନାନା ଜି ଥରୁ ଯେ ଅଛନ୍ତି ହାଦେ ଆସି । ୫୧୧ ।
ଯାଗେଣ ଅଛଇ ଯେ ଜନେକଂ ତପଗୃସ୍ଥ ।
ନାନା ମଣି ରତ୍ନ ଆଭରଣ କ୍ଷର । ୫୧୨ ।
ବିଶ୍ୱାମିତ୍ରଙ୍କଇ ଦେଖି ଅନେକ ପୂଜା କଲ ।
ଆସନେ ବସାଇଣ କୁଶଳ ପୁଚ୍ଛିଲେ । ୫୧୩ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ଦେଖିଲେକ ଯହୁଂ ।
ତାହାଙ୍କୁ ଅନାଇ ଯେ ଋଷିଙ୍କି କଥା କହୁଂ । ୫୧୪ ।
ମୂର୍ଚ୍ଛି ନ ପାରଲ ରୂପ ଗୁଣ ଗୃହଂ ।
ଜନେକ ପଗ୍ଭରଇ ବିନୟ ମତ ହୋଇ । ୫୧୫ ।
ହେ ମହାମୁନି କଥାଟେ ମୋତେ କହ ।
ଯେ ଦୁଇଗୋଟି ଅଟନ୍ତି କାହାର ଯେ ପୁଅ । ୫୧୬ ।
କଉଶିକ ବୋଲନ୍ତି ଜନେକ ବୋଲ ଶୁଣି ।
ଅଯୋଧ୍ୟାର ରାଜା ଯେ ଦଶରଥ ନୃପମଣି । ୫୧୭ ।
ଯେ ରାମ ଲକ୍ଷ୍ମଣ ଯେ ତାହାର ପୁତ୍ର ବେନି ।
ଯାଗ୍ୟ ରଖିବାକୁ ଅଇଲୁ ଆମ୍ଭେ ଘେନି । ୫୧୮ ।
ବାଟରେ ତାଡ଼କା ଅସୁରୀ ଓଗାଳିଲ ।
ଏ ରାମ ତାହାକୁ ଯେ ନାରାଯେ ମାଇଲ । ୫୧୯ ।
ଦୁଇ ଖଣ୍ଡ କରି ପକାଇଲ କାଟି ।
ଅଗମ୍ୟ ବିପ୍ରନ୍ୟେଣ ତାଡ଼କା ଦେହ ଲୋଟି । ୫୨୦ ।
ତହୁଂ ଆସି ମୋର ଯାଗ୍ୟ ରକ୍ଷା କଲ ।
ମାନବା ଅସ୍ତ୍ରେ ସେ ଦୁଇ ଦୈତ୍ୟଙ୍କୁ ନାଶିଲ । ୫୨୧ ।
ମାରୁଚକୁ ନେଲ ପବନେ ଉଡ଼ାଇ ।
ଅଗ୍ନି ବାଣ ଘେନି ସୁବାହୁକୁ ଦହି । ୫୨୨ ।
ଧନ୍ୟ ଯାଗ୍ୟ ତୋର ଶୁଭିଲେକ ଯହୁଂ ।
ଦେଖାଇବ ବୋଲି ଆଣିଲଇଂ ତହୁଂ । ୫୨୩ ।
ବିପୁଳ ବନେଣ ଗଉତମ ନାରୀ ।
ଶାପେଣ ଥିଲ ସେ ପାଷାଣ ରୂପ ଧରି । ୫୨୪ ।
ଯେ ରାମ ଚରଣ ଲଗନ୍ତେଣ ତହୁଂ ।
ଦିବ୍ୟ ଶରୀର ସେ ସେ ହୋଇଲ ପାପଦେହା । ୫୨୫ ।

Digitized by srujanika@gmail.com

ପୂର୍ବହୁଁ ଶତେ ଗୁଣେ ଅତୁଳ ତାର ରୂପ ।
କି ଜାଣି ଚଞ୍ଚଳା ସେ ଅହଲ୍ୟା ସ୍ୱରୂପ । ୬୨୬ ।
ରାମଙ୍କୁ ଅର୍ଘ୍ୟ ଦେଲାକ ସେ ସତୀ ।
ଆନନ୍ଦେ ଚଳିଗଲା ଯହିଁ ତାର ପତି । ୬୨୭ ।
ବିଶ୍ୱାମିତ୍ର କହନ୍ତେ ସତ୍ୟାନନ୍ଦ ଜାଣି ।
କଉଶିକର ଅଗ୍ରତେ ପଚାରଇ ପୁଣି । ୬୨୮ ।
ହେ ମୁନି କହ ମୋତେ ଜନନୀ ମୁକତି ।
ଶୁଣିଣ କହନ୍ତି ବିଶ୍ୱାମିତ୍ର ତପୋବନ୍ତି । ୬୨୯ ।
ଯେ ସେ ଶ୍ରୀରାମର ଲାଗନ୍ତେ ଚରଣ ।
ତୋହୋର ଜନନୀ ପାଇଲା ମୁକତି କାରଣ । ୬୩୦ ।
ପାଷାଣ ରୂପ ଲେଚ୍ଛୁ ନିଜ ତନୁ ଧରି ।
ତହୁଁ ଶତେ ଗୁଣେ ବଳବନ୍ତ ସୁନ୍ଦରୀ । ୬୩୧ ।
ଶ୍ରୀରାମଙ୍କୁ ଅର୍ଘ୍ୟ ଦେଇଣ ମହାସତୀ ।
ଯାଇ ଭେଟିଲା ସେ ତାହାର ନିଜ ପତି । ୬୩୨ ।
ଶୁଣି ସତ୍ୟାନନ୍ଦ ପ୍ରମୋଦିତ ଚିତ୍ତ ।
ଶ୍ରୀରାମଙ୍କୁ ପ୍ରଶଂସା କରନ୍ତି ବହୁତ । ୬୩୩ ।
ତୁ ଯେ ଜନନୀ ଦାନ ମୋତେ ହାଦେ ଦେଲୁ ।
ଗରୁତର ଲଜ୍ୟାରୁ ମୁକତି ମୋତେ କଲୁ । ୬୩୪ ।
ତୁ ଯେ ପରମପୁରୁଷ ମହାଗ୍ୟାନ ଦାତା ।
ତୋହୋର ମହିମା ଅଛଇ ଅସଂଖ୍ୟତା । ୬୩୫ ।
ଚରଣେ ଲାଗନ୍ତେ ତୋର ପାଷାଣ ହେଲା ନାରୀ ।
ତ୍ରିଭୁବନେ ତାକୁ ନାହିଁ ପଟାନ୍ତର । ୬୩୬ ।
ବିଶ୍ୱାମିତ୍ର ତୋତେ ଚହ୍ନିଲେ କେମନ୍ତେ ।
ଯେତେ କଥା ଜାଣି ଆଣିଲେ କେମନ୍ତେ । ୬୩୭ ।
କଉଶିକ ସେ ଅଛଇ ମହାଗ୍ୟାନୀ ।
ଯେହାଙ୍କର ପ୍ରଶଂସା କରଇ ପଦ୍ମଯୋନି । ୬୩୮ ।
ଯେହାର କଥା ହାଦେ ଅଶ୍ରୁତ ଅଗୋଚର ।
ଯେକ ମନ ହୋଇ ତୁ ଶୁଣ ରଘୁବୀର । ୬୩୯ ।
କୁଶେ ହସ୍ତ ହୋଇଣ ଅନେକ ବେଦପାଠ ।
ଧ୍ୟାନ କରୁ ପୁନେକ ହୋଇଲା ଉତପତ୍ତି । ୬୪୦ ।
ତାହାର ନାମ ସେ ହୋଇଲାକ କୁଶ ।
ବେଦହୁଁ ଜାତ ଯହୁଁ ତେଣୁ ବେଦ ବଂଶ । ୬୪୧ ।

Digitized by srujanika@gmail.com

କୁଶର ଗର୍ଭୁ ସୁତ ତନୟେ ହୋଇଲ୍ଲ ।
କୁଶାଖ୍ୟ ବୋଲ୍ଲ କର ଜେଷ୍ଠର ନାମ ଦେଲ୍ଲ । ୫୪୨ ।
କୁଶନାଭ ବୋଲ ତାହାର ସାନ ଭାଇ ।
ସେହାର ଅନୁଜ ବସୁ ନାମ ହୋଇ । ୫୪୩ ।
ବସୁଙ୍କ ସାନ ତାର ନାମ ଅଟଇ ସ୍ୱସ୍ତି ।
ସୁତ କୁମାରେ ଯେ ହୋଇଲେ ନୃପତ୍ତି । ୫୪୪ ।
କୁଶନାଭର ପୁତ୍ର କଉସ୍ତୁଭ ନୃପତି ।
ସୁତ ସମୁଦ୍ରେ ଯେ ଯେ ଅଟଇ ଚକ୍ରବର୍ତ୍ତୀ । ୫୪୫ ।
ସେହାର ତନୟେ ଯେ ଗାଧିରାଜା ହୋଇ ।
ଭୁଜବଳେ ସାଧି କଲ୍ଲକ ସର୍ବମହୀ । ୫୪୬ ।
ଗାଧିର ତନୟେ ଯେ ବିଶ୍ୱାମିତ୍ର ହୋସ୍ତେ ।
ଅଇରବଳ ପୂଜା କରନ୍ତ ସର୍ବ ଭୟେ । ୫୪୭ ।
ଅତଙ୍କ ପ୍ରତାପୀ ସେ ଅଟଇ ନୃପମଣି ।
ନବରେ ପ୍ରବେଶ ହୋଇଲ୍ଲ ପୁଣ୍ୟ ପ୍ରାଣୀ । ୫୪୮ ।
ଅନେକ ବଳଧେନ ନୃପତ୍ତି ଶିଖର ।
ମୃଗୟା ବନୋଦେ ପଶିଲ୍ଲ ବନ ଘୋର । ୫୪୯ ।
ଅନେକ ଶୂକର ହରଣ ମାଇଲେ ।
ମସ୍ୟେମତ୍ତ ଗଜ ଅନେକ ବନ୍ଧୀ କଲେ । ୫୫୦ ।
କ୍ଷୁଧା ବଳେ ସନ୍ତୁ ହୋଇଲ୍ଲକ ଆସି ।
ସାଇଂଣ ଭେଟିଲେ ସେ ବଶିଷ୍ଠ ମହାଋଷି । ୫୫୧ ।
ଦେଖି ମହାମୁନ ଗଉରବେ କଲେ ।
ଯେ ମାତ ଅଟଇ ବିବଧ ବଧି କଲେ । ୫୫୨ ।
ବୋଇଲେ ବିଶ୍ରାମ କ୍ଷଣକେ ରାଜା କର ।
ସ୍ୱେ ତୋହୋର ସଇନ୍ୟକୁ ଦେବଇଂ ଆହାର । ୫୫୩ ।
ରୁହ ମଣୋହ କରଣ ରାଜା ଯାସି ।
ସ୍ୱେଥୁ ଅନନ୍ତରେ ଶୁଣ ରଘୁଶିଷି । ୫୫୪ ।
ରାଜାଙ୍କୁ ରୁହାଇ ସେ ବଶିଷ୍ଠ ମହାମୁନ ।
ତତକ୍ଷଣେ ପାଶକୁଂ ରାଇଲ୍ଲ ନନ୍ଦନୀ । ୫୫୫ ।
ରୁହ ଗୋ ସୁରଭି ସମ୍ଭାଳ ବିଶ୍ୱାମିତ୍ର ।
ଆଜ ଜାଣିମା ଗୋ ତୋହୋର ଚରିତ୍ର । ୫୫୬ ।
ଶୁଣିଣ ସୁରଭି କଲ୍ଲ ସର୍ବବଧି ।
ସନ୍ତୁଂ ଆଜ୍ଞା ଦେଲେ ବଶିଷ୍ଠ ତପୋନିଧି । ୫୫୭ ।

Digitized by srujanika@gmail.com

ରାଜାଙ୍କ ନଗର ପାଦ୍ରକଲ ହୁଆସ ।
ସ୍ୱେଚ୍ଛକସର ଲୋକଙ୍କ ଅନରୂପେ ବାସ । ୫୫୮ ।
ଅନ୍ନ ବ୍ୟଞ୍ଜନ ବିବିଧ ପରକାର ।
ଦଧି ଦୁଧ ସର ବିବିଧ ସମ୍ଭାର । ୫୫୯ ।
ଗନ୍ଧ ଚନ୍ଦନ ବିବିଧ ବସ୍ତ୍ରମାନ ।
ଯେ ଯାହାର ଅନରୂପେ ଦେଲକ ଭୋଜନ । ୫୬୦ ।
ମୁଣୋହ୍ୱ କରଣ ଦେଲକ ନି ପୁଡ ।
ବଶିଷ୍ଠଙ୍କ ପୁଚ୍ଛା କଲକ ନୃପତ । ୫୬୦ ।
ଭୋ ମହାଯତ ତୁ ଯେ ସ୍ୱେକସରେ ଥାଇଂ ।
ସ୍ୱେ ମୋହୋର ସନ୍ୟଙ୍କ ଭୋଜନ କେହ୍ନେ ଦେଇ ।୫୬୨।
ମୁନ ବୋଇଲେ ମୋ ସୁରଭି ଭିଆଇଲା ।
ସେ କାମଧେନୁ ତୋତେ ଭୋଜନ ହାଦେ ଦେଲା ।୫୬୩।
ଶୁଣିଣ ଆଶ୍ଚ୍ରିଯ ହୋଇଲେ ନୃପବର ।
ମନେ ମନେ କଥା କରଇ ବିଗ୍ଭର । ୫୬୪ ।
ବୋଇଲା ମୁହିଂ ଯେ କରଇ କଟକାଇ ।
ସେ କଥା ଭଲ ମୋତେ ଯୋଗାଇ ଯେ ଗାଈ ।୫୬୫।
ବନ ପରବତେ ଯୋଗାଣ ଭିଆଇବ ।
ମୋହୋର ରାଇଜକୁ କଷ୍ଟ ଯେ ନଥିବ । ୫୬୬ ।
ସ୍ୱେତେ ବୋଲି ରାଜା ଯେ ବଶିଷ୍ଠଙ୍କ ଗ୍ଭହିଂ ।
ସୁରଭିକ ପ୍ରତତୁଲ୍ୟ ଦେବା ଆନ ଗାଈ । ୫୬୭ ।
ସ୍ୱେ ଯେ ଗାଈ ଗୋଟି ମୁନ ମୋତେ ଦେବା ।
ଯେବେ ମହାମୁନ ଘେନଲ ମୋର ସେବା । ୫୬୮ ।
ମୁନ ବୋଲନ୍ତ ସ୍ୱେ ତୋତେ ନ ଯୋଗାଇ ।
ତପୀଜନଙ୍କର ସ୍ୱେ ଅଟଇ ଯଜ୍ଞ ଗାଈ । ୫୬୯ ।
ତୁହ୍ୱ ଯେ ନୃପତ ଅପୂର୍ବ ତୋତେ କାସ ।
ଯାହା ତୁ କଲ ସ୍ୱେ ତୋହୋର ବଡ଼ ଦୋଷ ।୫୭୦।
ରାଜା ବୋଲଇ ମୁଂ ପାଲଟା ଗାଈ ଦେବି ।
ତୋହୋର ତହୁଂ ଅବଶ୍ୟ ଗାଈ ଘେନ ଯିବି । ୫୭୧ ।
ଚଉଦ ସହସ୍ର ହୋ ଅଛଇ ମୋର ହାଥୀ ।
ଯୋଦ୍ଧା ସହତେଣ ଘେନ ମହାଯତ । ୫୭୨ ।
ଆଠ ସହସ୍ର ରଥ ଘେନସି ଆବର ।
ଉଚସ୍ରବା ଅଶ୍ୱ ଅନ୍ତବ୍ରତ ହୟବର । ୫୭୩ ।

Digitized by srujanika@gmail.com

ଲକ୍ଷେକ ଧେନୁ ସୁରଭିକ ସମକର ।
ଜମ୍ବୁନଦ ସୁନାଆଂ ଦେବଇଁ ତପସ୍ୱି । ୫୭୪ ।
କୋଟିଏକ କନ୍ୟା ଅଲଙ୍କାର ଯୁଗତେ ।
ରାଜ୍ୟହିଂ ଅର୍ଦ୍ଧ ଦେବି ସୁରଭି ଦିଅ ମୋତେ । ୫୭୫ ।
ବଶିଷ୍ଠ ମୁନି ନାସ୍ତି କଲେ ତାହା ଶୁଣି ।
କୋପଭର ହୋଇ ବୋଲଇ ନୃପମଣି । ୫୭୬ ।
ରାଗେଣ ତନୁ ତାର କମ୍ପଇ ଥରହର ।
ସନ୍ୟଙ୍କୁ ରାଇ ଆଜ୍ଞା ଦେଲେ ନୃପବର । ୫୭୭ ।
ଅଡ଼ାଅ ସୁରଭିକ କଟକକୁ ନେବା ।
ପଛେ ଯାହା କରିପାରୁ ସେ ଋଷି ଦେବା । ୫୭୮ ।
ହେତେ ବୋଲି ରଶ୍ମେ ସୁରଭିକ ନେଲା ।
ଜାଣି ସୁରଭି ସେ ଋଷିଙ୍କି ବୋଇଲା । ୫୭୯ ।
ବୋଇଲା କମ୍ପାଇ ତୁ ଅଦୟା କଲୁ ମୋତେ ।
ମୋହୋରତ ଦୋଷ କଲା ନାହିଁଟି ତୋତେ । ୫୮୦ ।
କମ୍ପା ଉପେଖିଲୁ କିବା ଅବଗୁଣ ।
ବଶିଷ୍ଠେ ବୋଲନ୍ତି କାମଧେନୁ ଶୁଣ । ୫୮୧ ।
ମାଗୋ ବଳେ ରାଜା ହାଦେ ନେଉଂଅଛୁ ତୋତେ ।
କମ୍ପାଇ ସୁରଭି ମନ୍ଦ ବୋଲୁ ମୋତେ । ୫୮୨ ।
ରାଜା ବାହୁବଳେ ତପ ଆମ୍ଭେ କରୁ ।
ବନ ପରବତ କନ୍ଦରେ ଦିନରେ ହରୁଂ । ୫୮୩ ।
ରାଜାଙ୍କର କଲ୍ୟାଣ କରୁ ଆମ୍ଭେ ନିତ ।
ଅଗ୍ନିମୁଖେ ସମର୍ପୁ ପୂର୍ଣ୍ଣ ସେ ଆହୁତ । ୫୮୪ ।
ତେଣେ ଦେବେ ହୁଅନ୍ତି ପରମ ତୋଷ ।
ଦିଗପାଳେ ପାଳନ୍ତି ଉପୁଜନ୍ତି ଶସ୍ୟ । ୫୮୫ ।
ଶସ୍ୟ ବର୍ଦ୍ଧମାନେ ପ୍ରଜାଏ ବ୍ରତନ୍ତି ।
ପ୍ରଜାଙ୍କର କ୍ଷେମେ ନୃପତି କୁଶଳ ହୁଅନ୍ତି । ୫୮୬ ।
ନୃପତିର ତୋଷେ ବଳାମାନ କାଏ ।
ରାଜା ବଳମାନେ ଅଚୋର ପଳାଏ । ୫୮୭ ।
ଅଚୋର ପଳାବନ୍ତେ ଦୁଷ୍ଟ ଭୟ ନାହିଂ ।
ଦୁଷ୍ଟ ନ ଥିଲେ ସେ ରହିଂ ଯହିଂ ତହିଂ । ୫୮୮ ।
ଯହିଂ ଥିଲେଣ ସେ ନିର୍ଭୟେ ତପ କରି ।
ତେଣୁ ସେ ଆମ୍ଭେ ସେ ଅଟୁଂ ତପସ୍ୱୀ । ୫୮୯ ।

Digitized by srujanika@gmail.com

ତପୀମାନଙ୍କର ରାଜା ଧର୍ମପିତା ।
ରାଜାର ସେ ତପୀ ଅଟଇ ଦେବତା । ୫୯୦ ।
ଦେବତା ଆରାଧନା କରନ୍ତି ଯେବଣ ପ୍ରାଣୀ ।
ସେ ସେ ସ୍ୱର୍ଗ ଜନେ ପୁରାଣେ ବଖାଣି । ୫୯୧ ।
ରାଜା ହୋଇ ଯେବେ ଦୁଷ୍ଟ ପଣ କରଇ ।
ଧର୍ମ ନ ଆପିଣ ପର ଆୟୁ ହରଇ । ୫୯୨ ।
ମୁଁ କସ କରିବ ଶୁଣସି ଗୋ ମାୟେ ।
ମୁଁ କାମ୍ୟ ବଳୋହିବ ମୋହର ବଳ ଆୟେ । ୫୯୩ ।
ନୃପତ ବଳେ ତୋତେ ଯାଉଅଛୁ ଘେନ ।
ମୁହିଁ କସ କରିବ ଶୁଣ ଗୋ ନନ୍ଦନୀ । ୫୯୪ ।
ଶଣି ସୁରଭି ଯେ ବଶିଷ୍ଠଙ୍କର ବାଣୀ ।
ଖରତର ନିଶ୍ୱାସ ନିଧାତ ବାତ ଜାଣି । ୫୯୫ ।
ହେମା କରଣେ ଯେ ରାବେକ ଦେଖି ଦେଲି ।
ଦେବ ସନ୍ୟ ତହୁଁ ଉପଗନ୍ତ ହେଲି । ୫୯୬ ।
ସିଙ୍ଗରୁ ଗନ୍ଧର୍ବ ବଳ ହୋଇଲେ ଜାତ ।
ଖୁରରୁ ଖୁରରୁ ଜାତ ସେ ହୋଇଲେ ଦଇତ । ୫୯୭ ।
ହାଣ ହାଣ ମାର ମାର ଶୁଭଇ ଶବଦ ।
ଶୁଣିଣ ବିଶ୍ୱାମିତ୍ର ହୋଇଲେ ତବଦ । ୫୯୮ ।
ବାଜିଲି ରଣଗୋଳ ଓହୋଟବଳ ଥାଠ ।
ରାଜାର ସନ୍ୟ ଆଉ ନ ପାଇଲେ ବାଟ । ୫୯୯ ।
ସୁର ଅସୁର ନନ୍ଦନୀ ଜାତ କଲି ।
ତାହାଙ୍କର ହାଥରେ ରାଜାର ବଳ ମଲି । ୬୦୦ ।
ବିଶ୍ୱାମିତ୍ରର ଶତେକ ପୁତ୍ର ଥିଲେ ।
ଅନେଶ୍ୱତ ଋଷି ଯୁଦ୍ଧରେ ତାର ମଲେ । ୬୦୧ ।
ଗୋଟିଏ ଉବୁର ନଇଲେ ସଇନ ।
ପଳାଇଲେ ବିଶ୍ୱାମିତ୍ର ସଙ୍କୋଚ ମନ ଘେନ । ୬୦୨ ।
ସଙ୍ଗରେ ଜେଷ୍ଠ ପୁତ୍ରକୁ ଘେନ ଗଲି ।
ନିଜ ପୁରେ ଯାଇ ପ୍ରବେଶ ହୋଇଲି । ୬୦୩ ।
ଅଭିମାନେ ପୁତ୍ରକୁ ଯୁବରାଜା କରି ।
ଋଷିଯାକୁ ସଙ୍ଗେ ଘେନଣ ଦଣ୍ଡଧାରି । ୬୦୪ ।
ହେମାଞ୍ଚଳେ ଯାଇ ଅନେକ ତପ କଲି ।
ପୁଣି ହିଁ ରାଜ ପୁତ୍ର ସେ ଉପୁଜଲି । ୬୦୫ ।

Digitized by srujanika@gmail.com

ହରିଚନ୍ଦନ ମଧୁଚନ୍ଦନ ହୃତଚନ୍ଦନ ନାମ ।
ମୋହଚନ୍ଦନ ଯେନ ଗୃହରେ ଉତ୍ପନ ।୬୦୬।
ପୃଥିବୀ ରାଜାର ଗୃହେ ପୁତ୍ର ହୋଇଲେକ ଜାତ ।
କ ଜାଣି ପୋଷ୍ୟେ ଯେ ଅପୂର୍ବ ସୁରଜିତ ।୬୦୭।
ଅନେକ ତପ ଯେଣୁ ଗାଧିସୁତ କଲା ।
ପ୍ରସନ୍ନ ହୋଇ ତାଙ୍କୁ ଈଶ୍ୱର ବର ଦେଲା ।୬୦୮।
ନାନା ସହସ୍ର ତହିଁ ହୋଇଲା ସପ୍ରପତ ।
ବର ପାଇ କୋପେ ଆସଇ ବିଶ୍ୱାମିତ୍ର ।୬୦୯।
ବଶିଷ୍ଠଙ୍କ ଆଶ୍ରମେ ମିଳିଲେ ଯାଇ ।
କୋପେ ମଢ଼ିଆରେ ଅଗ୍ନି ଲଗାଇଲା ଯାଇଁ ।୬୧୦।
ଯହିଁ ସେ ମଢ଼ିଆରେ ଲାଗିଲେକ ଯୂଇ ।
ହିଦଣ୍ଡ ଯେନ ବଶିଷ୍ଠ ବାହାର ଯେ ହୋଇ ।୬୧୧।
ଦେଖି କଉଶିକ ଯେ ଅସ୍ତ୍ରଶସ୍ତ୍ର ପେଷି ।
ବ୍ରହ୍ମଦଣ୍ଡ ବୁଲାଇ ନବାରଇ ମହାଋଷି ।୬୧୨।
ଦେବ ଅସ୍ତ୍ରମାନ ହୋଇଲା ବ୍ୟର୍ଥ ।
ମୁନିର ରୋମମୂଳୁଁ ହୋଇଲେକ ଜାତ ।୬୧୩।
ସ୍ୱର୍ଗେଣ ଥାଇ ଯେ ବୋଲନ୍ତି ସୁରଗଣ ।
ତୋହୋର ହୋ ବିଶ୍ୱାମିତ୍ର ନୁହଇ ଭଲପୁଣ ।୬୧୪।
ବ୍ରାହ୍ମଣକଇ କ୍ଷତ୍ରୀ ନୁହଇ ସମ ସର ।
ବଶିଷ୍ଠର କୋପେ ଆଜ ନାଶିବ ବସୁନ୍ଧରା । ୬୧୫।
ତୁ ହୋ ନୃପମଣି ନ କରସି ସମର ।
ଆମ୍ଭର ବୋଲ କର ବେଳେକ ଅପସର ।୬୧୬।
ଶୁଣିଣ ଗାଧିସୁତ ହୋଇଲା ମଉନ ।
ଋଷୀଙ୍କ ପ୍ରଶଂସା କରଇ ମନେ ମନ । ୬୧୭।
ବଶିଷ୍ଠର ଶାନ୍ତ ସ୍ୱର୍ଗର ବୋଲ ଶୁଣି ।
ତପଇ ସେ ସାର ବିଶ୍ୱାମିତ୍ର ଜାଣି । ୬୧୮।
ଲଜ୍ୟାସ୍ତେ ନୃପବର ବାହୁଡ଼ିଣ ଗଲା ।
ଅଯୋଧ୍ୟା ପୁରରେ ଯାଇ ପ୍ରବେଶ ହୋଇଲା ।୬୧୯।
ସୁତ ବଶଯାକୁ ଥୋଇଲେକ ତହିଁ ।
ସାଗର କୂଳକୁ ଗଲା ତପ କରିବାର ପାଇଁ ।୬୨୦।
ଶ୍ରୀରାମ ପଚ୍ଛରନ୍ତି ଶୁଣ ସତ୍ୟାନନ୍ଦ ।
ସେ ବେଳେ କେ ଅଯୋଧ୍ୟାରେ ଅଛଇ ନରେନ୍ଦ୍ର ।୬୨୧।

Digitized by srujanika@gmail.com

ସତ୍ୟାନନ୍ଦ ବୋଲଇ ତୋହୋର ଉପର ବଂଶରେ ରାଜା ।
ସୁଚରିତେଣ ପାଳୁଥିଲେ ଜନ ପ୍ରଜା । ୬୨୨ ।
ଅସଶରର ପୁତ୍ର ବସୁ ନାମ ହୋଇଲେ ।
ବିଶ୍ୱାମିତ୍ର ତାରେ ପୀରତ ଉପୁଜାଇଲେ । ୬୨୩ ।
ବଡ଼ ପ୍ରତାପୀ ସେ ଅଟଇ ମହୀପତି ।
କଉଶିକ ନେଇ ଥୋଇଲା ତାହାଂ ଯୁବତୀ । ୬୨୪ ।
ପୁତ୍ର ସହିତେଣ ସମର୍ପଣ କରି ।
ତପ କରିଗଲା ମନେ କୋପଧରି । ୬୨୫ ।
ବସୁ ରାଜା ତାହା ସମ୍ଭାଳଣ କଲା ।
କାଳେ ନଟପଡି ସ୍ୱର୍ଗକଇ ଗଲା । ୬୨୬ ।
ବିଷ୍ଣୁ ପ୍ରାରୁଣ ବୋଲି ତନୟେ ତାହାର ।
ଅଯୁଧ୍ୟା ରାଜ୍ୟେ ସେ ହୋଇଲା ନୃପବର । ୬୨୭ ।
ସତ୍ୟବ୍ରତ ବୋଲି ସେହାର କୁମର ।
ରୂପ ଗୁଣେ ସୁନ୍ଦର ନାହିଂ ପଟାନ୍ତର । ୬୨୮ ।
ପିତା ସ୍ନେହଭରେ ଯୁଗ ରାଜା କଲା ।
ସକଳ ସମ୍ପଦ ଅର୍ଥ ସମର୍ପିଲା । ୬୨୯ ।
ଦିନେକ ସତ୍ୟବ୍ରତ ନଗ୍ର ଭୂମି ଯାଇ ।
ଦେଖିଲା ବ୍ରାହ୍ମଣ ଝିଅ ଅବଶ୍ୱାଇ । ୬୩୦ ।
ରୂପ ଗୁଣେ ସୁନ୍ଦର ହୋଇଲାଣି ଯୁବା ।
ସାଦିଶେ ବର ନ ପାଇଂ ନୋହିଅଛି ବିଭା । ୬୩୧ ।
ଦୁଆରେ ଉଭା ହୋଇ ଅଛଇ ସୁନ୍ଦେଶୀ ।
ସତ୍ୟବ୍ରତ ଦେଖି ମଦନ ଶରେ ଘାରି । ୬୩୨ ।
ସେହି ସେ କନ୍ୟା ଯେ କୁମରକୁ ଚାହିଂ ।
ଅଥିର ଶରୀର ମଦନେ ବଶ୍ୟ ହୋଇ । ୬୩୩ ।
ଦୁଇ ମନ ଯହିଂ ହୋଇଲା ଏକମତ ।
କନ୍ୟାକୁ ଇ ଘେନି ଅଇଲା ରାଜସୁତ । ୬୩୪ ।
ନିଜ ପୁରେ ନେଇ ରମଣୀ ଭୋଗ କଲା ।
ବ୍ରାହ୍ମଣ ଜାଣି ଦିଗଦ୍ୱାର କଇ ଗଲା । ୬୩୫ ।
ଗୁହାରି କରନ୍ତେଣ ଜାଣିଲା ନୃପବର ।
ସତ୍ୟବ୍ରତ ରାଜାଂ ବୋଲଇ ଉତ୍ତର । ୬୩୬ ।
କରେ ପାପିଷ୍ଠ ତୁ କଲୁ ମନ୍ଦ କୃତ୍ୟ ।
ରମଣୀ କେହ୍ନେ କଲୁ ବ୍ରାହ୍ମଣ ଦୁହିତ । ୬୩୭ ।

Digitized by srujanika@gmail.com

ରାଜା ବୋଲଣ ସେ ସାରଲ ତୋତେ ଟୀକା ।
ମୋହୋର ଆଜ୍ଞଂ ଆଜ୍ଞଂ କରୁଅଛୁ ତକା । ୭୩୮ ।
ଯାଅ ତୁ ଚଣ୍ଡାଳରେ ନ ଥାଅ ମୋର ପୁର ।
ତାହା ଶୁଣି କୁମର ହୋଇଲା ବାହାର । ୭୩୯ ।
ନଗ୍ର ବାହାରେ ରହିଲ ଆଶ୍ରମେକ କରି ।
ବଶିଷ୍ଠ ମୁନିଙ୍କ କୋପମନ ଧରି । ୭୪୦ ।
ବଚ୍ଛଲ ପିତା ଅବା ମୋତେ କୋପ କଲା ।
ଯେତ୍ର ସେ ମନ୍ତ୍ରୀ କବା ଉଆରଣ ନ କଲା । ୭୪୧ ।
ମୁହିଂ ବନବାସୀ ହୋଇଲଇଂ ତହିଂ ।
ଯେହ୍ୱାର ବଇରୁ ନ୍ୟ ଅଛଇ ମନେ ସହିଂ । ୭୪୨ ।
ସେତେକ ବିଚାରି ସେ ରାଜାର କୁମର ।
ଦୁଃଖେଣ ରହିଲ ସେ ନଗ୍ରର ବାହାର । ୭୪୩ ।
ବିଶ୍ୱାମିତ୍ରଙ୍କର କୁଟୁମ୍ବ ସହିଂ ଥିଲ ।
ହେଲେଣ ନୃପତି ସେ ତାହା ପାଶୋରିଲେ । ୭୪୪ ।
ବଶିଷ୍ଠେ ନ କହିଲେ ଅହଙ୍କା ମନେ ଧରି ।
ତେଣୁ ସେ ଦୁଃଖ ପାଇଲେ ବିଶ୍ୱାମିତ୍ର ନାରୀ । ୭୪୫ ।
ଦୁର୍ଭିକ୍ଷ କାଳ ସହିଂ ପଡ଼ିଲାକ ଆସି ।
ଅଷ୍ଟଗୋଟି ପୁତ୍ର ଘେନି ଝୁଲଇ ବାଳୀ ବସି ।୭୪୬।
କି ବୁଦ୍ଧି କରିବି ମୁଂ ଯିବି କେଉଂ କତି ।
ଦୁର୍ଭିକ୍ଷ ଦେଖି ପଳାଇଲାକ ମୋର ପତି । ୭୪୭ ।
ରାଜାର ଗୋଚରେ ସେ ସମର୍ପିଣ ମୋତେ ଗଲା ।
ରାଜ୍ୟ ଭୋଗ ପାଇ ସେ ମୋତେ ପାଶୋରିଲା । ୭୪୮ ।
କେ ମୋତେ ପୋଷିବ କାନ୍ତାରର କାଳେ ।
ଦଶଦଶକୁ ଗୃହିଂ ସେ ହୋଇଲା ଅନ୍ତରାଳେ । ୭୪୯ ।
ବୋଲଇ ଉପବାସେ ପାରିବ ମୁହିଂ ଥାଇଂ ।
ପୋଷ୍ୟେ ମୋର ସାନ ସେ ଲୋଡ଼ନ୍ତି ଅନ୍ନଖାଇ । ୭୫୦ ।
ବାବୁ ବଧାତାରେ ରାଜାର ମୁହିଂ ରାଣୀ ।
ସେତେ କଷ୍ଟ ବିହିରେ ଦେଲାକ ମୋତେ ପୁଣି । ୭୫୧ ।
ଅନ୍ନ ବସ୍ତ୍ର ବିହୁନେ ମୁଂ ବଂଚିବି କେମନ୍ତେ ।
ହେ ଧର୍ମଦେବତା ପ୍ରତିକାର କର ମୋତେ । ୭୫୨ ।
ସେତେ ବିଚାରିଣ ରୋବୋଇ ମହାସତୀ ।
ସେଥୁଅନ୍ତରରେ ପାହିଲାକ ରାତି । ୭୫୩ ।

Digitized by srujanika@gmail.com

ସ୍ୱବଳକ ମୋର ଆନେ ପାର ନାହିଂ ।
ପୁତ୍ରେକ ହାଟରେ ବିକବଇଂ ନେଇ । ୬୫୪ ।
ସ୍ୱେ କଥା ଦୃଢ଼କରି କଲାକ ସନମତ ।
ପୁତ୍ରଙ୍କୁ ବସାଇଂ ବୋଲଇ ତହିଂ ମାତ । ୬୫୫ ।
ଶୁଣ ମୋର ବାବୁରେ ଦୁଖିର ତନଯ୍ୱେ ।
ମହାରଗ ଦେଖିଣ ପିତା ଗ୍ଳାହିଣ ପଳାଯ୍ୱେ । ୬୫୬ ।
କେବଣ ପ୍ରକାରେ ବାବୁରେ ପୋଷିବେ ତୁମ୍ଭନ୍ତ ।
ଅହଲ୍ୟା କଲେ ବାବୁ ବଶିଷ୍ଠ ତପୋବନ୍ତ । ୬୫୭ ।
ରାଜାଙ୍କୁ ପିତା ତୁମ୍ଭର ସମର୍ପିଣ ଗଲା ।
କର୍ମର ବିପାକେ ନୃପତି ମାଂଶୋରଲା । ୬୫୮ ।
ସ୍ୱେତେ ଧନ ଭିକ୍ଷା ମାଗିଣ ବୁଲଲ ।
ଯାଇ ପେଜ ଭଖି ଦୁଃଖେଣ ଧନ ନେଲ । ୬୫୯ ।
ଭିକ୍ଷାହିଂ ନ ପାଇଲ କାଲ ମାଗି ଯାଇ ।
ଅଷ୍ଟପ୍ରାଣୀ ବାବୁରେ ଜୀଇଂମ କେମନ୍ତ ହୋଇ । ୬୬୦ ।
ଗାଲ୍ୟଭଙ୍କୁ ଟଙ୍କ ଆଣିମି କରେ ଧନ ।
ନୋହିଲେ ତୁମ୍ଭନ୍ତରେ ନ ମିଳଇ ଅନ୍ନ । ୬୬୧ ।
ସେହି ବୃନ୍ଧକ ବାବୁରେ ପର ଘରେ ଥାଇଂ ।
ତୁମ୍ଭେ ଜୀଇଂବରେ ଆନେ ପାର ନାହିଂ । ୬୬୨ ।
ମାତାର ବୋଲ ଶୁଣି ବୋଲନ୍ତି କୁମର ।
ଗାଲ୍ୟଭ ବୋଲଇ ସ୍ୱେ ଅଟଇ ବେଭାର । ୬୬୩ ।
ମୋତେ ବିକଲେ ଯେବେ ତୁମ୍ଭେ ସୁସ୍ତେ ଥିବ ।
ସ୍ୱେହା ସେ ଜର୍ଭା ଯେବେ କରନ୍ତୁ ଦଇବ । ୬୬୪ ।
ସ୍ୱେତେ ବୋଲି ବଳା ହୋଇଲା ଆଗୁସାର ।
ପଛେଣ ଜନନୀ ଗୋଡ଼ାଇ ତାହାର । ୬୬୫ ।
ନୟନୁ ଅଶ୍ରୁଜଳ ଗଳଇ ଅବଛନ୍ନେ ।
ପିନ୍ଧିଲା ବସନେ ତାହା ପୋଛଇ ଘନେ ଘନେ । ୬୬୬ ।
ଆବର ସାତ ପୁତ୍ରେ ଅଛନ୍ତି ଗୋଡ଼ାଇଂ ।
ଅଯୁଧ୍ୟାର ହାଟେ ମିଳଗଲେ ଯାଇ । ୬୬୭ ।
ଗାଲ୍ୟଭଙ୍କୁ ଆଗ କରଣ ଅଛନ୍ତି ବସି ।
ବିକବ ବୋଲି ତାହାଙ୍କୁ ଯତନ ହିଂ ଭାଷି । ୬୬୮ ।
ହାଟ ବେଳ ହିଂ ଭାଜଲା କେହି ଘେନନ୍ତା ନୋହିଲା ।
ନଗ୍ରଯାକ ବୁଲଇ ବାହୁଡ଼ି ଅଇଲା । ୬୬୯ ।

Digitized by srujanika@gmail.com

ନଗ୍ର ପ୍ରାନ୍ତେ ଯାଇ ବସି କାନ୍ଦୁଣ୍ଣ ଅଛନ୍ତ ।
ନଗ୍ର ବାହାରେ ଯାଇ ସତ୍ୟବନ୍ତଙ୍କୁ ଦେଖନ୍ତ । ୬୭୦ ।
କୁମର ପଚ୍ଚରଇ କମ୍ପାଇ ଶୋକ କର ।
କନ୍ୟା ବୋଇଲା ବାବୁ ବହୁତ କଷ୍ଟ ଆମ୍ଭର । ୬୭୧ ।
ବଶ୍ୱାମିତ୍ର ରାଜାର ମୁଂ ଅଟଇ ଘରଣୀ ।
ଏହୁ ଅଷ୍ଟପୁତ୍ର ମୋର ଅଟନ୍ତି କୁମରମଣି । ୬୭୨ ।
ମୋହୋର ଭ୍ରୁଆର ଅଯୁଧ୍ୟା ରାଜାର ପୀରତ ।
ତେଣୁ ସେ ଆମ୍ଭଙ୍କୁ ଏଥେ ଛାଡ଼ିଗଲେ ଯନ୍ତ । ୬୭୩ ।
କେତେ ଦିନ ରାଜା ସମ୍ଭାଳଣ ଥିଲା ।
ସମସ୍ତେକ ହେଲ ହୋଇଂ ନୃପତି ପାଶୋରିଲା । ୬୭୪ ।
ବଶିଷ୍ଠ ଏହୁ ରାଜ୍ୟେ ଅଟଇ ଯନ୍ତୁଂ ମନ୍ତ୍ରୀ ।
ତେଣୁ ସେ ଏଥିଁ ଦୁଂଖି ହୋଇଅଛୁ ଯନ୍ତି । ୬୭୫ ।
ରାଜା ପାଶୋରିଲା ମନ୍ତ୍ରୀ ହିଂ ନ କହିଲା ।
ଅହନ୍ତା ଚଣ୍ଡି ଯନ୍ତୁଂ ହୃଦରେ ବହିଲା । ୬୭୬ ।
ଦୁର୍ଭିକ୍ଷ କାଳ ଯନ୍ତୁଂ ହୋଇଲାକ ଆସି ।
ତେଣେ ସେ ପୁତ୍ରମାନ ନ ପାରିଲି ପୋଷି । ୬୭୭ ।
ଗାଲ୍ୟଭ ନାମେଣ ଯେ ମୋହୋର ସାନପୁତ୍ର ।
ହାଟକୁ ନେଇଥିଲି ଏହାକୁ ବକାଉ । ୬୭୮ ।
କେହୁ କିଣନ୍ତା ନୋହିଲେ ମୋର ବଚ୍ଛ ।
ପୁଅନ୍ତ ଘେନି ଜୋଡ଼େ ବାହୁଡ଼ି ଯାଉଅଛୁ । ୬୭୯ ।
କାଲି ଉପବାସେ ନ ପାଇଲି ଭିଖ ।
ତେଣୁ ସେ ଶୁଖିଅଛୁ ପୁତ୍ରଙ୍କର ମୁଖ । ୬୮୦ ।
ଅନାସ୍ଥ ହୋଇଲୁ ବାବୁ ଯିବୁ କେବଣ କତି ।
ଏତେକର ହତ୍ୟା ଘେନିଲା ବଶିଷ୍ଠ ମହାଯତି । ୬୮୧ ।
ଏତେ ବୋଲି ରାଣୀ ରୋଦଇ ଉଚ୍ଚ ସ୍ୱରେ ।
ଶୁଣିଣ ଆଶ୍ୱାସନା କଲାକ କୁମରେ । ୬୮୨ ।
ନ ରୋଦ ସୁନ୍ଦରୀ ଲୋ ପୁତ୍ରକୁ ଧନ ଦେବା ।
ବିଶ୍ୱାମିତ୍ରଙ୍କୁ ଯେ ଥାଉ ମୋର ସେବା । ୬୮୩ ।
ଏତେ ବୋଲି ଧନ ଦେଲାକ କୁମର ।
ଶତେକ ଧେନୁ ସମାନ୍ୟେ ଏହୁ କୁମର । ୬୮୪ ।
ଆପଣାର ପାଶରେ ରୁହାଇଲି ନେଇ ।
ନଢ ନଢ ଅନ୍ନ ବ୍ୟଞ୍ଜନ ପଡ଼ି ଦେଇ । ୬୮୫ ।

Digitized by srujanika@gmail.com

ଗାଲ୍ୟଭ ତାହା ସଙ୍ଗେ ବନ୍ଧୁର ହୋଇଥାଇଂ ।
ସତ ଅନୁକର୍ମେ ବିଶ୍ୱାସ ଅଟଇଂ । ୬୮୬ ।
ଯେତେକ ଧନ ସେ ପୁତ୍ରକୁ ବିକ ନେଲେ ।
କେତେହେଂକ ଦିନେ ସେ ଧନହିଂ ସାରିଲେ । ୬୮୭ ।
କାଳ ମହରଗ ଦିନେ ଦିନେ ପଡ଼ି ।
ଦୁର୍ଭିକ୍ଷ କାନ୍ତାରେ ଯେ ଅନେକ ଲୋକ ମରି । ୬୮୮ ।
ସତ୍ୟବ୍ରତ ଆଶ୍ରମେ ରହିଲେ ଆଠ ପ୍ରାଣୀ ।
କୁମାର ଆହାର ଦିଅଇ ଯେ ଯେଣୁ ତେଣୁ ଆଣି । ୬୮୯ ।
ମୃଗ ଶୂକରେ ମାଂସ ଦେଇଂଣ ସେ ପୋଷି ।
ଯେମନ୍ତ ଦିନେ କଷ୍ଟୋର ହାସ୍ୟେ ଆସି । ୬୯୦ ।
ଦିନେକ ସେ ସତ୍ୟବ୍ରତ ନ ପାଇଲା କିଛୁ ।
ଦେଖିଲା ବଶିଷ୍ଠଙ୍କର ସୁରଭି ଚରୁଅଛୁ । ୬୯୧ ।
କାଣ୍ଡକେ ବନ୍ଧ ମାରିଆଣି କେଲାଇଲା ।
ଶୂକର ମାଂସ ବୋଲି ତାହା ଆଣିଦେଲା । ୬୯୨ ।
ବିଶ୍ୱାମିତ୍ର ଘରଣୀ ତା ଘେନିଲା ତୋଷ ଚିତ୍ତେ ।
ରନ୍ଧନ କଲା ତାହା ଆମ୍ଭର ନିମନ୍ତେ । ୬୯୩ ।
ପୁଅନ୍ତ ଦେଇଣ ସେ ଭୁଞ୍ଜିଲା ଆପଣ ।
ହେଥୁଅନନ୍ତରେ ହୋ ଶ୍ରୀରାମଚନ୍ଦ୍ର ଶୁଣ । ୬୯୪ ।
ମେରୁ ଉହାଡ଼େ ଯହୁଂ ଆଦିତ୍ୟ ହୋଇଲା ।
ବଶିଷ୍ଠଙ୍କ ଗାଈ ଘରକୁ ନଗଲା । ୬୯୫ ।
ଯୋଗବଳେ ତାହା ଜାଣିଲେ ମହାଋଷି ।
ସତ୍ୟବ୍ରତ ତହିଂକ କୋପ ମନେ ଆସି । ୬୯୬ ।
ବୋଇଲେ ଚଣ୍ଡାଳରେ ମନ୍ଦକୃତ୍ୟ କଲୁ ।
କାମଧେନୁକୁ ମୋର ପ୍ରଣେଣ ମାଇଲୁ । ୬୯୭ ।
ଲଭିଲୁ ଗୋହତ୍ୟାରେ ପାର ତୋତେ ନାହିଂ ।
ଆବର ସଦଗତି ପାଇବୁ ତୁ କାହିଂ । ୬୯୮ ।
ପିତା ବଚନ ତୁ ଭଙ୍ଗ କଲୁରେ ଦୁଷ୍ଟ ।
ସକଳ ପାପରେ ସେହୁ ଅଟଇ ଗରିଷ୍ଠ । ୬୯୯ ।
ଆବର ବ୍ରାହ୍ମଣରେ ହେଲୁ ଦୋହିତା ।
ଯେହାକର ପ୍ରାୟଶ୍ଚିତରେ ନ ବିହିଲା ବିଧାତା ୭୦୦ ।
ଏହି ସେ ଦୁଇ ପାପ ଅଟଇ ଦୁସ୍ତର ।
ଏବେ ପୁଣି ଗୋହତ୍ୟା କଲୁରେ ପାମର । ୭୦୧ ।

Digitized by srujanika@gmail.com

ସେ ଛନ୍ନ ପାପକୁ ବିଗ୍ଭର ନ କଲୁ ।
ଅଧର୍ମ କଥାକୁ ରେ ବହୁତ ମନ ଦେଲୁ । ୭୦୨ ।
ତ୍ରିଶଙ୍କୁର ନାମ ଆଜହୁଂ ତୋହୋର ହେଉ ।
ଯାବତ କାଳକଇ ଅପକୀରତ୍ତି ରହୁଥାଉ । ୭୦୩ ।
ଏତେ ବୋଲି ବାହୁଡ଼ି ଗଲେ ମହାଋଷି ।
ସତ୍ୟବ୍ରତ ମନେ ଅନେକ ଭ୍ରାଳଇ ବସି । ୭୦୪ ।
ଏ ଦେହ ଆଉ ମୁଂ ରଖିବି କେତେ କାଳ ।
ମନେ ବିଗ୍ଭରଇ ହୋଇଲି ଚଣ୍ଡାଳ । ୭୦୫ ।
ଏ ସେ ବିଗ୍ଭର ସେ ଦେଶାନ୍ତର କଲା ।
ସିନ୍ଧୁ କୂଳେ ବିଶ୍ୱାମିତ୍ରକୁ ଦେଖିଲା । ୭୦୬ ।
ତପେ କଢ଼ଶିକ ହୋଇଲେନ୍ନ ଋଷି ।
ସତ୍ୟବ୍ରତକୁ ଗ୍ଭହୁଂ ପଗ୍ଭରଇ ଋଷି । ୭୦୭ ।
ବାବୁ କସତ ରୂପତ ଦେଖିଲି ତୋହୋର ।
ଆତ୍ମା ବିକଳିତ ହୋଇଲା ମୋହୋର । ୭୦୮ ।
କୁମର ବୋଇଲା ଶାପେ ମୁହିଂ ବଡ଼ ଦୁଃଖି ।
ତୋହୋର ପ୍ରସାଦେ ମୁଂ ହୋଇଲି କରମାଖି । ୭୦୯ ।
ତୁ ଯେ ତୋହୋର କୁଟୁମ୍ବ ଥୋଇଲୁ ଅଯୁଧ୍ୟାଏ ।
ଦୁର୍ଭିକ୍ଷ କାଳେ ଅନେକ ଦୁଃଖ ପାଏ । ୭୧୦ ।
ରଜା ପାଶୋରିଲା ଅଇଶ୍ୱର୍ଯ୍ୟ ପଣେ ।
ବଶିଷ୍ଠ ନ କହିଲେ ଅହଙ୍କା କାରଣେ । ୭୧୧ ।
ସୁତ୍ରନ୍ତ ଘେନିଣ ସେ ତୋହୋର ଘରଣୀ ।
ବହୁତ ଦୁଃଖ ସେ ଯେ ପାଇଲା ତରୁଣୀ । ୭୧୨ ।
ମୁହିଂ ତାହାର କଷ୍ଟ ଦେଖିଲିଇଂ ଯହୁଂ ।
ମୋହୋର ସନ୍ନିଧେ ରୁହାଇଲି ତହୁଂ । ୭୧୩ ।
ମୃଗ ସମ୍ବେମ୍ବର ଆଣଇ କାଟ ମାରି ।
ପୁତ୍ର ଭରଜାଙ୍କୁ ତୋର ଦଅଇଂ ତପଗ୍ଭରି । ୭୧୪ ।
କେବଣ ହୁଂ ଦିନେ ନ ପାଇଲି କିଛୁ ।
ଦେଖିଲି ବଶିଷ୍ଠଙ୍କ ଗାଈ ଚରୁଅଛୁ । ୭୧୫ ।
ତାହା ମୁହିଂ ଆଣି ବନ୍ଧ କେଳାଇଲି ।
ତୋହୋର କୁଟୁମ୍ବଙ୍କୁ ତାହା ନେଇ ଦେଲି । ୭୧୬ ।
ଶୂକର ମାଂସ ବୋଲି ତାହା ଭୁଞ୍ଜାଇଲି ।
କୁକାଳ ଦେଖିଣ ଗୁପତ ମୁହିଂ କଲି । ୭୧୭ ।

Digitized by srujanika@gmail.com

ବଶିଷ୍ଠ ମୁନି ଜାଣି କୋପେ ଶାପ୍ୟ ଦେଲେ ।
ଯାଅରେ ଚଣ୍ଡାଳ ତୁ ହୁଅରେ ବୋଇଲେ । ୭୧୮ ।
ବିଶ୍ୱାମିତ୍ର ବୋଇଲେ ଯେ ତୋତେ ବଶିଷ୍ଠେ କଲେ କୋପ ।
ଶୁଣିଣ କହ ବୋଇଲା ତୋହୋର ବାପ । ୭୧୯ ।
ସତ୍ୟବ୍ରତ ବୋଇଲା ଶୁଣିମା ମହାଋଷି ।
ପିତାଙ୍କର ମୁହିଂ ଯେ ଅଟଇ ବଡ଼ ଦୋଷୀ । ୭୨୦ ।
ବ୍ରାହ୍ମଣ ଦୋହିତାସ୍ୱେ ଥିଲା ଅବିଭାଇ ।
ତାହାକଇ ହରିଲି ମୁଂ କାମେଣ ବଶ ହୋଇ । ୭୨୧ ।
ତାହା ଶୁଣି ପିଅର ମୋତେ କୋପ କଲା ।
ନଗରୁ ମୋତେ ସେ ବାହାର କରିଦେଲା । ୭୨୨ ।
ବଶିଷ୍ଠ ନ କହିଲା ପିତାର ଅଗ୍ରତେ ।
ତେଣୁ ସେ ଉପେକ୍ଷା କଲା ତାତ ମୋତେ । ୭୨୩ ।
ନଗ୍ର ବାହାରେ ମୁଂ କୁଡ଼ିସ୍ଥାସ୍ୱେ କରି ।
ଜୀବ ମାରଣ ମୁଂ ସୁତ୍ରେ ବଞ୍ଚଇ ତପଗୃହୀ । ୭୨୪ ।
ସେହିସନ ସମସ୍ୱେ ଦେଖିଲି ତୋର ନାରୀ ।
ହାଟକୁ ଯାଇଥିଲା ସେ ପୁତ୍ରକୁ ବିକ୍ରେକରି । ୭୨୫ ।
ବିକ୍ରେ ନ ଗଲା ସେ ବାହୁଡ଼ି ଅଇଲା ।
ଅଷ୍ଟ ପୁତ୍ର ଘେନି ସେ ଅନେକ ଶୋକକଲା । ୭୨୬ ।
ମୁହିଂ ପଚ୍ଚରିଲି କମ୍ପା ବାଳୀ କାନ୍ଦ ।
କସ୍ୱେ ତୋହୋର ନାଶିଲା କୁଳ ଗୋତ୍ର ବନ୍ଧୁ । ୭୨୭ ।
ରାଣୀ ବୋଇଲା ମୁଂ ବିଶ୍ୱାମିତ୍ର ଘରଣୀ ।
ଅନ୍ନ ଶାନ୍ତି ମୋତେ ବିଧାତା ଦେଲା ଆଣି । ୭୨୮ ।
ପୁତ୍ର ବିକତ ମୁଂ ନ ପାଇଲି ଧନ ।
ତେଣୁ ସେ ବିକଳିତ ଅଟଇ ମୋର ମନ । ୭୨୯ ।
ତାହା ଶୁଣି ମୁହିଂ ପାଇଲି ବଡ଼ ଚିନ୍ତା ।
ସମ୍ଭାଳିଲି ନେଇ ତୋହୋର ପୁତ୍ର ବନିତା । ୭୩୦ ।
ତାହା ଜାଣି ମୋତେ ବଶିଷ୍ଠ କୋପ କଲା ।
ତ୍ରିଶଙ୍କୁର ଚଣ୍ଡାଳ ବୋଲି ମୋହୋର ନାମଦେଲା ।୭୩୧।
ତେଣୁ ମୁହିଂ ଲାଜେ ସେ ବାହୁଡ଼ି ଅଇଲି ।
ଦେଶାନ୍ତର କରିବାକୁ ମୁଂ ଅଇଲେଇଂ ବୁଲି । ୭୩୨ ।
ଯୋଗେ ତୋହୋର ମୋହୋର ହୋଇଲାକ ଭେଟ ।
ପାରୁ ଯେବେ ମହାତମା ଫେଡ଼ ମୋହୋର କଷ୍ଟ ।୭୩୩।

Digitized by srujanika@gmail.com

ଶୁଣିଣ ବୋଲଇ ବିଶ୍ୱାମିତ୍ର ମହାଋଷି ।
ମୋହୋର ମହିମା ତୁ ଦେଖ ସୂର୍ଯ୍ୟବଂଶୀ । ୭୩୪ ।
ଯାବତ କାଳକଇ କଥା ବୁଝାଇବି ।
ଯାଗ କରି ତୋତେ ସ୍ୱର୍ଗେ ବସାଇବି । ୭୩୫ ।
ଏମନ୍ତେ ବୋଲି ଦେବ ଯାଗ ଆରମ୍ଭିଲା ।
ସକଳ ତପସ୍ୱୀଙ୍କି ନିମନ୍ତ୍ରଣ କଲା । ୭୩୬ ।
ବିଶ୍ୱାମିତ୍ରଙ୍କର ଭୟେ ଆଇଲେ ସର୍ବଋଷି ।
ତାହାଙ୍କ ବାହୁଡ଼ାଇ ବଶିଷ୍ଠେ ନେଲେ ଆସି । ୭୩୭ ।
ବୋଇଲେ ଚଣ୍ଡାଳ ତ କରିବ ସେ ଯାଗ ।
ତୁମ୍ଭେ କେମନ୍ତେ ତାହାଙ୍କୁ ଦେବ ହବି ଭାଗ । ୭୩୮ ।
ଏମନ୍ତ ଶୁଣି ବାହୁଡ଼ିଗଲେ ସର୍ବ ଋଷି ।
ଶିଷ୍ୟଗଣେ ବିଶ୍ୱାମିତ୍ରଙ୍କୁ କହିଲେ ଯେ ଆସି । ୭୩୯ ।
ଶୁଣିଣ କୋପକଲେ ଗାଧିର ତନୟେ ।
ଚଣ୍ଡାଳମାନନ୍ତ ବ୍ରାହ୍ମଣଦୀକ୍ଷା ଦିଏ । ୭୪୦ ।
ଆଗ୍ୟାଂ ପରମାଣେ ଶିଖିଲେ ଚୃତୁର୍ବେଦ ।
ଜାଣିଲେ ମନ୍ତ୍ରପୂଜା ଅଙ୍ଗନ୍ୟାସ ମୁଦ୍ରା ଭେଦ । ୭୪୧ ।
ପଢ଼ି ତ୍ରିଶଙ୍କୁରକୁ ବ୍ରହ୍ମ ଯାଗ କଲା ।
ବିଶ୍ୱାମିତ୍ର ମୁନି ଆଚାର୍ଯ୍ୟ ହୋଇଲା । ୭୪୨ ।
ଯବ ତିଳ କୁଶ ସମିଧ ଅପାର ।
ଯାଗ ଆରମ୍ଭିଲେ ଦକ୍ଷିଣ ସିନ୍ଧୁ ତୀର । ୭୪୩ ।
ଅଗ୍ନିରେ ଆହୁତି ସମର୍ପିଲେ ନେଇ ।
ଦେବତାଗଣମାନେ ଖାଲନ୍ତି ସ୍ୱର୍ଗେ ଥାଇଂ । ୭୪୪ ।
ସତ୍ୟାନନ୍ଦ କହଇ ଶୁଣ ରଘୁନାଥ ।
ଚଣ୍ଡାଳ ନୁହଇ ଯାଗକୁ ଭାଜନ । ୭୪୫ ।
ଏମନ୍ତେ ବିଭୁଷଣ ନଇଲେ ସର୍ବସୁର ।
ବିଶ୍ୱାମିତ୍ର ମନେ କୋପ ଗରୁତର । ୭୪୬ ।
ବୋଇଲେ ଆନ ଦେବତା ମୁହିଂ ଭିଆଇବି ।
ଏମନ୍ତେ ବୋଲି ଅଗ୍ନିରେ ସମର୍ପିଲେ ହବି । ୭୪୭ ।
ସ୍ୱର୍ଗେ ଦେବତାଏ ହୋଇଲେ ବିକଳ ।
କଷ୍ଟଏ ବିଶ୍ୱାମିତ୍ର କରିବ ଆନ ଦିଗପାଳ । ୭୪୮ ।
ଏମନ୍ତେ ବୋଲି ବ୍ରହ୍ମା ସହିତେଣ ଦେବଗଣ ।
ଅନ୍ତରୀକ୍ଷେ ଥାଇଣ କହନ୍ତି ବଚନ । ୭୪୯ ।

Digitized by srujanika@gmail.com

ନ ଶୁଣିଲେ ମୁନି କୋପେ ପରଚଣ୍ଡ ।
ବୋଇଲା ତ୍ରିଶଙ୍କୁର ଯାଅସି ସ୍ୱର୍ଗଖଣ୍ଡ । ୭୫୦ ।
ମୁନିର ଆଜ୍ଞାଂରେ ଗଲାକ ନୃପତି ।
ଦେବତା ଅନ୍ତରୀକ୍ଷେ ସେ ବୋଲନ୍ତି ଊର୍ଦ୍ଧଗତି । ୭୫୧ ।
ତ୍ରିଶଙ୍କୁରକୁ ସେ ବାହୁଡ଼ ବୋଇଲେ ।
ଭସ୍ମ ହୋଇବୁ ତୁ ସ୍ୱର୍ଗକୁ ଅଇଲେ । ୭୫୨ ।
ଦେବଙ୍କର ବୋଲେ ସେ ବାହୁଡ଼ିଲା ନୃପତି ।
ରକ୍ଷାକର ବିଶ୍ୱାମିତ୍ର ହୋ ପଡ଼ିଲା ଦ୍ରୁତଗତି । ୭୫୩ ।
ଅତି ବିକଳ ହୋଇଂ ଡାକଇ ସତ୍ୟବନ୍ତ ।
କୋପେଣ ପ୍ରଜଳିତ ଗାଧିରାଜା ସୁତ । ୭୫୪।
ଇନ୍ଦ୍ରାଦି ଦେବତାଙ୍କୁ କରିବି ମୁଂ ଆନ ।
ଏଣୁତେ ବିସ୍ମିତ ମୁନି କରଇ ପୁଣି ହୋମ । ୭୫୫ ।
ବ୍ରହ୍ମା ବୋଇଲେ ତୁ ଶୁଣ ବିଶ୍ୱାମିତ୍ର ।
କର୍ମା ଅବସ୍ଥର ତୁ କରୁଛୁ ଜାଗତ । ୭୫୬ ।
ଚଣ୍ଡାଳ ସ୍ୱର୍ଗେ ଆସି ବସିବ କେମନ୍ତେ ।
ଏହୁ କଥା ସିଦ୍ଧ କି ହୋଇବ କଦାଚିତେ । ୭୫୭ ।
ଦେବଙ୍କର ସଙ୍ଗେ ବସିବ କେମନ୍ତେ ଯାଇ ।
ଏହା ତୁ ବିସ୍ମର ହୋ ନ କର କସ ପାଇଂ । ୭୫୮ ।
ନୁହସି ବଇରାଗ ଶାନ୍ତ ମନ ଧର ।
ମହତ ହୋଇ ତୁ ଅବେଭର ନ କର । ୭୫୯ ।
ବ୍ରହ୍ମାର ବଚନେ ବୋଲଇ ଗାଧିସୁତ ।
ତୁ ସେ ପିତାମହ ଅଟୁ ଜଗତର ତାତ । ୭୬୦ ।
ତ୍ରିଶଙ୍କୁର ଯେ ମୋହୋର ହତେ ଥିଲା ।
ପୁତ୍ର ସରଜା ମୋର ସେ ମହରଗେ ପୋଷିଲା । ୭୬୧ ।
ଏଥକୁ କାରଣ ମୁଂ କରିବି ଅବଶ୍ୟ ।
ଭୁଞ୍ଜାଇବି ଅମୃତ ଦେବ ସ୍ୱର୍ଗ ବାସ । ୭୬୨ ।
ଧାତା ବୋଇଲେ ଏ ନୁହଇ ଉଚିତ ।
ବଶିଷ୍ଠ କୋପେ ଚଣ୍ଡାଳ ସତ୍ୟବ୍ରତ । ୭୬୩ ।
ବିଶ୍ୱାମିତ୍ର ବୋଇଲେ ତୁ ଶୁଣ କୁଶଧାରୀ ।
ତ୍ରିଶଙ୍କୁର ମୋତେ ସେ ବହୁତ ଉପକାରୀ । ୭୬୪ ।
ତାହାଙ୍କୁ ସ୍ୱର୍ଗେ ମୁଂ ଅବଶ୍ୟ ବସାଇବି ।
ଯାବତ କାଳକଇ କଥା ବୁଝାଇବି । ୭୬୫ ।

Digitized by srujanika@gmail.com

ଶୁଣିଣ ବିଧାତାର ନ ସ୍ଫୁରଇ କିଛୁ ।
ବିଶ୍ୱାମିତ୍ର ମହା କଷ୍ଟାଳ କରିଅଛୁ । ୭୬୬ ।
ତ୍ରିଶଙ୍କୁର ଅଛୁ ଅଧା ସ୍ୱର୍ଗେ ରହି ।
ବ୍ରହ୍ମା ବୋଲଇ ବିଶ୍ୱାମିତ୍ରଙ୍କ ମୁଖ ଚାହିଁ । ୭୬୭ ।
ଅନରୂପେ ସ୍ଥାନ ଏହାକଇ ଦେବା ।
ମୋହୋର ବଚନେ ତୁ ସନ୍ତୋଷ ହୋଇବା । ୭୬୮ ।
ଶୁଣି ବିଶ୍ୱାମିତ୍ର ସନ୍ତୋଷ ମନ ହୋଇ ।
ଦକ୍ଷିଣ ସ୍ୱର୍ଗେ ତାଙ୍କୁ ବସାଇଲେ ନେଇ । ୭୬୯ ।
ସ୍ୱର୍ଗେ ସାଧୁ ସାଧୁ ଉଠିଲାକ ରବ ।
ଧନ୍ୟ ବିଶ୍ୱାମିତ୍ର ଧନ୍ୟ ତୋହୋର ଭାବ । ୭୭୦ ।
ଗୋହତ୍ୟା କରଣ ବ୍ରାହ୍ମଣ ସ୍ତ୍ରୀ ହର ।
ଆବର ପିଅର ବଚନ ଭ୍ରଷ୍ଟ କର । ୭୭୧ ।
ଏ ସେ ତିନ ପାପ ସେବଣ ଜନ କଲା ।
ବଶିଷ୍ଠ ଯାହାକଇ ଚଣ୍ଡାଳ ବୋଇଲା । ୭୭୨ ।
ଦେବେ ନ ଚାହିଁଲେ ମହାପାପୀ ବୋଲି ।
ତାହାକୁ ସ୍ୱର୍ଗେ ବସାଇଲୁ ପେଲି । ୭୭୩ ।
ବାବୁ ମହାତ୍ମା ଧନ୍ୟ ତୋହୋର ଧର୍ମ ।
ତୋହୋରେ ଯେ କର ହୋଇଲା ଏଡ଼େ କର୍ମ ।୭୭୪।
ଏତେ ବୋଲି ଦେବେ ସ୍ୱର୍ଗକଇ ଗଲେ ।
ସକଳ ରାଜା ଶୁଣି ସାଧୁ ସାଧୁ କଲେ । ୭୭୫ ।
ଶୁଣ ତୁ ଶ୍ରୀରାମ ହୋ ଏ ମୁନିର ମହିମା ।
ଏହାକଇ ପ୍ରଶଂସା ଯେ କଲା ବ୍ରହ୍ମା । ୭୭୬ ।
ଯେ ଏହା ପଢ଼ଇ ଶୁଣଇ ପୁଣ୍ୟ ପ୍ରାଣୀ ।
ବ୍ରହ୍ମ ସ୍ତ୍ରୀ ହରଣ ଦୋଷ ଯାଇ ଜାଣି । ୭୭୭ ।
ଜ୍ଞାନେ ଅଜ୍ଞାନେ ଯେ କରଇ ମନ୍ଦ କୃତ୍ୟ ।
ଏ ଗ୍ରନ୍ଥ ଶୁଣିଲେ ନ ବାଧଇ ଦୁରିତ । ୭୭୮ ।
ଯେ ସେ ଅବା ଯୋଗେ କରନ୍ତି ଗୋରୁ ବଧ ।
ଏହା ଶୁଣିଲେ ଆମ୍ଭାକୁ ନୁହଇ ବିରୋଧ । ୭୭୯ ।
ପିତାର ବଚନ ଯେ ଭାଙ୍ଗନ୍ତି ମନ୍ଦପଣେ ।
ସେ ଦୋଷ ବାଧା ନ ଲାଗଇ ଏଣେ । ୭୮୦ ।
ଶ୍ରୀରାମ ଚରିତ୍ର ଏ ସାମଦେବ ବାଣୀ ।
ବାଲ୍ମୀକି ମହାମୁନି ଯାହା ସେ ବଖାଣି । ୭୮୧ ।

Digitized by srujanika@gmail.com

ସତ୍ୟାନନ୍ଦ କହଇ ଶ୍ରୀରାମର ଆଗ ।
ଜନେକ ମହାଋଷି କରଅଛୁ ମହାଯାଗ । ୭୮୨ ।
ତହିଂ ମିଳଛନ୍ତି ଅନେକ ମୁନିଗଣ ।
ଯହୁଂ ଶୁଣିଲେ ସେ ବିଶ୍ୱାମିତ୍ରଙ୍କର ଯେସନେକ ଗୁଣ ।୭୮୩
ଅନେକ ପ୍ରଶଂସା ତାଙ୍କୁ କଲେକ ସର୍ବଯତ୍ନ ।
ଯେ ସେ ଗାଧିସୁତ ଧନ୍ୟ ଯେହାର କୀର୍ତ୍ତି । ୭୮୪ ।
ଥୋକାଯେ ବୋଲନ୍ତି ଯେ ଶବଣେ ଶୁଣିଥିଲୁ ।
ପୂର୍ବର ଭାଗ୍ୟ ହାଦେ ନୟନେ ଦେଖିଲୁ । ୭୮୫ ।
ଯେଥିର ପୂର୍ବକଥା କହ ସତ୍ୟାନନ୍ଦ ।
ତହିଁ ହୋଉ ମୋର ପରମ ଆନନ୍ଦ । ୭୮୬ ।
ମୁନିମାନେ ଯହୁଂ ହୋଇଲେ ଶ୍ରୋତାବନ୍ତ ।
ଶ୍ରୀରାମଙ୍କ ଅଗ୍ରତରେ କହଇ ଗଉତମଙ୍କର ସୁତ । ୭୮୭ ।
କହଇ ବିଶ୍ୱାମିତ୍ର ପୂର୍ବର କଥାମାନ ।
ଶୁଣ ତ ରଘୁନାଥ କଉଶିକର ବିଧାନ । ୭୮୮ ।
ଯହୁଂ ସେ ତ୍ରିଶଙ୍କୁର ସ୍ୱର୍ଗକଇ ଗଲା ।
ତହୁଂ ବିଶ୍ୱାମିତ୍ର ବଶିଷ୍ଠଙ୍କୁ କୋପକଲା । ୭୮୯ ।
ବୋଇଲା ତୁ ମୋହୋର ଯାଗକୁ ନଇଲୁ ।
ଆସନ୍ତା ଲେକଙ୍କୁ ବାହୁଡ଼ାଇ ନେଲୁ । ୭୯୦ ।
ଯେତେ ରଗି କର୍ମା ସେ ପୃଥ୍ୱି ଅଛୁ ସହି ।
ଅନ୍ୟାଯେ ଆଚରଲେ ଧର୍ମ ନାଶ ଯାଇ । ୭୯୧ ।
ଶତେକ ପୁତ୍ର ମୋର ମଲେ ପୁରନ୍ଦର ହାଥେ ।
ତୋହୋର ଯୋଗୁଂ ସିନା ଗଲେ ଯମ ପଥେ । ୭୯୨ ।
ତୋହର ହୁଂ ଶତେ ପୁତ୍ର ହତ ହେଉ ।
ସେ ମୋହୋର ବୋଲ ଆନ ବାକ୍ୟ ନୋହୁଂ । ୭୯୩ ।
ଯେତେ ବୋଲିଣ ଶିଷ୍ୟଗଣ ଘେନି ।
ଅଯୁଧ୍ୟାରେ ପ୍ରବେଶ ବିଶ୍ୱାମିତ୍ର ମୁନି । ୭୯୪ ।
ଦେଖିଲା ରାଜା ଯେ ଅଛୁ ଦୁଖ ପାଇଂ ।
ଅଷ୍ଟ ପୁତ୍ର ବାର୍ତ୍ତା ସମର୍ପିଲା ନେଇଂ । ୭୯୫ ।
ପିତାର ଚରଣେ ପୁତ୍ର କଲାକ ନମସ୍କାର ।
ଧରଣୀକ ମୁନି ପ୍ରଶଂସା କଲାକ ଅପାର । ୭୯୬ ।
ବୋଇଲା ଯେ ମୋହୋର ପୁତ୍ର ସମ୍ଭାଳିଲୁ ।
ମହାସ୍ଥାରେ ତୁ ଗଣିତା ହୋଇଲୁ । ୭୯୭ ।

Digitized by srujanika@gmail.com

ଏମନ୍ତେ ବୋଲି ମୁନି ତହୁଂ ଗଲେ ଚଳି ।
ତପ କରିବ ବୋଲି ମନେ ମନେ ଭାଳି । ୭୯୮ ।
ହରିଚନ୍ଦନ ମୋକ୍ଷଚନ୍ଦନ ଦୃଢଚନ୍ଦନ ନାମ ।
ମନୋହର ଗାଲ୍ୟହି ଅନନ୍ତ ଅନୁପାମ । ୭୯୯ ।
ଲୋକରଥ ସୁରଥ ଦେବରଥ ବୀର ।
ସଙ୍ଗରେ ଘେନିଣ ଅଷ୍ଟ ଯେ କୁମର । ୮୦୦ ।
ଏମନ୍ତ ଘେନିଣ ଯେ ମୁନି ଚଳିଗଲା ।
ପୁଷ୍କର ତୀର୍ଥେ ଯାଇଂ ଅନେକ ତପକଲା । ୮୦୧ ।
ଏଥୁ ଅନନ୍ତରେ ଶୁଣ ରଘୁନାଥ ।
ହରିଚନ୍ଦନ ନାମେ ସତ୍ୟବନ୍ତର ସୁତ । ୮୦୨ ।
ଅନାର କଥରେ ସେ ଥିଲା ଅନେକ କାଳ ।
ନାଥଙ୍କ ଯୁଗରାଜା କଲେ ମହୀପାଳ । ୮୦୩ ।
ଅନନ୍ତେଣ ସ୍ୱର୍ଗକଇ ଗଲେକ ସେ ରାଏ ।
ଅଯୋଧାରେ ନୃପତି ହରିଚନ୍ଦନ ହୋଏ । ୮୦୪ ।
ବଢ଼ାଇ ପ୍ରତାପ୍ୟଂ ଯେ ଅଟଇ ତାହାର ।
ଦାନେ ଖାଣ୍ଡେସାଗ ସେ ତ୍ରିଶଙ୍କୁର କୁମର । ୮୦୫ ।
ରାଜସୂୟ ଯାଗ କରିଣ ତାର ବୁଧି ।
ସକଳ ପଦାର୍ଥ ସେ କଲେକ ଯାଏ ସିଧି । ୮୦୬ ।
ବରୁଣ କାହାକୁ ଆଚାର୍ଯ୍ୟ କରିବ ।
ବିଶ୍ୱାମିତ୍ର ମୁନିଙ୍କ ମୁଂ ଯାଗରେ ବରିବ । ୮୦୭ ।
ସେ ମୋହୋର ପିତାଙ୍କୁ ସ୍ୱର୍ଗ ଗତି ଦେଲା ।
ଏମନ୍ତ ସେ ମିଳଇ ବୋଲି ନୃପତି ବୋଇଲା । ୮୦୮ ।
ପୁଷ୍କର ତୀର୍ଥକୁ ସେ ଗଲେକ ଧର କରି ।
ବିଶ୍ୱାମିତ୍ର ସନ୍ନିଧରେ ମିଳିଲେକ ଦଣ୍ଡଧାରୀ । ୮୦୯ ।
ପ୍ରଣାମ୍ୟ କରିଣ ସେ ବୋଲଇ ଶୁଣ ଋଷି ।
ମୁହିଂ ତୋହୋର ତହିଂକ ଯତନେ ଆସିଅଛୁ । ୮୧୦ ।
ରାଜସୂୟ ଯାଗ ମୁନି କରିବଇଂ ମୁହିଂ ।
ତୁମ୍ଭେ ତହିଂ ଆଚାର୍ଯ୍ୟ ହୋଇବ ଯେ ଯାଇଂ । ୮୧୧ ।
ଶୁଣିଣ ସନ୍ତୋଷ ହୋଇଲେ ମହାମୁନି ।
ଅଯୋଧାକୁ ଗଲେ ହରିଚନ୍ଦନକୁ ଘେନି । ୮୧୨ ।
ହରିଚନ୍ଦନ ବରିଲେ ସକଳ ନୃପବର ।
ପ୍ରବେଶ ହୋଇଲେ ଯାଇଂ ସକଳ ସମ୍ଭାର । ୮୧୩ ।

Digitized by srujanika@gmail.com

ନାନା ତୀର୍ଥରୁ ସେ ଅଇଲେ ତୀର୍ଥବାସୀ ।
ଅଯୁଧ୍ୟା କଟକେଣ ମିଳଲେ ସର୍ବେ ଆସି । ୮୧୪ ।
ପୁର ମଣ୍ଡିଲେ ସେ ଯାଗ ଆରମ୍ଭିଲେ ।
ଅନ୍ନ ବସ୍ତ୍ର ଦାନ ଅନେକ ଅର୍ନ୍ନଛତ୍ର ଦେଲେ । ୮୧୫ ।
ମୁଷଳ ପ୍ରମାଣେ ସେ ଅଗ୍ନିରେ ଦେଲେ ଘୃତ ।
ହବ ପାବନ୍ତ ସେ ହୋଇଣ ସନ୍ତୋଷ ଚିତ୍ତ । ୮୧୬ ।
ଦେବତାଏ ଅଇଲେ ମୂର୍ତ୍ତିବନ୍ତ ହୋଇ ।
ସୋମପାନ କଲେ ପରମ ସୁଖ ପାଇଂ । ୮୧୭ ।
କଲ୍ୟାଣ କରି ତହୁଂ ଦେବତାଏ ଗଲେ ।
ନିଜପୁରେ ସେ ଯାହାରେ ପ୍ରବେଶ ହୋଇଲେ । ୮୧୮ ।
ପୂନ୍ୟ ଆହୂତି ସେ ଦେଲେ ଯାଗ ସାରି ।
ସେ ଯାହାର ରାଜ୍ୟକୁ ଗଲେ ଦଣ୍ଡଧାରୀ । ୮୧୯ ।
ମୁନିମାନେ ସେ ଯାହାର ସ୍ଥାନରେ ପରବେଶ ।
ହରିଚନ୍ଦନକଇ ବୋଲନ୍ତି ଗାଧିଶିଷ୍ୟ । ୮୨୦ ।
ଦିଅନ୍ତୁ ଦକ୍ଷିଣା ହୋ ଯିବଇଂ ତପକରି ।
ଶୁଣିଣ ସନ୍ତୋଷ ସେ ହୋଇଲେ ଦଣ୍ଡଧାରୀ । ୮୨୧ ।
ଗୁରିଲକ୍ଷ ଶୁଦ୍ଧ ସୁବର୍ଣ୍ଣ ଆଣିଦେଲେ ।
କାର୍ପଣ୍ୟ ମତ ହୋଇ ଅନେକ ବୋଇଲେ । ୮୨୨ ।
ବିଶ୍ୱାମିତ୍ର ମୁନି ନୋହିଲେ ତୃପ୍ତ ।
ପୁଣ ଆଣି ରାଜା ଦେଲେକ ଲକ୍ଷେ ହସ୍ତୀ । ୮୨୩ ।
ସୁବର୍ଣ୍ଣର ଶିକୁଳି ଆବର ପାଟକାଛ ।
ନେତ ପତନି ସେ ମଣ୍ଡଣୀ ସୁସଜ୍ଜ । ୮୨୪ ।
ମୁନି ଗ୍ରାହିତ ସେ ନ କଲେକ ତାହା ।
ସହସ୍ରେ ଅଶ୍ୱ ପୁଣି ଆଣିଲ ନରନାହା । ୮୨୫ ।
ରତ୍ନମସ୍ତେ ବାଖର ସୁବର୍ଣ୍ଣ କଳେଆର ।
କଳା ସେତ ଚାମର ସେ ମଣ୍ଡିଲେ ତହିଂର । ୮୨୬ ।
ଦେଖି ବିଶ୍ୱାମିତ୍ର ଉପହାସ କଲ ।
ସେମଣେ କ ଦକ୍ଷିଣା ହୋ ଶୁଝିବୁ ବୋଇଲ । ୮୨୭ ।
ଶୁଣି ନୃପବର ସେ ସହସ୍ରେକ ମୁଦ୍ରବନ୍ତୀ ।
ଅଳଙ୍କାର ଯୋଗକରି ଆଣିଲ ତଡ଼ିତ । ୮୨୮ ।
ମୁନି ବୋଇଲେ ହୋ ସେମଣେ ନୁହଇ କିଛି ।
ତୁ ରାଜ୍ୟେ କୃପଣ ସେ ନ ପାରି ଧନ ମୁଞ୍ଚି । ୮୨୯ ।

Digitized by srujanika@gmail.com

ରାଜ୍ୟ ତୋର ଦେଲେ ଶୁଝି ନ ପାରବୁ ।
ସ୍ୱେମାନ ଦେଇଂ ବ ଭଣ୍ଡି ମୋତେ ଦେବୁ । ୮୩୦ ।
ରାଜା ବୋଇଲ୍ଲ ତୁ ବୋଇଲୁସି ଯାହା ।
ଯେନ ମହାମୁନି ଦେବଇ ମୁହିଂ ତାହା । ୮୩୧ ।
ସ୍ୱେତେ ବୋଲି ରାସ୍ତେ ରାଜ୍ୟ ସମର୍ପିଲ୍ଲ ।
ବିଶ୍ୱାମିତ୍ର ବୋଇଲେ ସ୍ୱେହୁତ ନ ଅଣ୍ଟିଲ୍ଲ । ୮୩୨ ।
ରାଜୁସି ଯାଗ ସ୍ୱେହା ଅତିଧର୍ମେ କର ।
ଶତେକ ଅଶ୍ୱମେଧ ତହିଁକି ନୁହଇ ସମସର । ୮୩୩ ।
ସଂସାର କ୍ଷୋଭ ପାଇବାକ ସ୍ୱେଣେ ।
ଏ ଯୋଗୋ ଆଶ୍ଚର୍ଯ୍ୟ ନୁହନ୍ତି ମୁନିଗଣେ । ୮୩୪ ।
ତୁ ଯେ ଭଣ୍ଡି ମୋତେ ଆଣିଲୁ ମହୀପତି ।
ହି ଶଙ୍କର ହତେ ହୋଇଲୁ ତୋରେ ପ୍ରୀତି । ୮୩୫ ।
ସ୍ୱେଡ଼େ ପାପଭାରୀ ହେ ବହିଲଇଂ ଶିରେ ।
ଦକ୍ଷିଣା ଦେବାକୁ ତୁ ଜଗତ ନୃପବରେ । ୮୩୬ ।
ରାଜା ବୋଇଲେ ହୋ ଧନ ମୋହୋର ନାହିଂ ।
ତେଣୁ ସେ ରାଜ୍ୟ ସମର୍ପିଲ୍ଲ ମୁହିଂ । ୮୩୭ ।
ଋଷି ବୋଇଲେ ତୋ ଭାରଜା ପୁତ୍ର ବିକ ।
ଆପଣେ ବିକେ ହୁଅ ନୃପତି ତଳେକ । ୮୩୮ ।
ଶୁଣି ହରିଚନ୍ଦନ ହୋଇଲ୍ଲାକ ତୋଷ ।
ବୋଇଲ୍ଲ କ୍ଷେଣେ ତୁ ରହ ଗାଧିଶିଷ । ୮୩୯ ।
ବିକେ ହୋଇଂ ତୋତେ ମୁଂ ଆଣି ଦେବଇଂ ଧନ ।
ବିଶ୍ୱାମିତ୍ରେ ବୋଇଲେ ତୁ ଶୁଣସି ରାଜନ । ୮୪୦ ।
ପୃଥ୍ୱି ଦେଲୁ ମୋତେ ସନ୍ତୋଷ ଯେ ଚିତ୍ତ ।
ମୋହୋର ହୋଇଲ୍ଲଣି ସକଳ ପଦାର୍ଥ । ୮୪୧ ।
ମୁହିଂ ରାଜା ସେ ସପତ ଦ୍ୱୀପା ମହୀ ।
ସ୍ୱେଥି ପାପ ପୁଣ୍ୟ ମୋହୋର ଯେ ହୋଇ । ୮୪୨ ।
ତୋହୋର ଥିଲ୍ଲାରେ ମୁଂ ଯେ ହୋଇ ଅଧିକାରୀ ।
ଯେବେ ରାଜ୍ୟ ମୋତେ ଦେଲୁ ସତ୍ୟ କରି । ୮୪୩ ।
ଥାବର ଜଙ୍ଗମ କୀଟ ପକ୍ଷୀମାନ ।
ସ୍ୱେ ମହୀମଣ୍ଡଳେ ମୁହିଂ ସେ ରାଜନ । ୮୪୪ ।
ସବୁଙ୍କର ବିତ୍ତ ଅର୍ଥ ପ୍ରାଣ ଧନ ।
ମୁହିଂ ସେ କରତା ଅବିବେକ କର୍ମ । ୮୪୫ ।

Digitized by srujanika@gmail.com

ଏ ପୃଥ୍ୱି ଛାଡ଼ିଣ ତୁ ଅନ୍ତରୀକ୍ଷେ ଯାଅ ।
ଶୂନ୍ୟପୁରୁ ଆଣି ଧନ ମୋତେ ଦିଅ । ୮୪୬ ।
ରାଜା ବୋଇଲେ ଯେ ବସୁନ୍ଧେ ମୁଖ ହୋଇ ।
କେବଣ ଥାନୁ ଧନ ଆଣିମଇଂ ଯାଇଂ । ୮୪୭ ।
ଅନ୍ତରୀକ୍ଷେ ବୋଲି ଯେ ସ୍ୱର୍ଗକଇ ବୋଲି ।
ସେ ଦେବେହେଂ ତହିଂକତ ରାଜ ନ ନୋହିଲି । ୮୪୮ ।
କାହିଂ ଆଣିମି ଧନ କରିବ କସ ବୁଧି ।
ହରିଚନ୍ଦନ କର୍ଣ୍ଣେ କହନ୍ତ ବଶିଷ୍ଠ ତପନିଧି । ୮୪୯ ।
ବାଣାରସୀ ପୁର ଯେ ଅନ୍ତରୀକ୍ଷେ ଅଛୁ ରହି ।
ବେଦ ପୁରାଣେ ହୋ ଅଛଇ ସେହା କହି । ୮୫୦ ।
ତହିଂରେ ଯାଇଂ ବନ୍ଦେ ହୋଇଂ ଧନ ଆଣି ।
ବଶିଷ୍ଠ କହନ୍ତେ ବିଶ୍ୱାମିତ୍ର ଜାଣି । ୮୫୧ ।
କୋପେ ଥରହର କମ୍ପଇ ମହାଋଷି ।
ବୋଇଲି ଆଜର ମଧ୍ୟେ ଧନ ଦେସି । ୮୫୨ ।
ବେଲ ଅସ୍ତ ହୁଅନ୍ତେ ବାହୁଡ଼ାଇ ଦେବି ।
ଦିନେକର ମଧ୍ୟେ ଦେଲେଣ ଯେନିବ । ୮୫୩ ।
ସେତେ ବୋଲି ମୁନି ବସିଲି ନଠାଇ ।
କାଶୀପୁରକଇ ହରିଚନ୍ଦନ ଯାଇ । ୮୫୪ ।
ସବ୍ୟା ମହାଦେଇ ଲୋହିତାକ୍ଷ କୁମର ।
ତିନିହେଂ ପ୍ରବେଶ ବାରାଣସୀ ପୁର । ୮୫୫ ।
ମଣିକର୍ଣ୍ଣିକାସେ ସ୍ନାହାନ ଯାଇ କରି ।
ପ୍ରାସାଦ ଭିତରେ ଦେଖିଲେ ତ୍ରିପୁରାରି । ୮୫୬ ।
ବାଞ୍ଛାକଲେ ବିଶ୍ୱନାଥକଇ ରାହିଂ ।
ବିଶ୍ୱାମିତ୍ର ଧନ ମୁଂ ଶୁଝିବ ଗୋସାଇଂ । ୮୫୭ ।
ତୋହୋର ଚରଣେ ସ୍ୱାମୀ ପଶିଲି ଶରଣ ।
ସେତେ ବୋଲି ନଗ୍ରେ ବୁଲନ୍ତ ତିନିଜଣ । ୮୫୮ ।
ବିକେ ହେବ ବୋଲି ଆପଣେ ଡାକ ଦ୍ୟନ୍ତ ।
କଣିମା ଲୋକେ ଦାଣ୍ଡେ ଉଭାର ହୁଅନ୍ତ । ୮୫୯ ।
ସତ ବାଡ଼ିବା ନମନ୍ତେ ଦେବତା ।
ଆନ ଲୋକ ନଗ୍ରେ ନୋହିଲେ ଯେନନ୍ତା । ୮୬୦ ।
ଯମ ଚାଣ୍ଡାଳ ରୂପେ ରାଜାଙ୍କୁ କଣିଲେ ।
ଅଗି ବ୍ରାହ୍ମଣ ହୋଇଣ ରାଣୀକି ଧନ ଦେଲେ । ୮୬୧ ।

Digitized by srujanika@gmail.com

ପୁତ୍ର ରାଣୀ ସହିତେ ବନ୍ଧେ ହରିଚନ୍ଦ୍ର ।
ଏମନ ସମ୍ପଦେ ଯାଇ ବିଶ୍ୱାମିତ୍ର କଲେ ଦ୍ୱନ୍ଦ୍ୱ । ୮୬୨ ।
କହେ ନୃପତି ତୁ ଅଳସ କର୍ମା କଲୁ ।
ମୋତେ ଭଣ୍ଡି ଣ ଏଥେ ଲୁଚି ତ ରହିଲୁ । ୮୬୩ ।
ବେଳ ଛନ ପହର ହୋଇଲାଣି ଆସି ।
କେତେବେଳେ ଧନ ଦିଆଅ ନଗ୍ରେ ପଶି । ୮୬୪ ।
ରଜା ବୋଲୋପଇ କର ଦୁଇ ଯୋଡ଼ି ।
ତୋହୋର ଧନ ମୁଂ ଆଣିଲିନ ଲୋଡ଼ି । ୮୬୫ ।
ପୁତ୍ର ଘରଜା ମୋର ବ୍ରାହ୍ମଣ କିଣି ନେଲା ।
ଗୃଣ୍ଡାଳ ଧନ ଦେଇ ମୋତେ ସେ ରଖିଲା । ୮୬୬ ।
ଯେନ ଛନ ଲକ୍ଷ ବଳି ଯେ ସୁବର୍ଣ୍ଣ ।
ଏତେ ବୋଲି ଆଣି ସମର୍ପିଲା ଧନ । ୮୬୭ ।
ସେ ଧନ ମୁନି ବିଶ୍ୱନାଥଙ୍କୁ ଦେଲା ।
ସେ ଧନର ରତ୍ନ ମେଢ଼େକ ଦିଆଇଲା । ୮୬୮ ।
ମେଢ଼ ମଣ୍ଡୋପ ଯେ ଜଗନ୍ନାଥ କର ଥୋଇ ।
ଯେ ଯାହାର ଜାତକ ଯେ ଗଉରବେ କରାଇ । ୮୬୯ ।
ଏଥୁଅନନ୍ତରେ ବିଶ୍ୱାମିତ୍ର ଗଲା ।
ଅଯୁଧ୍ୟାରେ ଯାଇଂ ବଶିଷ୍ଠଙ୍କୁ ଦେଖିଲା । ୮୭୦ ।
ବୋଇଲା କର୍ମା ତୁ ମୋହୋର ରାଜ୍ୟେ ଅଛୁ ।
ଆବର ଏଥେ ତୁ କପ ବୁଧି ସଞ୍ଚୁ । ୮୭୧ ।
ହରିଚନ୍ଦନ ରଜାର ଅଟୁ ତୁହୋ ମନ୍ତ୍ରୀ ।
ତାହାଙ୍କୁ ନେଇଂଣ ହୋଇଲୁ ଦପାନ୍ତ । ୮୭୨ ।
ତୋତେ ହୋ ବାହାର କରି ଏଥୁ ଦେବି ।
ପୁନ ସ୍ୱରଜାଙ୍କର କଷ୍ଟ ପାଶୋରିବି । ୮୭୩ ।
ଏହି ରାଜ୍ୟେ ସେହୁ ମାଗୁଥିଲେ ଭିଖ ।
ଏବେ ବଳସିବେ ହେ ଇ ମହାସୁଖ । ୮୭୪ ।
ତୁ ଏହିକ୍ଷଣି ଯାଅ ଏ ପୁରରେ ମୋର କଥା ।
ଦଣ୍ଡେହେଂ ଥିଲେ ଏଥୁ ନୁହଇ ଭଲ କଥା । ୮୭୫ ।
ଏତେ ବୋଲି ଯାଇ ଗଳଥି ଫିକାଇଲା ।
ଦେଖିଣ ବଶିଷ୍ଠ ମୁନି ଖଗେଳ ହୋଇଲା । ୮୭୬ ।
ଢେଣା ବୁଲାଇଣ ଗର୍ଜିଣ ଧାଇଂଲା ।
ଦେଖି ବିଶ୍ୱାମିତ୍ର ମୁନି ବକେଳ ହୋଇଲା । ୮୭୭ ।

Digitized by srujanika@gmail.com

ଶସ୍ତ୍ରେ ପୁଣ ବଢ଼ିଲା ଦୁହିଙ୍କର ଶରୀର ।
କ ଜାଣି ଦିଶନ୍ତି ସେ ମହତ ଗିରିବର । ୮୭୮ ।
ଢେଣାଏ୍ଁ ଡେଣାଏ୍ଁ ସେ ହୁଅନ୍ତି ପିଟାପିଟି ।
କେ କାହାର ଅଙ୍ଗେ କାମୋଡ଼ଇ ତୋଟି । ୮୭୯ ।
ଲହୁଡ଼ ଯେହ୍ନ କେ ବିଦାରଇ ଅଙ୍ଗ ।
ରୁଧିର ବିଲେପନ ଦିଶଇ ସୁରଙ୍ଗ । ୮୮୦ ।
ବନ ପରବତ ସେ ଚଳିଲା ମହୀଆଳ ।
ଦେଶ ଗ୍ରାମ ରାଜ ହୋଇଲା ଏକସ୍ଥଳ । ୮୮୧ ।
ବ୍ରହ୍ମା ବିଜେ କଲେ ସମସ୍ତ ଦେବ ଯେହ୍ନ ।
ଦେଖନ୍ତି ଯୁଧ ଯେ କରନ୍ତି ଦୁଇମୁନି । ୮୮୨ ।
ପକ୍ଷିର ପବନେ ଗଗନେ ଉଡ଼େ ଧୂଳି ।
ସଂସାର ତ୍ରଇଲୋକ ହୋଇଲା ବିକଳି । ୮୮୩ ।
ଅନେକ ଦେଶର ନୃପତିଗଣ ମଲେ ।
ରଥ ଗଜ ସଇନ ଅନେକ କ୍ଷୟେ ଗଲେ । ୮୮୪ ।
ଦୁହେଁ ନ ଘୁଞ୍ଚନ୍ତି ସମରର ପକ୍ଷୀ ।
ନାରଦ ନୃତ୍ୟ ଯେ କରନ୍ତି ତାହା ଦେଖି । ୮୮୫ ।
ଯୁଦ୍ଧ ଚଉଡ଼ିର ବାଜିଲା ରଣଗୋଳ ।
ଶୂନ୍ୟପୁରେ ଥାଇଂ ଦେଖନ୍ତି ଦିଗପାଳ । ୮୮୬ ।
ନବ ଗ୍ରହଗଣ ଅଷ୍ଟବସୁ ଆନ୍ତି ।
ଦଶ ଦିଗପାଳ ଦେଖିଣ ଆସନ୍ତି । ୮୮୭ ।
ଯୁଧ ଦେଖିଣ ଥୋକାଏ୍ଁ ଭୟେ ଜଲେ ।
ପାଞ୍ଚ ବସୁଂ ଦେବା ପୁଞ୍ଚ ପଳାଇଲେ । ୮୮୮ ।
ଅବର ପାଞ୍ଚେହେଂ ବିଶ୍ୱାମିତ୍ରଙ୍କ ଗୃହଂ ।
ଧିକାର ବଚନ ସେ ବୋଇଲେ ଶବଦାଇ । ୮୮୯ ।
ତୁ ହୋ କଉଶିକ ବଢ଼ାଇ କଳଜ ।
ସଂସାର ହତ ହୋଇବ ତୋହୋର ଯୋଗୁଂ ଆଜ ।୮୯୦।
ରାଜା ହୋଇଂଣ ତୁ ତପୀର ଗୋରୁ ଆଣୁ ।
ଧର୍ମେ ପଳାଇଲୁ ଥିଲେ ତହିଂ ସ୍ଥାଣୁ । ୮୯୧ ।
ବଳ ସହିତେ ଧ୍ୱଜ ସଂମ୍ପୁର୍ଣ୍ଣେ ହରାଇଲୁ ।
ବଶିଷ୍ଠକଇ ଜିଣିମୁ ବୋଲି ତପ କଲୁ । ୮୯୨ ।
ହର ପରସନେ ପାଇଲୁ ତହିଂ ବର ।
ପୁନରପି ଯୁଦ୍ଧ କଲୁ ମୁନିର ସଙ୍ଗର । ୮୯୩ ।

Digitized by srujanika@gmail.com

ତହୁଂ ହାର ପୁଣ ପଳାଇଂଣ ଗଲୁ ।
ପୁନ ଭରତାଙ୍କୁ ଅଯୁଧ୍ୟାରେ ଥୋଇଲୁ । ୮୯୪ ।
ସେ ତହୁଂ ଅନ୍ନ କଷ୍ଟେଣ ଦୁଃଖ ପାନ୍ତି ।
ଭେଖର ନିମନ୍ତେ ସେ ଗୋରୁ ମାଂସ ଖାନ୍ତି । ୮୯୫ ।
ତୁ ତାହା ନ ଜାଣୁ ସମୁଦ୍ର କୂଳେ ଥାଇଂ ।
ଚଣ୍ଡାଳକଇଂ ସ୍ୱର୍ଗେ ବସାଇଲୁ ନେଇଂ । ୮୯୬ ।
ନାହିଁ ବୋଇଲେଣ ନବ ସୃଷ୍ଟି କରୁ ।
ପାପ ପୁଣ୍ୟ ଦୁଇ ବିଗ୍ରହ ନ କରୁ । ୮୯୭ ।
ହରିଚନ୍ଦନ ରାଜା ରାଜସୂ ଯାଗ କଲା ।
ମହତ ଦେଖି ତୋତେ ଆଶ୍ଚର୍ଯ୍ୟେ ବଇଲା । ୮୯୮ ।
ତାହାକୁ ରାଜ୍ୟରୁ କଲୁସି ବାହାର ।
ଅର୍ଥ ସମ୍ପଦ ଶିଷ୍ୟ ଘେନିଲୁ ତାହାର । ୮୯୯ ।
ଯେବେ ଯୁଦ୍ଧ କଲୁ କସ ଗୁଣ ପାଇଂ ।
ଲଜ ସଙ୍କୁଚ ହୋ ଦୁଇ ତୋର ନାହିଂ ।୯୦୦ ।
ଅନେକ ବଚନ ବୋଇଲେ ବସୁଦେବା ।
ତ୍ରିଶଙ୍କୁର ତୋତେ କରିଥିଲା ସେବା । ୯୦୧ ।
ସେ ଗୁଣ କର ହରିଚନ୍ଦନଙ୍କୁ ଦପାନ୍ତିଲୁ ।
ପୁଅ ମାଇପେ ତାର ବନ୍ଧେ କରାଇଲୁ । ୯୦୨ ।
ଧିକ ଯାଉ ତୋର ମାୟା ଜପ ତପ ।
ଆନ ଋଷି କର୍ମା ହୋଇବ ସେତେ ପାପ । ୯୦୩ ।
ଶୁଣିଣ କୋପକଲେ ବିଶ୍ୱାମିତ୍ର ମୁନି ।
ଯୁଦ୍ଧ ଗୁଡ଼ ଉର୍ଦ୍ଧ୍ୱକୁ କଲକ ମୂର୍ଦ୍ଧିନି । ୯୦୪ ।
କୋପେ ଥରହର ହୋଇଣ ଶାପ୍ୟ ଦେଲା ।
ମନୁଷ୍ୟ ଶରୀର ତୁମ୍ଭେ ହୁଅସି ବୋଇଲା । ୯୦୫ ।
ନର୍କ ଯୋନରେ ତୁମ୍ଭେ ହୁଅସି ଜାତ ।
ଅଦୋଷେ ଉପହାସ୍ୟ କଲରେ ଆମ୍ଭନ୍ତ । ୯୦୬ ।
ଦେବତା ପଣ ଗୁଡ଼ ତୁମ୍ଭେ ମନୁଷ୍ୟ ଅବତାର ।
ଶୁଣିଣ କଂପିଲେ ଯେ ସକଳ ଦେବାସୁର । ୯୦୭ ।
ବିଶ୍ୱଦେବାକଇ ଯହୁଂ ଶାପ୍ୟ ଦେଲା ।
ବଶିଷ୍ଠଙ୍କର ସଙ୍ଗତେ ମୁନିହୁଂ ଯୁଦ୍ଧ କଲା । ୯୦୮ ।
ବ୍ରହ୍ମା ମଧ୍ୟେ ପଶି ବୁଝାଇଲା କଳି ।
ବୋଇଲେ ଶୁଣ ତୁମ୍ଭେ ଦୁଇ ତପଶାଳୀ । ୯୦୯ ।

Digitized by srujanika@gmail.com

ଜଗତ ଜାଣିଲ ଯେ ତୁମ୍ଭର କନ୍ଦଳେ ।
ହସ୍ତରେ ମେଦିନୀ ପଡ଼ିବ ରସାତଳେ । ୯୧୦
ମୋହୋର ବୋଲକଇ ଛାଡ଼ ତୁମ୍ଭେ ରୋଷ ।
ବଧାତାର ବଚନେ ଛାଡ଼ିଲେ ଦୁହେଁ ରୋଷ । ୯୧୧ ।
ପଶି ଦେହ ଗୁଣ୍ଡ଼ ନଜ ତନୁ ଧର ।
ଧାତାର ବଚନେ ତ୍ରିପୃଷ୍ଠ ତପସ୍ୱୀ । ୯୧୨ ।
ବଶ୍ୱାମିତ୍ରଙ୍କର ପ୍ରସନ୍ନ ବଦନ ଦେଖି ।
ବଶ୍ୱଦେବାକଇ ଠାଶଲେ ଅଷ୍ଟଆଖି । ୯୧୩ ।
କଥା ଜାଣିଣ ବଶ୍ୱଦେବାସ୍ୱେ ଅଇଲେ ।
ବଶ୍ୱାମିତ୍ରଙ୍କୁ ଯେ ଅନେକ ପ୍ରବୋଧିଲେ । ୯୧୪ ।
ହେ ମୁନ ଯେବେ ତୁ ଆମ୍ଭଙ୍କୁ ରକ୍ଷାକର ।
ଅଗ୍ୟାନେ ବୋଇଲା ଦୋଷ ତୁ ନ ଧର । ୯୧୫ ।
ଶୁଣିଣ ବଶ୍ୱାମିତ୍ର ହୋଇଲେ ତ୍ରିପୃଷ୍ଠ ।
ଅନୁଗ୍ରହ କରଣ ବୋଲେ ମହାଯଠ । ୯୧୬ ।
ଯାହା ବୋଇଲି ସେ ନୁହଇଂ ପୁଣ ଆନ ।
ତୁମ୍ଭେ ଜନମ ହୋଇବ ମଞ୍ଚପୁର ଥାନ ।୯୧୭ ।
ଅନେକ ଯୁଗର ଅନ୍ତେ ଦ୍ୱାପର ଯୁଗ ଶେଷେ ।
କୃଷ୍ଣ ଅବତାର ହୋଇବେ ପୀତବାସେ । ୯୧୮ ।
କାଲନେମି ଦତ୍ୟଙ୍କର ସ୍ୱରୂପେଣ ଜାତ ।
ମଥୁରାରେ ରଜା ସେ ଉଗ୍ରେସନ ସୁତ । ୯୧୯ ।
ପୃଥ୍ୱି ନ ସହିବ ତାହାଙ୍କ ପାଦଭର ।
ତେଣୁ କୃଷ୍ଣ ଅବତାର ହୋଇବେଟି ପୃଥ୍ୱିର । ୯୨୦ ।
କୁରୁକୁଳ ବଂଶେ ଯେ ଦୁର୍ଯୋଧନ ନାଥ ।
ସଙ୍ଗେ ଘେନଥିବ ଅନେଶ୍ୱତ ଭ୍ରାଥ । ୯୨୧ ।
ଧର୍ମ ଅଂଶେଣ ଯେ ଯୁଧିଷ୍ଠି ମହୀପାଳ ।
ଅଶ୍ୱିନ କୁମାର ଯେ ସହଦେବ ନକୁଳ । ୯୨୨ ।
ଇନ୍ଦ୍ରରୁ ଅର୍ଜୁନ ପବନୁଂ ଭୀମସେନ ।
ବରୁଣ ଅବତାର ହୋଇବେ ସାଯ୍ୟେନ୍ତ୍ରନ । ୯୨୩ ।
ଭୀଷ୍ମ ଉରୁବସୁ ଅଭମନ୍ୟୁ ଇନ୍ଦ୍ର ।
କର୍ଣ୍ଣ ସେ ଅଟଇ ଗ୍ରହଙ୍କର ଚନ୍ଦ୍ର । ୯୨୪ ।
ସାଲ୍ୱ ଶିଶୁପାଳ ଜାରସନ୍ଧ ଯ୍ୟେ ।
ଯେହାଙ୍କର ତେଜେ ପୃଥ୍ୱୀ ସର ପାୟେ । ୯୨୫ ।

Digitized by srujanika@gmail.com

ମାସ୍ୱାରେ ଶ୍ରୀହର ସ୍ୱସ୍ତ ହବାଶବ ।
ଯୁଦ୍ଧ କରିବେ ସେ ପାଣ୍ଡବ କଉରବେ । ୧୨୬ ।
ଆପଣେ ଆପଣେ ହୋଇବେ ସଂହାର ।
ଦ୍ରୁପତି ବୋଲି ସେ ହୋଇବେ ପାଣ୍ଡବଙ୍କ ନାରୀ ।୧୨୭।
ତାହାର ଗର୍ଭରୁ ହୋଇବ ତୁମ୍ଭେ ଜାତ ।
ଶୁଣିଲ ଠାବରେ ତୁମ୍ଭଙ୍କ ହୋଇବ ଶସ୍ତ୍ରପାତ । ୧୨୮ ।
ଅଳପ ସମୟେ ଆସିବ ସ୍ୱର୍ଗପୁରୀ ।
ଯେସନେକ ବୋଇଲେ ବିଶ୍ୱାମିତ୍ର ତପସ୍ୱୀ । ୧୨୯ ।
ସେଥୁଁ ଅନନ୍ତରେ ଶୁଣ ଦିବ୍ୟ ଗୀତ ।
କଳ ରୁହାଇଣ ଗଲେ ବେଦପନ୍ଥ । ୧୩୦ ।
ଦେବେ ପ୍ରବେଶ ଯେ ହୋଇଲେ ଯେଝା ପୁରେ ।
ସତ୍ୟାନନ୍ଦ କହଇ ଶୁଣ ରଘୁବୀରେ । ୧୩୧ ।
ବଶିଷ୍ଠେ ବିଶାମିତ୍ରେ ଶାନ୍ତ ହୋଇଗଲେ ।
ଦୁଇ ତପସ୍ୱୀ ଦେବତାଙ୍କ ବୋଲ କଲେ । ୧୩୨ ।
ପୁଷ୍କର ତୀର୍ଥେ ଯେ ପ୍ରବେଶ ଗାଧିସୁତ ।
ଗାଇଲଭ ବୋଲିଣ ଯେ ଏକଇ ନୃପତ୍ୟ । ୧୩୩ ।
ଅଶ୍ୱମେଧ ଯାଗ କରନ୍ତ ଯେହ୍ନାର ବୁଦ୍ଧି ।
ଭିଆଇଲେ ରଜା ଯେ ସକଳ ସମ୍ପ୍ରଧି । ୧୩୪ ।
ନୃପତିମାନଙ୍କ କଲେକ ନିମନ୍ତ୍ରଣ ।
ନାନା ତ୍ରିଥିରୁ ଯେ ଅଇଲେ ତପୀଗଣ । ୧୩୫ ।
ଘୃତ ତିଳ ଯବ ସମିଧ ସଜକର ।
ବିଶ୍ୱାମିତ୍ର ତହିଁକି ଗଲେ ଦଣ୍ଡଧାରୀ । ୧୩୬ ।
କରପତ୍ର ଯୋଡିଣ ଯେ କହିଲେ ତାର ଆଗ ।
ବୋଇଲି କରିବ ମୁଁ ଅଶ୍ୱମେଧ ଯାଗ । ୧୩୭ ।
ତୁ ତହିଁ ଆଚାର୍ଯ୍ୟ ହୋଇବୁ ଗାଧିଶିଷ ।
ଶୁଣିଣ ବିଶ୍ୱାମିତ୍ର ପରମ ସନ୍ତୋଷ । ୧୩୮ ।
ଗାଲ୍ୟବର ସଙ୍ଗେ ଅଇଲେ ମହାମୁନି ।
କଟକେ ପ୍ରବେଶ ହୋଇଲେ ତତକ୍ଷଣି । ୧୩୯ ।
ଯେଣୁ କଉଶିକ ତାର ପୁରିକଇ ଗଲା ।
ଯାଗରେ ଆପଣେ ସେ ଆଚାର୍ଯ୍ୟ ହୋଇଲା । ୧୪୦ ।
ଅଗ୍ନିର ମୁଖେ ନେଇ ସମର୍ପିଲା ଘୃତ ।
ହବି ଭାଗ ଘେନିମାଙ୍କୁ ଅଇଲେ ଦେଇବତ । ୧୪୧ ।

Digitized by srujanika@gmail.com

ପୂର୍ଣ୍ଣ ଆହୁତି ସେ ସମର୍ପଲା ନେଇ ।
ଯାଗ ସମାପତ ଷୋଡ଼ଶ ଦିନେ ହୋଇଂ । ୯୪୨ ।
ଦେବେ ତୋଷହୋଇ ଗଲେ ସ୍ୱର୍ଗପୁରୀ ।
ଯେ ଯାହା ରାଜ୍ୟେ ସେ ପ୍ରବେଶ ଦଣ୍ଡଧାରୀ । ୯୪୩ ।
ତପୀ ଜପୀମାନେ ନିଜ ପୁର ଗଲେ ।
ବିଶ୍ୱାମିତ୍ର ମୁନି ଗାଲ୍ୟଭକୁ ବୋଇଲେ । ୯୪୪ ।
ତୁହୋ ନୃପତି ଦକ୍ଷିଣା ମୋତେ ଦିଅସି ।
ସେ ତୋହୋର ଧର୍ମ ସୁଫଳ କରସି । ୯୪୫ ।
ଶୁଣିଣ ନୃପତି ଦେଲାକ ବହୁତ ଧନ ।
ପରମ ସନ୍ତୋଷ ହୋଇଲା କଉଶିକର ମନ । ୯୪୬ ।
ରାଜାର ତ୍ରିପୁତ୍ର ସେ ନୋହିଲାକ ଚିତ୍ତ ।
ମନେ ବିଚାରଇ ଦେବଇଂ ଆଉ ବିତ୍ତ । ୯୪୭ ।
ଋଷିଙ୍କ ବୋଇଲା ପ୍ରସନ୍ନ ବଦନ ହୋଇଂ ।
ଆବର ଦକ୍ଷିଣା ମାଗ ମୁନି ଦେବଇଂ ମୁହିଂ । ୯୪୮ ।
ଋଷି ବୋଇଲେ ମୁଂ ହୋଇଲି ତ୍ରିପୁତ୍ର ।
ସୁଖେ ରାଜ୍ୟ ଭୋଗ ତୁ କରସି ନୃପତ୍ର । ୯୪୯ ।
ବିଶ୍ୱାମିତ୍ରଙ୍କର ଯେସନ ବାକ୍ୟ ଶୁଣି ।
ଗାଲ୍ୟଭ ବୋଇଲା ସେ ମନେ ମନେ ଗୁଣି । ୯୫୦ ।
ତୁ ମୋତେ ମାଗ ମୁନି ଦେବଇଂ ଆଉ ଧନ ।
ନୋହିଲେଣ ସ୍ଥିର ପୂରଇ ତୋର ମନ । ୯୫୧ ।
ଶୁଣିଣ ଗରୁଡର କୋପି ମୁନି କଲା ।
ଅଧର କମ୍ପାଇଣ ବଚନ ବୋଇଲା । ୯୫୨ ।
ଦିଅ ମୋତେ ଅଶ୍ୱ ଆଠଶ ସବୁ ଶ୍ୱେତ ।
ସର୍ବାଙ୍ଗ ଲକ୍ଷଣ ହୋଇବ ଶ୍ରୀବନ୍ତ । ୯୫୩ ।
କନ୍ଧର ମୂଳେ ଯେ ଥିବାକ ଭ୍ରମର ।
ଅତି ଉଚ୍ଚ ଅତି ନୋହିବ ଆକାଭର । ୯୫୪ ।
ଶେତ ଚାମର ଦିଶିଲାକ ଲାଂଜ ।
ଯେବେ ମୋତେ ଯେହ୍ନା ଦେଇ ମନ ରଞ୍ଜି । ୯୫୫ ।
ଅତିହିଁ ଚଞ୍ଚଳ ଯେ ଅତି ବଳମାନ ।
ଯେକକୁ ଆରେକ ନୋହିବାକ ସାନ । ୯୫୬ ।
ସମସର ବୟସ କେହି ନୋହିବାକୁ ମାଇଂ ।
ସମସ୍ତେ ହେଂ ଯୋଗ୍ୟ ହୋଇବେ ଯଜ୍ଞକଇଂ । ୯୫୭ ।

Digitized by srujanika@gmail.com

ସୁବାହୁ ଉଜ୍ଜ୍ୱଳ ଶାନ୍ତ ମୂର୍ତ୍ତି ଧର ।
ସୁବର୍ଣ୍ଣ ଜିନ ବାଘର ଆଣ ଦଣ୍ଡଧାରୀ । ୯୫୮ ।
ଶ୍ରେଷ୍ଠ ଚଞ୍ଚଳଆ ମୋଟ ହୋଇବ ପିଠି ।
ପାରୁଶକଇ କାହାର ନୋହିବାକ ଦୃଷ୍ଟି । ୯୫୯ ।
ମନେ ଯାହା ବୋଲିବ ତହ୍ନଂକ ଯାନ ଯିବ ।
ଉଦୟେକେ ମେଦନୀ ବୁଲିଣ ଆସିବ । ୯୬୦ ।
ସ୍ୟେମନ୍ତ କର ଆଠଶ ଶେତ ଅଶ୍ୱ ଦେସି ।
ଶୁଣି ରାଜାର ଯେ ଗୁଡ଼ିଗଲା ସାହାସି । ୯୬୧ ।
ମୋହୋର ଦୋଷେ ସିନା ସ୍ୟେ କଥା ଉପୁଜିଲା ।
ମନେ ବିଗ୍ରହଇ ଋଷି ମୋତେ କୋପକଲା । ୯୬୨ ।
ଯାହା ସେ ମୁନି ଅଶ୍ୱ ମାଗିଲା ଆଠଶତ ।
ଲକ୍ଷେ ବାହୁଁଲେ ସିନା ପାଇବା ସ୍ୟେମନ୍ତ । ୯୬୩ ।
ମୁହିଂ କସ ରାଜା କେତେକ ମୋହୋର ମହୀ ।
ସ୍ୟେ ଦୁଲଭ କଥା କି ପାରିବ ଭିଆଇ । ୯୬୪ ।
ସ୍ୟେତେ ବୋଲି ଗାଲ୍ୟଭ ମୁନିର ପାଦେ ପଡ଼ି ।
କାର୍ପୁନ୍ୟ ହୋଇଣ ବେନି କରଯୋଡ଼ି । ୯୬୫ ।

ହେ ମହାମୁନି ମୋତେ ପ୍ରତିକାର କର ।
ସ୍ୟେ ମହାକଷ୍ଟଣୁ ବାରେକ ଉଧର । ୯୬୬ ।
ମୁହିଂ ଅଗ୍ୟାନ ଯେ ନ ଜାଣି ଗର୍ବ କଲି ।
ତହ୍ନଂର ଫଳ ମୁନି ସ୍ୟେବେ ସେ ପାଇଲି । ୯୬୭ ।
ଶୁଣିଣ କଉଶିକ ହୋଇଲା ସନ୍ତୋଷ ।
ପ୍ରସନ୍ନ ହୋଇ ମୁନି ବୋଇଲା ସ୍ୱର୍ଗେ ବସ । ୯୬୮ ।
ତତକ୍ଷଣେ ରାଜା ପାଇଲା ସର୍ଗପୁରୀ ।
ଯହୁଂ ଆଗ୍ୟା ଦେଲା ବିଶ୍ୱାମିତ୍ର ତପଗୃହୀ । ୯୬୯ ।

ଶୁଣ ହୋ ଶ୍ରୀରାମ ମୁନିର ଚରିତ ।
ସାକ୍ଷାତେ ଧାର୍ମିକ ଯେ ଅଟଇ ପବିତ୍ର । ୯୭୦ ।
ତୋହୋର ଉପର ବଂଶେ ଅମ୍ବରୀଷ ମହୀପତି ।
ଗୁଣ ସମୁଦ୍ରେ ସେ ସ୍ୟେକଇ ଚକ୍ରବର୍ତ୍ତୀ । ୯୭୧ ।
ନରମେଧ ଯାଗ୍ୟ କରିତ ମନ କଲା ।
ଲକ୍ଷଣବନ୍ତ କରି ପୁରୁଷ ଭିଆଇଲା । ୯୭୨ ।
ଘୃତ ଯବ ତିଳ ସମିଧ ସଜକର ।
ମନ୍ତ୍ରଣ ହୋଇଲେ ଯେ ଅଯୋଧ୍ୟା ନରନାଥ । ୯୭୩ ।

Digitized by srujanika@gmail.com

ନୃପତିଗଣମାନେ ମିଳିଲେ ସର୍ବେ ଆସି ।
ଆବର ଅଇଲେ ଯେ ଅନେକ ମହାଋଷି । ୯୭୪ ।
ଯଜ୍ଞ କରନ୍ତେଣ ତାହା ବାସେବ ଜାଣିଲା ।
ଲକ୍ଷଣବନ୍ତ ପୁରୁଷକୁ ହରି ଘେନିଗଲା । ୯୭୫ ।
ବିଗୁର କଲାମନେ ସ୍ୱର୍ଗର ନୃପତି ।
ଯାଗ୍ୟ ସମାପତେ ହୋଇବ ସୁରପତି । ୯୭୬ ।
ଶତେକ ଅଶ୍ୱମେଧ ଅଛଇ ପୂର୍ବେ କରି ।
ଯେତେକ ଭାଳି ଇନ୍ଦ୍ର ଅଇଲାକ ଡରି । ୯୭୭ ।
ଲକ୍ଷଣବନ୍ତ ପୁରୁଷକୁ ହରି ଘେନିଗଲା ।
ରାଜ ପାହିଲା ଅମରୀଷ ନୃପତି ଜାଣିଲା । ୯୭୮ ।
ବୋଇଲାକ ମୋତେ ହୋଇଲା ବିପରୀତ ।
ଯେବେ ପୁଣି ମୁହିଂ ହୋ କରିବି କେମନ୍ତ । ୯୭୯ ।
ଋଷିମାନଙ୍କୁ ରାଜା ପୁଛଇ ବସାଇଂ ।
ଋଷି କହିଲେ ସାହାସ୍ର ବଳ ଦେଖାଇ । ୯୮୦ ।
ଗଲା କଥାକୁ ରାଜ୍ୟେ ନ କରସି ଚନ୍ତା ।
ଖୋଜି ଆଣ ଯେବେ ଲକ୍ଷଣବନ୍ତ ପୁରୁଷ ବଳବନ୍ତା ।୯୮୧।
ଯାଗ୍ୟ ସମାପତ ହେନକର କାର୍ଯ୍ୟ ।
ଯହିଂ ପାଉ ଖୋଜି ଆଣ ମହାରାଜ । ୯୮୨ ।
ଆ ମ୍ଭ ଅଗ୍ନିରେ ଘୃତ ଦେଉଂଥିବୁ ।
ଷୋଇ ହୋମ ପଠନ ନ ଛାଡ଼ିବୁ । ୯୮୩ ।
ଶୁଣିଣ ନୃପବର ବିବାନ ଆତି ହିଂ ।
ଦେଶେ ବିଦେଶେ ଯେ ବୁଲଇ ନୃପସାଇଂ । ୯୮୪ ।
ଅନେକ ଧୂର ଯେ ଭ୍ରମିଣ ରାଜ୍ୟେ ଗଲା ।
ରୁଚିକ ମହାମୁନି ଆଶ୍ରମେ ମିଳିଲା । ୯୮୫ ।
ଲକ୍ଷଣବନ୍ତ ତାର ତିନିପୁତ୍ର ଅଛଇ ।
ଅମରୀଷ ରାଜା ତାହାକଂଇ ପୃଛଇ । ୯୮୬ ।
ନମସ୍କାର କରିଣ ଯେ ପୁଛଇ ନୃପତି ।
କଥାଏକ କହିବି ମୁଂ ଶୁଣ ମହାଯତି । ୯୮୭ ।
ନରମେଧ ଯାଗ୍ୟ ଆରମ୍ଭ ମୁହିଂ କଲି ।
ସକଳ ପଦାର୍ଥ ଆଣିଣ ସମ୍ପାଦିଲି । ୯୮୮ ।
ଲକ୍ଷଣବନ୍ତ ପୁରୁଷକୁ ନେଲାକ କେ ହରି ।
ଯେଣୁ ମଣ୍ଡଳେ ମୁଂ ନ ପାରିଲି ଲୋଡ଼ି । ୯୮୯ ।

Digitized by srujanika@gmail.com

ତୋହ୍ୱାର ଢନପୁତ୍ର ଅଛୁଇ ମୁନାମ୍ବର ।
ଧନ ନେଇ ସ୍ୱେକ ପୁତ୍ର ଦିଅସି ଭୂମ୍ବର । ୯୯୦ ।
ତୋହ୍ୱାର ପୁତ୍ରେ ମୁଦ୍ରା ହେଉ ମୋତେ ଧର୍ମ ।
ନୋହିଲେ ଖଣ୍ଡିତ ମୋର ହୋଇଲା ସ୍ୱେତ୍ରେ କର୍ମ ।୯୯୧।
ଶୁଣିଣ କଶ୍ୟପ ସୁତ ଭାଳଇ ମନେ ମନ ।
ସ୍ୱେହ୍ରକ୍ଷଣି ପାଇବ ମୁଂ ଲକ୍ଷେକ ସୁବର୍ଣ୍ଣ । ୯୯୨ ।
ଦରିଦ୍ର ଦୋଷ ମୋର ଯିବ ଅପହର ।
ଦେବ ପୁତ୍ରେକ ସେ ବୋଇଲା ବଗ୍ଭର । ୯୯୩ ।
ଅମଗ୍ଭଷ ଗ୍ଭଜାକଇ ବୋଇଲାକ ଗୃହ୍ମଂ ।
ଜେଷ୍ଠ ପୁତ୍ର ଗୋଟି ମୁଂ ଦେଇତ ନ ପାରଇ । ୯୯୪ ।
ସ୍ୱେହାକୁ ବହୁତ ସୋଗ ମୋର ଅଛୁ ।
କ୍ଷଣେହେଂ ନ ଦେଖିଲେ ମୁଂ ନ ପାରଇ ମୁର୍ଚ୍ଛି ।୯୯୫।
ସ୍ୱେ ବୋଲ ଶୁଣିଣ ସେ ବୋଲଇ ଋଷିଆଣୀ ।
ସାନ ପୁତ୍ର ମୋର ପ୍ରାଣର କାରେଣୀ । ୯୯୬ ।
ସ୍ୱେହାକଇଂ ମୁର୍ଚ୍ଛି ନ ପାରଇଂ ମୁହ୍ମଂ ।
କୋଡ଼ର ପୁତ୍ର ଗୋଟି କେମନ୍ତେ ଛାଡ଼ିବଇଂ । ୯୯୭ ।
ମାତାପିତାଙ୍କର ସ୍ୱେସନ ବଚନ ପାଇଂ ।
ମଝିଆଂ ପୁତ୍ର ଗୋଟି ସେ ବୋଇଲାକ ଥାଇଂ । ୯୯୮ ।
ଜେଷ୍ଠ ପୁତ୍ରକଇ ଯେବେ ସମ୍ଭାଳିଲେ ତାତ ।
କନେଷ୍ଠ ପୁତ୍ରକଇ ଆବୋରିଲେ ଦେବୀ ମାତ । ୯୯୯ ।
ମୋତେ ଆଉ ରଖନ୍ତା ନୋହିଲେକ କେହି ।
ମୁହ୍ମଂ ଆନେ କସ କରିବି ଜୀଇଂ ଥାଇଂ । ୧୦୦୦ ।

ହେ ଗ୍ଭଜା ଧନ ଦେଇଂ ମୋତେ କିଣ ।
ନରେଖ ହୋଇଂଥିବାର ସେ କେବଣ କାରଣ । ୧ ।
ଶୁଣିଣ ସନ୍ତୋଷ ସେ ହୋଇଲା ନୃପତ୍ତି ।
ପିତାମାତାଙ୍କର ଜାଣିଲ ସନମତ୍ତି । ୨ ।
ଲକ୍ଷେକ ଧନ ଗ୍ଭଜା ଦେଲା ତତକ୍ଷଣ ।
ଶୂନସେଫ କୁମରକୁ ନେଲା ରଥେ ବସାଇଣ । ୩ ।
ଧାଇଁକାରେ ଲେଉଟି ଚଳିଲା ମହୀପତି ।
ପୁଷ୍କର ତୀର୍ଥେ ପ୍ରବେଶ ହୋଇଲାକ ଧାଇଁ । ୪ ।
ସ୍ନାହାନ କଲେ ତହିଂ ନୃପପୁତ୍ର ସହିତେ ।
ସାଇଂଣ ମିଳିଲେ ସେ ବିଶ୍ୱାମିତ୍ର ଅଗ୍ରତେ । ୫ ।

Digitized by srujanika@gmail.com

ନମସ୍କାର କରଣ ରାଜା ଉଭାହୋଇ ।
ଶୃନସେଫ ଋଷିବର ଚରଣେ ଶରଣ ପଶଇ । ୬ ।
ହେ ବିଶ୍ୱାମିତ୍ର ମୋତେ ସେ ରକ୍ଷାକର ।
ମୋହୋରେଣ ନରମେଧ ଯାଗ କରିବେ ନୃପବର ।୭।
ପିତା ମାତା ବିକଲେ ଧନ ଘେନ ।
ପ୍ରାଣଦାନ ମୋତେ ଦେସି ମହାମୁନ । ୮ ।
ଶୁଣି ବିଶ୍ୱାମିତ୍ର ରଖିବ ବୋଇଲେ ।
ଅମରୀଷ ରାଜା ଶୁଣି ବିସ୍ମୟେ ହୋଇଲେ । ୯ ।
ଶୁନସେଫ ବୋଇଲା ତୁ ନ ଭାଳ ନୃପତ ।
ମୋତେ ଯେବେ ପ୍ରାଣ ଦେଲକ ଏହୁ ଯତ । ୧୦ ।
ତୋତେ ପ୍ରତକାର କରିବ ସ୍ୱେ ମୁନ ।
ପିତା ମାତା ମୋତେ ବିକଲେ ଧନ ଘେନ । ୧୧ ।
ଛନକୁଳ ବିଶୁଦ୍ଧ କରିବ ସିନା ମୁହିଂ ।
ନୋହିଲେଣ ପ୍ରାଣ ମୁଂ ରଖିବ କସ ପାଇଂ । ୧୨ ।
ବିଶ୍ୱାମିତ୍ରକୁ ରାହିଂ ସେ ବୋଲଇ କୁମର ।
ମୋତେ ଯେବେ ପ୍ରାଣଦାନ ଦେଲୁ ମୁନମ୍ବର । ୧୩ ।
ଲକ୍ଷେକ ସୁବର୍ଣ୍ଣ ଦେଲା ଅମରୀଷ ରାଏ ।
ଋଣୀ ହୋଇବେକ ମୋହୋର ବାପମାଏ । ୧୪ ।
ପିଅର ଜନମରେ ହୋଇବେ ଦୋରେହା ।
କାରଣ ଯତ ସ୍ୱେଥ ନ ପାଇବେ ନରନାହା । ୧୫ ।
ମୁନ ବୋଇଲେ ତୁ ଶୁଣ ଶୂନସେଫ ।
ଆମ୍ଭେ ଯାହା ବୋଇଲୁ ନୁହଇ ସତ୍ୟଭଙ୍ଗ । ୧୬ ।
ତୋହୋର ନମନ୍ତେ ମୁଂ ଦେବ ସ୍ୱେକ ପୁତ୍ର ।
ଅମରୀଷ ରଜାକୁ ପ୍ରାପତ ହୋଇବ ହୋତ୍ର । ୧୭ ।
ସ୍ୱେତେ ବିଗ୍ରହ କହଶିକ ନଜ ପୁତ୍ର ରାଇ ।
କତରେ ବସାଇଂଣ ବିଶ୍ୱାସ କଥା କହିଂ । ୧୮ ।
ଶୁଣସି ନନ୍ଦନକୁ ମୋହୋର ସ୍ୱେ କଥା ।
ସ୍ୱେସେ ଅମରୀଷ ଅଯୁଧା ମହାରଥୀ । ୧୯ ।
ଋଷିର ପୁତ୍ର ଯେ ନେଉଅଛୁ କିଣି ।
ନରମେଧ ଯାଗ୍ୟ ସ୍ୱେ କରିବ ନୃପମଣି । ୨୦ ।
ଶୃନସେଫକଇ ଘେନ ଯାଉଅଛୁ ।
ମୋତେ ଦେଖିଣ ଶରଣ ପଶିଲା ତୁଚକ ମୁନର ବଚ୍ଛ ।୨୧।

Digitized by srujanika@gmail.com

ସତ୍ୟ କରେଣ ମୁଂ ରଖିଲଇଂ ସ୍ନେହା ।
କେମନ୍ତେ ଯାଗ ସ୍ୱେ କରନ ନରନାହା । ୨୨ ।
ସ୍ୱେ ମୋହୋର ଧର୍ମ ରଖିବାର ପାଇଂ ।
ଜଣକର ଦେହ ଯଗୋଂ ଦିଅ ନେଇ । ୨୩ ।
ଯଦି ବାବୁ ତୁମ୍ଭେ ମୋହୋର ବହ ହିତ ।
ଦେହ ଦେଇଂଣ ରଖ ମୋହୋର ସତ୍ୟ । ୨୪ ।
ଶୁଣିଣ ପୋସ୍ୟେ ବୋଇଲେ ହସିକର ।
ପରକଇ ରଖି ଆପଣା ପୁଅ ମାର । ୨୫ ।
ବାଇଙ୍କର କଥା ସେ ଯେ ଅଟଇ ସ୍ୱେମନ୍ତ ।
ସ୍ୱେ ବୋଲ କମ୍ପା ତୁ ବୋଲୁ ସିଦ୍ଧାନ୍ତ । ୨୬ ।
ଆମ୍ଭେ କମ୍ପାଇ ପରପାଇଂ ଦେହ ଦେବୁ ।
କେବଣ କାରଣେ ତାତ ଦେହ ହରାଇବୁ । ୨୭ ।
ଶୁଣିଣ ବିଶ୍ୱାମିତ୍ର ବିସ୍ମୟେ ହୋଇଲ ।
ପୁତ୍ରଙ୍କର ଉତ୍ତରଂ ଯନ୍ତୁଂ କଥା ନ ରହିଲ । ୨୮ ।
ଶୁନସେଫଙ୍କଇ ବୋଇଲକ ରାଇଂ ।
ପାସି ରାଜା ସଙ୍ଗେ ତୋତେ କଛୁ ଭୟେ ନାହିଂ । ୨୯ ।
ସ୍ୱେ ମନ୍ତ୍ରଂ ଗୋଟି ତୁ ଜପିବୁ ସ୍ୱେକ ଧ୍ୟାନେ ।
ମହାମନ୍ତ୍ର କହିଲେ ଋଷି କୁମରର କର୍ଣ୍ଣେ । ୩୦ ।
ଉର୍ଦ୍ଧେ ଚରଣ କର ସ୍ନେହା ଜପୁଥିବୁ ।
ପ୍ରୋକ୍ଷଣି ବେଳେ ତୁ ସ୍ନେହା ସୁମରିବୁ । ୩୧ ।
ବାସେବ ରଖିବ ଯେ ତୋହୋର ନିଜ ପ୍ରାଣ ।
ନୋହିଲେ ନ ଥିବ ଯେ ତାହାର ଇନ୍ଦ୍ରପଣ । ୩୨ ।
ସ୍ୱେତେ ବୋଲ ମୁନି ଅମରୀଷକଇ ଗୃହିଂ ।
ସ୍ୱେ ଲକ୍ଷଣବନ୍ତ ପୁରୁଷକୁ ଲେସି ନରହାଇଂ । ୩୩ ।
କର ତୋର ଯାଗ ପ୍ରାପତ ତୋତେ ହୋଉ ।
ସ୍ୱେ ମୋହୋର ଜୀବଛ ତୋହୋର ଠାବେ ରହୁ । ୩୪ ।
ବିଶ୍ୱାମିତ୍ରଙ୍କର ସ୍ୱେସନ ବଚନ ଶୁଣି ।
ଶୁନସେଫକଇ ଘେନଗଲ ଅମରୀଷ ନୃପମଣି । ୩୫ ।
ଅଯୋଧ୍ୟା ପୁରେ ଯାଇ ହୋଇଲ ପ୍ରବେଶ ।
ଦେଖିଲ ନଗ୍ର ଯେ ମଙ୍ଗଳ ଚଉପାଶ । ୩୬ ।
ଅନେକ ବ୍ରାହ୍ମଣ ମିଳ ଅଗ୍ନିରେ ଦିଅନ୍ତ ହୋମ ।
ଅମରୀଷ ରାଜା ପ୍ରବେଶ ନିଜ ଗ୍ରାମ । ୩୭ ।

Digitized by srujanika@gmail.com

ନୃପତିଙ୍କ ଦେଖି ହରଷ ସର୍ବଜନ ।
ଲକ୍ଷ୍ମଣବନ୍ତ ପୁରୁଷ ଘେନି ଆଣିଲା ରାଜନ । ୩୮ ।
ମନ୍ତ୍ରୀ ଅମାତ୍ୟ ମିଳିଲେ ସକଳ ।
ବିଚାର କରଇ ସେ ଅଯୋଧ୍ୟା ମହୀପାଳ । ୩୯ ।
ଶତଘାନ୍ତ ବୈଶୁନ୍ୟ ହୁତୁଜାଳ ଯେଥ ।
ଯେବେ ଯେହା ରକ୍ଷଣ କରିବା ଯେହୁମତ । ୪୦ ।
ଶୁଣିଣ ମନ୍ତ୍ରୀଗଣେ ଉପାୟ ବୁଦ୍ଧି କଲେ ।
ପୁଷ୍କରଣୀ ଯୂପଦଣ୍ଡିରେ ବାନ୍ଧିଲେ । ୪୧ ।
କୂଳେଣ ଲୋକ ଜଗଛନ୍ତି ଚହୁଁକତ ।
ଯାଗ୍ୟରେ ବ୍ରତୀଯେ କଲେକ ନୃପତି । ୪୨ ।
ଯବ ତିଳ ଘୃତ ଯେ ସମିଧ ଅପାର ।
ସାଧୁ ସାଧୁ ଧ୍ୱନି ଶୁଭିଲା ତିନିପୁର । ୪୩ ।
ଯାଗ୍ୟ ସମାପତ ବେଳ ଆସି ହୋଇଂ ।
ମାର୍ଜଣା କରିଣ ଆଣିଲା ରୁଚିକ ମୁନିର ତନଇ । ୪୪ ।
ପଶୁ ପ୍ରୋକ୍ଷୋଣି କରନ୍ତି ହୋମ ବେଢ଼ି ।
କଉଶିକ କହିଲା ମନ୍ତ୍ର ଯେ ଶୁନଃଶେଫ ପଢ଼ି । ୪୫ ।
ଇନ୍ଦ୍ର ଇତି ସ୍ୱାହା ବୋଲନ୍ତେଣ ଯତି ।
ଦେବତାଗଣ ଘେନି ମିଳିଲା ସୁରପତି । ୪୬ ।
ରାଜାକଇ ପ୍ରଶଂସା ଯେ କଲାକ ବଜ୍ରଧର ।
ପ୍ରସନ୍ନ କରାଇ ମାଗିଲା କୁମର । ୪୭ ।
ବୋଇଲା ତାହାକୁ ତୁ ନ କର ପ୍ରାଣନାଶ ।
ସମସ୍ତ ଦେବତାଯେ ହୋଇଲୁ ଆମ୍ଭେ ତୋଷ । ୪୮ ।
ଯେ ପ୍ରାଣୀର ଦେହ ଦେସି ମୋତେ ଦାନ ।
ଯାଗ୍ୟର ଫଳରୁ ପାଇ ତୁ ରାଜନ । ୪୯ ।
ଶୁଣିଣ ନୃପତି ସନ୍ତୋଷ ମନ ହୋଇ ।
ଋଷିର ପୁତ୍ରକୁ ଯେ ଦେଲା ମୁକୁଳାଇ । ୫୦ ।
ତକ୍ଷଣେ ଶୁନଃଶେଫ ତହୁଁ ଚଳିଗଲା ।
ପିତାମାତାଙ୍କ ସନ୍ନିଧେ ଯାଇଂ ମିଳିଲା । ୫୧ ।
ଦେଖି ପଚାରିଲେ ପିଅର ଜନନୀ ।
ପୁତ୍ର ବୋଇଲା ରଖିଲେ ସହସ୍ର ଯୋନି । ୫୨ ।
ବିଶ୍ୱାମିତ୍ରଙ୍କର ଉପାୟେ ଅଛିଲି ।
ତିନି କୁଳ ଦୋଷ ବିଶୁଦ୍ଧି ମୁହିଂ କଲି । ୫୩ ।

Digitized by srujanika@gmail.com

ଶୁଣିଣ ସନ୍ତୋଷ ଯେ ହୋଇଲେ ତାତମାତ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ରଘୁନାଥ । ୫୪ ।
ଅମ୍ବରୀଷ ରଜା ଯଜ୍ଞ ଇନ୍ଦ୍ର ଚୋରି କଲା ।
ତୋଷ ହୋଇ ସୁରପତି ସ୍ୱର୍ଗକଇ ଗଲା । ୫୫ ।
ଅମ୍ବରୀଷ ରଜାକଇ ଧର୍ମ ପରାପତ ।
ବ୍ରାହ୍ମଣେ ଦକ୍ଷିଣା ସେ ଦେଲକ ବହୁତ । ୫୬ ।
ଯାଗ୍ୟ ସାରଣ ସେ ଗଲେ ସକଳ ରାଏ ।
ତପୀ ସନ୍ୟାସୀ ନିଜ ପୁରେ ଯାଏ । ୫୭ ।
ସତ୍ୟାନନ୍ଦ ବୋଲଇ ଶୁଣ ରଘୁପତି ।
ପୁଷ୍କର ତୀର୍ଥେ କଉଶିକ ଥାନ୍ତି । ୫୮ ।
ସହସ୍ରେ ବରଷ ସେ ତହିଁ ତପ କଲା ।
ଦେବତାନ୍ତ ଘେନ ବିଧାତା ଅଇଲା । ୫୯ ।
ବର ମାଗ ବୋଲି ଯେ ବୋଇଲେ ପିତାମହ ।
କିମ୍ପାଇ ଘୋର ତପେ କକର୍ଥେ ଅଛୁ ଦେହ । ୬୦ ।
ବିଶ୍ୱାମିତ୍ର ବୋଲଇ ମୁଁ ହୋଇବି ବ୍ରହ୍ମଋଷି ।
ପ୍ରସନ୍ନ ହୋଇଲୁ ଯେବେ ବର ମୋତେ ଦେସି । ୬୧ ।
ସେ ହୋଇ ବୋଲି ଯେ ବୋଇଲେ ବିଧାତା ।
ଯେ ଯାହାପୁରେ ବିଜେ କଲେ ଦେବତା । ୬୨ ।
ଏଥୁ ଅନନ୍ତରେ କଉଶିକ ଋଷି ।
ଅହନ୍ତା ମନେ ଧରି ତପ କରଇ ବସି । ୬୩ ।
ଷଡ ଋତୁ ବର୍ଷାରେ ସହଇ ଶୋଷ ଭୋଖ ।
ଦେବେ ଡରଣ ସେ କହନ୍ତି ଚଉମୁଖ । ୬୪ ।
ଶୁଣି ପିତାମହ ଆମ୍ଭର ଏହେ ବାଣୀ ।
କଉଶିକ ତପ ଅଇଂଲୁ ଅମ୍ଭେ ଜାଣି । ୬୫ ।
ଅତି ଦୁସ୍ତର କଲେତ ତନୁ ଦଗଧଇ ।
ଧରିପାମ୍ଭେ ଥନ୍ତିଇ ସେ ଶୀତେଣ ଜଳେ ଆଗ । ୬୬ ।
ଅନ୍ନ ପାଣି ଆଧାର କିଛି ହିଁ ତାର ନାହିଁ ।
କରପି କାରଣ ନାଥ ତପ ସେ ରୁହାଇ । ୬୭ ।
ନୋହିଲେଣ ସେ ଯେ ହୋଇବ ସୁରପ୍ରଭୁ ।
ଅମ୍ଭେ ସୁରଗଣେ ସମୋତେ ନାଶଯିବୁ । ୬୮ ।
ଇନ୍ଦ୍ରାଦି ଦେବତାଙ୍କର ଏମନ ବଚନ ଶୁଣି ।
ମେନକାକୁ ରାଏ ବୋଇଲେ କୁଶପାଣି । ୬୯ ।

Digitized by srujanika@gmail.com

ତୁ ଗୋ ସୁନ୍ଦେଶ୍ୱ ସ୍ୱେଦ୍ଧଷଣି ଯିବୁ ।
ବିଶ୍ୱାମିତ୍ର ମୁନିର ତପ ଭଙ୍ଗ କରିବୁ । ୭୦ ।
ତେବେ ସେ ସୁସ୍ଥ ହେବେ ଦେବାସୁର ।
ଆମ୍ଭ ଛଳେ ସୁନ୍ଦେଶ୍ୱ ଯେ ସ୍ୱେ କାର୍ଯ୍ୟ ତୁ କର । ୭୧ ।
ବେନି କର ଯୋଡ଼ି ବୋଲଇ ମେନକା ।
ଅଗୋଚର ତପ ସେ କରଇ ମୁନିସ୍ୱେକା । ୭୨ ।
ମୁନ୍ହିଂକ ବର୍ଜନ ହୋଇବ କୁଶଧର ।
ସର୍ବଦା କୋପୀ ସେ ଅଟଇ ମୁନିବର । ୭୩ ।
କାମବଶ୍ୟ ଯାଇ ଯାହାର କୋପଭର ।
ମୁଂ ଗ୍ରୁର ମାତର ବର୍ଜନ କ ପ୍ରକାର । ୭୪ ।
କୋପେ ଗୃହିଂ ସେ ଯେବେ ପାଷାଣ ଯାଇ ଜଳି ।
ରାଜା ହୋଇ ତପେ ସେ ବ୍ରାହ୍ମଣ ବୋଲାଇ । ୭୫ ।
ବଶିଷ୍ଠ ଋଷି ସଙ୍ଗେ ଯାହାର ଯେ ବାଦ ।
ହେଲେ ଘେନିଲା ସେ ହରିଚନ୍ଦନ ସମ୍ପଦ । ୭୬ ।
ତ୍ରିଶଙ୍କୁର ଗୃଣ୍ଡାଳକୁ ସ୍ୱର୍ଗେ ବସାଇଲା ।
ପ୍ରତ୍ୟଗ୍ୟାଂ କରି ନବ ସୃଷ୍ଟି ଭିଆଇଲା । ୭୭ ।
ମୋତେ ଯେ ଆଗ୍ୟାଂ ଦେଲ ତୁଣ୍ଡ ରାଇ ।
ଆବର କ ସ୍ୱେ ଦେହଧିବ ଜୀବ ପାଇ । ୭୮ ।
କାମ ଯେହ୍ନେ ହର ନୟନେ ଧଂସ ଗଲା ।
ସେ ସଯୋଗ ଆସି ମୋତେ କଷ୍ଟଏ ହୋଇଲା । ୭୯ ।
ନ ଗଲେ କୋପ କରିବେ ଦେବଗଣ ।
ଗଲେତ କଷ୍ଟଏ ମୋର ପାଇନାହିଂ ପ୍ରାଣ । ୮୦ ।
ସ୍ୱେକା ଯିବଇ କ ସଙ୍ଗେଣ ଲେକ ଯିବ ।
ମେନକା ବୋଲ ଶୁଣି ବୋଲଇ ଦାଇବ । ୮୧ ।
ବସନ୍ତ ମଳୟ ପବନ ସ୍ୱେ ଯାନ୍ତୁ ।
କାମଦେବ ସହିତେ ଉଚ୍ଚାଟ କରନ୍ତୁ । ୮୨ ।
ପାର ଯେମନ୍ତେ ତୁମ୍ଭେ ଦେବ କାର୍ଯ୍ୟକର ।
ପ୍ରବୋଧ କରିଣ ଯେ କହିଲେ କୁଶଧର । ୮୩ ।
ଦେବାଧିଦେବଙ୍କର ଆଜ୍ଞାଂ ଶିରେ ଘେନି ।
ବସନ୍ତ ପବନ ମୂଳେ ଯେ ଚଳିଲେ କାମେନୀ । ୮୪ ।
ପୁଷ୍କର ତୀର୍ଥେଣ ସେ ପ୍ରବେଶ ହୋନ୍ତି ଯାଇ ।
ବସନ୍ତ ପ୍ରବେଶେ ବନ ପଲ୍ଲବଇ । ୮୫ ।

ମଳୟ ପବନ ଯେ ବହଇ ଧୀରେ ଧୀରେ ।
କାମଦେବ ବଜାଏ କଳ୍ପକ ଶରୀରେ । ୮୬ ।
ଗୀତ୍ୟଧ୍ୱୁତ ଅଛଇ ଯହିଁ ତପେ ବସି ।
ମେନକା ପରବେଶ ହୋଇଲା ତହିଁ ଆସି । ୮୭ ।
ପୁଷ୍କର ତୀର୍ଥେ ପଶି କରଇ ସେ ସ୍ନାହାନ ।
ସେହିସନ ସମୟେ ମୁନିର ଫିଟିଗଲା ଧ୍ୟାନ । ୮୮ ।
ଦେଖିଲା ସୁନ୍ଦେଶ୍ରୀ ଯେ ଜଳତଟେ ଅଛୁ ।
ଶରୀରେ କୁଙ୍କୁମ ଲେପଇ ମୃଗାକ୍ଷୀ । ୮୯ ।
ଝିନବାସ ଫୁଟି ଦିଶଇ ସ୍ତନ ଜଙ୍ଘ ।
ଦେଖିଣ ମୁନିଙ୍କ ଯେ ପିଡ଼ିଲା ଅନଙ୍ଗ । ୯୦ ।
ସ୍ୱଭାବେ ମେନକା ଯେ ସର୍ଗର ଅପକ୍ଷରୀ ।
ଯତନେ ଆସିଅଛୁ ମୁନିର ମନ ହରି । ୯୧ ।
ଚକୋର ଗୁହାଣୀ ଯେ ଗୃହିଁଲା ବକ୍ରଦୃଷ୍ଟି ।
ଋଷିର ପ୍ରାଣ କି ଗଲା ହୁଆ ଫୁଟି । ୯୨ ।
କାଖ ଚେନ୍ଦଣ ଯେ ଲଗାଇ ହଲଦୀ ।
ବିଶ୍ୱାମିତ୍ରର ମନ ମଦନ ଅନଳେ ଦଗଧି । ୯୩ ।
ମନେ ବିଗୁଚଇ ସାଧୁ ଏ ସୁନ୍ଦେଶ୍ରୀ ।
ତିନ ଭୁବନେ ଏହାକୁ ନାହିଁ ପଟାନ୍ତର । ୯୪ ।
କେବଣ କାରଣେ ଯେ ପ୍ରବେଶ ଆସି ଏଥ ।
ପଗୁରିବି ବୋଲି ଉଠିଲା ତପୋବନ୍ତ । ୯୫ ।
ସ୍ନାହାନ ସାରଣ କଲେଣ ଉଭା ନାରୀ ।
ଭିଡ଼ିଣ ପିନ୍ଧିଲା ସେ ସରୁଝିନ ଶାଢ଼ୀ । ୯୬ ।
କେଶ ସଜାଡ଼ଇ ଯେ ଅଳଙ୍କାର ଲାଇ ।
ଚରଣ ଅଙ୍ଗୁଳିରେ ଅଳତା ରଞ୍ଜିଂଇ । ୯୭ ।
ଶିରରେ ସୁନ୍ଦର ଯେ କସ୍ତୁରୀର ଟିକା ।
କଉଶିକ ପୁଚ୍ଛଇ ଶୁଣରେ ବନିତା । ୯୮ ।
କାହିଁ ଅଇଲୁ କେ ତୋହୋର ପିତା ।
କେବଣ ଦେଶରୁ ଯେ ଅଇଲ କେ ତୋହୋର ମାତା ।୯୯।
କିସ ନାମ ଅଟଇ ତୋହୋର କେ ପତି ।
ସରୂପ କରଣ କହରେ ଯୁବତୀ । ୧୦୦ ।
କନ୍ୟା ବୋଇଲା ମୁଁ ସ୍ୱର୍ଗର ଅପକ୍ଷରୀ ।
ମେନକା ନାମ ଯେ ଅଟଇ ମୋହର । ୧୦୧ ।

Digitized by srujanika@gmail.com

ପବନ ତୀର୍ଥ ବୋଲି ବାରତା ପାଇଲି ।
ସ୍ନାହାନ କରଣେ ମୁଁ ଏଥିକୁ ଅଇଲି । ୧୦୨ ।
ମୁନି ବୋଇଲେ ତୋତେ ଦେଖି ହୋଇଲି ମୁଁ ବାଇ ।
ତୋହୋର ରୂପ ଦେଖି ଚିତ୍ତ ମୋ ଧାରଣ ନ ଯାଇ ।୧୦୩।
ସୁରଙ୍ଗ ଅଧରେ ମୋତେ ଚୁମ୍ବନ ବେଗେ ଦେସି ।
ହୃଦରେ ମୋର ଦୁଇ କୁଚ ଲଗାଅସି । ୧୦୪ ।
ବାହା ବାହା ଭିଡ଼ି ମୋତେ ଗୋ କୋଳକର ।
ମଦନ ଜଳେ ବୁଡ଼ିଲି ବାରେ ଧର ଉଦ୍ଧର । ୧୦୫ ।
ଏତେ ବୋଲି ମୁନି କାମଭରେ ବାଇ ।
ମେନକାକୁ ବେଗେ କୋଳକଲା ଯାଇ । ୧୦୬ ।
ଦେଖିଣ ସୁରଗଣେ ହୋଇଲେ ଆନନ୍ଦ ।
ସ୍ୱର୍ଗେ ଉଚ୍ଛବ କରାଇଲା ଇନ୍ଦ୍ର । ୧୦୭ ।
ସେଥୁ ଅନନ୍ତରେ ବିଶ୍ୱାମିତ୍ର ଋଷି ।
ମେନକାକୁ ଘେନି ମଢ଼ିଆରେ ପଶି । ୧୦୮ ।
କଳକ ରମଣ ଯେ ବିବିଧ ଗଢ଼କର ।
ପୂର୍ବର ଭୋଗ ବିଳାସ ମନେ ଧର । ୧୦୯ ।
ଦୁର୍ଗମ ବନେ ପଶି କରଇ ସୁରତ ।
ପର୍ବତ ଶିଖରେ ଯେ କାହିଂ ନଦୀକତ । ୧୧୦ ।
ବାର ବରଷ ମେନକାକୁ ଶୃଙ୍ଗାରେ ବଶ କଲା ।
ମଦନ ଭୋଳେ ଏକ ଦିବସ ମଣିଲା । ୧୧୧ ।
କାଳେ ଦୋହିତାଏ ପ୍ରସବିଲା ନାରୀ ।
ଶକୁନ୍ତଳା ନାମ ଦେଲେକ ତାହାର । ୧୧୨ ।
ଦୋହିତା ପ୍ରସବ ମେନକା ସ୍ୱର୍ଗକଇ ଗଲା ।
କାଳେ ମୁନି ତାହାକୁ ଭୁଆକଇ ଦେଲା । ୧୧୩ ।
ଏଥୁଅନନ୍ତରେ କଥା ଶୁଣ ରଘୁପତି ।
ପୁଣି ହିଂ ତପ କଲା ବିଶ୍ୱାମିତ୍ର ଯତି । ୧୧୪ ।
ହେମବନ୍ତ ସନ୍ନିଧେ କଉଶିକ ନଦୀ ତୀରେ ।
ଏକାନ୍ତ ତପ କରଇ ସେ ବନ ଘୋରେ । ୧୧୫ ।
ଏମନ୍ତେଣ ସହସ୍ରେ ବରଷ ଭୋଗକଲା ।
ଜାଣିଣ ସ୍ୱର୍ଗେ ଇନ୍ଦ୍ର ମହାଭଏ କଲା । ୧୧୬ ।
ଦେବେ ଡରିଲେ ଅମରପୁରେ ଥାଇ ।
ବ୍ରହ୍ମା ଆଗରେ ସେ କହିଲେ ଦେବେ ଯାଇ । ୧୧୭ ।

Digitized by srujanika@gmail.com

କ୍ଷେ ଦେବ ତପ ପୁଣି ସେ କରଇ ଗାଧିସୁତ ।
ନଷ୍ଟଏ ସଂସାର ସେ କରିବାକ ହିତ । ୧୧୮ ।
ଚାଲ ସ୍ୱେବେ ପ୍ରବୋଧ କରିବା ତାକୁ ଯାଇ ।
ବ୍ରହ୍ମା ବୋଇଲେ ସେ ଦେବତାନ୍ତ ଚାହିଁ ।୧୧୯ ।
ଚାଲ ସମସ୍ତେ କରିବା ଯାଇ ପୃଚ୍ଛା ।
ବ୍ରହ୍ମଋଷି ହୋଇବାକୁ ସେ କରୁଅଛି ବାଞ୍ଛା । ୧୨୦ ।
ଏତେ ବୋଲି ଧାତା ସହିତେ ଦେବଗଣ ।
ବିଶ୍ୱାମିତ୍ର ସନ୍ନିଧେ ମିଳିଲେ ତତକ୍ଷଣ । ୧୨୧ ।
ବିଧାତା ବୋଇଲେ ମାଗସି ତୁ ବର ।
ଯେ ଅବା ବାଞ୍ଛା ଅଛଇ ମନେ ହୋ ତୋହୋର । ୧୨୨ ।
ବେଦପଥ ମୁଖ ଏସନେକ ଶୁଣି ।
ବିଶ୍ୱାମିତ୍ର ବୋଲନ୍ତି ବ୍ରହ୍ମାଙ୍କଇ ବାଣୀ । ୧୨୩ ।
ବ୍ରହ୍ମଋଷି ବୋଇଲେ ନ ଛାଡ଼ଇ ତପ ।
ପାରୁ ଯେବେ କାରଣ କର ଜଗତର ବାପ । ୧୨୪ ।
ଧାତା ବୋଇଲେ ତୁ ଛାଡ଼ ଲୋଭ ମୋହ ।
କାମ କ୍ରୋଧ ଛାଡ଼ିଲେ ତୁ ବ୍ରହ୍ମଋଷି ହୁଅ । ୧୨୫ ।
ସ୍ୱେସନେକ ବୋଲିଣ ଗଲେ ସର୍ବସୁର ।
ଗାଧିସୁତ ମନେ କରନ୍ତି ବିଚାର । ୧୨୬ ।
ତପ ମୋହର କେବେ ନୋହିଲାକ ସିଧି ।
ନଷ୍ଟଏ ଅହଲ୍ୟା ମୋତେ କଲେ କବ ବୁଧି । ୧୨୭ ।
ଏତେ ବୋଲି ପୁଣ ଉପରକୁ ଚାହିଁ ।
ପୁଣି ହିଂ ତପକଲା ବସ୍ଥ୍ୱଏ ମୁଖ ହୋଇ । ୧୨୮ ।
ଇନ୍ଦ୍ର ବୋଇଲେ ରମ୍ଭାକଇ ଚାହିଁ ।
ବିଶ୍ୱାମିତ୍ର ତପ ଭଗ୍ନ କର ଯାଇ । ୧୨୯ ।
ବୋଲଇ ରମ୍ଭା ତୁ ଶୁଣ ସୁରସାଇଁ ।
ବିଶ୍ୱାମିତ୍ର ତପ ଗରୁତର କରଇ । ୧୩୦ ।
ଦେଖିଲେଣ ଦାହ୍ନ ହୋଇବ ମୋର ଦେହ ।
ବେଳେକ ରକ୍ଷା କରିପାରିବ କେ କୁହ । ୧୩୧ ।
ଇନ୍ଦ୍ର ବୋଇଲ ମୁଁ କୋକିଳ ହୋଇଥିବ ।
ମଦନ ଘେନିଣ ତୋହୋର ତୁଲେ ଯିବ । ୧୩୨ ।
ଯନ୍ତ୍ର ବଜାଇଣ ଗାଇବୁ ତୁ ଗୀତ ।
କ୍ଷଣେକେ ମୋହିବାତ ବିଶ୍ୱାମିତ୍ର ଚିତ୍ତ । ୧୩୩ ।

Digitized by srujanika@gmail.com

ମଦନ ବନ୍ଧିବ ଯେ ପଞ୍ଚ ବାଣ ଘେନି ।
କୋକିଳ ହୋଇଣ ମୁଂ କରିବ ମୃଦୁବାଣୀ । ୧୩୪ ।
ଏତେ ବୋଲି ଆଜ୍ଞାସାର ହୋଇଲା ସୁରପତି ।
ମଦନକୁ ଘେନିଣ ସଙ୍ଗେ ସେ ଆସନ୍ତି । ୧୩୫ ।
ଦେବଙ୍କର ଡରେ ସେ ଗଲା ଯନ୍ତ୍ରବାଇ ।
ରମ୍ଭା ସୁନ୍ଦରୀର ଯାଇତ ମନ ନାହିଂ । ୧୩୬ ।
ଋଷିର ତପସ୍ଥାନେ ହୋଇଲା ପରବେଶ ।
ବନ ପଲ୍ଲବିଲା ହୋଇଲା ମଧୁମାସ । ୧୩୭ ।
ମଦନ ଆରମ୍ଭିଲା ହବ ଭାବ କାଏ ।
ଯେସନ ସମୟେ ଯେ ରମ୍ଭା ଆସି ହୋଏ । ୧୩୮ ।
କୋକିଳ ରୂପ ଧଇଲେ ବଜ୍ରଧର ।
କୁହୁ କୁହୁ ରବ କରଇ ଉଞ୍ଚ ସ୍ୱର । ୧୩୯ ।
ବିଶ୍ୱାମିତ୍ର ଯୋଗ ଲଏ ଏକ ଚିତ୍ତ ।
ଊର୍ଦ୍ଧବାହୁ ହୋଇ ଉର୍ଦ୍ଧ୍ୱ ଗାଧି ସୁତ । ୧୪୦ ।
ରମ୍ଭା ଗାୟନ କରଇ ଯନ୍ତ୍ରବାଇ ।
ବିଶ୍ୱାମିତ୍ରର ଶ୍ରବଣେ ଶବଦ ସମ୍ଭାଇ । ୧୪୧ ।
ଉନ୍ମିଲ ନୟନେ ଦେଲା ମୁନି ଦୃଷ୍ଟି ।
ଆଗେ ଉଭା ହୋଇଛି ବଧୂକ ପୃଷ୍ଠଓଷ୍ଠୀ । ୧୪୨ ।
ମେନକା ପରାଏ ପଚ୍ଚରଇ ଋଷି ।
ତୁ ମୋହର ରମଣୀ ଅଟୁ ଶୁଭ୍ର କେଶୀ । ୧୪୩ ।
ସୁନ୍ଦରୀ ବୋଇଲା ମୁଂ ନୁହଇ ମେନକା ।
ରମ୍ଭା ନାମ ମୋର ସ୍ୱର୍ଗର ନାଏକା । ୧୪୪ ।
ଅପସରା ଶ୍ରେଷ୍ଠ ବୋଲି ମୋତେ ଲେଖି ।
ସ୍ୱର୍ଗରୁ ଅଇଲି ମୁଂ ତୋହୋ'ର ରୂପ ଦେଖି । ୧୪୫ ।
ସେବା କରିଥିବି ଯେ ତୋହୋର ପାଶ ।
ଶୁଣି କୋପକଲା ଗାଧିରାଏ ସୁତ । ୧୪୬ ।
କମ୍ପା ତୁ ଅଇଲୁ କେଉଁଣ ଗୁଣ ପାଇଂ ।
ଜାଣିଲି ଦେବେ ତୋତେ ଅଛନ୍ତି ପଠିଆଇ । ୧୪୭ ।
ଏ ମୋହର ତପ ନାଶ ତୁମେ ଆସ ।
ଅନଳ ନୟନେ ତୋତେ କରନ୍ତି ଧ୍ୱଂସ । ୧୪୮ ।
ସ୍ତ୍ରୀ ଯୋନ ବୋଲି ଆଜ ପାଇଲୁ ତୁ ପ୍ରାଣ ।
ଯାଅସି ସୁନ୍ଦରୀ ତୁ ହୁଅସି ପାଷାଣ । ୧୪୯ ।

Digitized by srujanika@gmail.com

ଶୁଣିଣ ରମ୍ଭା ଯେ କମ୍ପାଇ ଥରହର ।
ହେ ମୁନି ମୋତେ ତୁ କରସି ପ୍ରତିକାର । ୧୫୦ ।
ଋଷି ବୋଇଲେ ଯେ ଅପକ୍ଷୀଣ ଶୁଣ ।
ଏହିକ୍ଷଣି ମୁକତି ତୁ ପାଇବୁ ଆଉ କାହିଁ । ୧୫୧ ।
ଯେତେକାଳେ ମୁହିଂ ହୋଇବ ବ୍ରହ୍ମଋଷି ।
ସେ କାଳେ କାରଣ ପାଇବୁ ଶୁଭ୍ରକେଶୀ । ୧୫୨ ।
ସନ୍ତୁ କଉଶିକ ବୋଇଲେ ଏ ବାଣୀ ।
ତତକ୍ଷଣେ ପାଷାଣ ହୋଇଲେ ତରୁଣୀ । ୧୫୩ ।
ଦେଖି ପଳାଇଲେ ଇନ୍ଦ୍ର କାମଦେବ ।
ଜାଣିଲେ ମହାମୁନି ଆମ୍ଭଙ୍କୁ ଶାପ ଦେବ । ୧୫୪ ।
ଏତେ ବସ୍ତୁରେ ଗଲେ ଦେବ ଜନ ।
ବ୍ରହ୍ମାଙ୍କୁ କହେ ଯାଇ ସହସ୍ରଲୋଚନ । ୧୫୫ ।
ଧର୍ମେଣ ଅଇଲୁ ଆମ୍ଭେ ପ୍ରାଣ ପାଇ ।
ରମ୍ଭା ପଥରେକ ହୋଇଲା ଗୋସାଇଂ । ୧୫୬ ।
କସ ବୁଧି ସ୍ୱେ ବେକଣବା ତାହା କହ ।
ଶୁଣିଣ ଆପଣେ ଯେ ହସିଲେ ପିତାମହ । ୧୫୭ ।
ହେମଗିର ଲାଗେ କଉଶିକ ନଦୀ ତୀରେ ।
ଦେବଗଣ ଘେନି ବିଜଏ ବେଦବରେ । ୧୫୮ ।
ଋଷିଙ୍କ ବୋଇଲେ ତୁ କମ୍ପାଇ ତପ କରୁ ।
ଦେହ କଦର୍ଥନ କରି ଦୁଃଖ ପାଇ ମରୁ । ୧୫୯ ।
କହ କସ ଇଚ୍ଛା ଦେବା ତୋତେ ବର ।
ମୁହିଂ ହାଦେ ବ୍ରହ୍ମା ଜଗତ ଈଶ୍ୱର । ୧୬୦ ।
ବିଧାତାର ବଚନେ କହଇ କଉଶିକ ।
ହେ ଦେବ ପିତାମହ ମୋତେ ଦେବାକ ବରେକ । ୧୬୧ ।
ବ୍ରହ୍ମଋଷି ହୋଇବାକୁ ମୋହର ବଡ଼ ମନ ।
ଦଅସି ଆଜ୍ଞା ମୋତେ ଚତୁର ବଦନ । ୧୬୨ ।
ବ୍ରହ୍ମା ବୋଇଲେ ତୁ ହୁଅସି ବ୍ରହ୍ମଋଷି ।
ଶୁଣିଣ ସନ୍ତୋଷ ଗାଧିରଜା ଶିଷ । ୧୬୩ ।
ଏଥୁଅନନ୍ତରେ ଦେବେ ଗଲେ ନିଜପୁର ।
ବିଶ୍ୱାମିତ୍ର ଅତି ଆନନ୍ଦ ଶରୀର । ୧୬୪ ।
ବଶିଷ୍ଠ ସନ୍ନିଧିକୁ ଗଲେକ ହରଷେ ।
ଦେଖି ପଚାରିଲେ ପିତାମହ ଶିଷେ । ୧୬୫ ।

Digitized by srujanika@gmail.com

କ୍ଷେମେ ବ୍ରହ୍ମଣ ଅଛନ୍ତି ତପସ୍ୱୀ ।
ଜଳ ଫଳ ମୂଳ ସ୍ଥାନେ ମିଳଇନା ତୋହର । ୧୬୬ ।
ବିଶ୍ୱାମିତ୍ର ବୋଇଲେ ତୋହୋର ପରସାଦେ ।
ବିପୁନ୍ୟେଣ ତପ କରଇ ଅପ୍ରମାଦେ । ୧୬୭ ।
ତୋହୋର କୁଶଳେ ଅଛୁ ନା ସମସ୍ତ ।
ବଶିଷ୍ଠେ ବୋଇଲେ ତୁ ଶୁଣ ତପୋବନ୍ତ । ୧୬୮ ।
ଆଜ କୁଶଳ ମୋହର ସକଳ ହୋଇଲା ।
ରାଜର୍ଷି କଉଶିକ ଯେବେ ମୋର ପୁରକୁ ଆଇଲା ।୧୬୯।
ଶୁଣି ବିଶ୍ୱାମିତ୍ର କୋପେ ଥରହର ।
ଲେଉଟି ମିଳିଲା ଯାଇ ସେହୁ ବନଘୋର । ୧୭୦ ।
କଷ୍ଟୋର ତପ ସେ କଲାକ ବହୁତ ।
ପୂର୍ଣିହଂ ପ୍ରବେଶ ହୋଇଲେ ଜଗତର ତାତ । ୧୭୧ ।
ବିଧାତା ବୋଇଲା ହୋ କେବଣ ତୋର କଥା ।
ଏଡ଼େ ଘୋର ତପ କମ୍ପା କରୁ ମହାଗ୍ୟାତା । ୧୭୨ ।
ଧାତା ବୋଇଲେ ତୋତେ ବ୍ରହ୍ମର୍ଷି କଲି ।
ପୁଣି କମ୍ପା ତୁ ହୋ ମାୟାରେ ମରୁ ଭୁଲି । ୧୭୩ ।
କଉଶିକ ବୋଇଲେ ବଶିଷ୍ଠ ଯେବେ ଅଛଇ ।
ତେବେ ସେ ବୋଲିବେ କି ବ୍ରହ୍ମର୍ଷି ସଂସାରଇ । ୧୭୪ ।
ଶୁଣି ହେହେହେ ହସିଲେ ବେଦପଢ ।
ବିସ୍ତରନ୍ତ କୋପ ହାଦେ କହାଇ ଗୁଡ଼ଇ ଘଢ । ୧୭୫ ।
ବିଶ୍ୱାମିତ୍ରକୁ ବୋଇଲେ କୁଶଧାରୀ ।
ବଶିଷ୍ଠ ତହୁଂକ ତୁ ଯାଆସି ତପସ୍ୱୀ । ୧୭୬ ।
ସେ ଯେବେ ତୋତେ ହୋ ନ କରିବ ଆଦର ।
ରାଜର୍ଷି ବୋଇଲେ ତୁ ଆସିବୁ ଧାନ୍ଧକାର । ୧୭୭ ।
ଯେବେ ବଶିଷ୍ଠଙ୍କୁ ପିଠିଥାଇ ଆସୁ ।
ସେ ମହାତମା ହୋଇବ ଧୂଳି ପାଂଶୁ । ୧୭୮ ।
ଯେ କଥା ତନ୍ତୁଟି ହୋ ଜାଣ କଉଶିକ ।
ଯେତେ ବୋଲି ବ୍ରହ୍ମା ଚଳିଲେ ବ୍ରହ୍ମଲୋକ । ୧୭୯ ।
ଶୁଣିଣ ବିଶ୍ୱାମିତ୍ର ପରମ ତୋଷହୋଇ ।
ବଶିଷ୍ଠର ଆଗେ ମିଳିଲେକ ଯାଇ । ୧୮୦ ।
ଦେଖି ପସ୍ତରଇ ବ୍ରହ୍ମାର ତନୟେ ।
କି କାରଣେ ରାଜର୍ଷି ଗମନ କରିଆଏ । ୧୮୧ ।

Digitized by srujanika@gmail.com

ଗାଧିର ନନ୍ଦନ ଏସନ ବଚନ ଶୁଣି ।
ବସ୍ତୁରଇ ସେହ୍ନ ସେ ମନେ ମନେ ଗୁଣି । ୧୮୨ ।
ଫିଠି ଦେଇଗଲେ ମରବ ଏଡ଼େ ଋଷି ।
ନୋହିଲେଣ ଧାତାର ବଚନ ହୋଏ ଧଂସି । ୧୮୩ ।
ଏ କଥା ଦୁଇ ମୋତେ ସଙ୍କଟ ହୋଇଲା ।
ସେତେ ବୋଲି ମୁନି ପଛଘୁଞ୍ଚା ଦେଲା । ୧୮୪ ।
ବଶିଷ୍ଠ ଜାଣିଲେ କୋଧ ସେହ୍ନାର ଗଲା ।
ସେବେ ସେ ବ୍ରହ୍ମମୁନିରେ ଗଣିତା ହୋଇଲା । ୧୮୫ ।
ସେତେ ବୋଲି ବଶିଷ୍ଠ ବିଶ୍ୱାମିତ୍ର ରାଇ ।
ଆସ ଅସ ବ୍ରହ୍ମଋଷି ଯାଅ କସ ପାଇଂ । ୧୮୬ ।
ଗାଢ଼େଭେବ କରି ସନିଧେ ବସାଇଲା ।
ସତ୍ୟାନନ୍ଦ ସେହ୍ନା ଶ୍ରୀରାମଙ୍କୁ କହିଲା । ୧୮୭ ।
ଅଦ୍ୟାପି ସପତ ଋଷିଙ୍କର ଏକ ।
ବ୍ରହ୍ମମୁନି ହୋଇ ବସିଲା କଉଶିକ । ୧୮୮ ।
ସତ୍ୟାନନ୍ଦ ମୁଖୁ ସେସନ ବାକ୍ୟ ଶୁଣି ।
ମୁନିମାନେ ସନ୍ତୋଷ ହୋଇଲେ ସେହ୍ନା ଶୁଣି । ୧୮୯ ।
କଉଶିକ ପାଦେ ହୋଇଲେ ନମସ୍କାର ।
ସାଧୁ ସାଧୁ ମହିମା ସେ ବିଶ୍ୱାମିତ୍ର ମୁନିମୂର । ୧୯୦ ।
ସେଥୁ ଅନନ୍ତରେ ଜନେକ ତପଗୃଷ୍ଟ ।
କଥ କାର୍ଯ୍ୟେ ଗମନ କଲ ତପଗୃଷ୍ଟ । ୧୯୧ ।
ବିଶ୍ୱାମିତ୍ର ବୋଇଲେ ସେ ଦଶରଥ ନନ୍ଦନ ।
ଈଶ୍ୱର ଧନୁ ଦେଖିତ ସେହ୍ନାର ସେ ମନ । ୧୯୨ ।
ତେଣୁ ନୃପ ଆମ୍ଭେ ସେ ଅଇଲୁ ସେହ୍ନାନ୍ତ ଘେନି ।
ଲୁଅ ପରସନ ଜନେକ ରାମମୁନି । ୧୯୩ ।
ସ୍ୱଗତନ ଧନୁ ସୂନ୍ୟ ହେଉ ଦେଖି ।
ଶ୍ରୀରାମର ନିର୍ମଳ ହେଉ ନେନ ଆଖି । ୧୯୪ ।
ବିଶ୍ୱାମିତ୍ର ବଚନେ ବୋଇଲେ ଜନେକ ।
ସେ କସ କରବ ଯେ ଦେଖିଣ କାର୍ମୁକ । ୧୯୫ ।
ବିଷ୍ଣୁର ତେଜରୁ ଯେବଣ ଧନୁ ଜାତ ।
ହର ବହିବାକୁ ସେ ଅଟଇ ସାମରଥ । ୧୯୬ ।
ଦକ୍ଷରାଜା ବିଧଂସିଲା ଏହୁ ଧନୁ ଧରି ।
ଦେବତାଙ୍କୁ କାଟିଲା ଖଣ୍ଡ ଖଣ୍ଡ କରି । ୧୯୭ ।

Digitized by srujanika@gmail.com

ଯହୁଂ ସେ ତୁଷ୍ଟି କଲେକ ପିତାମହ ।
ତେଣୁକରି ଲଗାଇଲା ସ୍ନେହ ଦେହ । ୧୯୮ ।
ସୁରଗଣ ଗର୍ବ ନିବାରଣ ଶଙ୍କର ।
ପ୍ରବେଶ ହୋଇଲେ କପିଳାସ କନ୍ଦର । ୧୯୯ ।
ମୋହର ଉପର ବଂଶେ ନମିନାଥ ନୃପତି ।
ତହୁଂଣ ଅଷ୍ଟପୁରୁଷେ ଅଧିପତି । ୨୦୦ ।
ତାହାର ଗୋଚରେଣ ଥୋଇଲା ଶରାସନ ।
ରୁକ୍ତ ଭଗତି ଯେ ଅଟଇ ରାଜନ । ୨୦୧ ।
ପ୍ରସନ ହୋଇଣ ଯେ ବୋଇଲେ ତ୍ରିପୁରାରି ।
କୋଦଣ୍ଡ ଥୋଇଣ ତୁ ଥାଆସି ଦଣ୍ଡଧାରୀ । ୨୦୨ ।
ସ୍ନେହାକୁ ପୂଜାକଲେ ଆଇଣ ହୋ ପାଇ ।
ଧନ ସମ୍ପଦ ହୋ ଯଶ ଶିରି ହୋଇ । ୨୦୩ ।
ଶତ୍ରୁର ଦର୍ପ ଭଞ୍ଜଇ ଧନୁର ହୋ କୋପେ ।
ଅକଳବଳ ଧନୁ ବହଇ ଅପ୍ରମିତେ । ୨୦୪ ।
ଦଶଦିଗପାଳେ ନ ପାରନ୍ତି ତୋଳି ।
ସ୍ୱଂଏ ଧନୁ ଅଟଇ ଯେ ମହାଦେବ ବନମାଳୀ । ୨୦୫ ।
ମୁଇ ସେ ସ୍ନେ ଧନୁ ତୋଳିବାକୁ ସାମରଥ ।
ଠ ବରୁ ତୋଳି ଯେ ନ ପାରଇ ଶଚିନାଥ । ୨୦୬ ।
ସ୍ନେ ଧନୁ ଥୋଇଣ ଥିବୁ ହୋ ଯତ୍ନକରି ।
ରଘୁ ତଳେ ଜାତ ହୋଇବେ ଚକ୍ରଧାରୀ । ୨୦୭ ।
ବାମ ଭୁଜେ କୋଦଣ୍ଡ ଧରିବେ କଥା ଛଳେ ।
ତୋହୋ ବଂଶେ ଜାତହୋଇ ଦେଖିବ ବେନି ଡୋଳେ । ୨୦୮ ।
ଏତେ ବୋଲି ଧନୁ ଦେଲେକ ଦେବ ହର ।
ବୋଲନ୍ତି ଜନେକ ଯେ ଶୁଣ ମୁନିମ୍ବର । ୨୦୯ ।
ମୋହର ପିତୃଲୋକେ ପୂଜିଲେ ଶରାସନ ।
ଇଷ୍ଟ ଦେବତା ଜାଣି କରନ୍ତି ସନମାନ । ୨୧୦ ।
ପୂର୍ବର କଥା ଶୁଣି ପୂଜା ଯେ କରଇ ।
ମନ ବଚନ କର୍ମେ ଆନ ନ ବିସ୍ମରଇ । ୨୧୧ ।
ବିଷ୍ଣୁ ଦେବତା ଜାଣି ଆରାଧିଣ ଅଛୁ ।
ଆବର କଥା ଏକ ଶୁଣ ଗାଧି ବତ୍ସ । ୨୧୨ ।
ଅଯୋନି ଜାତ ମୋର ଅଟଇ ଦୁହିତା ।
ସର୍ବ ସୁଲକ୍ଷଣୀ ଅଟଇ ନାମ ହାଦେଂ ସୀତା । ୨୧୩ ।

Digitized by srujanika@gmail.com

ରୂପ ଗୁଣେ ସୁନ୍ଦର ପଞ୍ଚାନ୍ତର ନାହିଁ ।
ବସୁରଇ ଯେହୁ ତାଙ୍କୁ ବଶ କରିବଇ କାହିଁ । ୨୧୪ ।
ସହିଁ ମୁଁ ଅନରୂପେ ନ ପାଇଲି ବର ।
ସତ୍ୟ ଉଶ୍ୱରିଲି ଏ ଧନୁର ଆଗର । ୨୧୫ ।
ଶ୍ରୀ ଶଙ୍କର ମୋତେ ଈଶ୍ୱର ତୋତେ ଦେଲି ।
ପ୍ରତକ୍ଷେ ନାରାୟଣ ବୋଲଣ ବୋଇଲି । ୨୧୬ ।
ତୁ ଯେବେ ପ୍ରତକ୍ଷେ ଅଛୁ ଚକ୍ରପାଣି ।
ସୀତାସ୍ୱା ନାମେ ଯେ ମୋହର ଦୁଲଣୀ । ୨୧୭ ।
ତାହାକଇ ବର ସ୍ୱରୂପେ ନ ପାଇଲି ।
ତେଣୁ ସେ ତୋହୋର ଆଗରେ କହିଲି । ୨୧୮ ।
ଯେ ତୋତେ ପ୍ରାକର୍ମେ ପାରଇ ଅବା ତୋଳି ।
ତାହାକଇ ବଶ କରିବ ମୋହର ଦୁଲଣୀ । ୨୧୯ ।
ମୋହର ସତ୍ୟ ଯେ ନୁହଇ ଦେବ ଆନ ।
ପ୍ରସନ ହୁଅ ମୋତେ ହର ଶରାସନ । ୨୨୦ ।
ଯେତେକ ବୋଲଣ ଯେ ସତ୍ୟ ମୁହିଁ କଲି ।
ପୃଥିବୀ ରାଜାମାନନ୍ତ ବରଣ ଆଣିଲି । ୨୨୧ ।
ନଗରପୁର ମଣ୍ଡଣ କରାଇଲି ତୋଷେ ।
ଧନୁ ସମର୍ପିଲି ରାଜାଙ୍କର ପାଶେ । ୨୨୨ ।
ବୋଇଲି ଶୁଣ ତୁମ୍ଭେ ସକଳ ଦେଶ ରାଏ ।
ଅ ଯାନ ସମ୍ଭୂତ ମୋର ଅଛୁ ଦୋହିତା ଗୋଟିଏ । ୨୨୩ ।
ରୂପଗୁଣେ ସୁନ୍ଦର ନାହିଁ ପଞ୍ଚାନ୍ତର ।
ଯୁବା ବୟେସ ହୋଇଲାକ କୁମାରୀ । ୨୨୪ ।
ଯେ ଧନୁ ଧରି ଯେବେ ଗୁଣ ତୁମ୍ଭେ ଦେଇପାର ।
ମୂବନ୍ତି ରତ୍ନମଣି ହୋଇବ ତାହାର । ୨୨୫ ।
ଯେ ମୋହର ସତ୍ୟ ନୁହଇ ପୁଣ ଆନ ।
ଶୁଣିଣ ସନମତ କଲେ ସକଳ ରାଜନ । ୨୨୬ ।
ବଳେ ଧନୁ କେହି ନୁଆରଲେ ତୋଳି ।
କନ୍ୟା ଜେମାଙ୍କୁ ମନେ ଅଛଇ ସବୁଙ୍କର । ୨୨୭ ।
ମୁଦ୍ଧ ତାହା ଜାଣିଲି ଯୋଗ ଦଳ ଘେନ ।
ମନୁ ଜାତଙ୍କଲି ଚତୁରଙ୍ଗ ସଇନ । ୨୨୮ ।
ଦେଖି ସଙ୍କୋଚ ସେ ନୃପଗଣ କଲେ ।
ନବାଚ ହୋଇ ପୁଣ ମୂତୁଛ ନ ପାରଲେ । ୨୨୯ ।

Digitized by srujanika@gmail.com

ବରଷ ବେଢ଼ିଣ ବସିଲେ ମୋର ସ୍ୱସ୍ତି ।
କନ୍ୟା ନେମାକୁ ଅନେକ ଯନ୍ତ୍ରକର । ୧୩୦ ।
ଆକ୍ରୋଶି ନ ପାରଣ ବାହୁଡ଼ ସେ ଗଲେ ।
ସେହିଦିନୁ ମୋତେ ଅହଙ୍କାର ବହିଲେ । ୧୩୧ ।
ଏଥୁଅନନ୍ତରେ କେତେକ କାଳ ଗଲା ।
ହରର ଆଗେ ବାଣାସୁର ବହୁତ ସ୍ତୁତି କଲା । ୧୩୨ ।
ଭୋ ଦେବ ଶୂଳପାଣି ପାର୍ବତୀର ସାଇଁ ।
ମୋତେ ସରିସମ ପୃଥ୍ୱୀରେ କେହି ନାହିଁ । ୧୩୩ ।
ମୋହର ବଳତ ମୋତେ ଅଗୋଚର ।
ଆବର ଅଛଇ ସହସ୍ରେକ କର । ୧୩୪ ।
ମୋ ତହୁଁ ବଳବନ୍ତ ଅଛଇ କେ ଆନ ।
ଏ କଥା ମୋତେ କହସି ଇଶାନ । ୧୩୫ ।
ହର ହସିଲେ ବାଣାସୁର ବଚନ ଶୁଣି ।
ଗର୍ବ ବହିଲା ବୋଲି ଭାଳିଲେ ଶୂଳପାଣି । ୧୩୬ ।
ଅସୁରକଇ ଶୁଣ ବୋଲନ୍ତି ତ୍ରିପୁରାରି ।
କେତେକ ବଳ ବହୁ ଜାଣିତ ନ ପାରି । ୧୩୭ ।
ଜନେକ ଘରେ ଯେ ଅଛଇ ଶରାସନ ।
ଯେ ତାହା ତୋଳିତ ହୋଇବ ସ୍ୱର୍ଜନ । ୧୩୮ ।
ଭୁଜଂରୁ ଛଡ଼ାଇଲେ ବୋଲିବା ବଳୀଆର ।
ତାହାକୁ ହାଦେ ସମ ନାହିଁ ତ୍ରିପୁର । ୧୩୯ ।
ଯାଅସି ମିଥିଳାକୁ ଚଳଣ ବହନ ।
ଧନୁ ଧରି ପାରିଲେ ବୋଲିବା ବଳମାନ । ୧୪୦ ।
ସଦାଶିବର ବଚନ ଶୁଣିଣ ବାଣାସୁର ।
ବଇଦେହୀ ମନ୍ତ୍ରେ ମିଳିଲା ଧାଡକାର । ୧୪୧ ।
ମୋତେ ବୋଇଲା ସେ ଧନୁ ଆଣି ଦେଖା ।
ବଳ ପରୀକ୍ଷା ନିମନ୍ତେ ଆସିଅଛୁ ଏକା । ୧୪୨ ।
ହରର ଆଜ୍ଞାରେ ତୋଳିବି ଶରାସନ ।
ଏଯନ ସମଏ ମିଳିଲା ଦଶାନନ । ୧୪୩ ।
ଧନୁ ଆଣ ବୋଲି ବୋଇଲାକ ମୋତେ ।
ଶୁଣି ଶାସ୍ତ୍ରେକ ମୁଁ ଅଣାଇଲି ତୁରିତେ । ୧୪୪ ।
ସହସ୍ରେକ ଭୁଜ ବାଣାସୁର ରାଜା ।
ତୋଳି ନ ପାରିଣ ପାଇଲାକ ଲଜ୍ୟା । ୧୪୫ ।

Digitized by srujanika@gmail.com

ଅଗ୍ୟାନ ହୋଇଣ ବସିଲ୍ଲ ନୃପବର ।
ରୁଧିର ବାହାର ହୋଇଲ୍ଲ ମୁଖର । ୧୪୬ ।
ରାବଣ ତୋଳନ୍ତ କରଇ ମନେ ମନ ।
ମୁହିଂ ତାହା ଜାଣି ବୋଇଲ୍ ଦଶାନନ । ୧୪୭ ।
କେବଣ କାରଣେ ତୁ ଧଇବୁ କୋଦଣ୍ଡ ।
ଶୁଣିଣ ରାବଣ କୋପେ ପରଚଣ୍ଡ । ୧୪୮ ।
ବିଂଶ ଭୁଜେ ତୋଳବ ବୋଲଇ ଦଶମାଥ ।
କେ ଅବା ନ ଜାଣଇ ମୋ ପ୍ରାକର୍ମ କଥାନ୍ତ । ୧୪୯ ।
ସାତଦ୍ୱୀପ ସାତସିନ୍ଧୁ ବନ ଗିର ।
ଯେବଣ ନାଗ ଯେ ଅଛଇ ପୃଥ୍ୱୀ ଧରି । ୧୫୦ ।
ସେ ଅହି ସଦାଶିବ କଣ୍ଠେ ଅଛଇ ହାର ।
ସଙ୍ଗେଣ ସଇନ ଅଛଇ ଅପାର । ୧୫୧ ।
ନନ୍ଦୀ ମହାକାଳ ବଘ୍ନରାଜ ସହିତେ ।
କାର୍ତ୍ତିକେଶ୍ୱର ଭବାନୀ ଆବର ଶୂଳହସ୍ତେ । ୧୫୨ ।
ମଣିଭଦ୍ର ବୀରଭଦ୍ର ଭଇରୋବଗଣେ ।
ଚଣ୍ଡ ପରଚଣ୍ଡ ଆବର ଶିବଗଣ । ୧୫୩ ।
ପର୍ବତ ସହିତେ ଉପାଡ଼ିଣ ହେଲେ ।
ତୋଳ ବସାଇଲ୍ ବାମକର ସ୍ଥଳେ । ୧୫୪ ।
ଏ ମୋର ପ୍ରାକର୍ମ ଜାଣନ୍ତି ସର୍ବଲୋକେ ।
କସ ପ୍ରାକର୍ମ ଏ ବହଇ କାର୍ମୁକେ । ୧୫୫ ।
ଏତେ ବୋଲି ଧନୁ ଛୁଇଂଲେକ ଯହୁଂ ।
ଅଗ୍ୟାନ ହୋଇଣ ସେ ପଡ଼ିଲେକ ତହୁଂ । ୧୫୬ ।
ଦଶ ବଦନରୁ ବାହାର ରୋଧିର ।
କ୍ଷଣକେ ଚେତନା ପାଇଲ୍ଲ ମହାବୀର । ୧୫୭ ।
ନାକେଣ ନ କହି ଗଲ୍ଲ ଦଶମାଥ ।
ଉପହାସ କଲେ ନୃପତି ସମସ୍ତ । ୧୫୮ ।
ଦେଖିଣ ବାଣାସୁର ଉପହାସ କଲ୍ଲ ।
ଦେବ ଧନୁ ବୋଲି ସେହି ବାହୁଡ଼ିଣ ଗଲ୍ଲ । ୧୫୯ ।
ଶୁଣ ତୁ କଉଶିକ ହୋ ଧନୁର ବଡ଼ପଣ ।
ଯାଗ୍ୟଂକଇ ଆସିଥିଲ୍ଲ ଶଚର ରମଣ । ୧୬୦ ।
ମୋତେ ବୋଇଲ୍ଲ ସେ ଏକାନ୍ତେଣ ରାଇ ।
ବିଶ୍ୱନାଥ ଧନୁ ଦେଖିବା ଶୁଲ ଯାଇଂ । ୧୬୧ ।

Digitized by srujanika@gmail.com

ପବନ ସହତେଣ ଝନନ୍ତେଂ ଆମ୍ଭେ ଗଲୁ ।
ମହାଗିରି ସମାନେ ଶାସ୍ତ୍ରେକ ଦେଖିଲୁ । ୨୬୨ ।
ଦେଖିଣ ବାସେବ ଛୁଇଂଲ୍କ ଶର୍ବଣ ।
ମୂରୁଚ୍ଛୁ ନ ପାରି ତୋଳିଲ୍କ ପୁଣ । ୨୬୩ ।
ଭୂଜବଳ ପ୍ରାକର୍ମେ ନ ପାରିଲ୍କ ତୋଳି ।
ମୋହୋର ନ ଧଇଲେ ପଡ଼ନ୍ତା ନା ଢ଼ଳି । ୨୬୪ ।
ପବନ କର ଧରି ସେ ବାହୁଡ଼ିଲ୍କ ଧାଇ ।
ଦେଖିଣ ତାହାକଇଂ ପଚ୍ଚରିଲେ ବେଦପଢ଼ି । ୨୬୫ ।
ରୁଦ୍ର ଅଙ୍ଗାର କ ମାଡ଼ିଲୁ ବଜ୍ରପାଣି ।
ବିଶ୍ୱନାଥ ଧନୁ କ ଛୁଇଂଲ୍ ନ ଜାଣି । ୨୬୬ ।
ତେଣୁ ଶୀରି ହତ ହଣଇ ତୋର ମୁଖ ।
ନ ଜାଣିମା ପଣ ରୁ କଲ୍ ସହସ୍ରାକ୍ଷ । ୨୬୭ ।
ସେ ସେ ଦେବଧନୁ ପ୍ରତକ୍ଷେ ବାସୁଦେବ ।
ଅବଜ୍ଞା ପଣେ ରୁ ଛୁଇଂଲ୍ ମହାରବ । ୨୬୮ ।
ସ୍ୱେବେ ରୁ ଯାଗ୍ୟର ଧର୍ମ୍ମ ସ୍ୱେଗ୍ୟକର ।
ଅଜାଣିମା ପଣ ଯାହୁ ଅପହର । ୨୬୯ ।
ଶୁଣିମା ବିଶ୍ୱାମଇତ୍ର ଏ ଧନୁର ମହିଂମା ।
ପ୍ରତକ୍ଷେ ଶୁଣିଲ୍ଲ ଯାହା କହିଲ୍କ ବ୍ରହ୍ମା । ୨୭୦ ।
ସେ ହନୁ ଯନ୍ତୁକରି ସେ ବନ୍ଧ ନାନା ମତେ ।
ଈଶ୍ୱରହ୍ଣଂ ଆନ କେ ଧରିବାକ ହସ୍ତେ । ୨୭୧ ।
ବିଶ୍ୱାମିତ୍ର ବୋଇଲେ ସ୍ୱେ ଅଟଇ ମହାରୂପ ।
କେ ତାହା ଆମଣ୍ଡିବ କାହାର ସ୍ୱେଡ଼େ ଦର୍ପ । ୨୭୨ ।
ମୁହିଂ ବୋଲ୍ଲ ପାରିବକ ରାମ ଓଟାରିବ ।
କେବଳ ଶରଧାସ୍ତେ ଦେଲେକ ଦେଖିବ । ୨୭୩ ।
ଅପ୍ରମାଦେ ଯେବେ ସ୍ୱେ ଆମଣ୍ଡିବ ଧରି ।
ତୋତେ ହେଂ ସୁକାର୍ଯ୍ୟ ଅଟଇ ତପସ୍ୱିଶ୍ରି । ୨୭୪ ।
ତାଡକା ମାଇଲ ସ୍ୱେ ଅହିଲ୍ଲ କଲ୍ଲ ମୁକତ ।
ମୁହିଂ ଜାଣଇ ରାମ ବଳ ଅପ୍ରମିତ । ୨୭୫ ।
ସୀତ୍ୟା ସୁଲକ୍ଷଣୀ ଜନ୍ମିଲ୍ଲ ଶୁଭ ବେଳେ ।
ବର ଅବା ତାକୁ ମିଳିଲ୍ଲ ସ୍ୱେତେ କାଳେ । ୨୭୬ ।
ଦେସି ଆଗ୍ୟା ରାମ ଆଣନ୍ତୁ ଶରାସନ ।
ଶୁଣି ଜନେକ ମୁନି ପରମ ତୋଷ ମନ । ୨୭୭ ।

Digitized by srujanika@gmail.com

ସେଦିନୁ ବୁହାଇଲ ଗଉରୀବେବ କର ।
ସଦାଶିବ କହନ୍ତି ଶୁଣ ଗୋ ଶାକେମ୍ଭରୀ । ୧୭୮ ।
ସେଥୁଁ ଅନନ୍ତରେ ଜନେକ ମହାଋଷି ।
ନଗ୍ରପୁର ମଣ୍ଡନ କଲା ଲୋକ ପେଷି । ୧୭୯ ।
ସ୍ୱୟମ୍ବର ଯାଗ୍ୟକୁ ରାଜାଏ ଆସିଛନ୍ତି ।
ନାନା ତୀର୍ଥର ଯେ ଯତିମାନେ ଛନ୍ତି । ୧୮୦ ।
ନଗ୍ରେ ଘୋଷଣ ଯେ ଦିଆଇଲା ଋଷି ।
ଧନୁ ସ୍ୱୟମ୍ବରେ ଦେଖିବ ଲୋକ ଆସି । ୧୮୧ ।
ଶୁଣି ନଗ୍ରନାରୀ ହୋଇଲେ ସନ୍ତୋଷ ।
ଆନନ୍ଦେଣ ସମସ୍ତେ ହୁଅନ୍ତି ହସ ହସ । ୧୮୨ ।
ସଭାର ମଣ୍ଡପ ଯେ ଅତି ବିତପନ ।
ନେତର ଚରାଳ ଉଡ଼ଇ ଛନ ଛନ । ୧୮୩ ।
ବିଚିତ୍ର କଳସ ଧବଳ ଘର ପିଢ଼ା ।
ଚଉକଣ୍ଠ ଲମ୍ବଇ ମୁକୁତାର ଝରା । ୧୮୪ ।
ସ୍ୱସ୍ତିକର ପାବଚ୍ଛ ସୁବର୍ଣ୍ଣର ଖମ୍ବ ।
ଉଦଣ୍ଡ ପାଟଛତ୍ର ଚରାଳ ଆଲମ୍ବ । ୧୮୫ ।
ଢୋଲ ଡମ୍ଫ ଶଙ୍ଖ ମହୁରୀ ବାଜେ ।
ଲୋକ ଗହ ଗହ କି ଗଗନେ ମେଘ ଗର୍ଜେ । ୧୮୬ ।
ରାଜାମାନେ ସଭାରେ ବସିଣ ଅଛନ୍ତି ।
ତପୀଗଣମାନେ ବେଢ଼ିଣ ଅଛନ୍ତି । ୧୮୭ ।
ବେଢ଼ିଣ ଅଛନ୍ତି ନଗ୍ର ନରନାରୀ ।
ସର୍ବଂ ଦେଖିତ ଅଇଲେ ଅପ୍ସରୀ । ୧୮୮ ।
ବ୍ରହ୍ମା ସହିତେଣ ଦେବାଧିଦେବଗଣ ।
ବିମାନ ଆରୋହଣ ରହିଛନ୍ତି ଅନ୍ତରୀକ୍ଷେଣ । ୧୮୯ ।
ସ୍ୱର୍ଗେ ଧୂଆଁଧୋଇ ଯେ ରୋଆରୋଇ ହୁଅନ୍ତି ।
ସ୍ନେକକୁ ଆରେକ ଯେ ଆଗସର ଯାନ୍ତି । ୧୯୦ ।
ଗନ୍ଧର୍ବ କନ୍ନରୀ ଦକ୍ଷ ବିଦ୍ୟାଧରୀ ।
ସ୍ନେକକୁ ଆରେକ ଯେ ହୁଅନ୍ତି ଆଗୁଂସର । ୧୯୧ ।
ଆସ ହୋ ଦେଖିବା ଶ୍ରୀରାମ ଚରିତ ।
ଶିବଧନୁ ଆଜ ଭାଙ୍ଗିବେ ପଦ୍ମନେତ୍ର । ୧୯୨ ।
ନୟନ ସୁଫଳ କରିବାକ ଆଜ ।
ବୀରପଣ ଆଜ କରିବେ ରାମ ରାଜ । ୧୯୩ ।

Digitized by srujanika@gmail.com

ଯେତେ ବରୁଣ ଅଇଲେ ସୁରଗଣ ।
ଦେଖିବାକୁ ଶ୍ରୀରାମର ଧାରଶୂର ପଣ । ୨୯୪ ।
ମିଥିଳା ନଗ୍ରରେ ବସିତ ଠାବ ନାହିଁ ।
ସକଳ ଦେଶ ରାଜା ଆସିଛନ୍ତି ବାହିଁ । ୨୯୫ ।
ଋଷି ବ୍ରାହ୍ମଣ ତପୀ ଯତିମାନ ।
ଗହଗହ ଗହଳ ପୂରଣ ଆସ୍ଥାନ । ୨୯୬ ।
କନେକର ମଣ୍ଡୋପ ଉପରେ ରତ୍ନସ୍ଥଳ ।
ମୁକୁତାର ଡ୍ରୋଣା ଲମ୍ବନ୍ତି ମାଳ ମାଳ । ୨୯୭ ।
ଗଜମୋତି ଝରା ଲମ୍ବନ୍ତି ଚଉକତି ।
ବିବିଧ କୁସୁମରେ ମଣ୍ଡିଣ ଅଛନ୍ତି । ୨୯୮ ।
ମଧ୍ୟରେ ପଲଙ୍କ ଯେ ଗଜଦନ୍ତ ଖୁରା ।
ସୁବର୍ଣ୍ଣର ପିତୁଳ ନବ ଶର ଝଡ଼ା । ୨୯୯ ।
ତଥିର ଉପରେ ଦେବାଙ୍ଗ ପାଟତୂଳ ।
ନାଗେଶ୍ୱର କେଶର ଗୁଣ୍ଡି ର ମୂଚୁଳ । ୩୦୦ ।
ଶେଜ ସେଜାଇଲେ ପତଳ ପାଗ୍ରେଡ଼ି ।
କର୍ପୂରର ଧୂଳି ଉପରେ ସିଞ୍ଚାଡ଼ି । ୩୦୧ ।
ତହିଁ ବିଜୟେ କରିଅଛନ୍ତି ଦେବୀ ସୀତା ।
ଲଲାଟେ ସିନ୍ଦୂର କପାଳେ ଗନ୍ଧଚିତା । ୩୦୨ ।
ନାନା କୁସୁମେଣ ଖୋଷିଅଛି ଖୋଷା ।
ପୀତ ପତନୀ ଯେ ଉପରେଣ ଶୋଭା । ୩୦୩ ।
ନୟନେ କଜ୍ଜୋଳ କର୍ଣ୍ଣେ ରତ୍ନକାପ ।
ଗଳାରେ ଶୋହୋଇ ଯେ ମୁକୁତା ସରଗ୍ରୂପ । ୩୦୪ ।
ନାସାର ଅଗ୍ରରେ ଯେ ଶୋହୋଇ ଗଜମୋତି ।
ଦେହ ପଟାନ୍ତର ଦଗ୍ଧ ହେମ ଜୋତି । ୩୦୫ ।
ନକଳଙ୍କ ଚନ୍ଦ୍ରମା ପ୍ରାୟେକ ବଦନ ।
ରୂପ ଦେଖି କର ଯୋଡ଼ଇ ମଦନ । ୩୦୬ ।
ହୃଦର ମଧ୍ୟେ ସପତ ପଦ୍ମ ବସଇ ।
ଶ୍ରୀମୁଖ ଶତଦଳ କମଳ ବିଦ୍ଧଂସଇ । ୩୦୭ ।
ବେନିକର ସ୍ଥଳେ କମଳ ଦୁଇ ଅଛୁ ।
ଚରଣେ ବେନି ପଦ୍ମ ବହଇ ମୃଗାକ୍ଷି । ୩୦୮ ।
ନୀଳ ଉତ୍ପଳ ଜାଣି ନୟନ ଯୁଗଳ ।
ଏମନ୍ତେ ବସଇ ସପତ କମଳ । ୩୦୯ ।

Digitized by srujanika@gmail.com

ସାମବେଦରୁ ସେ ହୋଇଲା ସମ୍ଭୂତ ।
ମେଦନୀ ଦେବୀ ଅଟଇ ତାର ମାତ । ୩୧୦ ।
ସ୍ୱୟଂ ଚଞ୍ଚଳା ଯେ ଅଛୁ ବକ୍ଷେକର ।
ତ୍ରିଲୋକେ ପଟାନ୍ତର ନାହିଁ ସମସର । ୩୧୧ ।
ସ୍ୱଭାବେ ହସ ହସ ପ୍ରସନ୍ନ ବଦନ ।
ଅଧର ତାଳମ୍ବ କୁସୁମ ଶୋଭାବନ । ୩୧୨ ।
କୋଟୀୟେ ପାର୍ବତୀର ଅତୁଳ ରୂପଗୁଣ ।
ନୟନ ଦୁଇ ତାର ମଦନ ପଞ୍ଚ ବାଣ । ୩୧୩ ।
ସ୍ୱୟଂମା ଛଟକେ ବସ୍ତ୍ର ଜରଜର ।
ନାଗେଶ୍ୱର ପୁଷ୍ପେକ ଧରିଅଛି କର । ୩୧୪ ।
ସାଙ୍ଗେଣ ଅନେକ ଅଛନ୍ତି ପରିବାରୀ ।
କେହୁ ଆଳଟ କେ ଚାମର କରେ ଧରି । ୩୧୫ ।
କେ କର ଯୋଡ଼ି ଯେ କୃଷ୍ଣାବନ୍ତି କଥା ।
ଯେଥୁଅନନ୍ତରେ କହଣିକ ମହାଗାଥା । ୩୧୬ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ଆଗୁସାର କରି ।
ଦୁହିଁଙ୍କର ଭୁଜ ଦୁଇ କରେ ଧରି । ୩୧୭ ।
ପ୍ରବେଶ ହୋଇଲେ ଯାଇ ସଭାର ମଧ୍ୟସ୍ଥାନ ।
ଦେଖିଣ ଆନନ୍ଦ ହୋଇଲେ ସର୍ବଜନ । ୩୧୮ ।
କେ ବୋଲଇ କାହାର ଗୋ ଯେ ତନୟ ବେନି ।
ହରିହର ଅଇଲେ କି ମାନବ ଦେହ ଘେନି । ୩୧୯ ।
ନୃପତିଗଣମାନେ ଦେଖି ଅଗ୍ରଭୂଆ ।
ମତ୍ତ ଗଜ ମେଳେ କି ପ୍ରବେଶ ସିଂହଛୁଆ । ୩୨୦ ।
କହୁଣିକ ପାଶେଣ ଅଛନ୍ତି ଭାଇ ବେନି ।
ଚନ୍ଦ୍ର ଉଇଁଅଛୁ କି ଯୁଗୁଳ ଘେନି । ୩୨୧ ।
କଶ୍ୟପର ସଙ୍ଗେ ଯେମନ୍ତେ କେଶବ ବାସବ ।
ରାମ ଲକ୍ଷ୍ମଣ ମୁନି ତେସନ ଦଶିବ । ୩୨୨ ।
ଗଉରୀଦେବ ପାଇ ବସିଲେ ସଭା ମଧ୍ୟେ ।
କାର୍ତ୍ତିକ ଗଣେଶ କି ଈଶ୍ୱର ସନ୍ନିଧେ । ୩୨୩ ।
ବ୍ରହ୍ମାର ସମୀପେ କି ବଶିଷ୍ଠ ରୁଦ୍ର ଅଛୁ ।
ବିଶ୍ୱାମିତ୍ର ସନ୍ନିଧେ ତେସନ ରଘୁବଚ୍ଛ । ୩୨୪ ।
ଯେସନେକ ସମୟେ ଜନକ ମହାଋଷି ।
ଆସ୍ଥାନର ମଧ୍ୟେ ପ୍ରବେଶ ହୋଇଲେ ଆସି । ୩୨୫ ।

Digitized by srujanika@gmail.com

ସଖୀକଇ ସ୍ବହ୍ନଂ ବୋଲଇ ଜନେକ ।
ନୃପତିଗଣ ତୁମ୍ଭେ ମିଳିଲ ଅନେକ । ୩୨୬ ।
କହିବି କଥାଏ ଶୁଣିମା ଏକମନେ ।
ଆବର ଅଛନ୍ତି ହାଦେ ଅନେକ ତପୋଧନେ । ୩୨୭ ।
ଏ ମୋହୋର ସତ୍ୟ ଅଛଇ ପୂର୍ବେ କଲି ।
ତୁମ୍ଭର କ ଏହା ଅଛଇ ଶୁଣିଲି । ୩୨୮ ।
ଆଜହୁଂ ଦଶ ସହସ୍ର ବରଷର ତଳେ ।
ପୁତ୍ର ନାହିଂ ବୋଲି ମୁଂ ଖାଲଇ ବିକଳେ । ୩୨୯ ।
ଯାଗ୍ୟ କରିବାକୁ କଲଇ ମୁଂ ବୁଧି ।
ପବିତ୍ର ଭୂମି ଯେ ଲଙ୍ଗଳେଣ ଶୋଧି । ୩୩୦ ।
ଏହିସନ ସମୟେ ମେନକା ଅପଛର ।
ବିମାନ ଆରୋହିଂ ସେ ଗଗନେ ଯାଇଂ ମିଳି । ୩୩୧ ।
ଶଙ୍କୁନ୍ୟ ଦେଖି ମୁଂ ଯେ ମନେ ବିସ୍ମରିଲି ।
ଏହିସନ ଦୋହିତାଏ ହୋଇବୁ ବୋଇଲି । ୩୩୨ ।
କନ୍ୟା ଜାଣିଲା ସେ ମୋହୋର ମନ କଥା ।
ମୋତେ ବୋଇଲା ତୁ ଶୁଣ ମହାଭାଗ୍ୟତା । ୩୩୩ ।
ବ୍ରହ୍ମାର ଶାପେ ମୁହିଂ ଥିଲି ଅବତରି ।
ସର୍ଗକୁ ଯାଉଂଅଛୁ ମୁଂ ପାପକ୍ଷୟେ କରି । ୩୩୪ ।
ନୋହିଲେଣ ଜାତ ହୋନ୍ତି ତୋର ପୁରେ ।
ଏବେ ଚନ୍ଦ୍ରା ତୁ ସେ ନକର ମହୀଧରେ । ୩୩୫ ।
ଏ ମୋହୋର ତେଜୁଂ କୋଟୀଏ ଗୁଣ ହୋଇ ।
ଏହିକ୍ଷଣି ପ୍ରାପତ ତୋତେ ହୋଇବ ତନଇ । ୩୩୬ ।
ଏହିସନ ସମୟେ ଯେ ଲଙ୍ଗଳେ ଭୂମି ଚଷୁ ।
ତଳର ମାଟି ଯେ ଉପରକୁ ଆସୁ । ୩୩୭ ।
ଫାଳର ମୁନେ ଯେ ଉଛୁଟିଲି ବାଳୀ ।
ସ୍ୱୟେଂ ଜାତ ହୋଇଲି ଦେବୀ ମହାଆଳି । ୩୩୮ ।
ଶୁକ୍ଳ ପକ୍ଷରେ ଦୁତିଆ ଦିନ ଶଶୀ ।
ଶ୍ରୁତପଦ୍ମବାସେନୀ କି ସେ ପ୍ରତକ୍ଷେଣ ଆସି । ୩୩୯ ।
ସର୍ଗର ସୁନ୍ଦେଶ ଯେ ଗଲା ଶବଦାଇ ।
ସମ୍ଭାଳସି ଜନେକ ଋଷି ଦୋହିତାକୁ ନେଇ । ୩୪୦ ।
ଏ ସେ ଉଧରିବ ସେ ତୋହୋର କୁଳଗୋତ୍ର ।
ଏଣେ ସେ ବଂଶ ତୋର ହୋଇବ ପବିତ୍ର । ୩୪୧ ।

Digitized by srujanika@gmail.com

ଏମନ୍ତେ ବୋଲନ୍ତି ସେ ଗଲେ ଅପ୍‌ସରୀ ।
ତାହାର ବଚନ ମୁଁ ମନେ ହେତୁ କରି । ୩୪୨ ।
କନ୍ୟା ପାଳିଲିଇଁ ଅତି ଯତ୍ନମତେ ।
ସୀତା ନାମ ତାର ଦେଲଇଁ ଯୁକତେ । ୩୪୩ ।
ଲଙ୍ଗଳର ମୁନେ ହୋଇଲା ଯହୁଁ ଜାତ ।
ଫାଳ ଅଗ୍ରଖଣ୍ଡି ହାଦେ ଅଟଇ ଶେତ । ୩୪୪ ।
ତେଣୁ ଉକୁଟିଲା ନାମ ତାର ସୀତା ।
ରୂପତେ କହୁଁ ମୋତେ ଗଲେକ ବିଧାତା । ୩୪୫ ।
ଏ କନ୍ୟାକୁ କାହାକୁଟି ନ କରିବୁ ପ୍ରଦାନ ।
ଏହାକୁ ହୁଁ ବର ପଣେ ବିଷ୍ଣୁ ସେ ଖର୍ଜନ । ୩୪୬ ।
ଅଯୋନି ସମ୍ଭୂତ ଏ ସ୍ୱୟଂ କମଳିଣୀ ।
ଏହାକୁ ବିଭାଏ ବରିବୁଟି ଚକ୍ରପାଣି । ୩୪୭ ।
ମୁହିଁ ବୋଇଲି ମୁଁ ମନୁଷ୍ୟ ଶରୀର ।
ଚର୍ମ ଲୋଚନେ କେମନ୍ତେ ଚହ୍ନିମି ଚକ୍ରଧର । ୩୪୮ ।
ବିଧାତା ବୋଇଲେ ତୁ ପଣ କରିଥିବୁ ।
ଯେ ଧନୁ ଭାଙ୍ଗିବ ତାହାକୁ ଝିଅ ଦେବୁ । ୩୪୯ ।
ଈଶ୍ୱର ଧନୁ ସେ ବିଷ୍ଣୁର ଚିହ୍ନୁଂ ଜାତ ।
ହର ସେ ବନ୍ଧିବାକୁ ଅଟଇ ସମରଥ । ୩୫୦ ।
ଏମନ୍ତେ କହି ବିଧାତା ଯୋଗ୍ଗକଇ ଗଲେ ।
ଏଥୁଅନନ୍ତରେ କନ୍ୟା ହୁଁ ବଢ଼ିଲା । ୩୫୧ ।
ବ୍ରହ୍ମାର ବଚନ ମୁଁ ହେତୁ କରିଥିଲି ।
ରାଜାମାନଙ୍କୁ ସେ ନିମନ୍ତ୍ରଂ ଅଣାଇଂଲି । ୩୫୨ ।
ଧନୁ ଦେଖିଣ ସେ ସର୍ବେ ଗଲେ ରାଜା ।
ବରଷେ କଟକ ବେଢ଼ି ବସିଲେ ବଳସାଜ । ୩୫୩ ।
ତାହା ଦେଖି ମୁହିଁ ଯେ ସୁମରିଲି ସଦାଶିବନ୍ତୁଂ ।
ଚତୁରଙ୍ଗ ବଳ ଘେନି ଆସିଣ ମିଳଇଂ । ୩୫୪ ।
ଦେଖିଣ ପଳାଇଲେ ସକଳ ନୃପତି ।
ବେଳେକ ଆସିଥିଲେ ପ୍ରଶୁରାମ କ୍ଷତ୍ରୀ । ୩୫୫ ।
ଧନୁ ଦେଖିଣ ସେ ପୂଜା ବିଧିକଲେ ।
ଏକାନ୍ତେ ମୋହୋର କର୍ଣ୍ଣେଣ କହିଲେ । ୩୫୬ ।
ବୋଇଲେ ତ୍ରେତକ୍ଷେ ଏ ଧନୁ ବାସୁଦେବ ।
ହରନ୍ତୁଂ ଆନେକେ ଆମ୍ଭଙ୍କ ପାରିବ । ୩୫୭ ।

Digitized by srujanika@gmail.com

ସୁରେ ଅସୁରେ ଯେ ନୁହଇ ପ୍ରବୋଧ ।
କପିଳାସବାସୀର ଏହୁ ଅଟଇ ଆୟୁଧ । ୩୫୮ ।
ଏହୁ ଧନୁ ଯତନ କରଣ ଥୋଇଅଛୁ ।
ଅବଶ୍ୟ ନୟନେ ତୁ ଶ୍ରୀହର ଦେଖିବୁ । ୩୫୯ ।
ଏହୁତେ କହୁଣ ଯେ ଗଲା ଭୃଗୁପତି ।
ଯତନେ କହନ୍ତି ଜନେକ ମହାପତି । ୩୬୦ ।
ଏହୁବେ ବିଶ୍ୱାମିତ୍ର ଅଇଲ ମୋର ପୁର ।
ସଙ୍ଗେ ଦଶରଥର ବେନ ଯେ କୁମର । ୩୬୧ ।
କୋଦଣ୍ଡ ଦେଖିତ ଶରଧା ପୋଏହୁ କଲେ ।
କଉଶିକ ଅଗ୍ରତେ ଏହୁକାନ୍ତେ ବୋଲଇଲେ । ୩୬୨ ।
ଈଶ୍ୱର ଧନୁ ଯେ ବିଷ୍ଣୁର ତହୁଂ ଜାତ ।
ଦ୍ରଶନ ପାଇଲେ ଏହୁ ହୋଇବ ମୁକତ । ୩୬୩ ।
ଏହୁ କଥା ମୋତେ ଯେ କହିଲା ଗାଧିସିଦ୍ଧ ।
ତେଣୁ ମୁଂ ଶାଏହୁକ କାଢ଼ିବ ଅବଶ୍ୟ । ୩୬୪ ।
ସମସ୍ତେ ଏହୁକ ଠାବ ହୋଇଂ ତୁମ୍ଭେ ଥିବ ।
ଯେ ଧନୁ ଧରିବ ସେ କନ୍ୟା ଘେନିଯିବ । ୩୬୫ ।
ଏହୁ ମୋହୋର ସତ୍ୟ ବ୍ୟର୍ଥ ନ କର ।
ଶୁଣି ବୋଲନ୍ତି ସକଳ ନୃପବର । ୩୬୬ ।
ଆଣ ଆଣ ଧନୁ ଦେଖନ୍ତୁ ସର୍ବଲୋକ ।
ଯେ ଅବା ପାରୁ ସେ ଉଠୁକୁ ଧାର୍ମିକ । ୩୬୭ ।
ଲୋଭ ନ କରିବୁ ଆମ୍ଭଙ୍କୁ ନିଅମ ।
ଯେ ଧନୁ ଭାଙ୍ଗିବ ସେ କନ୍ୟା ଏହୁଥି ନେମ । ୩୬୮ ।
ଯହୁଂ ନୃପଗଣେ ଦୃଢ଼ ବ୍ରତ କଲେ ।
ସତ୍ୟ ସତ୍ୟ ଉନବେଳ ଉଚ୍ଚରିଲେ । ୩୬୯ ।
ଶୁଣିଣ ଜନକ ସତ୍ୟାନନ୍ଦକଇ ଚାଇ ।
ଆଣ ଧନୁ ବୋଲିଣ ତକ୍ଷଣେ ଆଜ୍ଞାଦେଇ । ୩୭୦ ।
ଯହୁଂ ସେ କୋଦଣ୍ଡ ଅଛଇ ପୂଜା କରି ।
ଗଉତମ ତନଏହୁ ତହୁଂ ସେ ମିଳିଲା । ୩୭୧ ।
ନଗର ବଳୀଆରମାନ ଗୁଣ୍ଡିକରି ।
ମହାପୁରୁଷ ଲକ୍ଷଣ ଅଛନ୍ତି ଯେତେଧରି । ୩୭୨ ।
ତେଯନେକ ଆଠଶତ ପୁରୁଷ ବଳବାନ ।
ଆଣ ଆଣ ବୋଲିଣ ବୋଲନ୍ତି ପରସନ । ୩୭୩ ।

Digitized by srujanika@gmail.com

ବଜାନ୍ତି ଝମକ ଯେ ନିଶାଣ ମର୍ଦ୍ଦଳ ।
ଗହଗହ ଶବଦ ଶୁଭଇ ମହାକୋଳ । ୩୭୪ ।
ନାଚେଣୀ ନାଚନ୍ତି ଯେ ଘଟ କଏବାର ।
ଆଲମ୍ବ ପନ୍ତପନ୍ତି ଚଳିଲ ଅପାର । ୩୭୫ ।
ଧୀର ଧୀର କରି ବହୁ ସେନଯାନ୍ତି ।
କୁସୁମ ବର୍ଷିଣ ହୁଳହୁଳି ଦ୍ୟନ୍ତି । ୩୭୬ ।
ଦେଖିଣ ଆସନ୍ତି ନଗ୍ର ନରନାରୀ
ବର୍ଷଣୀ ଗୁମର ଗଣିକାମାନେ ଧରି । ୩୭୭ ।
ହସ୍ତୀ ଘୋଡ଼ା ପାଳକ ରଥ ମହୋଥର ।
ପଡ଼ିହାରୀମାନେ ଚନ୍ଦନ ଓଗାଲ ଅପାର । ୩୭୮ ।
ଲେହାର ମଞ୍ଜି ଷ ମଣ୍ଡିଲ ଅଛି ସଞ୍ଚ ।
ନେତ ପାଟ ପତନ ଫଳମାଳ ଘଞ୍ଚ । ୩୭୯ ।
ଶେତ ଗୁମର ଯେ ମଣ୍ଡିତ ନଉପାଶ ।
କଣି କଣି ଘଣ୍ଟି ଘାଗୁଡ଼ିର ଘୋଷ । ୩୮୦ ।
ଦର୍ପଣ ଝଟ ଝଟ ଚନ୍ଦ୍ରକାନ୍ତି ଜାଣି ।
କଣ୍ଠୀର ଉପରେ ଲମ୍ବଇ ମାଳମଣି । ୩୮୧ ।
ବଜ୍ରର କଳଣୀ ତ୍ରିଶୂଳର ମଧ୍ୟ ।
ପାଟ ଦଉଡ଼ି ବାନ୍ଧି ଅଛଇ ତ୍ରିଛନ୍ଦ । ୩୮୨ ।
ଜମ୍ବୁନଦ ସ୍ୱର୍ଣ୍ଣଙ୍କ ଘଣ୍ଟିରେ ଅଛି ଢ଼ାଲ ।
ଗୁଣଢାଲ ଉଇ ଯେ ଖଞ୍ଜିତ ମଣି ଲୁଲ । ୩୮୩ ।
ଚଳନ୍ତେ କପ କପ ବାଜଇ ମଞ୍ଜୁଷ ।
ଧର ଧର ଶବଦ ଯେ ଶୁଭଇ ଆକାଶ । ୩୮୪ ।
ଆଗନେ ପଡ଼ଇ ଯେ ଚନ୍ଦନର ଛେରା ।
ଦେବାଙ୍କ ପାଟ ଯେ ପାଡ଼ନ୍ତି ପମ୍ବେଡ଼ା । ୩୮୫ ।
ଗୋଳ ବାଜନ୍ତେଣ ବୋଲନ୍ତି ନୃପତି ।
କେବଣ କାରଣେ ଲୋକେ ଧୋଆଂ ଧୋଇଂ ହେଉଛନ୍ତି ।୩୮୬।
ଜନେକ ବୋଇଲେ ହେ ଆସଇ କୋଦଣ୍ଡ ।
ଭୂମି ହଲଣ କମ୍ପଇ ନବ ନବଖଣ୍ଡ । ୩୮୭ ।
ଶୁଣି ନୃପଗଣେ ହୋଇଲେ ତରସ୍ତ ।
ମୁଖ ଚୁହାଂଚୁହିଂ ହୋଇଲେ ସମସ୍ତ । ୩୮୮ ।
କେ ବୋଲଇ ସ୍ୱେ ଧନୁ ଈଶ୍ୱର ବହଇ ।
ଆନ କେହୁ କ୍ଷମ କାହା ଦେହ ଯେ ସହଇ । ୩୮୯ ।

Digitized by srujanika@gmail.com

ସ୍ୱେଦ୍ଧ ମଣ୍ଡଳରେ ଯେ ପ୍ରଶୁରାମ ବଳୀ ।
ସେହ୍ଧ ଶରାସନକୁ ନ ପାରିଲ ତୋଳି । ୩୯୦ ।
ଇନ୍ଦ୍ର ଧରି ତ ଯେ ନୋହିଲେ ସାମରଥ ।
ଅଗ୍ନି ପବନ ସେ ବରୁଣ ନଇରୁତ । ୩୯୧ ।
ଦଶଦିଗପାଳେ ନୁହନ୍ତି ଶରଜନ ।
ସ୍ୱେକମାତ୍ର ସ୍ୱେହ୍ୱା ଯେ ବହଇ ତ୍ରିଲୋଚନ । ୩୯୨ ।
ଅକଳଣା ବଳ ସେ ଅଛଇ ସ୍ୱେହ୍ୱାର ।
ବଳେ ସ୍ୱେହ୍ୱା ଆମଣ୍ଟିବାକୁ ଶକତ କାହାର । ୩୯୩ ।
ସ୍ୱେମନ୍ତ ସମସ୍ତେ ମିଳିଲେ ଧନୁ ଆସି ।
ବଳବନ୍ତମାନେ ଭୟେ କଲେ ତ୍ରାସି । ୨୯୪ ।
ସଭାର ମଧ୍ୟେ ଆସି ମିଳିଲା ମଞ୍ଜୁଷ ।
ନ ଜାଣିମା ଲୋକେ ବୋଲନ୍ତି ସ୍ୱେହୁଂ କସ । ୩୯୫ ।
କେ ବୋଲଇ ସ୍ୱେଥ ଭିତରେ ଧନୁ ଅଛି ।
ସ୍ୱେକାକୁ ଆରେକ ହୁଅନ୍ତି ପୃଚ୍ଛାପୃଚ୍ଛି । ୩୯୬ ।
ଅଧା ସୋର୍ଗରେ ଥାଇଂଣ ଦେଖନ୍ତି ଦେବଗଣ ।
ଦେଖିବାକୁ ଶ୍ରୀରାମର ବୀର ପୁରପଣ । ୩୯୭ ।
ସଭାଜନେ ତବଦ ଧ୍ୱୋଇଂ ଦେଖୁଛନ୍ତି ।
ସ୍ୱେକକୁ ଆରେକ କଥା ନ କୁହନ୍ତି । ୩୯୮ ।
ସଖୀଜନନ୍ତ ସ୍ତ୍ରୁହଂ ସେ ବୋଲନ୍ତି ଜାନେକୀ ।
ଧନୁ ଦେଖିଣ ସେ ଆତ୍ମା ମୋର ଶଙ୍କି । ୩୯୯ ।
ବେଳେ ବେଳେ ନୃପତିଗଣେ ଦେଖି ଭଜ ।
ସ୍ୱେବେ କମ୍ପା ଆସି ଛନ୍ତି ବଳ ସାଜ । ୪୦୦ ।
ମେରୁ ସମ ସ୍ୱେ ଧନୁ ଯେ ତୋଳନ୍ତେ ସମକାହୁଂ ।
କେବଣ କାରଣେ ରାସ୍ତେ ଅଇଲେ ଚଳାଇଂ । ୪୦୧ ।
ପ୍ରଶୁରାମ ଯାହା ସେ ନ ପାରଇ ଧରି ।
ଭୂମିରୁ ଛଡ଼ାଇ ନ ପାରି ଭଗ୍ନ ଗଲା ହାରି । ୪୦୨ ।
ପିତା ମୋର ସତ୍ୟ କଲେକ ନ ଜାଣି ।
ତେଣୁ ମୁଂ ଦୁଃଖୀ ଗୋ ହୋଇଲି ମଗଂାତୁଣୀ । ୪୦୩ ।
କେତେ କାଳେ ଦୁଃଖ ଗୋ ଯିବଇ ମୋର ପାରି ।
ହେ ଧର୍ମ ଦେବତା ମୋତେ ପ୍ରତିକାର କର । ୪୦୪ ।
ଶୁଣି ସଖିଜନେ ବୋଧାଇନ୍ତି ସୀତା ।
ନୁହସି ବସ୍ତୁସ୍ୱେ ଗୋ ଜନକ ଦୁହିତା । ୪୦୫ ।

Digitized by srujanika@gmail.com

ସର୍ବଦା କାଳରେ ସେ ନୁହଇ ନା ହାନ ।
ଶୁଭାଶୁଭ କର୍ମ ସେ ଜାଣଇଂ ପଦ୍ମଯୋନ । ୪୦୬ ।
ଯେ ସେ ପଦ୍ମଯୋନି ସେ ସେ ପିତାମହ ।
ଯେ ସେ ପିତାମହ ଅର୍ଜିଲା ସ୍ୱେଚ୍ଛ ଦେହ । ୪୦୭ ।
ଯେବଣ ଦେହ ସେ ଅରଜିଲା ଜଗତର ପିତା ।
ସେ ସେ ପିତାମହ ପରମ ଦେବତା । ୪୦୮ ।
ଯେ ଯାହା ସଂକଳ୍ପ ଅଛି ମନେ ଧରି ।
ଯେ ଧନୁ ଭାଙ୍ଗିବ ଦେବଇଂ କୁମାରୀ । ୪୦୯ ।
ସେ ସେ ଧର୍ମଶକ୍ତି ଅଟଇ ଧର୍ମଗ୍ୟାଂତା ।
ତାହାର ବୋଲକ ହୋଇବ ଅନ୍ୟସ୍ଥା । ୪୧୦ ।
ନ ଜାଣି ସତ୍ୟ କି କରିଅଛି ଋଷି ।
ଭୂତ ଭବିଷ କଥା ଜାଣଇ ତପୁସି । ୪୧୧ ।
ତୁ ଅବା ବୋଇଲୁ ସଖି ଅନେକ କାଳ ଗଲା ।
କେହି ସ୍ୱେ ଧନୁକୁ ଧରି ନୁଆସିଲା । ୪୧୨ ।
ଯେତେବେଳେ ଯାହାକୁ ଅଛଇ ଯେହୁଂ ଯୋଗ ।
କାଳବେଳ ଜାଣି ବିଧାତା କରଇ ଭୋଗ । ୪୧୩ ।
ଉମା ସେ ହେମବନ୍ତ ଘରେ ଉପୁଜିଲା ।
ଦେହ ଗଞ୍ଜାଇ ହାଦେ ଅନେକ ତପ କଲା ।୪୧୪।
ସଂଯୋଗ ସମସ୍ତେ ହୋଇଲାକ ଯହୁଂ ।
ସଦାଶିବକଇ ବ ଲୀ ଭେଟିଲାକ ତହୁଂ । ୪୧୫ ।
ବିଭା ହୋଇଣ ସେ ଅନେକ ଭୋଗ କଲା ।
ଆଉତେ କାର୍ଯ୍ୟ ମାଗେ ନୁହଇ ନା ଭଲା । ୪୧୬ ।
ଦେବ ଅସୁରେ ଯେ ମନ୍ଥିଲେ ସିନ୍ଧୁଜଳ ।
ତହୁଂ ଜାତ ହୋଇଲା ପଦାର୍ଥ ସକଳ । ୪୧୭ ।
ବିଷ୍ଣୁର ଭାଗେ ସେ ହୋଇଲେ କମଳିଣୀ ।
କାଳକୂଟ ବିଷ ପ୍ରାପତଟି ଶୂଳପାଣି । ୪୧୮ ।
ଦେବେ ସୁଖେଣ ଯେ ଅମୃତ ଭୋଗକଲେ ।
ଅସୁରେ ଭଗାରି କିଛି ନ ପାଇଲେ । ୪୧୯ ।
ଦୈତ୍ୟ ହୋଇ ସହୁ ଖାଇଲା ଅମୃତ ।
ତାହାକୁ ସେ ଭୋଗ ଅଛଇ ପ୍ରାପତ । ୪୨୦ ।
ଇନ୍ଦ୍ର ଯେ ପବନଙ୍କୁ କାଟିଲା ବିକୋଡ଼ି ।
ହୋକଇ ଶରୀର ଅଣଞ୍ଚାଶ ମୂର୍ତ୍ତି । ୪୨୧ ।

Digitized by srujanika@gmail.com

ଦୁଇଖଣ୍ଡ ହୋନ୍ତେ ପ୍ରାଣୀନ ପାନ୍ତ ଜୀବନ ।
କର୍ମେଣ ଅଣ୍ଟାଣ ମୂର୍ତ୍ତି ଯେ ପବନ । ୪୨୨ ।
ସବୁ ଦେବତାହୁଂ ହୋଇଲା ମହାବଳୀ ।
ଜନ୍ତୁଙ୍କର ଠାକୁର ଯେ ପ୍ରାଣହୁଂ ଅଗ୍ଗଳା । ୪୨୩ ।
ଦକ୍ଷ ପ୍ରଜାପତିର ସତାଇଶ ଦୋହିତା ।
ଚନ୍ଦ୍ରକୁ ବିଭାସୂତ୍ରେଣ ଦେଲା ତାର ପିତା । ୪୨୪ ।
ସେହିକର ପେଟୁ ଜାତ ସେ ଯେ ସେହିକଇ ପିଅର ।
ସବୁ ଭଗ୍ନୀଙ୍କର ସେ ଯେ ଚନ୍ଦ୍ର ଅଟଇ ବର । ୪୨୫ ।
ସହୁଭାଗ୍ୟବନ୍ତୀ ସେ ହୋଇଲା ରୋହିଣୀ ।
ବଡ଼ ଦୁର୍ଭାଗ୍ୟବନ୍ତୀ ସେ ଆବର ଛବଂଶ ଭଗ୍ନେଣୀ ।୪୨୬।
ଅବଶ୍ୟ କାର୍ଯ୍ୟ ଆଜ ଲଭିବୁ ମୃଗାକ୍ଷୀ ।
ସଖି ସୁନ୍ଦର ଗୋ ଆଜ ଦଶୁଅଛୁ । ୪୨୭ ।
ର୍ଷିଙ୍କର ମୁଖ କମଳ ବିଦ୍ଧସଇ ।
ଶତଦଳ କମଳ ଜାଣିଣ ଦିଶଇ । ୪୨୮ ।
ସେହୁ ତୋହୋର ବର ଗୋ ପ୍ରବେଶ ସେହୁ ଆସି ।
ବିଶ୍ୱାମଇତ୍ର ସଙ୍ଗତେ ଅଛନ୍ତି ବସି । ୪୨୯ ।
ସେହିା ଶୁଣି ହସି ବୋଲଇ ମହୁସ୍ଥଳୀ ।
କମ୍ପାଇ ସଖି କଲୁ ଗୋ ଢ଼ମାଳି । ୪୩୦ ।
ଯେ ଅବା ଧନୁ ଆଜ ଆକେଷି ପାରଇ ।
ତାହାକୁ ପିଅର ବର ପଣେ ଟରଇ । ୪୩୧ ।
ତୁ କେହ୍ନେ ଆଗହୁଂ ଟୋକା ଆଣିଲୁ ସଙ୍ଘାରୁଣି ।
ନିକଟେ ହେଂ ପଢ଼ ଦେଲୁ ମୋତେ ଆଣି । ୪୩୨ ।
ସେହୁ ବୋଲ ଶୁଣିଣ ଯେ ବୋଲଇ ମନମାୟୁ ।
ମୁହିଂ ସେହିା ସତ ଗୋ ଜାଣଇଂ ସୀତୟୁ । ୪୩୩ ।
ଯେବଣ ଯେବଣ ନୃପତି ବସିଅଛନ୍ତି ଆସ୍ତନେ ।
ସେହୁ ତୋତେ ବରପଣେ ଗୋ ନୁହନ୍ତି ଭାର୍ଜନେ । ୪୩୪ ।
ତପୀଗଣେ ସମ୍ଭବେ ଅଟନ୍ତି ପିତାମହ ।
ପବିତ୍ର ଅଙ୍ଗ ଯେ ଜୁଇଂତ ତୋ ଦେହ । ୪୩୫ ।
ତୁ ଗୋ ପ୍ରତକ୍ଷେ ଲକ୍ଷ୍ମୀ ଅଂଶେ ଜାତ ।
ବିଷ୍ଣୁ ସେ ତୋହୋର ହୋଇବ ପ୍ରାଣନାଥ । ୪୩୬ ।
ଅଯୋନିସମ୍ଭୂତ ଗୋ ସଂସ୍ତେ କମଳଣୀ ।
ତୋତେ ବରପଣେ ଗୋ ଯୋଗାଇ ଚକ୍ରପାଣି । ୪୩୭ ।

Digitized by srujanika@gmail.com

ଯେ ସେ ଚକ୍ରପାଣି ସେ ସେ ଦେବ ହରି ।
ଯେ ସେ ଶ୍ରୀହରି ସେ ସେ ଜଗତ ଅଧିକାରୀ । ୪୩୮ ।
ସର୍ବଜନମନ ମୋହି ପାରନ୍ତି ସେ ହରି ।
ସେହୁ ସେ ଜଗନ୍ନାଥ ଅଟଇ ଅଧିକାରୀ । ୪୩୯ ।
ଯାହାଙ୍କଇ ଅଟଇ ସର୍ବଜନ ମନ ।
ତାହା ସେ ବୋଲି ସଖି ପୁରୁଷକଇ ମୋକ୍ଷପାନ । ୪୪୦ ।
ସେ ଯେ ପୁରୁଷଙ୍କର ମୋକ୍ଷପାନ ହୋଇ ।
ତାହାକୁ ଦେଖିଲେ ସର୍ବଜନ ମୋହିଂ ହୋଇ । ୪୪୧ ।
ଯାହାକୁ ସକଳ ଜନ ମୋହି ହୋନ୍ତି ।
ଜଗତମୋହୋନ ସେ ତାହାକୁ ବୋଲନ୍ତି । ୪୪୨ ।
ଯେ ଜଗତମୋହୋନ ତାହାଙ୍କୁ ଦେଖିଲେ ସେ ବଶ୍ୟହୋଇ
ଯାହାକୁ ବଶ୍ୟହୋଇ ତାହାକୁ ଭଲ କହି । ୪୪୩ ।
ଯାହାକୁ ଭଲପାଇ ସେହି ସେ ଭାଗ୍ୟବନ୍ତ ।
ଯେ ସେ ଭାଗ୍ୟବନ୍ତ ସେ ସେ ତୋର କାନ୍ତ । ୪୦୪ ।
ଯେ ସେ ତୋହୋର କାନ୍ତ ସେ କାହିଁକି ପାଶେ ।
ସର୍ବଲୋକେ ଦେଖି ଗୃହାନ୍ତି ହରଷେ । ୪୪୫ ।
ଅପୂର୍ବ ପଦାର୍ଥକଇ ସବୁରି ଶରଧା ଥାଇ ।
ତେଣୁ ସେ ସ୍ନେହ ଦୃଷ୍ଟି କରି ସମସ୍ତେ ଛନ୍ତି ଗୃହିଂ ।୪୪୬।
ଯହିଂ ସେ ସ୍ନେହ ଦୃଷ୍ଟି ଗୃହାନ୍ତି ସର୍ବଜନ ।
ତହିଂ ସେ ସଖି ଗୋ ପ୍ରସନ ହୋଇଲା ମନ । ୪୪୭ ।
ଯହିଂ ସେ ମନ ଗୋ ପ୍ରସନ ହୋଇଲା ।
ତେଣୁ ଜାଣିଲି ବୋଲି ମନମାୟା କହିଲା । ୪୪୮ ।
ତୁ ସଖି ହୃଦରେ ନ କଥ଼ ଗୋ ଚନ୍ତା ।
ନିଶ୍ଚୟେ ପ୍ରାପତ ତୋତେ ହୋଇବ ନିଜ କାନ୍ତା । ୪୪୯ ।
ମନମାୟା ମୁଖୁଂ ଯେସନ ବାଣୀ ଶୁଣି ।
ହସ ହସ ହୋଇ ଯୁବତୀ ଶିରୋମଣି । ୪୫୦ ।
ଯେଥୁଅନନ୍ତରେ ଜନେକ ମହାଋଷି ।
ଧନୁ ପ୍ରବେଶ ହୋଇଲା ଯହିଂ ଆସି । ୪୫୧ ।
ରାଜାଗଣେ ଗୃହିଂ ବୋଲନ୍ତି ତୁମ୍ଭେ ଶୁଣ ।
ଆଜ ଦୃଷ୍ଟିବା ନା ତୁମ୍ଭର ବଳପ୍ରାଣ । ୪୫୨ ।
ଯେ ଅବା ସ ମରଥ ଆଜହୋଇ ଆସ ।
ଯେ ଧନୁ କଷଟୀରେ ସୁନା ବଳ କଷ । ୪୫୩ ।

Digitized by srujanika@gmail.com

କେ କେତେ ବଳର ଜାଣିମା ନା ମୂଳ ।
କେବଣ ରାଜା ହୋଇବ ଜମ୍ବୁନଦ ତୁଲ । ୪୫୪
ତାହା ଅଲଙ୍କାର କରି ଗଢ଼ାଇବା ।
ବ୍ରହ୍ମଜାତ ହାର ସୀତା ତହିଂ ଜଡ଼ିବା । ୪୫୫ ।
ତେବେ ସେ ହୋଇବନା ଦେବ ଆଭରଣ ।
ଜନେକର କଥା ଶୁଣିଲେ ନୃପଗଣ । ୪୫୬ ।
ସୋମକେଶୀ ବୋଲି ମାଳବ ଦେଶର ରାଜା ।
ଲୋକନାଥ ନୃପତିର ଅଟଇ ତନୁଜା । ୪୫୭ ।
ସେହୁ ବୋଇଲା ସେ ଜନେକ ମୁଖ ଚାହିଁ ।
ମଞ୍ଜୁଷ କବାଟ ଫେଡ଼ାଅ ଆଗ୍ୟାଂ ଦେଇ । ୪୫୮ ।
ଦେଖିବା ଧନୁ ଯେ ଜାଣିମା କେତେ ବଳ ।
ଯେତେ ବୋଲ ବୋଇଲେ ଯେ ନୃପତି ସକଳ । ୪୫୯ ।
ମଞ୍ଜୁଷ ଦ୍ୱାରେ ଧନୁକୁ ଦେଲେ ଦୃଷ୍ଟି ।
ଧନୁ ଦେଖିବେ ବୋଲି ନୃପତିଗଣ ଉଠି । ୪୬୦ ।
ବାଘ ଯେସନେ ଯନ୍ତ୍ରା ଭିତରେ ଶୋଇଂଥାଇ ।
ଛେଳି ଯେସନେ ତାକୁ ଦେଖିଲେ ପଳାଇ । ୪୬୧ ।
ଶରାସନ ଦେଖି ତେସନ ସୋମକେଶୀ ।
ଆବର ରାଜାନ୍ତ ରଇଲକ ହସି । ୪୬୨ ।
ବୋଲଇ କେ କେ ହୋ ନୃପତିମାନେ ପାର ।
ବଳବନ୍ତା ହୋଇଲେ ହୁଅ ଅଗୁସାର । ୪୬୩ ।
ମୁହିଂ ଦେଖିଣ ଯେ ହୋଇଲି ହତବୀର୍ଯ୍ୟ ।
ଶୁଣି ନୃପତିଗଣେ ଯେ ହୋଇଲେ ଆଶ୍ଚିଯ । ୪୬୪ ।
ହଭୂବ ଉଭୂର ହୋଇଣ ଉଠିଗଲେ ।
ମଞ୍ଜୁଷ ଭିତରକୁ ସମସ୍ତେ ଦୃଷ୍ଟି ଦେଲେ । ୪୬୫ ।
ଶ୍ୱେତ ନାଗ ଯେସନେ ପେଡ଼ାରେ ଶୋଇଥାଇ ।
ଲଂଘ ପାଶରେ ଯେସନେ ତାକୁ ମୂଷାସ୍ତେକ ଗୃହିଂ ।୪୬୬।
ତେସନେ ଭୟେ ପାଇଲେ ନୃପତି ସକଳ ।
ପଞ୍ଚଘୁଞ୍ଚା ଦେଇ ଆସନ୍ତି ମହୀପାଳ । ୪୬୭ ।
ଭାଳଣ ବୋଇଲେ ତୁମ୍ଭେ ଶୁଣ ମହାଋଷି ।
ଯେତେ ଧନୁ ଆମ୍ଭେ ଯେ ନ ପାରୁ ଆକୋଶି । ୪୬୮ ।
ଯେ ପାରୁ ଧନୁ ତୋଳିଣ କନ୍ୟା ବଧୂ ହେଉ ।
ତାହାର କୀରତି ଯେ ଯୁଗେ ଯୁଗ ଥାଉ । ୪୬୯ ।

Digitized by srujanika@gmail.com

ଏମନ୍ତେ ବୋଲି ସମ୍ମୁଖେ ବସିଲେ ନୃପଗଣ ।
ଜନେକ ବୋଇଲେ ତୁମ୍ଭେ ସକଳ ଜନେ ଶୁଣ । ୪୭୦ ।
ଏହି ଧନୁ ଧରଣ ଯେ ପାରିବାନ୍ତ ବଳେ ।
ସେ ମୋର ଦୋହିତାକୁ ନେବ ସମ୍ମତରେ । ୪୭୧ ।
ସତ୍ୟ ସତ୍ୟ ଏ ବଚନ ମୁଂ ଯେ ନ କରଇ ଆନ ।
ଶୁଣିଣ ସ୍ତମ୍ଭୀଭୂତ ହୋଇଲେ ସର୍ବଜନ । ୪୭୨ ।
ଉତ୍ତର ସମାସ୍ୟା ଦଅନ୍ତା କେହି ନାହିଂ ।
ନଶବଦ ହୋଇଂ ଲୋକେ ଛନ୍ତି ତହିଂ । ୪୭୩ ।
କ୍ଷଣେ ତୁନହୋଇ ଜନେକ ବୋଇଲେ ।
ଧନୁ ଧରନ୍ତା କେହି ଖର୍ଜନ ନୋହିଲେ । ୪୭୪ ।
ବାହୁଡ଼ାଇ ନେଇଂଣ ଥୋଇବା ଧନୁ ପୁଣ ।
ଭୋ ବିଶ୍ୱାମିତ୍ର ବୋଇଲୁ ଯେ ଧନୁ ଆଣ । ୪୭୫ ।
ଶ୍ରୀରାମ ଧନୁ ଦେଖିବ ବୋଲି କହାଇଲୁ ।
ଏମନ୍ତେ ପ୍ରତକ୍ଷେ କଥାନ୍ତ ବୁଝିଲୁ । ୪୭୬ ।
ଜନେକର ବଚନେ ବିଶ୍ୱାମିତ୍ର ଋଷି ।
କମ୍ପା ବିମୁଖ ତୁମ୍ଭେ ହୁଅ ବ୍ରହ୍ମଋଷି । ୪୭୭ ।
ଯାହା ତୁ ସତ୍ୟ କଲୁ ପୂର୍ବର ଏହି ବାଣୀ ।
କାଲି ଅପସରିଥିବୁ ତୁହି ସିନା ଜାଣି । ୪୭୮ ।
ଯେବଣ କାଳେ ପ୍ରାପତ ଯେବଣ ହିଂ ଯୋଗ ।
କର୍ମ ଅନୁସାରେ ବିହି ଦେଇ ଭୋଗ । ୪୭୯ ।
ନୃହସି ଆରତ ତୁ ସମ୍ଭାଳି କାର୍ଯ୍ୟକର ।
ବଳବୀର୍ଯ୍ୟ ପ୍ରତାପୀ ଏ ଅଟନ୍ତି ମୁନିବର । ୪୮୦ ।
ଏହି ଯେବେ ନ ପାରିବେ କରିବା ଆମ୍ଭେ କିଏ ।
ଭୁଞ୍ଜିବ ସୀତା କର୍ମେ ଅଛୁ ଯିଏ । ୪୮୧ ।
ଏବେ ତୁ ବାହୁଡ଼ାଇଂ ନ ନିଅ ଶରାସନ ।
ରାମ ଯେବେ ଦେଖିବାକୁ କରିଅଛୁ ମନ । ୪୮୨ ।
ଏହାର ଦେଖିଲେ ପଛେ ବାହୁଡ଼ାଇଂ ନିଅ ।
ଶରଧା କରିଅଛୁ ଯେବେ ଦଶରଥ ପୁଅ । ୪୮୩ ।
ଉଠ ଉଠ ଶ୍ରୀରାମ ହୋ ଧନୁ ଦେଖ ଯାଇଂ ।
ଜନେକ ହଁଗଡ଼ ପାଇଲେଣି ତୋହୋରି ଯେ ପାଇଂ । ୪୮୪ ।
ଦେଖ ଆସ ରାମ ଶରାସନ ବେଗେ ଯାଇ ।
କି ଅବା ସୀତାୟା ପ୍ରାପତ ତୋତେ ହୋଇ । ୪୮୫ ।

Digitized by srujanika@gmail.com

ବିଶ୍ୱାମିତ୍ର ତହୁଁ ଏମନ ବଚନ ଶୁଣି ।
ଲଜ ଲଜ ହୋଇ ଉଠିଲେ ଚାମୁଣି । ୪୮୬ ।
କଉଶିକ ପାଦେ କରନ୍ତି ନମସ୍କାର ।
ଲକ୍ଷ୍ମଣଙ୍କୁ ଘେନ ଶ୍ରୀରାମ ଆଗୁସାର । ୪୮୭ ।
ଦେଖି ବିସ୍ମରନ୍ତି ସକଳ ରାଜନ ।
ଏ ଦୁଇଗୋଟି ହାଦେ କାହାର ନନ୍ଦନ । ୪୮୮ ।
କେହୁ ବୋଲନ୍ତି ବିଶ୍ୱାମିତ୍ର ଆଣିଛନ୍ତି ।
କେହୁ ବୋଲନ୍ତି ଏ ଦୁଇଗୋଟି କାହାର ଯେ ବଚ୍ଛ ।୪୮୯।
ଏବେ କମ୍ପାଇଂ ଏ ଉଠିଲେ ଆଦନୁ ।
କେ ବୋଲଇ ଅବା ଦେଖିବେ ଏ ଧନୁ । ୪୯୦ ।
କେ ବୋଲଇ ଏ ଦେଖି କରନ୍ତି କସ ।
କେ ବୋଲଇ ଆହୋ ନ କର ଉପହାସ । ୪୯୧ ।
ବିଧାତା ଭିଆଇଣ ଅଛୁ ଅବା ସଞ୍ଚ ।
ଏ ଅବା ଧନୁ ହୁଂ ଯେ ପାରଦେ ଆମଞ୍ଚ । ୪୯୨ ।
କେ ବୋଲଇ ତୁମ୍ଭେ ହୋଇଲକ ବାଇ ।
ଦେଉଳ କମ୍ପଣ୍ଡେ ପେଲିଲେ ପଡ଼ଇ ।୪୯୩ ।
ଟେଳା ମାଇଲେ କି ଟଳଇ ପର୍ବତ ।
କେ ବୋଲଇ କମ୍ପା ହୋ କହିଲ ଏମନ୍ତ । ୪୯୪ ।
ସାନ ବୋଲି ଏଙ୍କେ ଅଭରସା କର ।
ସୀତା ଅବା ଘରଜା ହୋଇବ ଏହାର । ୪୯୫ ।
ଅଗସ୍ତି ଟି ସାନ ଶୋଷିଲା ସିନ୍ଧୁ ସାତ ।
ପ୍ରହ୍ଲାଦ ସାନ ପ୍ରସନ କଲା ପଦ୍ମନେତ୍ର । ୪୯୬ ।
ତ୍ରିବିକ୍ରମ ରୂପ ତିନ ଭୁବନ ବ୍ୟାପିଲା ।
ବାମନେ ଯେ ସାନ ବଳିକ ଗ୍ରାସିଲା । ୪୯୭ ।
ଧ୍ରୁବ ସାନ ପୁଅ ବିଷ୍ଣୁଙ୍କୁ ତୋଷ କଲା ।
ଭଗୀରଥ ସାନ ଗଙ୍ଗାକୁ ବୁହାଇଲା । ୪୯୮ ।
କମ୍ପା ଏହାକୁ ହୋ କର ତୁମ୍ଭେ ସାନ ।
ଧାତା ଜାଣିଲଇଂ ଯେ ମହଂକ ଭରଜନ । ୪୯୯ ।
କେଭା କଣେ ଅଛଇ ଅବା ଆଣି ।
ପୃଥ୍ୱୀଶ୍ୱର ଭାଗ୍ୟ ହୋ କେତେକେ ° ନ ଜାଣି । ୫୦୦ ।
ଭରସା ନ ପାଇଲେ ଉଠିକି ଧାଇ ।
ଗୃହ୍ଣଦା ଛଟକେ ଭୂମିକି ଆକଟାଇ । ୫୦୧ ।

Digitized by srujanika@gmail.com

କେ ବୋଲଇ ଦୁହେଂ ଅଟନ୍ତି ଦୁଇଭାଇ ।
କେ ଯେତେ ବଡ଼ ମାନ ବାଣତ ନୁହଇ । ୫୦୨ ।
କେ ବୋଲଇ ଅହ୍ମେ ନ ଜାଣ ତୁମ୍ଭେ କହୁ ।
ବଡ଼ ସାନ ଆକୃତ ସମ୍ଭବେ ଦିଶୁଅଛୁ । ୫୦୩ ।
ଦୃଷ୍ଟାନ୍ତର କଥା ଦେଖିଲେ ନ ଜାଣ ।
ଯାହାର ଶରୀର ମଦନ ପ୍ରମାଣ । ୫୦୪ ।
ନୀଳ ଉତ୍ପଳ ରାଜୀବ ଦଳ ବେନି ଆଖି ।
ପଦ୍ମରାଗ ମାଣିକ୍ୟ ଅଧରକାଇ ସାକ୍ଷୀ । ୫୦୫ ।
ସୁଦୀର୍ଘ ନାସା ଯେହ୍ନେ ମାରଗ ମଣିଦଣ୍ଡ ।
କର୍ଣ୍ଣିକୁଣ୍ଡଳ କରଣ ମରଚଣ୍ଡ । ୫୦୬ ।
ଶିରେଣ ପୁଷ୍ପ ଜାଇଫୁଲ ଗନ୍ଧ ।
କପୋଳେ କସ୍ତୁରୀ ଚିତା ବଡ଼ ଶୋଭା । ୫୦୭ ।
ସର୍ବାଙ୍ଗେ ଚନ୍ଦନ କଣ୍ଠେଣ ମୋତିମାଳ ।
ନବରତ୍ନ ପଦେକ ଲମ୍ବଇ ବକ୍ଷସ୍ଥଳ । ୫୦୮ ।
ବାହୁେଣ ତାଡ଼ ଯେ ଭୁଜେଣ କଙ୍କଣ ।
ଜାଣି ପଞ୍ଚାନ୍ତର ସୂର୍ଯ୍ୟ କିରଣ । ୫୦୯ ।
ଅଙ୍ଗୁଷ୍ଠିରେ ଶୋହଇ ନବରତ୍ନ ବଛ ମୁଦି ।
ବଜ୍ରଲ ତେଜକ କଳାମେଘେ ସାଜି । ୫୧୦ ।
କଟୀରେ ସିଂଘ ମଧ୍ୟ ପତନୀ ପାଟପିନ୍ଧି ।
ଉପରେ ସୁରଙ୍ଗ ପାଟ ଦୋମଡ଼ା କରି ବାନ୍ଧି । ୫୧୧ ।
ପଦ୍ମରେ ନୂପୁର ରୁଣୁଝୁଣୁ ବାଜେ ।
ସୁନ୍ଦର କୁମାର ବସ୍ତ୍ରେ ଯେହ୍ନାକୁ ସେ ସାଜେ । ୫୧୨ ।
ଯେହ୍ନ କେଷ୍ଟ ଭାଇ ଦୃଷ୍ଟାନ୍ତରେ ଦର୍ଶି ।
ସଙ୍ଗେଣ ସାନୁଜ ଯେ ଘେନିଣ ଅଛୁ ଆସି । ୫୧୩ ।
ଯେ ଧନୁ ଧରିବ ସଣ୍ଢ ଏଥି ନାହିଂ ।
ବିଧାତା ନିର୍ମିତ ଯୋଗ୍ୟ ଥିଲା ନାହିଂ । ୫୧୪ ।
କେ ବୋଲଇ ଦେଖ ଟେଗୋ କୁଳଚାର ଗତି ।
ଭୂଷାଯେ ନଦୀକୂଳ ଯେହ୍ନେ ଚଳଇ ମତ୍ତହସ୍ତୀ । ୫୧୫ ।
ସୁନ୍ଦର ପଣ ତ ସରିସ ନାହିଂ ।
ପାଦକୁ ପଞ୍ଚାନ୍ତର କୋଟୀଏ କାମ ନୋହି । ୫୧୬ ।
କେ ବୋଲଇ ଅଟଇ ଆଜାନୁ ଯେହ୍ନା ବାହା ।
କେ ବୋଲଇ ଯେହ୍ନ ଖଣ୍ଡ କପୋଳ ଶଶୀ ଗୁହାଂ । ୫୧୭ ।

Digitized by srujanika@gmail.com

କେ ବୋଲଇ ସେହାର ନିବଡ଼ ବକ୍ଷସ୍ଥଳ ।
କେ ବୋଲଇ ଗୁମର ଅଟଇ ସେହାର ବାଳ । ୫୧୮ ।
କେ ବୋଲଇ ମହା ସମ୍ପୂର୍ଣ୍ଣ ସିଂହ ଠାଣି ।
କେ ବୋଲଇ ଦନ୍ତ ସିନ୍ଦୂର ମୋଢ ଜାଣି । ୫୧୯ ।
କେ ବୋଲଇ ଧନ୍ୟ ମାତା ଗର୍ଭଧାରୀ ସେହାର ।
କେ ବୋଲଇ ସାଧୁ ସାଧୁ ପିଅର କୁମର । ୫୨୦ ।
କେ ବୋଲଇ ଧନ୍ୟ ସେ ବିଶ୍ୱାମିତ୍ର ମୁନି ।
କେଉଁ ଦେଶରୁ ଅଣିଲା ସେ କାହୁଂ ଘେନି । ୫୨୧ ।
କେ ବୋଲଇ ଆମ୍ଭର ଜୀବନ ସୁଫଳ ।
ସେହାକୁ ଦେଖିଲୁ ସେ ପୂର୍ବ ପୁନ୍ୟ ଫଳ । ୫୨୨ ।
କେ ବୋଲଇ ଜନକ ଋଷି ପୁଣ୍ୟ କଲା ।
କେ ବୋଲଇ ସୀତାର ଆଜୁଂ କଷ୍ଟ ଗଲା । ୫୨୩ ।
ବାଡ଼ୁଅ ହୋଇ ସେଥେ ସୁଥାନେ ପଡ଼ିଲା ।
ଜାଣି ବୁଧ ତା ନିର୍ମାଣ ଆସି କଲା । ୫୨୪ ।
ନଷ୍ଟ ସେ ଧନୁ ସେ ଅସମ୍ଭବ ଆଜ ।
ଆଜର ନୋହିଲେ ନୁହଇ କଛୁ କାର୍ଯ୍ୟ । ୫୨୫ ।
କେ ବୋଲଇ ବାଲ୍ମୀକି ପ୍ରକୃତ ବଚନ ।
ସେ ଧନୁ ମହିମା ନ ଜାଣ ହୋ ଆନ । ୫୨୬ ।
କେ ବୋଲଇ ପୁଣି ନ ପାରଇ ଧରି ।
କେ ବୋଲଇ ପ୍ରସନ୍ନ ହୋଇବାକ ହରି । ୫୨୭ ।
କେ ବୋଲଇ ପ୍ରସନ ହୋଇବେ ସଦାଶିବ ।
ତାହାର କୋଦଣ୍ଡ ସେ ଅଟଇ ସେନ୍ତୁ ଅବ । ୫୨୮ ।
ସେହି ବୋଲିଛନ୍ତି ଜନେକଂ ଆଗର ।
ସେ ଧନୁ ଆମସ୍ଥିବ ସେହି କନ୍ୟା ବର । ୫୨୯ ।
ସେ କଥା ସନମତ କଲା ମହାଋଷି ।
ସେ ବେଳେ କାଳ ହୋଇଲାକ ଆସି । ୫୩୦ ।
ତୋହୋର ବୋଲ ଅନ୍ୟଥା ଦେବ ନୋହୁ ।
ସେହାକଇ ଧନୁ ପ୍ରସନ ସେବେ ହୋଉ । ୫୩୧ ।
ସୀତା ସୁଲକ୍ଷଣୀ ସେ କୁମାର ବଢ଼ିଧ ।
ସେହାକୁ ବର ସେ ମିଳଇ ସାଦୃସ । ୫୩୨ ।
ସେମନ୍ତ ବୋଲଣ ସେ ମଙ୍ଗଳ ବାଣୀ ଘୋଷି ।
ମଞ୍ଚୁ ପ୍ଷ ଦ୍ୱାରେ ରାମ ହୋଇଲାକ ଆସି । ୫୩୩ ।

Digitized by srujanika@gmail.com

ସଖିଜନମାନେ ସୀତ୍ୟାଙ୍କୁ କହନ୍ତି ।
ଦେଖ ଦେଖ ସଖି ଏହି ପୁରୁଷ ରତିକାନ୍ତ । ୫୩୪ ।
ଧନୁ ଧରିବ ବୋଲି ହୋଇଅଛୁ ହତାଶ ।
ତାରାଗଣ ମଧ୍ୟେ ଯେହ୍ନେ ପୂର୍ଣ୍ଣିମା ଚନ୍ଦ୍ର ଶୋଭା । ୫୩୫ ।
ଦେବଙ୍କର ଗୋଷ୍ଠୀରେ ଶ୍ରୀହରି ଯେହ୍ନେ ଦିଶି ।
ବନଜୀବ ମେଳେ ଯେହ୍ନେ ବିକ୍ରମ ସିଂହ ଆସି । ୫୩୬ ।
ଏହି ତୋହୋର ରୂପକୁ ଗୋ ମିଳଇ ସଖିବର ।
ଭାଗ୍ୟ ଥିଲେ ସଖି ଧନୁ ଏହି ଧରିବାର କର । ୫୩୭ ।
ସଖୀଙ୍କ ଏମନ ବଚନ ଶୁଣି ସୀତ୍ୟା ।
ଶ୍ରୀରାମଙ୍କୁ ଚାହାଇଁ ଜନକ ଦୁହିତା । ୫୩୮ ।
କୁମୁଦ ଚନ୍ଦ୍ରକୁ ଦେଖିଲେ ଭେଟାଭେଟି ।
ସୂର୍ଯ୍ୟଙ୍କୁ ଦେଖି ପଦ୍ମ ପୁଷ୍ପ ଫୁଟି । ୫୩୯ ।
ଚୁମ୍ବକ ଲୁହା ଦେଖି ଯେହ୍ନେ ପଥର ଜଡ଼ଇ ।
ସ୍ୱର୍ଗରୁ କି ଚନ୍ଦ୍ରଗ୍ରହ ତାରା ଖସିଣ ପଡ଼ଇ । ୫୪୦ ।
ପର୍ବତ ଶିଖରୁ କି ପଥର ଖସି ପଡ଼ଇ ।
ସମୋଦ୍ର କି ଲହଡ଼ି ସୂର୍ଯ୍ୟରେ ପଡ଼ଇ । ୫୪୧ ।
ପାରା ରସ ଯେହ୍ନେ ବନ୍ଧ ହୋଇଯାଇ ।
ମିଶାଇଲେ ଏକତ୍ର ହୋଇଣ ଲାଗଇ । ୫୪୨ ।
ତେମନକ ବୃତ୍ତାନ୍ତ ଶ୍ରୀରାମକୁ ଦେଖି ସୀତା ।
କପାଳେ କର ମାରି ସୁମରଇ ବିଧାତା । ୫୪୩ ।
ହେ ବ୍ରହ୍ମ ବିଧାତା ଦଇନ କରଇଁ ତୋତେ ।
ଏହି ବର ନବାଣ ପୁଣି ନକର ଗୋ ମୋତେ । ୫୪୪ ।
ଅନେକ କାଳହୁଁ ଅଛଇଁ ଦୁଖ ସହିଁ ।
ମଦନ ଅନୁକର୍ମେ ଯୁବା ତନୁ ବହିଁ । ୫୪୫ ।
ତୁ ମୋତେ ଅନୁରାଗ କର ଦେବରାଜ ।
କରୁଅଛୁ ଦଇନ ମୁଁ ଗ୍ରହଣ ସର୍ବକାର୍ଯ୍ୟ । ୫୪୬ ।
ଏହି ବର ଯେବେ ମୋତେ କରିବୁ ପରାପତ ।
ତେବେ ସେ ପରାଣ ମୁ ଧରିବି ନଅତ । ୫୪୭ ।
ନୋହିଲେ ଆଜ ମୁହିଁ କରିବି ପ୍ରାଣ ହତ୍ୟା ।
କିମ୍ପାଇ ତୋତେ ବୋଲିବେ ଜଗତର ପିତା । ୫୪୮ ।
ଏମନେକ ସମସ୍ତେ ଶୁଭିଲା ହୁଳହୁଳି ।
ବାମ ଚକ୍ଷୁ ଡେଇଁଲା ଉପତ ମହାସ୍ଥଳୀ । ୫୪୯ ।

Digitized by srujanika@gmail.com

ମନମାୟାଙ୍କର ପୁଚ୍ଛଇ ହରଷତ ମନ ହୋଇଂ ।
ବାମ ଚକ୍ଷୁ ମୋର ଡେଇଂଲା ଗୋ ସଦ୍ଧ । ୫୫୦ ।
ଶୁଣି ମନମାୟା ବୋଇଲାକ ହସି ।
ମୋହୋର ବୋଲ ପ୍ରତେ ଗୋ ନ କଲୁ ତ୍ରିକେଶୀ ।୫୫୧
ସେହ୍ନ ବର ତୋତେ ଗୋ ହୋଇବ ପର୍ଯ୍ୟନ୍ତ ।
ମୁହିଂ ଯାହା କହଇଂ ଗୋ ଅଟଇ ଦୃଢ଼ବତ । ୫୫୨ ।
ଏଥୁଅନନ୍ତରେ ଶୁଣ ଗୋ ଶାକେମ୍ବର ।
ଶ୍ରୀରାମ ବଜସ୍ତେ ଲକ୍ଷ୍ମଣ ଭୁଜଧର । ୫୫୩ ।
ଶ୍ରୀମୁଖ ଲୁଆଇଂ ମଞ୍ଜୁ ଘକଇ ଗୃହଂ ।
ସିଙ୍ଘ ଯେହ୍ନେ ହସ୍ତୀକ କନ୍ଦରେ ନିରୋପଇ । ୫୫୪ ।
ଧନୁ ଦେଖି ଯେ ଶ୍ରୀରାମ ତୋଷ ଚଉ ।
ଜନେକଙ୍କୁ ଗୃହଂ ବୋଲନ୍ତ ରଘୁନାଥ ।୫୫୫ ।
ବାହାରକୁ କାଢ଼ିକ ଆଣିମି ଶରାସନ ।
ତୁ ଯେବେ ମହାଋଷି ହୋଇବୁ ପରସନ । ୫୫୬ ।
ସଦାଶିବର ଧନୁ ଛୁଇଂଲେ ପାପ ମୋର ଯାଉ ।
ତୋମ ଚଉେ ସ୍ୱାମୀ ଆଗ୍ୟା ମୋତେ ହୋଉ । ୫୫୭ ।
ଶ୍ରୀରାମ ବଚନେ ବୋଲଇ ଜନେକ ।
ତୁ ସେହ୍ନା କେମନ୍ତେ ବୁଝିଲୁ କଉଶିକ । ୫୫୮ ।
ଅକଳଣା ଧନୁ ବାହାରକୁ ଲେଡ଼ୁ ଆଣି ।
ଏଥିର ସନ୍ଦେଶ ପାରୁଛିକ ଜାଣି । ୫୫୯ ।
ବିଶ୍ୱାମିତ୍ର ବୋଇଲେ କଲ ଯେବେ ସଧ ।
ପାରିଲେ ଆଣଇଂ କନା ନ କର ବିରୋଧ । ୫୬୦ ।
ଅସିକ୍ଷ କଥା ଯେହ୍ନୁ ବୁଝି କ ନା ଦେଖି ।
ଆଣି ପାରଲେ ସେହାକୁ ବଳବନ୍ତ ପଣେ ଲେଖି ।୫୬୧।
ଜନେକ ବୋଇଲା ବିଶ୍ୱାମଇଦ ମୁଖ ଗୃହଂ ।
ମହାଦେବ ଧନୁ ଛୁଇଂବାକୁ କେହ୍ନ ନାହିଂ । ୫୬୨ ।
ଅନେକ ଦେଶର ରାଜା ମିଳଣ ଅଛନ୍ତ ।
ଧରି ନ ପାରି ଲଜ୍ୟା ପାଇଲେ ବେନ ଯାନ୍ତ । ୫୬୩ ।
ଏ ବାଳପୋସ୍ତେ ଧନୁ ଯେ କେମନ୍ତେ ଆମଣ୍ଡିବେ ।
ଚଉକୁ ନ ଆସଇ କେମନ୍ତେ ଜାଣିବେ । ୫୬୪ ।
ଜନେକର ମୁଖୁଂ ଏସନେକ ବାଣୀ ଶୁଣି ।
ରାଜାମାନେ ସମସ୍ତେ ବୋଇଲେ ଏକ ବାଣୀ । ୫୬୫ ।

Digitized by srujanika@gmail.com

ସେ ଋଷି କହିଲା ଯେ ବୋଲୁ ଧନୁ ଆଣ ।
ଭୁଞ୍ଜିବା ନା କେତେକ ସେହ୍ନାର ବଳ ପ୍ରାଣ । ୫୬୬ ।
ଜଳନ୍ତା ଅଗ୍ନିରେ ଯେବେ ପଶିତ ମନ କରଇ ।
ସାମାନ୍ୟ ଭରସା କି ସମୋଦ୍ର ପହଁରଇ । ୫୬୭ ।
ଆମ୍ଭେମାନେ ଖଞ୍ଜଂ ଅଇଲରତ ଦେଖିଲୁ ।
କେବଣ ଦର୍ପରେ ସେ ଭରସା ସେଡ଼େ କଲୁ । ୫୬୮ ।
ବୋଲ ହୋ ଜନେକ ସେ ଧନୁ ଘେନ ଆସୁ ।
ବାହାରକୁ ଆଣି କୋଦଣ୍ଡ ଆରୋପୁ । ୫୬୯ ।
ସବୁଙ୍କର ସହୁଂ ହୋଇଲୁ ସନମତ ।
ହସିଣ ବୋଇଲେ ଜନେକ ତପୋବନ୍ତ । ୫୭୦ ।
ତୁ ରାମ ବାଳୁତ ଅଳପ ବୟସ ।
ଧନୁ ଧରିବାକୁ ବଳ ତୋର କିସ । ୫୭୧ ।
ବଳବନ୍ତମାନେ ଗଲେ ସେଥୁ ଫାଟି ।
ତୁ କିସ କରିବୁ କସେଂଲା ପୁଅଗୋଟି । ୫୭୨ ।
ଧନୁର ସେକ ଗୁଣ ଅଛୁ ସେବେ ଜାଣ ।
ଛୁଇଁବା ମାତ୍ରକେ ଅଗ୍ୟାନ ହୋଏ ପ୍ରାଣ । ୫୭୩ ।
କାଳେ ବୋଲିବୁ ମୋତେ ନ କହିଲୁ ବୋଲି ।
ମୋହୋର ଦୋଷ ନାହିଂ ତୋତେ ଯେ କହିଲି ।୫୭୪।
ଶ୍ରୀରାମ ହସିଣ କହନ୍ତି କର ଯୋଡ଼ି ।
ପାରିଲେ ସିନା ମୁଂ ଆଣିମି ଉଚ୍ଚୁଡ଼ି । ୫୭୫ ।
ନୋହିଲେଣ ସିନା ନେମୁ ବାହୁଡ଼ାଇ ।
ଆଗ୍ୟାଂଦେଲେ ମୁଇଂ ଆଣିମଇଂ ଯାଇଂ । ୫୭୬ ।
ରାମର ନିଷ୍ଠୁର ସେ ବଚନ ଶୁଣି ।
ଜନେକ ବୋଇଲେ ଯେ ମନେ ମନେ ଗୁଣି । ୫୭୭ ।
ପାରିଲେ ଧନୁ ଆଣ କିସ ଆଗ୍ୟା ମାଗୁ ।
ସବିବେ ବାଳୁତ ଯେ ଗେଧିଆ ହୋଇ ଲାଗୁ । ୫୭୮ ।
ଜନେକ ବଚନ ଶୁଣି ରଘୁସାଇଂ ।
ମଞ୍ଜୁଷ ଦ୍ୱାରେ ରାମ ବିଜେମି ଯାଇ ହେ ଇ । ୫୭୯ ।
ଯୋଧରେ ଛନ୍ଦ ହୋଇଲେ ଦେବତାଏ ବ୍ରହ୍ମଂ ।
ମଞ୍ଚର ନରମାନେ ହସନ୍ତେ କୁହାକେ । ୫୮୦ ।
ଯେମନ୍ତେ ବାରୁ ଆକର୍ଷିଣ ଧନୁ ଧର ।
ସେସ ଓଧ କାରେ ବାରେକ ଆମଞ୍ଚନ କର । ୫୮୧ ।

Digitized by srujanika@gmail.com

ଜନେକର ବଚନ ତୋ ସେ ସିଦ୍ଧ ହୋଉ ।
ସୀତା ସୁଲକ୍ଷଣୀ ବନ୍ଧୁ ଯୋଗ ପାଉ । ୫୮୨ ।
ସେହିକ ଆରକେଣ ହୁଅନ୍ତେଣ ଗୋଳ ।
ଅଙ୍ଗୁଷ୍ଠି ଦେଖାଇଂ ଚଳନ୍ତି ସକଳ । ୫୮୩ ।
ମଞ୍ଚ ଭିତରେ ଶ୍ରୀରାମଚନ୍ଦ୍ର ପଶି ।
ବାମ ଭୁଜେ ଧନୁ ଅଇଲେ ଆକର୍ଷି । ୫୮୪ ।
ବାହାର କର ଧନୁ ଘେନ ଅଇଲେ ରଘୁନାଥ ।
ଦେଖନ୍ତି ସର୍ବଜନ କୋଦଣ୍ଡ ଅଛି ହସ୍ତ । ୫୮୫ ।
ଆନନ୍ଦେ ଉପଚ ହୁଅନ୍ତି ନରନାରୀ ।
ଧଇଲାରେ ଧନୁ ସମସ୍ତେ ଗୋଳକରି । ୫୮୬ ।
ଦେଖି ବିଶ୍ୱାମିତ୍ରର ପୁଲକଇ ଶରୀର ।
ସାଧୁ ସାଧୁ ଶବଦ ଶୁଭଇ ଜନପୁର । ୫୮୭ ।
ଧନୁ ଘେନ ରାମ ଅଛନ୍ତି ଉଭାହୋଇ ।
ଲକ୍ଷ୍ମଣ ବୋଲନ୍ତି ଦଣ୍ଡବତ କରଇ ଗୃହଂ । ୫୮୮ ।
ସାବଧାନ ହୋଇ ତୁମ୍ଭେ ଶୁଣ ରଘୁବୀର ।
ମିଳିଅଛନ୍ତି ଯେ ସକଳ ନୃପବର । ୫୮୯ ।
ହେଠ ମାଥ ହୋଇଣ ଯେ ନଧର ଧନୁ ହାଥ ।
ନମସ୍କାର କଲା ପ୍ରାୟେ ମଣିମେ ଜଗତ । ୫୯୦ ।
ସେହିସନେକ ବୋଲି ଯେ ବୀର ପୃଥିକ ପୁଣ ଗୃହଂ ।
ଏବେ ପୃଥିବୀ ରହସି ଥିର ହୋଇ । ୫୯୧ ।
ତୋହୋର ଇଚ୍ଛାସେ ତୁ ଥିର ହୋଇ ଆସି ।
ଅସମ୍ଭାଳ ହୋଇଲେ ହାଦେ ପିରୁଟି ଭାସି । ୫୯୨ ।
ବାସୁକ ଧରୁ ତୋତେ ସାବଧାନ ହୋଇ ।
କୂର୍ମରାଜ ତୋତେ ଥାଉ ଅବଧାନ ହୋଇ । ୫୯୩ ।
ଦିଗପାଳମାନେ ଶୁଣ ସାବଧାନେ ।
ଅଲପକରି ଗର୍ବ ନ ଧରିବ ମନେ । ୫୯୪ ।
ମନ୍ଦର୍ବୀର୍ଯ୍ୟ ହୋଇଲେ ଧିର୍ଯ୍ୟପଣ ଯିବ ।
ଈଶ୍ୱର ଧନୁ ଆଜ ଶ୍ରୀରାମ ଆମର୍ଷିବ । ୫୯୫ ।
ସେହିଥିଅନନ୍ତରେ ଶୁଣିମା ଚମ୍ବାଣୀ ।
ନିଶବଦ ହୋଇ ଦେଖନ୍ତି ସର୍ବପ୍ରାଣୀ । ୫୯୬ ।
କୋଦଣ୍ଡ ଧରିଣ ଅଛନ୍ତି ଦାଶରଥି ।
ଶୁଣ ଦେବକଇ ବିଚୁରନ୍ତି ମତି । ୫୯୭ ।

Digitized by srujanika@gmail.com

ପୃଥିର ଉତ୍ତରୁ ଶୁଭିଲା ବଚନ।
ମୋତେ ରକ୍ଷାକର ରଘୁକୁଳ ନାନ। ୫୯୮।
ଧନୁର୍ଦ୍ଧର ଯେବେ ଦେବୁ ମୋହୋ ତହିଂ।
କଷ୍ଟସ୍ତେ ପ୍ରସାହୁଲେ ପଡ଼ିବ ଗୋସାଇଂ। ୫୯୯।
ମେଂରୁ ହୁଂ ଶତଗୁଣେ କୋଦଣ୍ଡ ଅଟଇ ଗରୁ।
ମୁହିଂ ତାହା ବହିବାକୁ ନୁହଇ ବଳୀଆରୁ। ୬୦୦।
ଶୁଣିଣ ଶ୍ରୀରାମ ପୃଥିଙ୍କ ଦୟାକଲେ।
ନିଜ ବାମପଦେ ଅଙ୍ଗୁଷ୍ଠି ବଢ଼ାଇଲେ। ୬୦୧।
ବୃଦ୍ଧା ଅଙ୍ଗୁଷ୍ଠିର ନଖର ଉପରେ।
ତହିଂ ଧନୁର୍ଦ୍ଧର ନଦଲେ ରଘୁବୀରେ। ୬୦୨।
ଶରାସନ ମଣ୍ଡଳକ ବାମ କରେ ଧରି।
ଗୁଣ ଦେବାକଇ ଆଶନ୍ତ ଓଟାରି। ୬୦୩।
ମଡ଼ ମଡ଼ ଶବଦ ଶୁଭଇ କୋଦଣ୍ଡ।
ଥର ଥର କମ୍ପଇ ମେଦିନୀ ନବଖଣ୍ଡ। ୬୦୪।
ଗୁଣ ଫାସି ରାମ ଦକ୍ଷିଣ କରେ ଧରି।
ଧନୁର୍ଦ୍ଧର ଉପରେ ନେଇକରି ଭରି। ୬୦୫।
ଯହୁଂ ସେ ଶାସ୍ତ୍ରେକ ଓଟାରି ଦେଲେ ଗୁଣ।
ଶିର ଲମ୍ବାଇଲେ ସକଳ ରାଜାଗଣ। ୬୦୬।
ବାର ବଂଶର ପୁଅ ଯେଝୁ ଜଳ।
ସବୁର ମୁଖରେ ସେ କାଳି ଲଗାଇଲା। ୬୦୭।
ଗୁଣ ଦେଇ ଯହୁଂ ଧଇଲେ ସଜ କରି।
ସଭାଜନ ମନ ଅନନ୍ଦ ସବୁଙ୍କରି। ୬୦୮।
ଧନୁ ଧରି ରାମ ଗୁଣ ଟଙ୍କାରନ୍ତି।
ଦେଖି ଜନେକଂର ଫାଟିଲା ମନ ଭ୍ରାନ୍ତି। ୬୦୯।
ମନେ ବିଚାରଇ ସେ ସେ ବାପୁଦେବ।
ନୋହିଲେ କି ଯେ ଅନ୍ୟ ଆନ ଆମଣ୍ଟିବ। ୬୧୦।
ରୁଦ୍ର ସେ ବହିବାକୁ ଅଟନ୍ତି ସାମରଥ।
ସ୍ୱୟଂ ନାରାୟଣ ହୋଇଛନ୍ତି ଜାତ। ୬୧୧।
ଅବଦ୍ୱେଲେ ଧନୁ କଲକ ଆସ୍ୱତ।
ନାଷ୍ଟସ୍ତେ ସୀତାୟା ଯେ ଯେହ୍ବାକୁ ପରାପତ। ୬୧୨।
ସ୍ୱେଥିଣ ଶ୍ରୀରାମ ଶାସ୍ତ୍ରେକ କରେ ଧରି।
ଦକ୍ଷିଣ କରେ ଧନୁ ଆଣିଲେ ଉଚ୍ଚୁଡ଼ି। ୬୧୩।

Digitized by srujanika@gmail.com

ଧନୁ ବୋଇଲା ତୁ ଶୁଣ ରଘୁନାଥ ।
ହେଲେ ନାଶ ନ କର ମୋହୋର ପୁରୁଷାର୍ଥ । ୬୧୪ ।
ଅକଳବଳ ସ୍ୱେ ଅଛଇ ମୋର ପା... ।
କ୍ଷତ୍ରୀଗଣଙ୍କଇ ମୁଂ ଆକର୍ଷଣ ନ ଯାଇଂ । ୬୧୫ ।
ନାନା ଦେଶର ନୃପତ୍ତ ଗଲେ ଲାଜ ।
ଈଶ୍ୱର ସେ ବଳେ ପାରଇ ମୋତେ ରାଜ । ୬୧୬ ।
ତୁ ଯେବେ ଆମଣ୍ଡିଲୁ ଧନ୍ୟ ତୋହୋର ବଳ ।
ଯଶ ପଉରୋଷ ରହିଲା ରବ ତଳ । ୬୧୭ ।
ମୁହିଂ ପ୍ରସନ୍ନ ହୋଇଲି ଯହୁଂ ତୋତେ ।
ତେଣୁକର ରାମ ଆକର୍ଷିଲୁ ମୋତେ । ୬୧... ।
ଯେବେ ଥିରକର ଅନ୍ତୋଶ୍ଚ ରଘୁନାଥ ।
କରୁଣାସାଗର ବାନା ଅଛଇ ତୋହୋର । ୬୧୯ ।
ଧନୁର କାକୁସ୍ଥ ବଚନ ରାମ୍ଭ ଶୁଣି ।
ହୃଦ କମଳ ମଧ୍ୟେ ହସନ୍ତ ରଘୁମଣି ୬୨୦ ।
ବୋଲନ୍ତ କର୍ମା ତରସ୍ତ ହୋଇ ଭୃପ ।
କଥା ନ ବୁଝିଣ ପାଉ ଗରୁ ତାପ । ୬୨୧ ।
ତୋତେ ଆକର୍ଷଣ ଯେବେ ନ କରିବି ମୁହିଂ ।
ଲଜ୍ୟା ପାଇବ ନା ରାଜାଙ୍କରେ ତହୁଂ । ୬୨୨ ।
ତୁ ଯେବେ ଧାର୍ମିକ ହୋ ଅଛୁ ଗ୍ୟାନବନ୍ତ ।
କାର୍ଯ୍ୟବେଳେ କର୍ମା ନ ଜାଣୁ କର୍ଯାନ୍ତ । ୬୨୩ ।
ତୋତେ ଘେନ ହର ଦକ୍ଷ ଯଗ୍ୟଂ ନାଶି ।
ଦେବଙ୍କୁ କୋପିଲୁ ସେ କପିଳାଯବାସୀ । ୬୨୪ ।
ସେ କାଳର ପ୍ରାୟେ ମଣିଲୁକ ଆଜ
ଦେହ ଦେଇ ଆଜ କର ପରକାର୍ଯ୍ୟ ୬୨୫ ।
ସ୍ୱେଅନେକ ଯୋଗ ଅଛଇ ତୋତେ ... ।
...ବେ ଯାହା ସେ ଲେଖନ କରିଛୁ ବ... । ୬୨୬ ।
ଯତେକ ସମସ୍ତେ ତୋହୋର ଆଇସ ଥିଲା
...ହାଦ ବୋଲେ ସେ ହୋଯ୍ୟେ ଆନ କଲା । ୬୨୭ ।
ସ୍ୱେଅନେକ ହୋଇଲା ଅଛୁ ପୂର୍ବେ ଭଥା... ।
...ଡ଼ୀ ବ... ଧନ ଯରବ ତୋହୋ ପ୍ରା... । ୬୨... ।
...ସେ କଥା ... ହୋଇଲକ ... ।
...ହେ ଶାସନ ନାଶ ତୁ ହୁଅ... । ୬୨... ।

Digitized by srujanika@gmail.com

ଯେସନେକ ବଚନେ ଭବଦ୍ଧ ଶରାସନ ।
ଗୁଣଧର ରାମ ଉନ୍ମୁକ୍ତ ପୁଣ । ୬୩୦ ।
ଦକ୍ଷିଣ କର୍ଣ୍ଣଯାଏ ଓଟାରଣ ଆଣୁ ।
ଲଠି ପରାସ୍ମକ ହୋଇଲା ଶିବଧନୁ । ୬୩୧ ।
ଶ୍ରୀରାମ ବିକ୍ରମ ରୂପ ଦେଖିଣ ଯେ ସୀତ୍ୟା ।
ମନ ପ୍ରଫୁଲ୍ଲ ଯେକକର ଜନେକ ଦୋହିତା । ୬୩୨ ।
ନୟନର ସଙ୍ଗେ ପେଷିଲା ଯେହାନ୍ତ ।
ବିଗ୍ରହଇ ଏ ଯେ ଅଟଇ ମୋର କାନ୍ତ । ୬୩୩ ।
ଧନୁ ଗୁଣ ରାମ ଯହୁଂ ଆସଞ୍ଚିଲେ ।
ସୀତସ୍ଥାର ମନ ତହୁଂର ସଙ୍ଗେ ନେଲେ । ୬୩୪ ।
ସ୍ଵର୍ଗେ ସାଧୁ ସାଧୁ ବୋଲେ ସୁରଗଣ ।
ଧନ୍ୟ ଶ୍ରୀରାମ ତୋ କ୍ଷତ୍ରୀବୃତ୍ତି ପୁଣ । ୬୩୫ ।
ଆସ୍ଥାନରେ ଲୋକେ ଆଶ୍ଚିଜ ହେଲେ ଗୃହୁଂ ।
କେ ବୋଲଇ କେବଣ ସ୍ତ୍ରିଷ୍ଟି ଅଟଇ ଯେହାର ଆଈ ।୬୩୬।
ଅସଂଖ୍ୟ କଥା ଯାହା ଶୁଣିଲୁ ନ ଥିଲୁ ।
ଯେବେ ଦେଖିଲୁ ପାତକ ଆମ୍ଭ ଗଲୁ । ୬୩୭ ।
ଯେଥୁଅନନ୍ତରେ ଶ୍ରୀରାମ ଧନୁ ଧରି ।
ପୁଣ ପୁଣ ଗୁଣ ଆକର୍ଷେ ଉଚ୍ଛୁଡ଼ି । ୬୩୮ ।
ଆତଯାତ କରି ଉନ୍ମୁକ୍ତିଲେ ଯହୁଂ ।
ଜସତ ତତ୍ତ୍ୱ ଧନୁ ବୋଇଲାକ ତହୁଂ । ୬୩୯ ।
ଅତହୁଂ ଆସଞ୍ଚନ୍ତେ ନିବଳ ଶରାସନ ।
ମଡ଼ ମଡ଼ ଶବଦ ଶୁଭଇ ଘନ ଘନ । ୬୪୦ ।
ମଧ୍ୟରୁ ଭଜ୍ଜିଲା ଦେଖଣ୍ଡ ହୋଇ ।
ପୃଥ୍ୱ କମ୍ପିଲା ଯେ ଉଲ୍କାପାତ ହୋଇ । ୬୪୧ ।
ଆଦତ୍ୟ ଦେବତା ଭୟେଣ ଅଚ୍ଛ ରହି ।
ଅସ୍ଥିଭୂତ ହେଲା ସପତ ଦୀପା ମହୀ । ୬୪୨ ।
ସପତ ସମୋଦ୍ର ଲହରୀ ହୋଏ ଧିର ।
ତତେ ଧୀର ଧୀର ବହଇ ସମୀର । ୬୪୩ ।
ପ୍ରଶୁରାମ ଶୁଣି ଭଜନ୍ତ ତାର ରବ ।
ବୋଇଲା କମ୍ପୂତ ହୋଇଲା ଅପୂର୍ବ । ୬୪୪ ।
ଧ୍ୟାନେଣ ଜାଣିଲେ ଧନୁ ଭଗ୍ନ କଲା ।
ଜାଣି ପ୍ରଶୁରାମ ମନେ ଶଙ୍କା କଲା । ୬୪୫ ।

Digitized by srujanika@gmail.com

କଇଲାସ କନ୍ଦରେ ଶଙ୍କର ଗଉରୀ ।
ବୃଷ ଦେଣ ବସି ଅଛନ୍ତି ଜଳ କରି । ୬୪୬ ।
ସଦାଶିବ ଉମାଙ୍କୁ ସମାଦ ଦେଇ ମନ ।
ପୁଣି ଲଜ ଲଜ କରନ୍ତି ତ୍ରିଲୋଚନ । ୬୪୭ ।
ପାର୍ବତୀଙ୍କି ରୁଦ୍ର ଅଛନ୍ତି ଟଛି କରି ।
କଥା ବଇପୁନ୍ୟ ଅଚନ୍ତି ମନେ ଧରି । ୬୪୮ ।
ହସ ହସ ହୋଇ ବୋଲନ୍ତି ଶୂଳପାଣି ।
କେମନ୍ତ କଥା ମୋତେ କହଇ ହେମବନ୍ତର ଦୁଲଣୀ ।୬୪୯।
ଯେମନ୍ତ ସମୟେ ଭାଜିଲା କୋଦଣ୍ଡ ।
ଥରହର ହୋଇ କମ୍ପିଲା ମେଦନୀ ନବଖଣ୍ଡ । ୬୫୦ ।
କଇଲାସ ପୁରକୁ ଶୁଭିଲା ଶବଦ ।
ଶୁଣି ବନଜନ୍ତୁ ହୋଇଲେ ତବଦ । ୬୫୧ ।
ଲକ୍ଷେକ ବଜ୍ର କି ପଡ଼ିଲା ଯେକ ହୋଇ ।
ଭୟେଣ ଉମାଦେଇ ଗଲେକ ପଳାଇ । ୬୫୨ ।
ତରସ୍ତ ହୋଇଣ ରୁଦ୍ରଙ୍କ କୋଳକଲା ।
କୁଚକୁମ୍ଭ ଦୁଇ ଲଗାଇ ଭିଡ଼ିଲା । ୬୫୩ ।
ଡରେଣ ଥର ହର କମ୍ପିଲା ପାର୍ବତୀ ।
ଅତି ଆନନ୍ଦେଣ ହସନ୍ତି ପଶୁପତି । ୬୫୪ ।
ମନେ ବିସ୍ମରନ୍ତି ଧନ୍ୟ ରଘୁନାଥ ।
ତୋହୋରେ ଦେଲା ମୋତେ ଯେତେକ ପୁରୁଷାର୍ଥ ।୬୫୫।
ଜଙ୍ଗୁ ସେ ଧନୁ ନାହିଁ ମୋର ଖେଦ ।
ପାର୍ବତୀ ପ୍ରୀତି ମୋର ସକଳ ସମ୍ପଦ । ୬୫୬ ।
ଅନେକ ଦ୍ରବ୍ୟ ମୋର ହେଉ କି ନା କ୍ଷୟେ ।
ଯେକଥା ସେ ମୋତେ ବହୁତ ଭଲ ହୋଏ । ୬୫୭।
ପ୍ରସନ୍ନେ ଶଙ୍କର ରାମଙ୍କୁ ବର ଦେଲା ।
ସୀତା ପ୍ରାପତ ତୋତେ ହେଉସି ବୋଇଲା । ୬୫୮ ।
ଯେଥୁଅନନ୍ତରେ ଶୁଣ ସେବାଣୀ ।
ଅକଳବଳ ଧନୁ ଭଙ୍ଗିଲେ ରଘୁମଣି । ୬୫୯ ।
ଆସ୍ଥାନର ମଧ୍ୟେ ଅଛନ୍ତି ବଜେ କରି ।
ମନେ ବିସ୍ମରଇ ଜନେକ ତପସ୍ବୀ । ୬୬୦ ।
କି ଯେ ରୁଦ୍ର ଗୋବିନ୍ଦ ଦୁଇ ରୂପ ଯେକ ।
ଆନର ବୋଲେ କି ଭାଗଇ କାର୍ମୁକ । ୬୬୧ ।

Digitized by srujanika@gmail.com

ତୋଳିତ ଖର୍ଜନ ନୋହୋଇ ଆନ ଲୋକ ।
ଈଶ୍ୱର ସେ ତୋଳି ପାରଇ କାର୍ମୁକ । ୬୬୨ ।
ଯେସନକଂ ସମସ୍ତେ ବିଶ୍ୱାମିତ୍ର ଉଠି ।
ଜନକେ ସହିତେଣ ହୋଇଲେ ଯେକ ଗୋଷ୍ଠୀ । ୬୬୩ ।
ମୁନିମାନେ ରଣ୍ଡ ହୋଇଣ ବିସ୍ମୟ ।
ରାମର ବେଳେ ହେ ଯେ କର୍ମ ହୋଏ କିର । ୬୬୪ ।
ଅନେକ କାଳୁହଂ ଆମ୍ଭେ ଆଶ କରିଥିଲୁ ।
ଧନୁ ସମ୍ଭ୍ରମୁର ଯେବେ ସେ ଦେଖିଲୁ । ୬୬୫ ।
ଦଶରଥ ରାଜାର କି ସାମାନ୍ୟ ପୁଣ୍ୟ ହୋଇ ।
ଯେସନେକଂ ପୁଅ ଅଟନ୍ତି ଅଛୁ ସେହୁ । ୬୬୬ ।
ଦେଖଣାହାରମାନେ ଦେଖିଣ ଅଛନ୍ତି ।
ଧନ୍ୟ ଧନ୍ୟ ବୋଲି ରାମଙ୍କୁ ପ୍ରଶଂସା କରନ୍ତି । ୬୬୭ ।
ବାଳୁତ ପୁଅ ଗୋଟି କୋମଳ ତୋର ବାହୁ ।
ବଜ୍ର ସମ ଧନୁ ଭଙ୍ଗିଲୁ ବାରୁ କାହୁଂ । ୬୬୮ ।
ମଧୁର ମୁଖ-ଗୋଟି ଯାଉ ନିଛୁଲି ।
ତୁ ସେ ଶ୍ରୀରାମ ହୋ ସବୁରି ଦୁଲ୍ଲଭ । ୬୬୯ ।
ଶ୍ୟାମଳ ସୁନ୍ଦର ହୋ ପଙ୍କଜ ତୋହୋର ଅଙ୍ଗ ।
ପାଦକୁ ପଟାନ୍ତର ନୋହେ କୋଟିଏ ଅନଙ୍ଗ । ୬୭୦ ।
କାହୁଂ ବିଧାତା ଥିଲା ତେ ତେ ଯୋଇ ।
ସୀତାଇ ଅଛୁ ହେବେ ଅବଶ୍ୟ ହୋଇ । ୬୭୧ ।
ଯେ ଦୁଇକଥା ସେ ଦଇବ ଆସ୍ୱେଡ଼ ।
ଯେତେ କାଳେ ଅଣି କଲିକ ସଯୁଂତ । ୬୭୨ ।
କଉଶିକ ବୋଲଇ ଜନେକ ମୁଖ ଚାହିଂ ।
ଯେବଣ ସତ୍ୟ କରିଅଛ ତପସାଇଂ । ୬୭୩ ।
ସେ ବ୍ରତ-ପୂରିଲା ସୀତ୍ୟାକୁ ବିଭାକର ।
ତାହାର ସାଦ୍ଧୁ ସେ ମିଳିଲା ହେବେ ବର । ୬୭୪ ।
ଶୁଣିଣ ଜନେକ ହରଷ ମନ ହୋଇ ।
ସତ୍ୟାନନ୍ଦଙ୍କଇ ରାଇଣ ଅର୍ଘ୍ୟା ଦେଇ । ୬୭୫ ।
ନଗ୍ର ଉଚ୍ଛବ ତୁ କରିଅ ବୋଇଲା ।
ସୀତା ହାନଧିକୁ ଆପଣେ ଚଳିଗଲା । ୬୭୬ ।
ସିତାକୁ ଦେଖି ବାଳୀ ଲଜ ଲଜ କରି ।
ସଖିଙ୍କ ମଧ୍ୟେ ଉହାଡ଼ ହୋଇଲେ ସୁନ୍ଦେରୀ । ୬୭୭ ।

Digitized by srujanika@gmail.com

ଜନେକ ବୋଲଇ ଗୋ ଆସ ଆସ ମାଏ୍ତ ।
ତୋହୋର ସାଦ୍ଧି ସେ ଗୋ ବର ମୁହିଂ ପାଏ୍ତ । ୬୭୮ ।
ଦଶରଥ ରାଜା ସୂର୍ଯ୍ୟବଂଶେ ଜାତ ।
ଶ୍ରୀରାମ ନାମେଣ ଯେ ତାହାର ଅଟେ ସୁତ । ୬୭୯ ।
ବର୍ଣ୍ଣେଣ ସୁନ୍ଦର ଅଳପ ବୟସ ।
ସର୍ବ ସୁଲକ୍ଷଣ ଦେବତା ସାଦୃଶ । ୬୮୦ ।
କ୍ଷତ୍ରୀପଣେ ତାକୁ ନାହିଂ ସମସର ।
ଅଗମ୍ୟ ବୟସ୍ୟେଣ ତାଡ଼କା ବଧକର । ୬୮୧ ।
ବିଶ୍ୱାମିତ୍ର ଯାଗ୍ୟ ରଖିଲା ବାହୁବଳେ ।
ଅନେକ ଦୈତ୍ୟ ସେ ମାଇଲା ବାଳକାଳେ । ୬୮୨ ।
ଶାପେ୍ୟଣ ଅହଲ୍ୟା ପାଷାଣ ହୋଇଥିଲା ।
ଶ୍ରୀରାମ ପାଦ ଲାଗି ଶରୀର ପାଇଲା । ୬୮୩ ।
ସୋର୍ଗେ ଦେବତାଏ୍ତ ବହୁତ ପ୍ରଶଂସାକଲେ ।
ବିଶ୍ୱାମିତ୍ର ସଙ୍ଗେ ଏ୍ତଥକୁ ଅଇଲେ । ୬୮୪ ।
ଈଶ୍ୱରଙ୍କ ଧନୁ ଅଟଇ ଅକଳ ବଳ ।
ଭୂମିରୁ ଛଡ଼ାଇ ନ ପାରନ୍ତି ସକଳ ଦିଗପାଳ । ୬୮୫ ।
ପ୍ରଶୁରାମ ଯାହା ଦେଖିଲେ ଅପସରଇ ।
କ୍ଷତ୍ରୀ ହୋଇଂ ଆନ ଧରିତ ନ ପାରଇ । ୬୮୬ ।
ସେ ଧନୁ ରାମ ଯେ ଧଇଲେ ଭୁଜବଳେ ।
ଉଦ୍ଭୁତ ଦେଖିଲୁ ନୟନର ତୋଳେ । ୬୮୭ ।
ଏ୍ତବେ ତୁ ଆସ ଶରଦ ଚନ୍ଦ୍ରମୁହିଂ ।
ଶ୍ରୀରାମଙ୍କୁ ବର ଗୋ ପୁଷ୍ପମାଳା ଦେଇ । ୬୮୮ ।
ଏ୍ତ ମୋହୋର ସତ୍ୟ ବଚନ ପୂରଇ ।
ଶ୍ରୀରାମ ଆମନ୍ତ୍ରନ କଲାକ କାର୍ମୁକ । ୬୮୯ ।
ଆସ ଆସ ମାଏ୍ତ ଗୋ ବିଳମ୍ବ ନ କର ।
ମାହେନ୍ଦ୍ର ଯୋଗ ବେଳ ଏ୍ତ ଶ୍ରୀରାମଙ୍କୁ ବର । ୬୯୦ ।
ପିଅର ମୁଖରୁ ଏ୍ତସନ ବାକ୍ୟ ଶୁଣି ।
ଉଠିଣ ଉଭା ହୋଇଲେ ଯୁବତୀ ଶିରୋମଣି । ୬୯୧ ।
ସନ୍ତୋଷ ଚିତ୍ତେଣ ଆସନ୍ତି ଧୀର ଧୀର ।
ସଙ୍ଗେ ପରିବାର ଅଛନ୍ତି ଅପାର । ୬୯୨ ।
ନବରତ୍ନମାଳା ଦେଖା କରେ ଘେନ ।
ହେଳୁ ହେଳୁଂ ଚାଲଇ ଜାଣ କମଳିଣୀ । ୬୯୩ ।

Digitized by srujanika@gmail.com

ଶ୍ରୀରାମ ସନ୍ନିଧେ ମିଳିଲେକ ଯାଇଁ ।
ଅତି ଆନନ୍ଦେଣ ହରଷ ମନ ହୋଇ । ୬୯୪ ।
ପିତାର ଆଜ୍ଞାଂ ଦେବୀ ସନମତ କରି ।
ନବରତ୍ନମାଳା ଦେବୀ କରେ ଅଛୁ ଧରି । ୬୯୫ ।
ଶ୍ରୀରାମର କଣ୍ଠେ ଲମ୍ବାଇଲେ ନେଇ ।
ସୂର୍ଯ୍ୟଚନ୍ଦ୍ର ଭେଟ ହୋଇଲେକ ତହୁଂ । ୬୯୬ ।
ମୁଖେ ମୁଖ ଯହୁଂ ନିକଟେ ହୋଇଲା ।
ଭ୍ରମରକ ଶ୍ୱେତ ପଦ୍ମକୁ ଚୁମ୍ବିଲା । ୬୯୭ ।
ଭେଟ ପଡ଼ନ୍ତେଣ ହସନ୍ତି ବେନି ଜନ ।
ଆନନ୍ଦେଣ ସନ୍ତୋଷ ହୋଇଲା ବେନି ମନ । ୬୯୮ ।
ସ୍ୱର୍ଗେ ସାଧୁ ସାଧୁ ଶୁଭିଲେକ ଧ୍ୱନି ।
ସୁରବେଦ ଆଧାନ କରନ୍ତି ସୁରମୁନି । ୬୯୯ ।
ଅପ୍ସରୀମାନେ ଦିଅନ୍ତି ହୁଳହୁଳି ।
କି ବାଣି ସେ ଧ୍ୱନି ସାହେର ଉଚ୍ଛୁଳି । ୭୦୦ ।
ଦେବଶାସ୍ତ୍ର ଲୋକେ ଜୟେ ଜୟେ କରି ।
ସ୍ୱେ ଦେବେ ରେକ ସ୍ୱରୂପ ଉଚ୍ଚରି । ୭୦୧ ।
କେ ତେବେ ଇ ସୀତା କେବଳ ରୂପକଳା ।
ରୂପ ଅନୁରୂପେ ସ୍ୱେ ବର ପାଇଲା । ୭୦୨ ।
ଦେଖନ୍ତି ଶ୍ରୀରାମ ବିଜେସ୍ୱେ ସଭା ମଝି ।
ଦକ୍ଷିଣ ଦିଗେ ଉଭା ଜନେକଂ ଆତ୍ମଜା । ୭୦୩ ।
ବାମେଣ ଲକ୍ଷ୍ମଣ ଅଛଇ ବୀରମଣି ।
ଗହ ଗହ ଶବଦ ଶୁଭଇ ଗୋଳବାଣୀ । ୭୦୪ ।
ଟମକ ନିଶାଣ ମହୁରୀ ଶଙ୍ଖଧ୍ୱନି ।
ହୁଳହୁଳି ଦେଉଛନ୍ତି ଅହଅ କାମିନୀ । ୭୦୫ ।
ଅନ୍ତରୀକ୍ଷେ ଥାଇଂଣ ଦେଖନ୍ତି ସୁରଗଣ ।
ସ୍ୱେସନକ ସମସ୍ତେ ଥାପି ମିଳିଲା ରାବଣ । ୭୦୬ ।
ପୁଷ୍ପକ ବିମାନ ଆରୋହଣ କରି ।
ବ୍ରହ୍ମାର ଆଗେ ଯାଇ ବିଜଦ୍ଦେ ଦଶଶିର । ୭୦୭ ।
ଦେଖି ସୁରଗଣେ ପାଇଲେ ଭସ୍ୱେ ମନ ।
ସ୍ୱେକାରୁ ଆରେକି ପାରନ୍ତି ବଚନ । ୭୦୮ ।
କେ ବୋଲଇ କାମାଇଂ ଅଇଲା ଲଙ୍କାପତି ।
କେ ବୋଲଇ ତୁମ୍ଭାର ଯେ ଯାଉବ ବିଭୂତି । ୭୦୯ ।

Digitized by srujanika@gmail.com

ତାହାକରି ଦେଖୁ ଅଇଲ ଭଲ କାଳେ ।
ତୁମ୍ଭ ହୋଇଂଥାଅ ସକଳ ଦଗପାଳେ । ୭୧୦ ।
ସେଥୁ ଅନନ୍ତରେ ବ୍ରହ୍ମ କରିଂ ସ୍ମରିଂ ।
କର ଦୁଇ ଯୋଡ଼ି ବୋଲଇ ଲଙ୍କାସାଇଂ । ୭୧୧ ।
ହେ ପିତାମହ ତୁମ୍ଭେ କେବଣ କାରଣେ ।
ସ୍ୱର୍ଗ ଛେଡ଼ୀକର ଅଇଲ ସୁରଗଣେ । ୭୧୨ ।
ବିଧାତା ବୋଇଲା ପୃଥ୍ୱକ ସେବେ ସ୍ମରିଂ ।
ମିଥିଲା ନାମେ କଟକ ବୋଲନ୍ତି ଯାହା । ୭୧୩ ।
ସେଥିର ନୃପତି ଜନେକ ମହାମୁନ ।
ସୀତା ନାମେଣ ଯେ ତାହାର ନନ୍ଦନୀ । ୭୧୪ ।
ତାହାର ବିଭାକାଳ ସଯ୍ୟମ୍ବର ଆଜ ।
ଧନୁ ପରୀକ୍ଷ କଥା ଶୁଣ ଲଙ୍କରାଜ । ୭୧୫ ।
ଦକ୍ଷ ପ୍ରଜାପତି ଇଷ୍ଟ ଯାଗ୍ୟ କଲା ।
ଅହଙ୍କାର କରଣ ଈଶ୍ୱର ନ ବରିଲା । ୭୧୬ ।
ଆମ୍ଭର ବୋଲ ଯେ ବୃହିଲାକ ଝଗିଂ ।
ଅନେକ ତିଆରଣ କହିଲେ ଶ୍ରୀରଙ୍ଗ । ୭୧୭ ।
କାହାରହିଂ ବୋଲ ନ କଲକ ଦକ୍ଷ ।
ଶୁଣି କୋପ ତହୁଂ କଲା ବିରୂପାକ୍ଷ । ୭୧୮ ।
କ୍ରୋଧକର ସେକ ଧନୁସେ ଜାତକଲା ।
ବିଷ୍ଣୁ ତେଜ ଘେନ ଶାସେକ ଉପୁଜିଲା । ୭୧୯ ।
ଅଜଗବଳ ନାମ ଅଟଇ ସେହାର ।
ବାରକୋଟି ବଳ ଶରାସନ ଧର । ୭୨୦ ।
ସେକାଦଶ ରୁଦ୍ରଙ୍କର ସେଗାର କୋଟିପ୍ରାଣୀ ।
ତାହା ଧେ ଆଏତ କରଇ ପାର୍ବତୀ ରମଣୀ । ୭୨୧ ।
ବିଷ୍ଣୁର ତୋଳିସେ ବଳଅଛୁ ମିଶି
ତାହା ସଦାଶିବ ନ ପାରଇ ଆକ୍ଷେପି । ୭୨୨ ।
ନାରାୟଣ ସୁମରିଲେ ପାରନ୍ତେ ଧନୁ ଧର ।
ଆମନ୍ତ୍ରବା କାଳେ ବିଷ୍ଣୁଙ୍କୁ ସୁମର । ୭୨୩ ।
ନାରାକ ପୂରଇଂ ଯେ କୋପେ ସଦାଶିବ ।
ସୁରଗଣକରି ସମସ୍ତ ପ୍ରହାରେବ । ୭୨୪ ।
ସୁରଗଣକରି ବାଣେ କଲାକ ପ୍ରହାର ।
ମୋହୋର କହିଲେ କୋପକଲା ଥର । ୭୨୫ ।

Digitized by srujanika@gmail.com

ଗୃପୋଡ଼େକ ମାର ଦକ୍ଷ ମୁଣ୍ଡ କାଟି ।
ତହୁଂ ଲଗାଇଲ୍ଲ ଛେଳ ମୁଣ୍ଡ ଗୋଟି । ୭୨୬ ।
ମୋହୋର ଢଆରନ୍ତେ ପ୍ରୋବୋଧ ହୋଇଲ୍ଲ ।
ପୁଣି ସଦାଶିବ ସନମତ କଲ୍ଲ । ୭୨୭ ।
ପ୍ରୋବୋଧ ହେନ ତହୁଂ ମହାଦେବ ଗଲ୍ଲ ।
ହେମବନ୍ତ ଶିଖରେ ଯାଇଂଣ ମିଳଲ୍ଲ । ୭୨୮ ।
ପାର୍ବତୀ ବାହୁନେ ତପସ୍ୟା କରନ୍ତ ମନ ।
ବସୁରଇ କହୁଂ ଥୋଇବ ଶରାସନ । ୭୨୯ ।
ଜନେକ ଉପର ବଂଶେ ହେଇଲଇ ନୃପଣ୍ଡ ।
ତାହାର ଗୋଚରେ ନେଇ ଥୋଇଲ୍ଲ ପଶୁପଣ୍ଡ । ୭୩୦
ଶରାସନ ଦେଇ ବୋଲନ୍ତ ତ୍ରିପୁରାର ।
ନିତ୍ୟ ପୂଜୁଥିବୁ ସତ୍ୟ ମନେ ଧର । ୭୩୧ ।
ତୋହୋର ବଂଶେ ଜାତ ହୋଇବ କମଳଣୀ ।
ତାହାକଇ ବିଭାହେ ଯେ ବରବୁ ଚକ୍ରପାଣି । ୭୩୨ ।
ହେହାକୁ ଅବଶ୍ୟ ରାମ ଆମନ୍ତିବ ଧର ।
ତୋହୋର ଗୋତ୍ର ଦୋଷ ହରବେ ମଧୁହାସ୍ତ । ୭୩୩
ଯେତେ କହି ହର ଧନୁ ଦେଇଗଲ୍ଲ ।
ହେମଗିର ନିକଟେ ଅନେକ ତପ କଲ୍ଲ । ୭୩୪ ।
ସେ ରଜା କୋଦଣ୍ଡ ପୂଜିଲ୍ଲକ ନେଇ ।
ଭୋଗରାଗ ଭିଆଇ କୋଦଣ୍ଡ ଘରେ ଥୋଇ । ୭୩୫ ।
କାଳେ ସେ ନୃପଣ୍ଡ ସ୍ୱର୍ଗକଇ ଗଲ୍ଲ ।
ପୁତ୍ର ରଜା ହୋଇ ଶାହେକ ପୂଜିଲ୍ଲ । ୭୩୬ ।
ପୁରୁଷା ଅନୁକର୍ମେ ଗଲ୍ଲ ସେ ଯେତେ କାଳ ।
ଯେବେ ଆସି ଜନେକ ହେ ଇଲ୍ଲ ମହୀପ ଲ । ୭୩୭ ।
ବେହୁ ପୂଜୁ ଥିଲ୍ଲ ପୂର୍ବର ହେତୁ ହେନ ।
ଦୋହିତା ଜାତ ତାର ହୋଇଲ୍ଲ ଅଯୋନ । ୭୩୮ ।
ଯାଗଶାଳ ଭୂମି ଲଙ୍ଗଳରେ ତଷ୍ଟୁ ।
ମେନକା ଅପଷରୀ ମେ ଷ ହୋଇ ଆସୁ । ୭୩୯ ।
ଯେତେନକ ସମୟେ ବସନ୍ତକ ଫାଟୁ ।
କନ୍ୟା ଯେକ ଉପୁଜିଲା ତହିଂ ଲଙ୍ଗଳ ଉକୁଟୁ । ୭୪୦ ।
ତାହାଙ୍କ ନାମ ଯେ ହୋଇଲ୍ଲକ ସୀତା ।
ଦେଖିଣ ଅନେକ ତୋଷ ଜନେକ ବ୍ରହ୍ମବେତ୍ତା । ୭୪୧ ।

Digitized by srujanika@gmail.com

ଅନେକ ଯତନେ ପାଳିଲୁକ ନେଇ ।
ସେମନ୍ତେ କେତେହେଂକ କାଳ ଗଲା ତହୁଂ । ୭୪୨ ।
ବିଭା ବୟସ ହୋଇଲାକ ଯହୁଂ ।
ଧନୁ ସ୍ୱୟମ୍ବର କଲା ରାଏ ତହୁଂ । ୭୪୩ ।
ଯେ ଧନୁ ଭାଙ୍ଗିବ ତାହାକୁ ଝିଅ ଦେବ ।
ଅଯୋନିସମ୍ଭବ ସେ କାହାକୁ ସମର୍ପିବ । ୭୪୪ ।
ଅଯୋନିସମ୍ଭୂତ ସେ ଅଟଇ ଶରାସନ ।
ଯେ ତୋଳିପାରିବ ସେ ବିଷ୍ଣୁର ସମାନ । ୭୪୫ ।
ତାହାକଇ ବିଭା କରିବଇଂ ସୀତା ।
ସେସନ ବରଇ ମୁନି ବ୍ରହ୍ମବେତ୍ତା । ୭୪୬ ।
ଦେଖିଣ ଅଇଲେ ଅନେକ ନୃପତି ।
ଧନୁ ଧରଣ କେହି ଭର୍ଜ ନ ନୁହଂନ୍ତି । ୭୪୭ ।
ଏତେକାଳ ଆସି ହୋଇଲା ବିପରୀତ ।
ଦଶରଥ ନନ୍ଦନ ଅଟ ହୁଂ ବାଳୁତ । ୭୪୮ ।
ବାରବର୍ଷ ପୁଅ ଧନୁ ଆମର୍ଷିଲା ।
ଭୁଜବଳ ନ ସହଇ କାର୍ମୁକ ଭଗ୍ନ ହୋଇଲା । ୭୪୯ ।
ଜନେକ ସତ୍ୟବ୍ରତ ପୂରିଲା ଯହୁଂ ।
ରତ୍ନମାଳା ଦେଇ ସୀତା ବରିଲାକ ତହୁଂ । ୭୫୦ ।
ତାହା ଦେଖିବାରେ ଅଇଲେ ଦେବଗଣ ।
ଶୁଣି ସଙ୍କୁଚ ମନ ପାଇଲା ରାବଣ । ୭୫୧ ।
ବ୍ରହ୍ମା ବଚନେ ତଳକୁ କଲା ଦୃଷ୍ଟି ।
ଦେଖିଲାକ ଶୋଭା ପାଉଅଛି ସୃଷ୍ଟି । ୭୫୨ ।
ନୃପତିଗଣେ ପଳାଇଲେ [illegible] ଜ ପା[illegible] ।
ପଦ୍ମରୁ ଯେସନକ [illegible] ଏ ବହି । ୭୫୩ ।
ମୁନିଜନମାନେ ରାମଙ୍କୁ [illegible] ଛନ୍ତି ।
କେଜାଣି ଫଳିଲା ବୃକ୍ଷ [illegible]ଛନ୍ତି ୭୫୪ ।
ନର ନର ନାରୀ [illegible] ମସ୍ତ ।
ଗହନ ବନରେ କା ବନ[illegible] ମୁଖ । ୭୫୫ ।
ଶ୍ରୀରାମ ଧରଣ ଅଛନ୍ତି [illegible] ମୂଢ ।
ସୁଧଣୀ ଅଟଇ ଜନେକ [illegible]ଢ । ୭୫୬ ।
ଲକ୍ଷଣ ଶାର୍ଦ୍ଦୂଳ [illegible] ଦନପତି ।
ସୀତ୍ୟା ସଖୀଜନେ ଅଟନ୍ତି [illegible] । ୭୫୭ ।

Digitized by srujanika@gmail.com

ଦୁଇଖଣ୍ଡ ହୋଇ ଅଛଇ ଧନୁ ପଡ଼ି ।
କିବା ପର୍ବତ ଯାଉଛୁ ଗଗନକୁ ବଢ଼ି । ୭୫୮ ।
ଗଙ୍ଗାନଦୀ ପ୍ରାୟେ ଦଶଇ ତାର ଗୁଣ ।
ଦେଖିଣ ଶଙ୍କାକଲା ମନରେ ରାବଣ । ୭୫୯ ।
ତରସ୍ତ ହୋଇ ପୁଣି ନେଉଟି ସେ ଗଲା ।
ଇନ୍ଦ୍ର ମୁଖ ଗୃହଂ ବିଧାତା ହସିଲା । ୭୬୦ ।
ପବନର କରେ ଅଗ୍ନି କର ଦେଇ ।
ଦୁହେଂ ହସିଲେ ସେ କୁବେର ମୁଖ ଗୃହଂ । ୭୬୧ ।
ସ୍ୱେଥୁଅନନ୍ତରେ ଦଶଗ୍ରୀବ ରାୟେ ।
ଲଙ୍କା ପୁରରେ ସେ ପ୍ରବେଶ ଯାଇଂ ହୋୟେ । ୭୬୨ ।
ସଭା କରଣ ସେ ବସିଲା ଆସ୍ଥାନ ।
ବିଭୀଷେଣକୁ ଗୃହଂ ବୋଲଇ ବଚନ । ୭୬୩ ।
ଆମ୍ଭେ ଆଜ ଅପୂର୍ବ ଦେଖିଣ ଅଇଲୁ ।
ଅନ୍ତରୀକ୍ଷେ ବିମାନେ ଚଢ଼ିଣ ଯାଇଥିଲୁ । ୭୬୪ ।
ବ୍ରହ୍ମା ସହିତେଣ ଦେଖିଲୁ ସୁରଗଣ ।
ରହି ଅଛନ୍ତି ସେ ଅନ୍ତରୀକ୍ଷ ମାର୍ଗେଣ । ୭୬୫ ।
ମିଥିଲା କଟକେ ଜନେକ ମହାମୁନି ।
ସୀତ୍ୟା ନାମେ ତାର ସ୍ୱେକଇ ନନ୍ଦନୀ । ୭୬୬ ।
ଧନୁ ସମ୍ବେମ୍ବର କରିଥିଲା ଆଜ ।
ଦଶରଥ ନାମେଣ ଅଯୋଧ୍ୟା ମହାରାଜ । ୭୬୭ ।
ତାହାର ଜେଷ୍ଠ ତନୟେ ଶ୍ରୀରାମ ସେ ନାମ ।
ସେ ସେ ଆମଞ୍ଜିଲା ଶିବ ଶରାସନ । ୭୬୮ ।
ଭାଙ୍ଗି ପକାଇଲା ନେନକେ କର ।
ରତ୍ନମାଳା ଦେଇ ସୀତ୍ୟା ଗଲା ବର । ୭୬୯ ।
ଦେଖିଣ ଚମତ୍କାର ଲଗି ମୋତେ ।
ବାର ବରଷ ପୁଅ କଲା କେଡ଼େ କୁତୋ । ୭୭୦ ।
ଯେବଣ କୋଦଣ୍ଡ ଇନ୍ଦ୍ର ତାକ ନ ପାରଇ ।
ସାନ ହୋଇଂ ରାମ ତା ଆମଞ୍ଜନ ଧରଇ । ୭୭୧ ।
ବିଭୀଷେଣ ବୋଇଲା ରାବଣ ବଚନ ଶୁଣି ।
ଆଜ ତୁ ଯାହା ଦେଖିଲୁ ଲଙ୍କମଣି । ୭୭୨ ।
ରାମ ଅବତାର ସ୍ୱାମିଂ ଅନନ୍ତ ହର ।
ଲକ୍ଷ୍ମୀ ଅଟନ୍ତି ସେ ଜନେକ କୁମାରୀ । ୭୭୩ ।

Digitized by srujanika@gmail.com

ତୋହୋର କୁମାର୍ଗ ଦେଖିଣ ସୁରଗଣ ।
ରବତଳେ ଜାତ କଲ୍ପକ ନାରାୟଣ । ୭୭୪ ।
ତାହାଙ୍କୁ ଶାଖା କର ଯୁଝିବେ ତୋର ସଙ୍ଗେ ।
ସେ ବାଦ ଅରଜାଲ ଅଛଇ ତୋର ଅଙ୍ଗେ । ୭୭୫ ।
ଶୁଣିଣ ରାବଣ ହସଇ ହହ ହହ ।
ମୋତେ କମ୍ପା ତୁମ୍ଭେରେ ସ୍ୱେମନ୍ତ କଥା କହ । ୭୭୬ ।
ଦେବେ ମେଳ କଲେ ମୋହୋର କସ ହୋଇ ।
ଶ୍ରୀରାମର ମୋହୋର ଅପ୍ରୀତ ନୁହଇ । ୭୭୭ ।
ସେ ଅଯୁଧ୍ୟାର ରାଜା ମୁଂ ଲଙ୍କାର ଅଧିପତ ।
ତାହାର ମୋହୋର କମ୍ପା ହୋଇବ ଅପ୍ରୀତ । ୭୭୮ ।
ଯଦ୍ୟପି ଦଣ୍ଡ ସେ ବାନ୍ଧିବ ମୋହୋର ଉପରକଇ ।
ସମୁଦ୍ର ସ୍ୱେଣେ ସେ ପାଇବ ମୋତେ କାହିଁ । ୭୭୯ ।
ଯଦ୍ୟପି ପର୍ବତେ ସେ ପୋତବ ମହାଜଳ ।
ସେ ସେ ମନଷ୍ୟ ମୁଂ ଅସୁର ଅଗ୍ରର୍ଗଳ । ୭୮୦ ।
ମନୁଷ୍ୟ ହୋଇ ଯେବେ ଆସିବ ମୋତେ ମାର ।
ସ୍ୱେକଇ କନ୍ଧ ତ ନୁହଇ ମୋହର । ୭୮୧ ।
ଦଶ ଶିର ଛେଦଲେ ପୁଣିହିଂ ମୁଣ୍ଡ ଲଗଇ ।
କ୍ଷତ୍ରୀ ସମ ମୋତେ ନାହିଂ ଭୂମି ଭାଗଇ । ୭୮୨ ।
ଯଦ୍ୟପି ସମ ମୋତେ ହୋଇବ ରଘୁନାଥ ।
ତାହାର ବାଣେ ଯେବେ ତୁଟିବ ମୋର ମାଥ । ୭୮୩ ।
ବିଷ୍ଣୁ ହାଥେ ମଲେ କଣ୍ଟି କ୍ରେ ଯିବ ସ୍ୱର୍ଗେ ।
ତେବେ ସେ ପ୍ରାପତ ମୋତେ ହୋଇବ ପୁନ୍ୟ ଭାଗ ।୭୮୪।
ସ୍ୱେକା ଜଣକୁ ଯେବେ କେହି ନ ସହିବ ।
ତାହାକୁ ରଖିତ କ ପାରଇ ଗୋବିନ୍ଦ । ୭୮୫ ।
ଛପନ ଗଣ୍ଡା ଯୁଗକୁ ପାଇଲ ଆୟୁଷ ।
ଦଶ ଦଗପାଳନ୍ତ କଲି ବଶ୍ୟ । ୭୮୬ ।
ସୁବର୍ଣ୍ଣ ମସ୍ୱେପୁର ମୁଂ ଭୁଂଜଇ ବଭୂତ ।
ଅଠର ଗଣ୍ଡା କୁମର ତେର ଶତ ନାତ । ୭୮୭ ।
ଭାଇ କୁବେର ମୋର ଦେବତା ସଙ୍ଗେ ଗଣି ।
କନେଷ୍ଟ କୁମ୍ଭକର୍ଣ୍ଣ କ୍ଷତ୍ର ଶିରୋମଣି । ୭୮୮ ।
ପୁତ୍ର ମେଘନାଦ ନାମ ଇନ୍ଦ୍ରଜିତ ।
ସ୍ୱର୍ଗେ ପଶିଣ ଜିଣିଲ ପୁରୁହୂତ । ୭୮୯ ।

Digitized by srujanika@gmail.com

ବ୍ରହ୍ମାର ନାତି ମୁଁ ସ୍ୱୟଂ ବଂଶକର ।
ଆବର ବିଶେଷେ ମୋର ଅଛଇ ଦଶଶିର । ୭୯୦ ।
ପୁଷ୍ପୋକ ବିମାନ ଦେବଗଣେ ଅଜୟେ ।
ତହିଂ ବସି ମୁଁ ଦ୍ୱିଗବିଜେ କୟେ । ୭୯୧ ।
ଆଠ କୋଟି ସେ ଅଛଇ ମୋର ରାଣୀ ।
ଭଣ୍ଡାରେ ଅଛୁ ମୋର ବିବିଧ ରତ୍ନମଣି . ୭୯୨ ।
ସୁବର୍ଣ୍ଣ ମୟେପୁର କଟକ ମୋର ଲଙ୍କ ।
ସୁର ଅସୁରନ୍ତ ନାହିଁ ମୋର ଶଙ୍କା । ୭୯୩ ।
ଏତେକ ସମ୍ପଦ ଯେବେ ଶ୍ରୀରାମ ବିଧଂସିବ ।
କାହାର ବୋଲେ ରାଜା ଆନ ସେ ହୋଇବ । ୭୯୪ ।
ନକର ଶୋଚନା ନାହିଁ ମୋର ବ୍ୟଥା !
ଏହିକ୍ଷଣି ନୁହଇ ପଛକୁ ଅଛଇ ନା କଥା । ୭୯୫ ।
ଏତେ ବୋଲି ରାୟେ ଅନ୍ତେଶ୍ୱରକଇ ଗଲା ।
ପାବତୀ ଆଗରେ ଏହା ଈଶାନ୍ୟ କହିଲା । ୭୯୬ ।
ଶୁଣ ଗୋ ଶାକେମୁଖି ଶ୍ରୀରାମର ବାଣୀ ।
ଅପୁର୍ବ କଥାଏ ପୁରାଣେ ବଖାଣି । ୭୯୭ ।
ଆନନ୍ଦ ହୋଇଂଣ ତହୁ ସକଳ ସୁରଗଣ ।
ବାହୁଡ଼ ବିଜେ କଲେ ସେ ବ୍ରହ୍ମା ସହିତେଣ । ୭୯ ।
ସମସ୍ତେ ପ୍ରବେଶ ସେ ସାହାର ପୁରେ ।
ଶୁଣିମା କାହାଣୀ ଏଥୁଅନନ୍ତରେ । ୭୯୯ ।
ମିଥିଲା କଟକେ ଶ୍ରୀରାମଚନ୍ଦ୍ର ଅଛୁ ।
ଦକ୍ଷିଣ ପାରୁଶେ ସୀତ୍ୟା କମଲାକ୍ଷୀ । ୮୦୦ ।
ବାମେଣ ଲକ୍ଷ୍ମଣ ଅଛୁ ହରଷହୋଇ ।
ଧନୁ ଭଗ୍ନକର ଶ୍ରୀରାମ ଗୋସାଇଂ । ୮୦୧ ।
ଆନନ୍ଦେ ହରଷ ପ୍ରସନ୍ନ ବଦନ ।
ସୀତ୍ୟା ପରାପତ ପ୍ରସନ ତୋଷ ମନ । ୮୦୨ ।
ଲୋକେ ପ୍ରଶଂସା କରନ୍ତ ଆଗରେ ହରଷହୋଇ ।
ବାଜନ୍ତ୍ରର ଶବଦ ଧରଣୀ କମ୍ପଇଂ । ୮୦୩ ।
ବିଶ୍ୱାମିତ୍ର ବୋଇଲେ ତୁ ଶୁଣ ହୋ ଜନେକ ।
ରାମ ଆମଣ୍ଟିଲ ଈଶ୍ୱର କାର୍ମୁକ । ୮୦୪ ।
ତୁ ଯାହା ମନେ ହୋ ସତ୍ୟ କରଥିଲୁ ।
ସେ କଥା ଫଳିଲା ପ୍ରତକ୍ଷେ ଦେଖିଲୁ । ୮୦୫ ।

Digitized by srujanika@gmail.com

ଯେବେ ଶ୍ରୀରାମଙ୍କୁ ସୀତା ବିଭାକର ।
ଶୁଣିଣ ସନ୍ତୋଷ ଜନେକ ମୁନିମ୍ବର । ୮୦୬ ।
ଶ୍ରୀରାମଙ୍କୁ ବୋଇଲେ ତୁ ଶୁଣ ଦାଶରଥି ।
ସୀତାୟା ନାମେଣ ଯେ ମୋହୋର ଦୋହିନ୍ତ । ୮୦୭ ।
ତାହାଙ୍କର ବିଭା କରିବ ମୁହିଂ ତୋତେ ।
ତୁ ରାମ ଉପକାର କଲୁ ଯେବେ ମୋତେ । ୮୦୮ ।
ଧନୁ ଧରିଣ ଯେବେ ରଖିଲୁ ମୋର ଧର୍ମ ।
ତୋହୋରେ ସେ କଣ ହୁଅଇ ଯେତେ କର୍ମ । ୮୦୯ ।
ଅନେକ ନୃପତି ବାହୁଡ଼ିଣ ଗଲେ ।
କେହି ଶରାସନ ଆମଣ୍ଡି ନ ପାରିଲେ । ୮୧୦ ।
ପୂର୍ବେ ଣ ଜଅମ ଅଛଇ ମୋହୋର ।
ଯେ ଧନୁ ଭାଙ୍ଗିବେ ସେ ସୀତାୟାର ବର । ୮୧୧ ।
ସେ କଥା ପ୍ରାପତ ହୋଇଲାକ ମୋତେ ।
ହୁଅସି ବିଭା ଏବେ ଦଶରଥ ସୁତେ । ୮୧୨ ।
ଜନେକର ମୁଖୁଂ ଯେସନ ବାକ୍ୟ ଶୁଣି ।
ଶ୍ରୀରାମ କହନ୍ତ ହୃଦୟ ମଧ୍ୟେ ଗୁଣି । ୮୧୩ ।
ତୁ ଯାହା ମହର୍ଷି କହିଲୁସି ସତ ।
ମୋତେ ଯେବେ ଅନୁଗ୍ରହ କଲୁକ ତପୋବନ୍ତ । ୮୧୪ ।
ଦୋହିତା ସତ ମନେ ଦେବୁ ଯେବେ ମୋତେ ।
ମୁହିଂ ପ୍ରାର୍ଥନା ଯେ କରୁଅଛୁ ତେତେ । ୮୧୫ ।
ପିତା ଦଶରଥ ଅର୍ଜିଲ ମୋର ଦେହି ।
ପ୍ରାଣର ଅଧିକାରୀ ଅଟଇ ନା ସେହି । ୮୧୬ ।
ତାହାଙ୍କୁ ନ କହି ହୋଇବ କେହ୍ନେ ବିଭା ।
ପିତାର ଅସନମତେ ନ ପାଇବ ଶୋଭା । । ୮୧୭ ।
ତୁମ୍ଭେ ମୋତେ ବତ୍ସର କହ ମହର୍ଷି ।
ଶୁଣି ବିଶ୍ୱାମିତ୍ର ଜନେକ ଦୁହେଂ ହସି । ୮୧୮ ।
ସଭାର ଲୋକେ ଶୁଣି ହୋଇଲେ ଉଷତ ।
ଧନ୍ୟ ଧନ୍ୟ ରାମ ତୁ ପିତାର ଭକତ । ୮୧୯ ।
ନୋହିଲେ କି ପ୍ରାପତ ହୋଇଲା ଯେତେ କର୍ମ ତୋତେ ।
ସାଧୁ ସାଧୁ ଶବଦ ଶୁଭିଲା ଜଗତେ । ୮୨୦ ।
ଜନେକ ବିଶ୍ୱାମିତ୍ର ଭଲ ଦେଖି ଜନ ।
ନିଜ ନଗରକୁ ସେ କରନ୍ତି ଗମନ । ୮୨୧ ।

Digitized by srujanika@gmail.com

ଶ୍ରୀରାମ ଲକ୍ଷ୍ମଣ ସୀତସ୍ୱା ସହିତେ ।
ଦେଖ ।ହାରାମାନେ ଗୋଡ଼ାଇଛନ୍ତି ପଛେ । ୮୨୨ ।
ଜନେକ ମନ୍ଦିରେ ପ୍ରବେଶ ଯାଇଂ ହୋନ୍ତି ।
ଅନ୍ତେଶ୍ୱରଙ୍କଇ ଗଲେ ଦେଖି ସ୍ୱସ୍ତି । ୮୨୩ ।
ଜନମାଙ୍କ ଦେଖିଣ କରଇ ନମସ୍କାର ।
ଜନେକ ରାଣୀମାନେ ମିଳିଲେ ଅପାର । ୮୨୪ ।
କେ କୋଳେ ଧରଣ ମୁଖେ ଚୁମ୍ବ ଦେଇ ।
କେ ବୋଲଇ ସହି ସଙ୍ଗାତୁଣି ମୋର ଆଇ । ୮୨୫ ।
କେ ବୋଲଇ ମାଗୋ ଅପୂର୍ବ ରୂପରାଣି ।
ଅନରୂପେ ବର ମିଳିଲକ ଆସି । ୮୨୬ ।
ସୀତା ସୁଲକ୍ଷଣୀ ପୋଛଅଛି ଶିର ।
ହସ ହସ ହୋଇ ନ ଦିଅଇ ଉତ୍ତର । ୮୨୭ ।
କେ ବୋଲଇ ଆଗୋ ରାମଙ୍କୁ ଦେଖିଥିବା ।
ଜଳାକବାଟି ବାଟେ ରାମଙ୍କୁ ରୁହିଂବା । ୮୨୮ ।
କେ ବୋଲଇ ରାମ ଏହାଙ୍କୁ ଯେ ହରଇ ।
ନୋହିଲେ କି ଈଶ୍ୱର ଧନୁ ଭାଙ୍ଗି ପାରଇ । ୮୨୯ ।
କେ ବୋଲଇ ଆଗୋ ଦେଖିବା ସ୍ୱେବେ ଆସ ।
ସ୍ୱେତେକ ବୋଲିଣ ଜନେକ ରାଣୀହିଂସ । ୮୩୦ ।
ସମସ୍ତେ ଗୁଣ୍ଡ ହୋଇଣ ଓହ୍ଲାଉଣ ଥାଇ ।
ଆନନ୍ଦ ହୋଇଲେ ଶ୍ରୀରାମଙ୍କୁ ରୁହିଂ । । ୩୧ ।
ଦେଖିଲେ ସକଳ ପ୍ରାସ୍ୱେକ ପ୍ରତିମା ।
ମଦନ ଶରେ ପୀଡ଼ି ଲେ ସର୍ବ ବାମା । ୮୩୨ ।
କେ ବୋ ଇ ସାଧୁ କେ ବୋଲଇ ଧନ୍ୟ ।
ସ୍ୱେତେ ବୋଲି ପ୍ରଣଂସି ବ ହୁଡ଼ିଲେ କାମେନୀ । ୮୩୩ ।
ଶ୍ରୀରାମ ଲକ୍ଷ୍ମଣ ଜନେକ ଗାଧିସୁତ ।
ଆବର ଅଛନ୍ତି ଅନେକ ତପୋବନ୍ତ । ୮୩୪ ।
ଅଯୋଧ୍ୟା ଲୋକ ି ଷିଣ ବାଗୁଣ ।
ଭାଲଣ ଅଭ୍ୟାନନ୍ଦ ଆଚୌଲେକ ପ୍ରକାଶ । ୮୩୫ ।
କହନ୍ତି ବୋଲନ୍ତି ତୁମ୍ଭେ ଶୁଣ ଗଉତମର ସୁତ ।
ଅଯୋଧ୍ୟା ରାଜ୍ୟକୁ ନ ମସି ବାରତ । ୮୩୬ ।
ବିଶ୍ୱନାଥ ଧନୁ ଶ୍ରୀରାମ ଆମଣ୍ଟିଲ ।
ସୀତହ୍ୱାଙ୍କୁ ଦେବ ବୋଲି ଜନେକ ସତ୍ୟକଲ । ୮୩୭ ।

Digitized by srujanika@gmail.com

ଶ୍ରୀରାମ ବୋଇଲେ ମୁଂ ପିଅର ଭଗତ ।
ନ କହିଲେ ବିଶ୍ୱାସେ ମୋର ନ ବଳଇ ମତ ।
ଯେ କଥା କହିବୁ ତୁ ଦଶରଥ ରାଇଂ ।
ଆସିବାର ହୋଇଲେ ଆମ୍ଭେ ନରସାଇଂ । ୮୩୯
ନେଉଛାଣି ବାରତା ବେଗେ ବାହୁଡ଼ାଇଂ ଆଣ ।
ଆମ୍ଭଙ୍କୁ ସମାଦ ଅବା ଦେବ ମହାରାଣ । ୮୪୦ ।
ବୋଲନ୍ତି ବିଶ୍ୱାମିତ୍ର ଜନେକ ଯେବେନ୍ତ ।
ମୋହୋର ପୁତ୍ରେକ ତାହାଙ୍କର ନୁହନ୍ତ । ୮୪୧ ।
ସେ ଯେବେ ଅଛନ୍ତି ଶ୍ରୀରାମର ପାଶ ।
ମୁହିଂ ଯାଇଂ ମହାତ୍ମା ହୋ କରିବଇଂ କସ । [illegible] ।
ଯେସନେକ ବୋଇଲେ ତୁ ଆସ ଖରକର ।
ଶୁଣି ସତ୍ୟାନନ୍ଦ କହଇ କର ଦୁଇଯୋଡ଼ି । ୮୪୩ ।
ଯେ ତୋହୋର ଆଜ୍ଞାଂ ଯିବି ଯେହି କ୍ଷଣ ।
ଶ୍ରୀରାମକୁ ମୁହିଂ ବୋଲନ୍ତି ଲକ୍ଷ୍ମଣ । ୮୪୪ ।
ଲେଖ ଗୋଟିଏକ ଦିଅ ତୁମ୍ଭେ ଲିହି ।
ବେନି ଉତ୍ତର ଆମ୍ଭେ ଦେବାକ ଗୋସାଇଂ । ୮୪୫ ।
ଶୁଣିଣ ଶ୍ରୀରାମ ତାଳପତ୍ର ଘେନି ।
ଦକ୍ଷିଣ କରେ ରାମ ଧଇଲେ ଲେଖଣୀ । ୮୪୬ ।
ନିଜ ପିତାକଇ ବିନୋଇ ଉତ୍ତର ।
କାର୍ପୁନ ହୋଇଂ ଦେବ ଲିହନ୍ତି ପତ୍ର । ୮୪୭ ।
ହେ ପିତା ଦକ୍ଷିଣ କୋଶଳ ଅଧିପତି ।
ଅଯୁଧ୍ୟାର ରାଯେ ବୀର ଚକ୍ରବର୍ତ୍ତୀ । ୮୪୮ ।
ଭୁଜବଳ ପ୍ରାକର୍ମେ ନିଜ ରାଜ୍ୟ ରଖୁ ।
ଦସ୍ୟାକଲ ଲୋକମାନଙ୍କୁ ଯେକକର ଲେଖୁ । ୮୪୯ ।
ଜନେଣ ସାଗ୍ନି ଖାଟିଣ୍ଡଣ ଗାରିମା ।
ଡ଼ରେ ଅଇରିବଳ ନ ମାଡନ୍ତି ସୀମା । ୮୫୦ ।
ଅନେକଂ ଗୁଣ ଅଛି ତୋର ତହିଂ ।
ମୁହିଂକ ସେବା କରିବ ବାଳୁତ ତନୁ ବହିଂ । ୮୫୧ ।
ତୋହୋର ଚରଣେ ମେ ହୋଇଛି ନମସ୍କାର ।
ନିତ ଭଗତକ ବିଶ୍ୱ ମୋହୋର । ୮୫୨ ।
ହେ ପିତା ମୋତେ ଅରଜିଲୁ ଦୁଃଖ ପାଇଂ ।
ବିଶ୍ୱାମିତ୍ର ମୁନି ମାଗିଲେ ମୋତେ ଯାଇଂ । ୮୫୩ ।

Digitized by srujanika@gmail.com

ରୂ ଯେ ସତ୍ୟଶୀଳ ଓପ୍ରୋଧେ ସମର୍ପିଲୁ ।
ବହୁତ ମନେ ଭାଳ ହୃଦେ ଚନ୍ତା କଲୁ । ୮୫୪ ।
ମୂର୍ଚ୍ଛି ନ ପାର ଋଷିର ପାଦ ଧର ।
ମୋତେ ସମର୍ପିଲୁ ଅତ ଯତ୍ନ କର । ୮୪୫ ।
ତୋହୋର ବଚନେ ହୋଇଲ ମୁନ ତୋଷ ।
ମୋତେ ଘେନ ଅଇଲେ ଗାଧିରାଜ, ଶିଷ । ୮୫୬ ।
ସରମ୍ଭୁ ପାରହୋଇ ପଶିଲେ ଘୋରବନେ ।
ସୁରନଦୀ ଜଣି ଆସିଲୁ ବେନ ଜନେ । ୮୫୭ ।
ଗଙ୍ଗା ଜଣି ଆସି ଅଗମ୍ୟ ବନେ ପଶି ।
ହେଲେ ନାଶକଲ ତାଡ଼େକ ରାକ୍ଷାସୀ ୮୫୮ ।
ଦେବେ କୁସୁମ ବରଷିଲେ ମୋର ଶିରେ ।
ସାଧୁ ସାଧୁ ଶବଦ ଶୁଭଇ ସ୍ୱର୍ଗପୁରେ । ୮୫୯ ।
ବ୍ରହ୍ମାର ଆଜ୍ଞା ପାଇଣ କଉଶିକ ।
ସହସ୍ର ବିଦ୍ୟା ମୋତେ କହିଲ ଅନେକ । ୮୬୦ ।
ଲକ୍ଷ୍ମଣଙ୍କୁ ସ୍ନେହ ପ୍ରମାଣେ ବିଦ୍ୟା କହି ।
ତହୁଁ କେତେହେଂକ ଦୂର ଗଲୁ ପଥ ବହି । ୮୬୧ ।
ଅପୂର୍ବ ବନ ଦେବ ଦେଖିଲୁ ଅପାର ।
ତପୀଙ୍କର ମଢ଼ି ଆ ପର୍ବତ ବନ ଘୋର । ୮୬୨ ।
ବିଶ୍ୱାମିତ୍ର ଆଶ୍ରମେ ହୋଇଲୁ ପରବେଶ ।
ଯାଗ୍ୟ ଆରମ୍ଭିଲ ଗାଧି ରାଜା ଶିଷ । ୮୬୩ ।
ଅନେକ ମୁନିମାନ ଅଇଲେ ହୋମ କାଳେ ।
ମୋତେ ଦେଖି ପ୍ରଶଂସା କରନ୍ତି ସକଳେ । ୮୬୪ ।
ଯାଗ୍ୟ ରଖଇଂ ଲକ୍ଷ୍ମଣଙ୍କୁ ସଙ୍ଗେ ଘେନ ।
ଦତ୍ୟଙ୍କର ଶିର ନାରାଚରେ ଛନ୍ନ । ୮୬୫ ।
ମାରୁଚୀ ରାକ୍ଷାସକୁ ଶରେ ଉଡ଼ାଇଲ ।
ସୁବାହୁ ଦତ୍ୟଙ୍କୁ ଅନଳେ ଦହିଲ । ୮୬୬ ।
ଯାଗ୍ୟ ସମାପତ ହୋଇଲାକ ତହୁଁ ।
ପଶ୍ଚିମ ପରଦେଶକୁ ଗମନ କଲୁ ତହୁଁ । ୮୬୭ ।
ଶୋଣିତ ନଦୀ ଜଣି ବହୁତ ଦୂରଗଲୁ ।
କର୍ଣ୍ଣିକୁ ବୁଜ ଦେଶ ଯାଇଂଣ ଦେଖିଲୁ । ୮୬୮ ।
ବିପୁନ ବନରେ ଗଉତମ ବାସ ।
ତାହା ଦେଖାଇଲା ଗାଧିରାଜା ଶିଷ । ୮୬୯ ।

Digitized by srujanika@gmail.com

ଗଉତମର ଘରଜା ଅହଲ୍ୟା ନାମେ ବାଳୀ ।
ଶାପେୟଣ ଥିଲା ସେ ପାଷାଣ ରୂପଧର । ୮୬୦ ।
ମୋହୋର ପାଦ ଲଗନ୍ତେ ନିଜ ତନୁ ବହି ।
ମୋତେ ଅର୍ଘ୍ୟ ଦେଇ ସେ ମୁନିର ପାଶେ ଯାଇ । ୮୭୧ ।
ତହୁଂ ମିଥିଲା ପୁରେ ହୋଇଲୁ ପରବେଶ ।
ଜନେକର ଯାଗ୍ୟଂ ଦେଖିଲୁ ମହାରସ । ୮୭୨ ।
ଧନୁ ସୟମ୍ବର କରନ୍ତି ମହୀପତି ।
ଅନେକ ଦେଶର ନୃପତି ଥିଲେ ଆସି । ୮୭୩ ।
କେହି ସେ ଧନୁ ନପାରିଲେ ତୋଳି ।
ଛୁଇଂମା ମାତ୍ରକେ ମୁଖୁଂ ରୋଧିର ଗାଳି । ୮୭୪ ।
ବିଶ୍ୱାମିତ୍ର ବୋଲେ ତୋଳିଲ କୋଦଣ୍ଡ ।
ଗୁଣଦେଇ ଆମଣ୍ଡିଲ ହୋଇଲା ବେନିଖଣ୍ଡ । ୮୭୫ ।
ସେ ଧନୁ ଭାଙ୍ଗିଲକୁ ଜନେକ ମହାମୁନି ।
ସୀତ୍ୟା ନାମେ ତାର ଅଛି ନନ୍ଦନୀ । ୮୭୬ ।
ତାହାକଇ ଆଣି ସମର୍ପିଲା ମୋତେ ।
ବୋଇଲା ବଶିଷ୍ଟେ ରାମ ତେଇଂ ତୋତେ । ୮୭୮ ।
ଯେତେ ବୋଲିଣ ସେ ନବ ରତ୍ନ ମାଳ ।
ମୋହୋର କଣ୍ଠରେ ଲମ୍ବାଇଲ ତାହାର ଦୁଲାଳୀ । ୮୭୮ ।
ବିଷ୍ଣ କରିବାକୁ ଖୋଜିଲେଁ ଅନୁକୂଳ ।
ମୁହିଂ ବୋଇଲି ଯେଣେ ଅଛଇ ଫଳ । ୮୭୯ ।
ପିତା ମୋ ହୋଇ ଅଛଇ ପ୍ରାଣର ଅଧିକାରୀ ।
ତାହାଙ୍କୁ ନକହି କ ଯେ କୃତ୍ୟହି କରି । ୮୮୦ ।
ଶୁଣିଣ ସମସ୍ତେ ହୋଇଲେ ସନ୍ତୋଷ ।
ସତ୍ୟାନନ୍ଦକୁ ଦୂତ ପେଷିଲେ ତୁମ୍ଭ ପାଶ । ୮୮୧ ।
ଯେ ଯିସ କହଇ ତୁମ୍ଭେ ଶୁଣିମା ନୃପବର ।
କରିବୁ ଯେ ତୋହୋର ମିଳାଇ ବିଭାର । ୮୮୨ ।
ଯେ ମୋହର ଲେଖିଲ ନ ଧରିବା ଦୋଷ ।
ତାହାଙ୍କୁ ଯୋଗାଇଲେ ବେଗ ହୋଇ ଆସ । ୮୮୩ ।
ଯେତେ ବୋଲି ରାମ ଲେଖ ଲିହି ମୁଦ ।
ସତ୍ୟାନନ୍ଦ ହାଥେ ଦେଲେ ନେଇଂ ପ୍ରୋବୋଧି । ୮୮୪ ।
ମୋହୋର ସମ୍ବାଦ ମୁନି ନୃପତିଠାରେ ଦେସି ।
ସକଳ କଥା କୁଶଳ ବୋଲିଣ କହସି । ୮୮୫ ।

Digitized by srujanika@gmail.com

ସ୍ନେହେ ବୋଲି ରାମ କଲେ ନମସ୍କାର ।
ଦେଖିଣ ହସନ୍ତି ସକଳ ମୁନିବର । ୮୮୬ ।
ସତ୍ୟାନନ୍ଦ ବୋଇଲେ ତୁ କଲ୍ୟାଣ ହୁଅସି ।
ସୀତ୍ୟାକଇ ବିଭା ହୋଇଣ ସେଥୁ ଯାସି । ୮୮୭ ।
ଶୁଣିଣ ଶ୍ରୀରାମ ହସନ୍ତି ଅଳପ ହୋଇ ।
ଲକ୍ଷ୍ମଣ ଭୁଜ ଧରି ଉଦ୍ଧଂ ସ୍ୱାମୀ ଉଠିଯାଇ । ୮୮୮ ।
ସତ୍ୟାନନ୍ଦ କଇଂ ରାଜନ ଜନେକ ।
ଦୃଷ୍ଟାନ୍ତର କଥାମାନ କହନ୍ତି ଅନେକ । ୮୮୯ ।
ତୁ ସେ ମହାମୁନି ଅଟୁ ମୋହୋର ମନ୍ତ୍ରୀ ।
ବିଭା ସମ୍ବନ୍ଧ କଥା କହସି ନୃପତି । ୮୯୦ ।
ସେ ସେ ରାଜା ସୂର୍ଯ୍ୟବଂଶ ଅବତାର ।
ଭାଗ୍ୟ କାଳ ଆସି ହୋଇଲା ମୋହୋର । ୮୯୧ ।
ସେ ସେ ରତ୍ନାକର ମୁହିଂ କ୍ଷୁଦ୍ର ନଦୀ ।
ତାହାରେ ଶରଣ ପଶିତ ମୋର ବୁଧି । ୮୯୨ ।
ସେ ସେ ହେମଗିରି ମୁହିଂ ମେଘ ଦ୍ରୋଣ ।
ଆଶ୍ରେ କରିତ ମୁହିଂ କରଇଂ ବରୁଣ । ୮୯୩ ।
ତୁହି ମନ୍ତ୍ରୀ ମୋର ଜାଣୁ କୁଳଗୋତ୍ର ।
ବୁଝାଇ କହି ଯାଇ ନୃପତି ପବିତ୍ର । ୮୯୪ ।
ତାହା ପୁଣ୍ୟଇ ମୋହୋର ଝିଅ ଦେବା ।
ଅଯୁଧ୍ୟା ନୃପତି ସମ୍ମୁଖ ପାଇବ । ୮୯୫ ।
ସ୍ନେହ କଥା ସତ୍ୟାନନ୍ଦ ହୋ କରଆସ ଯାଇ ।
ପଥେ ତୋତେ ରକ୍ଷା କରନ୍ତୁ ଉମାହାଇଂ । ୮୯୬ ।
ଶୁଭ ଯୋଗବେଳେ କର ତୁ ଗମନ ।
ଶୁଣି ସନ୍ତୋଷ ଯେ ଅହଲ୍ୟା ନନ୍ଦନ । ୮୯୭ ।
ଜନେକ ବିଶ୍ୱାମିତ୍ର ଆବର ଅନେକ ମୁନି ।
ତାହାଙ୍କ ପାଦେ ସତ୍ୟାନନ୍ଦ କଲାକ ମୁଧୁନି । ୮୯୮ ।
ପବନ ନେଲ ଖୋଜ ପାଦ ବଢ଼ାଇଲା ।
ସାନନ୍ଦ ଚଢେ ଅଯୋଧ୍ୟାକୁ ଗଲା । ୮୯୯ ।
ପ୍ରଥମ ଦିନେ ବଇଶାଳୀ ନଗ୍ରେ ରହିଲା ।
ଆରଦିନେ ଶ୍ରୋଣିତ ନଦୀ ତୀରେ ଗଲା । ୯୦୦ ।
ଅତି ଉତ୍ସୁକେ ମୁନି ଚଳିଗଲେ ।
ସିଦ୍ଧବନେ ଯାଇ ପ୍ରବେଶ ହୋଇଲେ । ୯୦୧ ।

Digitized by srujanika@gmail.com

ଚତୁର୍ଥ ଦିବସେ ସେ ଅଗମ୍ୟ ବନେ ଯାଇଂ ।
ପାଞ୍ଚଦିନେ ଗଙ୍ଗା ପାରହୋଇ ଯାଇ । ୯୦୨ ।
ସରଯୂ ନଦୀତୀରେ ରହିଲେ ଷଷ୍ଠ ଦିନରାତ୍ର ।
ସାତଦିନେ ଅଯୁଧ୍ୟାରେ ପ୍ରବେଶ ମହାଯତ୍ର । ୯୦୩ ।
ଦେଖିଲେକ ନଗ୍ର ଅତି ଅଦ୍ଭୁତ ଗଠନ ।
ନେତ ପାଟାଙ୍କ ଉଡ଼ନ୍ତ ଛନ ଛନ । ୯୦୪ ।
କାହିଂ କାଚକୁମ୍ଭ କାହିଂ ବଇଡୂର୍ଯ୍ୟ ।
କାହିଂ ସୋଷ୍ଟିକର ଚନ୍ଦ୍ରମା ପ୍ରାୟେ ତେଜ । ୯୦୫ ।
କାହିଂ ସୁବର୍ଣ୍ଣ କଳସ ପନ୍ତ ପନ୍ତ ।
ଦେଉଳ ମଣ୍ଡପ ଅଟ୍ଟାଳି ଜଗତୀ । ୯୦୬ ।
ମେଘନାଦ ମଣ୍ଡୋପ ଜଗତୀ ଠାବ ଠାବ ।
ନଗ୍ର ପଣମଳ ସୁରପୁର ସମ୍ଭବ । ୯୦୭ ।
ରୂପ ଗୁଣେ ସୁନ୍ଦର ସକଳ ନରନାରୀ ।
ଦେଖିଣ ସନ୍ତୋଷ ହୋଇଲେ ତପସ୍ବୀ । ୯୦୮ ।
ରାଜା ସିଂହଦ୍ୱାରେ ପ୍ରବେଶ ହୋଇଲେ ଯାଇଂ ।
ଦ୍ୱାରପାଳକରି କହିଲେ ମଣାଇ । ୯୦୯ ।
ଶୁଣ ହୋ ଦ୍ୱାରପାଳ ସ୍ୱେ ମୋହୋର ବାଣୀ ।
ଶ୍ରୀରାମର ବାରତା ଅଛୁ ଆମ୍ଭେ ଅଣି । ୯୧୦ ।
ବରଦେହୀ ଦେଶରେ ମିଥିଳା ନାମେ ପୁର ।
ଜନେକ ମହର୍ଷି ତହିଂ ନୃପବର । । ୯ ୧ ।
ତାହାର ଦୁହିତା ସୀତାୟା ନାମେ ବାଳୀ ।
ଶ୍ରୀରାମଙ୍କୁ ବର୍ଣ୍ଣ ଦେବ ତପଶାଳୀ । ୯୧୨ ।
ଈଶ୍ୱର ଧନୁ ଜନେକ ଘରେ ଥିଲା ।
ଦଶରଥ ନନ୍ଦନ ତାହା ହେଲେ ଆଚଞ୍ଚିଲା । ୯୧୩ ।
ତେଣୁ ସେ ଦୋହିତା ଦେବାକୁ ତାହାର ମତ ।
ବିଶ୍ୱାମିତ୍ର ସହିତେ ବର୍ଣ୍ଣଣ ସବଯତ । ୯୧୪ ।
ମୋତେ ପଠିଆଇଲେ ରାଜାକୁ ଜଣାଇ ।
ସ୍ୱେ ସବକଥା ସବୁ କହିବୁ ମଣାଇଂ । ୯୧୫ ।
ଜନକେ ଅନକୂଳ ସେ ଅଛନ୍ତି ବର୍ତ୍ତେ ।
ତେଣୁ ସେ ହାଦେ ମୁଂ ଅଇଲି ଖରକରେ । ୯୧୬ ।
ଗଉତମ ତନୟେ ଅହିଲ୍ୟା ଗର୍ଭୁ ଜାତ ।
ନାମ ସତ୍ୟାନନ୍ଦ ଜନେକ ପୁରୋହିତ । ୯୧୭ ।

Digitized by srujanika@gmail.com

ସେହିବୋଲି କହିଲେ ଜାଣନ୍ତି ସିନା ସର୍ବେ ।
ଶୁଣି ଦ୍ୱାରପାଳ ଚଳିଗଲ ତାସ୍ତେ । ୯୧୮ ।
ସାନନ୍ଦ ହୋଇଣ ବହିଲା ଅଶ୍ରୁଜଳ ।
ସତ୍ୟାନନ୍ଦକଇ ବୋଇଲା ଦ୍ୱାରପାଳ । ୯୧୯ ।
କ୍ଷଣେକ ବିଶ୍ରାମ କର ତୁମ୍ଭେ ସେଥେ ବସ ।
ରାଜା ହୋଇଅଛୁ ବଡ଼ ଅବକାଶ । ୯୨୦ ।
ସେହିକ୍ଷଣି ଜଣାଇ ଦେଇନିଯିବ ତୋତେ ।
ତହୁଂ ଦ୍ୱାରପାଳ ଗମଇଂ ତୁରିତେ । ୯୨୧ ।
ଭିତର ଦ୍ୱାରେ ଅଛଇ ପଡ଼ିହାରୀ ।
ତାହାର ଆଗରେ କହଇ କରଯୋଡ଼ି । ୯୨୨ ।
ଶ୍ରୀରାମର ଦୂତ ସେ ଛନ୍ତି ଦ୍ୱାରେ ରହିଂ ।
ଦର୍ଶନ କରାଅ ତୁମ୍ଭେ ନୃପତି ଆଗେ କହି । ୯୨୩ ।
ଶୁଣିଣ ପଡ଼ିହାରୀ ବାରିକ ଚଳିଗଲା ।
ବୈଦେହୀ ଖୁଣ୍ଟିଆ ଆଗେ ବାରତା କହିଲା । ୯୨୪ ।
ଶ୍ରୀରାମର ବାରତା ଅଛଇ ଜଣେ ଆଣି ।
ବୋଇଲା ବେଗେ ଜଣା ନୃପତି ଶିରୋମଣି । ୯୨୫ ।
ସହୁଂ ପଡ଼ିହାରୀ ସେ ବୋଲ ବୋଇଲା ।
ସତଟିକ ବୋଲି ବୈଦେହୀ ପରୁଶିଲା । ୯୨୬ ।
ପଡ଼ିହାରୀ ବାରିକ ବୋଲଇ ଗୋସାଇଂ ।
ସିଂହଦ୍ୱାରେ ଲୋକ ଅଇଲ ବସାଇ । ୯୨୭ ।
ଶୁଣି ବୈଦେହୀ ଖୁଣ୍ଟିଆ ଚଳିଗଲା ।
ରାଜାର ଆସ୍ଥାନେ ଯାଇଣ ଉଠିଲା । ୯୨୮ ।
ବଶିଷ୍ଠଙ୍କ କନେ କହିଲା ତୁନିକରି ।
ଶୁଣିଣ ମହାଋଷି ଖୁଣ୍ଟିଆ କରଧରି । ୯୨୯ ।
କାହୁଂ ଅଛୁ ଲୋକ କେ ତୋତେ କହିଲା ।
ବଶିଷ୍ଠଙ୍କ ବଚନେ ଖୁଣ୍ଟିଆ ବୋଇଲା । ୯୩୦ ।
ପଡ଼ିହାରୀ ପାଇକ କହିଲା ମୋତେ ଆସି ।
ଶ୍ରୀରାମର ଦୂତ ସେ ଦ୍ୱାରେ ଅଛୁ ବସି । ୯୩୧ ।
ତାହା ଶୁଣି ମୁହିଂ ଅଇଲଇ ବେଗେ ।
ତୁମ୍ଭେ ଜଣାଅ ଯାଇଂ ନୃପତିର ଆଗେ । ୯୩୨ ।
ଖୁଣ୍ଟିଆର ତୁଲେ ବଶିଷ୍ଠ କଥା ହୁଅନ୍ତେ ।
ପଚାରିଲା ଆସି ମନ୍ତ୍ରୀ ଯେ ସୁମନ୍ତେ । ୯୩୩ ।

Digitized by srujanika@gmail.com

କସ କସ କଥା ଘଳ ହୋ ନୃପତ ।
ବଶିଷ୍ଠ ବୋଇଲେ ତୁମ୍ଭେ ଶୁଣ ହୋ ସୁମନ୍ତ । ୯୩୪ ।
ଶ୍ରୀରାମର ଦୂତ ବାରତା ଅଛୁ ଆଣି ।
ଶୁଣିଣ ତଳସ୍ଥେ ତାକୁ କଲେ ନୃପମଣି । ୯୩୫ ।
ରାମର ଶବଦ ଯହୁଁ ଶୁଭିଲାକ କର୍ଣ୍ଣେ ।
ବଶିଷ୍ଠକର ଗୃହୁଂ ବୋଲଇ ରାଜନେ । ୯୩୬ ।
କର୍ମା ରାମନାମ ସୁମରନ୍ତୁ ମୁନ ।
ଶୁଣିଣ ବଶିଷ୍ଠେ ଖୁଣ୍ଟି ଆକ୍ ଗଲେ ଘେନ । ୯୩୭ ।
ରାଜାର ଗ୍ରାମୁରେ ଜଣାନ୍ତ ଭମଗ୍ରସ୍ଥ ।
ଶୁଣ ତୁ ଅଯୋଧ୍ୟା ନୃପତ ଦଣ୍ଡଧାଗ୍ର । ୯୩୮ ।
ଶ୍ରୀରାମ ବାରତା ଘେନିଣ ତାର ଦୂତ ।
ସିଂହଦ୍ୱାରେ ଆସି ହୋଇଛୁ ଉପଗତ । ୯୩୯ ।
ସ୍ୱେଦ୍ରହ୍ରପେ ଖୁଣ୍ଟି ଆ କହ୍ଲ ମୋତେ ଆସି ।
ସେ କଥା ସୁମନ୍ତ ଆଗେ ପରକାଶି । ୯୪୦ ।
ଶୁଣିଣ ନୃପତ ଖୁଣ୍ଟି ଆକ୍ ଗୃହୁଂ ।
କେ ଦୂତ ଆସିଅଛୁ ଦେଖିଲୁଁଟି କ ତୁହ୍ମ । ୯୪୧ ।
ବେହେରା ଜଣାଇଲା ଦେବ ବାରକ କହ୍ଲ ।
ସିଂହଦ୍ୱାରେ ଦୂତ ଅଛଇ ବୋଇଲା । ୯୪୨ ।
ଶୁଣିଣ ନୃପବର ଉଦବେଗ ମନ ।
ଆଗ୍ୟାଂ ଦେଲ ଦୂତ ଅଣାଅଂ ତହନ । ୯୪୩ ।
ଶୁଣିଣ ଧାଇଁଲେ ଖୁଣ୍ଟି ଆ ଜଣ ଗୃର ।
ଆଗ୍ୟାଂପାଇ ବେଗେ ଗଲା ପଡ଼ିହାର । ୯୪୪ ।
ତାହାର ପଛେ ପଛେ ସୁମନ୍ତଇଂ ଗଲା ।
ରାମ ପ୍ରାସ୍ତେ ମଣି ଭ୍ରଥଇ ଧାଇଲା । ୯୪୫ ।
ଶତ୍ରଘନ ସହିତେ ଅନେକ ଲୋକ ଗଲେ ।
ମୁଦ୍ରୂାଲ ଯାଇଂ ଭିତରେ ଜଣାଇଲେ । ୯୪୬ ।
ଶୁଣ ଗୋ ଦେବୀ ଦଶରଥ ପାଟରାଣୀ ।
ଶ୍ରୀରାମର ବାରତା ଗୋ ଅଇଲୁ ଆମ୍ଭେ ଜାଣି । ୯୪୭ ।
ଦୂତ ଆସିଅଛୁ ବୋଲଣ ଶୁଣିଲୁ ।
ଲୋକ ଧାଇଂମାରୁ ଅଇଲା ପ୍ରାସ୍ତେ ମଣିଲୁ । ୯୪୮ ।
ଶୁଣି କଉସଲ୍ୟା ଆସନୁ ଉଠଇ ।
ବକଲତ ମନେ ପେଟ ଆଉଂଶଇ । ୯୪୯ ।

Digitized by srujanika@gmail.com

ଦାସୀନ୍ତ ହକାର ବୋଲଇ ରାମ ମାତା ।
ତଥ୍ୟକର ମୋତେ କହ ଲୋ ବାରତା । ୯୫୦ ।
ସୁନ୍ଦର ମୁଖ ମୁଂ ସୁହିଂମି କେମନ୍ତେ ।
କେ ଆଣି ଶ୍ରୀରାମଙ୍କୁ ଭେଟାଇବ ମୋତେ । ୯୫୧ ।
କଉଶଲ୍ୟା ଆନନ୍ଦ କହୁଲେ ନ ସରଇ ।
ଲୋଚନ ଯୁଗଳୁ ଅଶ୍ରୁଜଳ ବହଇ । ୯୫୨ ।
ସୁମିତ୍ରା ବଦନ ଶରତଚନ୍ଦ୍ର ଜାଣି ।
ଗୃତେକ ପାଇଲା କ ଆକାଶର ପାଣି । ୯୫୩ ।
ଆବର ଯେତେକ ଅଛନ୍ତି ରାଣୀମାନ ।
ଶ୍ରୀରାମ ବାରତାକୁ ଟେକିଛନ୍ତି କର୍ଣ୍ଣ । ୯୫୪ ।
କହଣ୍ଠଲା ପୁରେ ସମସ୍ତେ ବୁଣ୍ଡ ହୋଇଛନ୍ତି ।
ବାରତା ଜାଣିମେ ବୋଲି ଝଡ଼ାନ୍ତି ପେଷନ୍ତି । ୯୫୫ ।
ସେଥୁ ଅନନ୍ତରେ ଶୁଣ ଗୋ ଗଉରୀ ।
ଦୂତ ଅଇଲା ବୋଲି କହୁଛ ରାବ ପୂର । ୯୫୬ ।
ଦ୍ୱାରପାଳ ବୋଇଲା ଶୁଣ ତପୋବନ୍ତ ।
ରାଜା ଆଜ୍ଞାଂ ହେଲା ଆସିବୁ ତୁରିତ । ୯୫୭ ।
ସେସନ ସମସ୍ତେ ଯେ ଖଣ୍ଡି ଆମାନେ ଯାନ୍ତି ।
ଶ୍ରୀରାମ ଦୂତକେ ଆସ ହୋ ବୋଲନ୍ତି । ୯୫୮ ।
ଶୁଣି ସତ୍ୟାନନ୍ଦ ଯୋବବଲ ଘେନ ।
ରାଜାର ମନ୍ଦରେ ପ୍ରବେଶ ମହାମୁନି । ୯୫୯ ।
ସୁମନ୍ତ ଦେଖି ତାକୁ ଚହ୍ନିଲା ତତକ୍ଷଣ ।
ଅହିଲା ସୁତ ସେ ପବିତ୍ର ବଲକ୍ଷଣ । ୯୬୦ ।
ସେତେ କେଲି ମନ୍ତ୍ରୀ କଲା ନମସ୍କାର ।
କୁଶଳଟିକ ମୁନି ରାମ ଲକ୍ଷ୍ମଣ ଶୋଭାର । ୯୬୧ ।
ସତ୍ୟାନନ୍ଦ କହଇ ସକଳ କ୍ଷେମ କାର୍ଯ୍ୟ ।
କାହିଂ ଅଛ ତୋହୋର ଅଯୋଧ୍ୟା ମହାରାଜ । ୯୬୨ ।
ସୁମନ୍ତ ବୋଲଇ ନୃପଙ୍କ ଅବକାଶ ।
ହେ ଋଷି କୁମର ତୁ ବେଗେ ହୋଇ ଆସ । ୯୬୩ ।
ଭୁଥ ଶତ୍ରୁଘନ ଋଷିର ପାଦେ ପଡ଼ି ।
କୁଶଳ ପଚାରନ୍ତି ବେନି କର ଯୋଡ଼ି । ୯୬୪ ।
ଶ୍ରୀରାମ ଲକ୍ଷ୍ମଣ କ କ୍ଷେମେଛନ୍ତି ବୃତ୍ତି ।
କଲ୍ୟାଣ କରଣ ବୋଲଇ ମହାପଣ୍ଡ । ୯୬୫ ।

Digitized by srujanika@gmail.com

ସର୍ବଶୁଭ ବାରତା ଶ୍ରୀରାମ ଲକ୍ଷ୍ମଣ ।
ରାଜାର ଆଗେ କଥା କହିବା ସ୍ନେହକ୍ଷଣ । ୯୬୬ ।
ସ୍ବର୍ଗଦ୍ୱାର ଜଣି ହଣିଲକ ଦୂତ ।
ଦେଖି ବିସ୍ମରନ୍ତି ବଶିଷ୍ଠ ତପୋବନ୍ତ । ୯୬୭ ।
ଗଉତମ ସୂତ ସେ ଅହଲ୍ୟା ତନୟେ ।
ଜନେକ ମହର୍ଷି ପୁରୋହିତ ହୋୟେ । ୯୬୮ ।
ସେ ଯେବେ ଅଇଲଟି ସକଳ କାର୍ଯ୍ୟ ଭଲ ।
ଶୁଣ ତୁ ଦଶରଥ ଅଯୋଧ୍ୟାର ମଲ୍ଲ । ୯୬୯ ।
ସେ ସେ ସତ୍ୟାନନ୍ଦ ପରମବ୍ରହ୍ମ ଜାଣଇ ।
ମହାଋଷି ସଙ୍ଗତରେ ବିଧାତା ଗଣେଇଂ । ୯୭୦ ।
ରାମ ଆଗ୍ୟାଂ ପାଇ ସେ ଅଇଲ ଏଡ଼େ ମୁନି ।
ବାବୁ ଦଶରଥ ମହିମା ତୋର ଧନ । ୯୭୧ ।
ରାଜା ବଶିଷ୍ଠଙ୍କର କଥାର ସମୟେ ।
ଆସ୍ତେ ନେ ପରବେଶ ସତ୍ୟାନନ୍ଦ ହୋୟେ । ୯୭୨ ।
ତାହାର ପଛକତ ଅନେକ ସଇନ ।
ପଟୁଆର ପଡ଼ିଲେ ଆନନ୍ଦ ରସଘେନ । ।୯୭୩ ।
ରାଉତ ମାହୁନ୍ତ ଖୁଣ୍ଟିଆ ପଡ଼ିହାରି ।
ପାତ୍ର ସାମନ୍ତ କେ ବାରତ ନ ପାରି । ୯୭୪ ।
ଝଁଡ଼ା ମୃଦୁମ୍ବଲ ଭିତରେଣ ଥାନ୍ତି ।
କବାଟ ଆଁଉଜାଇଂ କଥାନ୍ତ ବୃଷ୍ଟାନ୍ତ । ୯୭୫ ।
ସେଥୁ ଅନନ୍ତରେ ସତ୍ୟାନନ୍ଦ ଆସି ।
ବଶିଷ୍ଠଙ୍କ ମୁଖ ରହିଂ ଅଳସ ହୋଇ ହସି । ୯୭୬ ।
ତତକ୍ଷେଣ ରହିଂ କଲେ ନମସ୍କାର ।
ହୋଇକଲେ ଯାଇଂ ବ୍ରହ୍ମାର କୁମର । ୯୭୭ ।
ଦଶରଥ ରାଜା ଆସନରୁ ଉଠି ।
ଶିରେ ଲଗାଇଲ ନେଇ ଋଷିର ପାଦଗୋଟି । ୯୭୮ ।
ଯେ ଯଥାବିଧି କରଣ ବସାଇ ।
ସତ୍ୟାନନ୍ଦ ବୋଲଇ ଶୁଣ ନରସାଇଂ । ୯୭୯ ।
ଯାବାଲି କଶ୍ୟପ ତପୋବନ୍ତ ଦେଖି ।
ପୂଜାକଲେ ପୂର୍ବ କଥା ଉପଲେଖି । ୯୮୦ ।
ସର୍ବଜନେ ହୋଇ ଅଛନ୍ତି ତଦବଦ ।
ଆଜ ଶୁଣିମା ନା ଶ୍ରୀରାମ ସମ୍ବାଦ । ୯୮୧ ।

Digitized by srujanika@gmail.com

ସେନକଲୁ ଅରେକ ଆନୁଂସାର ପେଲ୍ପେଲ୍ ।
ଖୁଣ୍ଟିଆ ପଲ୍ହାସ ହେଲୁ ହେଲୁ ବୋଲି । ୯୮୨
ସେଦିନ ସମସ୍ତେ ସତ୍ୟାନନ୍ଦ ଋଷି ।
ବଶିଷ୍ଠଙ୍କ ଦକ୍ଷିଣ ପାର୍ଶ୍ୱେ ଆସି ବସି । ୯୮୩ ।
ଦଶରଥଙ୍କଇ ଗୃହ୍ଣଂ ବୋଲନ୍ତି ମୁନିବର ।
ଶୁଣସି ନୃପବର ହେ ଅଯୋଧ୍ୟା ଠାକୁର । ୯୮୪ ।
ଶ୍ରୀରାମ ଚରିତ୍ର ଅଛୁ ଆମ୍ଭେ ଜାଣି ।
ଜୀବନ ସୁଫଳ କରୁଁ ତାହା ଶୁଣି । ୯୮୫ ।
ଶୁଣ ସାବଧାନେ କହଇଂ ମୁହିଂ ତଥ୍ୟ ।
ସେଥିପାଇଂ ସିଦ୍ଧ କଲେ ତୋହୋର ସୁତ । ୯୮୬ ।
ବିଶ୍ୱାମିତ୍ର ଯାଗ ରଖିଣ ରଘୁନାଥ ।
ସଙ୍ଗେ ଲକ୍ଷ୍ମଣ ଅଛୁ ସାନ ଭ୍ରାଥ । ୯୮୭ ।
ମିଥିଳା ପୁରକଇ କଲେକି ଗମନ ।
କଉଶିକ ଯେତେ ଅନେକ ତପୀଜନ । ୯୮୮ ।
ବିପୁଳ ବନରେ ପ୍ରବେଶ ହୁଅନ୍ତି ।
ମୋ ହୋର ପିତାର ପୂର୍ବ ଆଶ୍ରମ ଦେଖନ୍ତି । ୯୮୯ ।
ବିଶ୍ୱାମିତ୍ର ମୁନି କହାଇଣ ନେଲେ ।
ପୂର୍ବର କଥା ଜାଣି ସେଠାରେ ମିଳିଲେ । ୯୯୦ ।
ମାତା ମୋ ଅହଲ୍ୟା ପାଷାଣ ହୋଇଥିଲି ।
ରାମପାଦ ଲାଗି ନିଜ ସ୍ୱରୂପର ପାଇଲି । ୯୯୧ ।
ତହୁଂ ତୋର ପୁତ୍ର ତପୀଙ୍କର ମେଳେ ।
ପ୍ରବେଶ ହୋଇଲେ ଯାଇଂ ମିଥିଳା ମଣ୍ଡଳେ । ୯୯୨ ।
ଦେଖିଣ ଜନକ ଅନେକ ଗହଗୋଭ କଲା ।
ରାମଙ୍କୁ ନେଇଂ ରୁଦ୍ର ଧନୁ ଦେଖାଇଲା । ୯୯୩ ।
ଅନେକ ନୃପତି ଥିଲେ ତହିଂ ମିଳି ।
କେହି ଶରାସନ ନ ପାରିଲେ ତୋଳି । ୯୯୪ ।
ତୋର ପୁତ୍ର ଶ୍ରୀରାମ ଧନୁ ଆଣିଥିଲା ।
ବେନିଖଣ୍ଡ କରି ଭାଙ୍ଗି ପକାଇଲା । ୯୯୫ ।
ଦେଖିଣ ଜନକ ତୋଷ ମନ ହୋଇ ।
ସୀତା ନାମେ ତାର ନନ୍ଦିନୀ ଅଟଇ । ୯୯୬ ।
ଶ୍ରୀରାମଙ୍କୁ ଦେବାକୁ ତାହା ସନମତ କଲା ।
ପଞ୍ଚରତ୍ନ ମାଳା ଦେଇଣ ସୀତା ବରିଲା । ୯୯୭ ।

Digitized by srujanika@gmail.com

ବନ୍ଧୁର ବିଧାନ ରଚିଲ ସମସ୍ତ ।
ରାମ ବୋଇଲେ ଯେ କଥା ନୁହଇ ଯୁଗତ । ୯୯୮ ।
ପିତାଙ୍କୁ ନ କହିଲେ ନୁହଇଂ ମୁହିଂ ବିଭା ।
ଯେକଥା କଦାଚିତେ ନୁହଂଇ ମୋତେ ଶୋଭା । ୯୯୯ ।
ଶୁଣିଣ ମୁନିଜନେ ହୋଇଲେ ପ୍ରେମ ଭୋଳ ।
ଭଲଣ ସତ୍ୟେ ମୋତେ ପୋଷିଲୋ ତୋର ପାଶ ।୧୦୦୦।
ତୁ ଯେବେ ଯିବୁ ରାଜା ହୁଅ ବେଗେ ସଜ ।
ହେଳ ନ କର ତୁ ଅଯୁଧ୍ୟା ମହାରାଜ । ୧ ।
ଶ୍ରୀରାମ ହିଂ ଲେଖ ଗୋଟିଏ ଅଛୁ ଦେଇ ।
ଯେତେବୋଲି ଲେଖ ସମର୍ପିଲେ ନେଇ । ୨ ।
କୃତ ଆଜୋଂଲ ହୋଇ ଘେନିଲେ ଦଶରଥ ।
ହୃଦେ ଲଗାଇ ଦେଲି ବଶିଷ୍ଠଙ୍କ ହାଥ । ୩ ।
ପଢ଼ ମହାମୁନି ଶ୍ରୀରାମ ସନ୍ଦେଶ ।
ଶୁଣ ସଭାଜନ ଶ୍ରୀରାମ ଦିବ୍ୟରସ । ୪ ।
ବ୍ରହ୍ମାଙ୍କର ତନୟେ ଲେଖ କରେ ଧରି ।
ଶ୍ରୀରାମର ମୁଦ ସମସ୍ତ ଠାବ କରି । ୫ ।
ଚନ୍ଦନ ମୁଦ ଗୋଟି ପକାଇଲେ ଭାଜିଂ ।
ହେଳ ପତନ କରି ଧଇଲେ ପଦ ସାଜ । ୬ ।
ମନେ ମନେ ଲେଖନ ପଢ଼ନ୍ତି ସୁମତି ।
ପ୍ରତାପ ଠାବରେ ହସନ୍ତି ବ୍ରହ୍ମଋଷି । ୭ ।
ପଢ଼ିଣ ଲେଖ ଗୋଟି ସମାପତ କଲେ ।
ନୃପତି ମୁଖ ଚାହିଂ ବଚନ ବୋଇଲେ । ୮ ।
ଶୁଣ ତୁ ଦଶରଥ ପୁତ୍ରର ମହିମା ।
ଦନୁଜନ୍ତ ଜିଣି ରାମ ତୁହାଇଲ୍ଲ ସୀମା । ୯ ।
ଅରଣ୍ୟ ବନେ ତାଡ଼କା ବଧକରି ।
ବିଶ୍ୱାମିତ୍ର ମୁନିର ଯାଗ ରକ୍ଷାକରି । ୧୦ ।
ସୁବାହୁ ମାରୁଚକ ଅନଳେ ଦଗଧିଲା ।
କଉଶିକ ପ୍ରସନ ହୋଇଂ ସମ୍ଭୋଦନ । ୧୧ ।
ଅହଲ୍ୟା ମୁକତ କଲା ତୋର ସୁତ ।
ସାଧୁ ସାଧୁ ବୋଲି ଶୁଭିଲା ଜଗତ । ୧୨ ।
ମିଥିଳା ନଗ୍ର ଜନେକର ଘରେ ।
ସଦାଶିବ ଧନୁ ଧଇଲେ ବାମକରେ ୧୩

Digitized by srujanika@gmail.com

ଗୁଣ ଦେଇକର ଓଟାରିଲେ ଯନ୍ତ୍ରଂ ।
ଅକଳବଳ ଧନୁ ଖଣ୍ଡିଲ୍ଲକ ତନ୍ତ୍ରଂ । ୧୪ ।
ଦେଖିଣ ଜନେକ ବହୁତ ପ୍ରଶଂସିଲ୍ଲ ।
ସୀତ୍ୟା ନାମେ ଦୋହିତା ଦେବଇଂ ବୋଇଲ୍ଲ । ୧୫ ।
ପଞ୍ଚୁ ରତ୍ନମାଳା ଦେଇକର ବର ।
ସେହିଦିନ ସେ ଜୋଡ଼ିଲେ ବିଭାକର । ୧୬ ।
ରାମ ବୋଇଲେ ଯେତେ ନୁହଇ ଯୁଗତ ।
ପିତା ଅଟଇ ନା ମୋହୋର ପ୍ରାଣନାଥ । ୧୭ ।
ତାହା ଅସନମତ ନୋହଇଂ ନା ବିଭା ।
ଜନେକ ମହାମୁନି ଶୁଣିଲ୍ଲକ ଯେତେହା । ୧୮ ।
ବିଶ୍ୱାମିତ୍ର ହନ୍ତେଂ ଚାଲିଲେ ସଙ୍ଗତ ।
ସତ୍ୟାନନ୍ଦକଇ ପେଷିଣ ଅଛନ୍ତି । ୧୯ ।
ତୁ ଯେବେ ଜାସ ଦଶରଥ ନୃପ ବର ।
ପରମ ଭାଗ୍ୟେ ଶ୍ରୀରାମକୁ ପାଇଲୁ କୁମର । ୨୦ ।
ଯେବଣ ଋଷିଙ୍କି ସେ ଦେବେ ପ୍ରଶଂସନ୍ତି ।
ତେତେ ତେତେ ଲୋକ ରାମ ବନ୍ଧୁ ହୋଅନ୍ତି । ୨୧ ।
ଧନ୍ୟ ସୂର୍ଯ୍ୟବଂଶ ଧନ୍ୟ ଅଯୁଧ୍ୟା ନାମେ ପୁରୀ ।
ଧନ୍ୟ ଦଶରଥ ଧନ୍ୟ କଉଶଲ୍ୟା ନାରୀ । ୨୨ ।
ଶ୍ରୀରାମ ତୋହୋର ବଂଶେଣ ଉତପତ୍ତ ।
ଜନେକଙ୍କୁ ସମୁଧି ତୁ ପାଇବୁ ନୃପତ୍ତ । ୨୩ ।
ବିଶ୍ୱାମିତ୍ର ହନ୍ତେଂନା ଦେଇଥିଲୁ ପୁତ୍ର ।
କାହିଁକି ପ୍ରସାଦେ ତୋ ଉଜ୍ଜ୍ୱଳ ହେଲା ଗୋତ୍ର । ୨୪ ।
ଧନ୍ୟ ଗାଧିସୁତ ଯେ ଗୁଣେ ତୋତେ କଲ୍ଲ ।
ଜନେକ ଋଷିଙ୍କି ସମୁଧି ଭିଆଇଲ୍ଲ । ୨୫ ।
ଶୁଣି ଦଶରଥ ପରମ ଆନନ୍ଦ ।
ମୁଖ ବିକାଶଇ ପୂର୍ଣ୍ଣିମୀର ଚନ୍ଦ୍ର । ୨୬ ।
ଆନନ୍ଦେ ଅଶ୍ରୁଜଳ ବହିଇ ଘନ ଘନ ।
ବଶିଷ୍ଠଙ୍କୁ ଚାହିଂ ବୋଲନ୍ତି ରାଜନ । ୨୭ ।
ଶୁଣ ମୁନି ଯାହା ସତ୍ୟାନନ୍ଦ କହିଲ୍ଲ ।
ଯେତେ କଥା ବିଶ୍ୱର ମୋତେ ସଂଶୟ ଲାଗିଲ୍ଲ । ୨୮ ।
ତାଡ଼କା ମାରିଲ୍ଲ କଥା ଲାଗଇ ଅପୂରୁବ ।
ଯାଗ ରକ୍ଷିବା କଥା ଅଟଇ ଅସମ୍ଭବ । ୨୯ ।

Digitized by srujanika@gmail.com

ଅହଲ୍ୟ ମୁକତ ଅଶ୍ରୁତ ଅଗୋଚର ।
ସବୁହିଂ ବୋଲଲ୍ଭ ଧନୁ ସୟମ୍ବର । ୩୦ ।
ଅଙ୍କଲବଳ ଧନୁ ରଘୁହିଂ ବହିଲ ।
ତାହାର ଶରାସନକୁଂ ସମ ନୋହି କେହି । ୩୧ ।
ଈଶ୍ୱର କୋପଂ ବସ୍ତୁ ତେଜୁ ଜାତ ।
ଭୂମିରୁ ଉଠାଇଂ ନ ପାରଇ ସୁରନାଥ । ୩୨ ।
ବଳିର ପୁତ୍ର ହାଦେ ବାଣାସୁର ରାଜ ।
ସଦାଶିବର ସେ ଯେ ଧର୍ମର ତନୁଜ । ୩୩ ।
ବଳ ପରୀକ୍ଷ ନିମନ୍ତେ ସେ ରାଜା ଅଇଲ୍ଭ ।
ସହସ୍ର ଭୁଜେ ଧନୁ ତୋଳି ନ ପାରିଲ୍ଭ । ୩୪ ।
ଲଙ୍କାର ରାଜା ହାଦେ ଅଟଇ ଦଶାନନ ।
ସେହି ସେ ତୋଳି ନ ପାରଇ ଶରାସନ । ୩୫ ।
ପ୍ରଶୁରାମହିଂ ଆନ ନାହିଂ ବଳୀୟାର ।
ସେ ଧନୁ ଦେଖି ଟଙ୍କ ସେ ଗଲଲ୍ଭ ତାହାର । ୩୬ ।
ଲବଣ ନାମେଣ ମଧୁବନ ରାୟେ ।
ଧନୁ ପରୀକ୍ଷକୁ ସେ ମିଥିଳାକୁ ଆୟେ । ୩୭ ।
ଶରାସନକୁଂ ଦେଖି ହାରଲ୍ଭକ ଗ୍ୟାନ ।
ହତବୀର୍ଯ୍ୟ ହୋଇଣ ସେ ପଲାଇଲ୍ଭ ରାଜନ । ୩୮ ।
ନର ନାରାୟଣ ଋଷି ଆସିଥିଲେ ।
ସାୟେକ ଦେଖି ସେ ଅନେକ ପୂଜାକଲେ । ୩୯ ।
ନର ଋଷି ମନେ ବରୂରଣ କଲେ ।
ନାରାୟଣ ଆଗ୍ୟାରେ ଧନୁ ଧରିବୁ ବୋଇଲେ । ୪୦ ।
ସର୍ବଗ୍ୟଂ ପୁରୁଷ ଜାଣିଲେ ତାହା ମନ ।
ବୋଇଲେ ନର ଋଷି ଛୁଉଁ ଶରାସନ । ୪୧ ।
ନାରାୟଣ ଆଜ୍ଞ୍ୟାଂ ପାଇଣ ନର ଋଷ ।
ଅଜଲବଳ ଧନୁ ଟେଇଲେ ଆକ୍ଷେପି । ୪୨ ।
ବଡ଼ବାୟେ ଯେହ୍ନେ ନ ଚଳଇ ଗିରି ।
ଅସୁରେ ନର ଲେତକ୍ତ ଯେହ୍ନେ ଦେବତାଙ୍କ ଶିରୀ । ୪୩ ।
ମୁଣ୍ଡେ ପେଲିଲେ ନ ଦୋହଲ ଧୁଁଯାଇ ।
ଈଶ୍ୱର ଧନୁ କ ନ ଋଷିଙ୍କି ସାଜଇ । ୪୪ ।
ଅଭିଗ୍ୟଂ ଘଣେ ଯହୁଂ ଛୁଇଂଲେ ଶରାସନ ।
ମୁଖରୁ ରୁଧିର ତାର ବହଇ ତତକ୍ଷଣ । ୪୫ ।

Digitized by srujanika@gmail.com

ନୟନର କୋଣେ ସେ ଢାଳିଲା ରକତ ।
ନାସିକାର ଦ୍ୱାରେ ସେ ଗଳଇ ଶୋଣିତ । ୪୬ ।
ଶ୍ରବଣ ବମ୍ବରୁ ଯେ ଝରଇ ଅବଛନ ।
ଚନ୍ଦ୍ର ପ୍ରସ୍ବେ ହୋଇଂ ସେ ବୁଲଇ ନୟନ । ୪୭ ।
ଝାଇଂମାର ମୁଣ୍ଡ ପଡ଼ିଲା ଭୂମି ତଳେ ।
ଦେଖି ଉପହାସ୍ୟ କରନ୍ତି ସକଳେ । ୪୮ ।
ନାରାୟଣ ଋଷିଙ୍କି ଧଇଲେ କୋଳକରି ।
ମୁଖେ ପାଣି ସିଞ୍ଚି ତୋଳିଲେ ବ୍ରହ୍ମଋଷି । ୪୯ ।
ଋଷିମାନେ ବୋଇଲେ ତୁ ଶୁଣ ନରମୁନି ।
ମୋହୋମାନ ହୋଇ କମ୍ପା ପଡ଼ିଲୁ ମେଦିନୀ । ୫୦ ।
ଋଷି ବୋଇଲା ମୁଁ ଅଗ୍ୟାନ ମତି କଲି ।
ସ୍ୱେ ଦେବ ଧନୁକୁଂ ଗର୍ବେ ବନ୍ଧିଲି । ୫୧ ।
ତେଣୁକରି ଚେତନା ହୁଡ଼ିଲା ମୋହୋର ।
ମନ ଛନ୍ ଛନ ହୋଇଲା ଅନ୍ଧକାର । ୫୨ ।
ଲଜ୍ୟା ପାଇଲଇଂ ସଂସାର ତ୍ରଇଲୋକ୍ୟେ ।
ସ୍ୱେତେ ବୋଲି ମନ ଝୁରଇ ଗରଶୋକେ । ୫୩ ।
ନାରାୟଣ ବୋଇଲେ ତୁ ପାଇଲୁ ବହୁତ ପାପ ।
ଅବଗ୍ୟା କରିଣ ଧଇଲୁ ଶିବଚାପ । ୫୪ ।
ସ୍ୱେ ଦୋଷେ ଜାତ ତୁ ହୋଇବୁ ମୃତ୍ୟୁ ପରେ ।
ଜନମ ମରଣ ଦୁଖ ତୁ ପାଇବୁ ମୁନିବରେ । ୫୫ ।
ଶୁଣି ନରଋଷି ପାଇଲା ମନ ବ୍ୟଥା ।
ତୋହୋରେ ସେ ଦର୍ଭାଇଲା ସ୍ୱେହୁ କଥା । ୫୬ ।
ମୁନି ମନେ ଧରିଣ ବୋଇଲାକ ସ୍ତୁତି ।
ତୁ ଯେବେ ଶାପ୍ୟ ମୋତେ ଦେଲୁ ନାରାୟଣ ହି । ୫୭ ।
ତୋହୋର ବୋଲେ ମୁହିଂ ଭରସା ପାଇଲି ।
ମହାଦେବ ଧନୁ ଅଗ୍ୟାନେ ଧଇଲି । ୫୮ ।
ତେଣୁ ସେ ମୋହୋ ଚିତ ହୋଇଲା ଅଥିର ।
ଆଶ୍ୱାସନା ଦେଇ ତୁ ଯେ ଦେଖିଲୁ ବୁଧିର । ୫୯ ।
ମୁହିଂ ଯେବେ ସଂସାରେ ପାଇବ ମୃତ୍ୟୁ ଜନ୍ମ ।
ତୁହି ଜନ୍ମ ମରଣ ଲଭିବୁ ପରମ ବ୍ରହ୍ମ । ୬୦ ।
ଓହାକୁଳ ଶାପ୍ୟ ହୋଇଲା ପରାପତି ।
ଜନ୍ମ ହୋଇବେ ସେ ଦ୍ୱାପର ଯୁଗ ଅନ୍ତ । ୬୧ ।

Digitized by srujanika@gmail.com

ବସୁଦେବ ଘରେ ଜାତ ହୋଇବେ ଶ୍ରୀହରି ।
ନର ଋଷି ପଣ୍ଡୁର ଘରେ ଅବତରି । ୬୨ ।

ଅର୍ଜ୍ଜୁନ ନାମେ ହୋଇବ ଅବତାର ।
ଶାପ୍ୟ ଭୋଗକରି ପାଇବ କଳେବର । ୬୩ ।

ଇନ୍ଦ୍ରିଦ୍ୱା ଜଟକେ ବାନର ଅଧିପତି ।
ବାଳୀ ନାମେଣ-ଶରବର ଚକ୍ରବର୍ତ୍ତୀ । ୬୪ ।

ମୃଗୟାକୁ ଆସି ଦେଖିଲେକ ଧନୁ ।
ଦେଖିବା ମାତ୍ରକେ ସେ କମ୍ପମାନ ତନୁ । ୬୫ ।

ଶଙ୍ଖଣ ଛୁଇଂ ସେ ବାହୁଡ଼ିଣ ଗଲା ।
ବେଳକ ସହସ୍ରାର୍ଜ୍ଜୁନ ଆସିଥିଲା । ୬୬ ।

ଧନୁ ଧରିବାକୁ କରଇ ମନେ ମନ ।
ପୁଣି ବସ୍ତ୍ରରଇ ମୁହିଂ ନୁହଇଂ ସର୍ଜନ । ୬୭ ।

ଯମଦଣ୍ଡ ଯେନ ସେ ବାହୁଡ଼ିଲା ଧାଇ ।
ଧନୁ ଦେଖି ବେଳେ ଅଇଲ ଗଣପତି । ୬୮ ।

ଥୋର ହସ୍ତେ ଧରି ତୋଳିତ ମନକଲା ।
ହୁଙ୍କାର ଧୁନକରି ସାଗେ ଉଛୁଡ଼ିଲା । ୬୯ ।

ପେଟେ ପଶିଲା ତାର କର ଚରଣ ବୁଲୁ ।
ଲୋକେ ଉପହାସ୍ୟ କରନ୍ତି ତାହାକୁ । ୭୦ ।

ତେଣୁ ସେ ଥୋନ୍ଦୋର ଅଟଇ ବପ୍ରରାଜ ।
ବାହୁଡ଼ିଣ ଗଲା ପାଇଣ ବହୁତ ଲାଜ । ୭୧ ।

କାର୍ତ୍ତିକେଶ୍ୱର ହନେକ ଅସିଥିଲା ।
ଏକଥା ଶୁଣି ସେ ଦାଣ୍ଟୁଂ ବାହୁଡ଼ିଲା । ୭୨ ।

କାମଦେବ ଆଇଲା ଧନୁ ଗୁଣ ଶୁଣି ।
କଠୋର ଦେଖି ଦାଣ୍ଟୁ ବାହୁଡ଼ିଲା ପୁଣି । ୭୩ ।

ମୋହର ଉପରବଂଶେ ନାମ ମୁଚୁକୁନ୍ଦ ।
ଅସୁରଙ୍କ ସଙ୍ଗତ ସେ କଲା ବହୁତ ଦ୍ୱନ୍ଦ । ୭୪ ।

ଦେବତାଙ୍କ ସହ ହୋଇଲା ବାହୁବଳେ ।
କ୍ଷତ୍ରୀ ସମ ତାକୁ ନାହିଂ ରବି ତଳେ । ୭୫ ।

ସେହୁ କୋଦଣ୍ଡ ନ ପାରିଲା ତୋଳି ।
ଏକଥା ଶୁଣିଣ ବହୁତ ମୁହିଂ ଲାଜ । ୭୬ ।

Digitized by srujanika@gmail.com

ଜନେକ ପ୍ରସନେ ମୁ ଧନୁକୁ ଦେଖିଲ ।
ସୁବର୍ଣ୍ଣର ପୃଷ୍ଠଦେଇ ମୁ ଧନୁକୁ ପୂଜିଲି । ୭୭ ।
ପର୍ବତ ସମାନ୍ୟ ଦାଣଇ ଶରାସନ ।
ଛୁଇଂତ ରାଜାମାନେ ନୋହୁଲେ ସର୍ଜନ । ୭୮ ।
ସୁଧର୍ମା ନାମେ ରାସ୍ତେ ଧନୁ ମାଗି ଗଲ ।
ନ ପାଣ ଟେକ ସେ ଅଭିମାନେ ମଲ । ୭୯ ।
ସକାସନ ପ୍ରିସ୍ଥ ସନ୍ତ୍ସଂ ହୋଇଲାକ ଭୁଚ୍ଛା ।
ଜନେକଂର ଭାବ ସେ କଟେକ ପଣଛା । । ୦ ।
ସ୍ୱେବେ ଅପରୁବ ଶୁଣିଲ ତୋହୋ ତହ୍ନଂ ।
ଶ୍ରୀରାମ ଧଇଲେ ବୋଲ କହ୍ନଂଅଛ ସହ୍ନଂ । ୮୧ ।
ସତ୍ୟାନନ୍ଦ ବେଇଲା ମୃଂ କହ୍ବ କପାଂ ସ୍ନେକ ।
ରାଜାମାନେ ତହ୍ନଂ ମିଳଲେ ଅନେକ । ୮୨ ।
ତପୀ ଜପୀ ଋଷି ମହା ମୁନିମାନେ ।
ଅନେକ ଦେଶର ଆଦେ ଇଲେ ରାଜାମାନେ । ୮୩ ।
କେହୁ ଯେ ଧନୁକୁ ନ ପାରିଲେ ତୋଳ ।
ଆଠ ଶତ ଲୋକେ ତାହା ନିଅନ୍ତି ବହିତ । ୮୪ ।
ତାହା ତୋହୋର ପୁତ୍ର ଧ ଲ ବାମକରେ ।
ଦେଖୁଣ ଅଛନ୍ତି ସକଳ ମହୀପାଳେ । ୮୫ ।
ଗୁଣଦେଇ ସହ୍ନଂ ଆମଷିଲେ କୋଦଣ୍ଡେ ।
ଅକଳବଳ ଧନୁ ହୋଇଲ ବେନି ଖଣ୍ଡେ । ୮୬ ।
ସ୍ୱର୍ଗେ ସାଧୁ ସାଧୁ ଶୁଭିଲାକ ବାଣୀ ।
ଭୟେ ପଳାଇଲେ ସକଳ ନୃପମଣି । ୮୭ ।
ଜନେକ ଆନନ୍ଦେ ଦୁହିତା ସମର୍ପିଲା ।
ପଞ୍ଚ ରତ୍ନମାଳୀ ଦେଇଂ ସୀତସ୍ୱା ବରିଲା । ୮୮ ।
ରାମ ସନମତ କଲେ କରନ୍ତେଣ ବରା ।
ତୁ ସ୍ନେହେ ଭ ାନ୍ତି କର୍ମା କର ନୃପଦେବା । ୮୯ ।
ବଶିଷ୍ଠେ ବୋଇଲେ ତୁ ଶୁଣ ଦଶରଥ ।
ସତ୍ୟାନନ୍ଦ କଥା ଅଟଇ ଯଥାର୍ଥ । ୯୦ ।
ଶ୍ରୀରାମ ମଙ୍ଗଳ ମ୍ନାଣ ଅଟଇ ସେ ସାର ।
ସ୍ୱୟଂ ବ୍ରହ୍ମ ହୋଇଲେ ଅବତାର । ୯୧ ।
ନୋହୁଲେ କ ଆନେ ପାରଇ ହେବାକର ।
ଶୁଣିଣ ସନ୍ତୋଷ ଅଯୁଧ୍ୟା ଦଣ୍ଡଧାରୀ । ୯୨ ।

Digitized by srujanika@gmail.com

ଜାବାଲି କାଶ୍ୟପ ସୁମନ୍ତ୍ର ବାମଦେବ ।
ସଭିଙ୍କର ମନ ଆନନ୍ଦ କେ କହିବ । ୯୩ ।
ଆସ୍ଥାନର ଲୋକେ ବୋଲନ୍ତି ଧନ୍ୟ ଧନ୍ୟ ।
ବାବୁ ଶ୍ରୀରାମ କାରଣ ଥୋଇଲୁ ମେଦନୀ । ୯୪ ।
କେତେବେଳେ ତୋର ଦେଖିବୁ ପଦ୍ମ ମୁଖ ।
ତେବେ ସେ ପାଶୋରିବୁ ସଂସାର ଘୋର ଦୁଃଖ । ୯୫ ।
ନର ନର ନାରୀ ଶୁଣି ତୋଷ ଚିତ୍ତ ।
ମୁଦୁସୁଲି ପାଇଁ କହିଲେ ରାମ ମାତ । ୯୬ ।
ଶୁଣ ଗୋ ଦଶରଥ ଅଯୋଧ୍ୟା ପାଟରାଣୀ ।
ଶ୍ରୀରାମର କଥା ଗୋ ଅଇଲୁ ଆମ୍ଭେ ଶୁଣି । ୯୭ ।
ତାଡ଼କା ରାକ୍ଷସୀକି ମାଇଲେକ ବନେ ।
ବିଶ୍ୱାମିତ୍ର ମୁନି ବିଦ୍ୟାଦେଲେ ପରମ ତୋଷ ମନେ ।୯।
ମାରୁଚୀ ସୁବାହୁ ମାଇଲେ ବେନି ବୀର ।
ଆଦର ବନାଶିଲେ ଅନେକ ଅସୁର । ୯୯ ।
କଉଶିକର ଯାଗ ରଖିଲେ ବେନି ଭାଇ ।
ଅହଲ୍ୟା ମୁକତି କଲେ ବେଗେ ଯାଇଁ । ୧୦୦ ।
ମିଥିଳା କଟକେ ଜନକର ଘର ।
ଅକଳବଳ ଧନୁ ଥୋଇଥିଲେ ହର । ୧୦୧ ।
ଯେ ଧନୁ ମାଗୋ କେହି ନୁଆଁଇଲେ ଧରି ।
ଆଠଶତ ଲୋକେ ଯାହା ଆଣନ୍ତି ଉଚ୍ଚୁରି । ୧୦୨ ।
ତାହା ତୋର ପୁତ୍ର ଧଇଲା ବାମ ହସ୍ତ ।
ଭାଙ୍ଗି ପକାଇଲା ଇକ୍ଷୁ ପ୍ରାୟେ ମତ । ୧୦୩ ।
ଜନେକ ମହାଋଷି ଦତ୍ୟ କରିଥିଲା ।
ଯେ ଧନୁ ଧରିବ ଝିଅ ଦେବଇଁ ବୋଇଲା । ୧୦୪ ।
ସୀତା ନାମେଣ ତାର ଅଟଇ ରୂପବନ୍ତୀ ।
ସୁର ନର ମୁନି ଦେଖିଲେ ବଶ୍ୟ ହୋନ୍ତି । ୧୦୫ ।
ସେ କନ୍ୟା ଦେବ ସେ ପୁତ୍ରକୁ ତୋହର ।
ବଧାଇ ମାଗିବାକଟି ବେଭାର ମିଳଇ ଆମ୍ଭର । ୧୦୬ ।
ଶୁଣିଣ ବୋଲନ୍ତି ଯେ ଶ୍ରୀରାମର ଆଇ ।
ପୁତ୍ର ନ ଦେଖିଲେ ପ୍ରତେ ଯାଇ ନାହିଁ । ୧୦୭ ।
ମାର୍ଗଶିର ମାସେ ଗଲେ ଆମ୍ଭର ବଳା ।
ମହି ସମ୍ମୁଦ୍ରରେ ମୋର ବୁଡ଼ାଇଲା ଭେଳା । ୧୦୮ ।

Digitized by srujanika@gmail.com

ଯେବେ ବୈଶାଖକୁ ଛମାସ ପୂରିଲା ।
ବୋଇଲେ କଉଶଲ୍ୟାର ଅଶ୍ରୁଜଳ ଗଳିଲା । ୧୦୯ ।
ନିଜ ବାସ ଘେନ ଯେ ଚୁଲ୍ଲିଙ୍କ ଝାଣ୍ଡ ।
କେତେବେଳେ ଦେଖିବି ମୋ ପ୍ରାଣର ଯଘାଂଠ । ୧୧୦ ।
ଦ୍ୱାଦଶ ବରଷ ଯାଏଁ କୋଳେ ଶୁଆଇଲଇଂ ।
ଯୋଗେ ଅବା ବେଳେ ପିଠିଦେଇ ଶୋଇଂ । ୧୧୧ ।
ତତକ୍ଷଣେ ଚଥାଇଂ ରାମ ବୋଲନ୍ତି ମାଆ ମର ।
କୋଳରେ ଆଉଜି ଶୁଅଇ ଗଳାଧରି । ୧୧୨ ।
ଛମାସ ହୋଇଲା ଶ୍ରୀରାମ ମୋର ଗଲା ।
ଏତେ ବୋଲି ଦେବୀ ବହୁତ ରୋଦନ କଲା । ୧୧୩ ।
ଏଥୁ ଅନନ୍ତରେ ଦଶରଥ ନୃପତି ।
ବଶିଷ୍ଠଙ୍କୁ ବୋଲଇ ତୁମେ ଶୁଣ ମହାଯତି । ୧୧୪ ।
ଜନକ ଯେବେ ଶ୍ରୀରାମଙ୍କୁ ଦେବ ସୀତା ।
ଏହ୍ନେହେଲେଁ ଘଟସୂତ୍ର କରନ୍ତୁ ବିଧାତା । ୧୧୫ ।
ତୁମ୍ଭର ମୋହୋର ବୋଲେ ନୁହଇ ସେ ଆନ ।
ଯାହା ପ୍ରଜାପତି କରିଛି ଲେଖନ । ୧ ୬ ।
ସତ୍ୟାନନ୍ଦ ଯେବେ ଅଇଲାଣି କାହ୍ନ ।
ବିଭା କରାଇଣ ଯିବା ଆମ୍ଭେ ତହିଂ । ୧୧୭ ।
ସୁମନ୍ତ୍ରକଇ ସ୍ୱହ୍ନଂ ବୋଲଇ ନୃପବର ।
ଚତୁରଙ୍ଗ ବଳ ମୋର ସଜୁ ସଜାଣର । ୧୧୮ ।
କାଲି ରଜନୀ ପ୍ରଭାତେ ଆମ୍ଭେ ଯିବା ।
ଜନକ କଉଶିକ ଶ୍ରୀରାମଙ୍କୁ ଦେଖିବା । ୧୯ ।
ତୁମ୍ଭେ ବଶିଷ୍ଠେ ଯେତେ ଘେନଯାଅ ସତ୍ୟାନନ୍ଦ ।
ଗହିରେବ କରି ଯେବେ ଦଅ ଫଳ ସ୍ୱାଦ । ୧୨୦ ।
ଏତେ ବୋଲି ରାଯେ ଆସ୍ଥାନୁ ଉଠିଗଲା ।
ମଣିମା ମଣିମା ବୋଲି ଖୁଣ୍ଟିଆ ଡାକ ଦେଲା । ୧୨୧ ।
ଶ୍ରୀରାମର ଲେଖା ବଶିଷ୍ଠ ହାଥୁଂ ଘେନ ।
ଅନ୍ତପୁରେ ବଜାଯେ କଉଳିକ ରାଜନ । ୧୨୨ ।
ମୃଦୁଙ୍ଗ ପଞ୍ଚଶବ୍ଦ ମଣାଇ ଘେନଗଲେ ।
ନଅବକାଶେ ଏଥେ ପ୍ରବେଶ ହୋଇଲେ । ୧୨୩ ।
କଉଶଲ୍ୟା କଇକେୟୀ ଯାଇଲେ ଦରଶନ ।
ସୁମିତ୍ରା ସହିତେ ସକଳ ରାଣୀମାନ । ୧୨୪ ।

Digitized by srujanika@gmail.com

ରାଜା କହନ୍ତି କଉଶଲ୍ୟ ମୁଖ ଚୁମ୍ବି ।
ଶ୍ରୀରାମ ଲେଖ ଗୋଟିଏ ଗୋ ଦେଇଛି ପଠିଆଇ ।୧୨୫ ।
ଯେଉଂହନୁ ତାକୁ କଉଶିକ ନେଲ ।
ସେହୁହନୁ ରାମ ବହୁତ କର୍ମ କଲ । ୧୨୬ ।
ତାଡ଼େକା ରାକ୍ଷସୀକି ବାଣେ ହତକର ।
ବିଶ୍ୱାମିତ୍ର ଯାଗ ହେଲେଣ ରକ୍ଷାକର । ୧୨୭ ।
ଦେବଙ୍କର ଅସ୍ତ୍ରଶସ୍ତ୍ର କଉଶିକ ସମର୍ପିଲ ।
ମିଥିଲା ନଗରକୁ ହାଦେ ଶ୍ରୀରାମକୁ ଘେନଗଲ । ୧୨୮ ।
ଅହଲ୍ୟାକୁ ମୁକତ କଲେ ପଥେ ଯାନ୍ତେ ।
ସଙ୍ଗତେ ଅଛନ୍ତି ଗୋ ବହୁତ ତପୋବନ୍ତେ । ୧୨୯ ।
ମିଥିଲ ନଗ୍ରେ ଗୋ ପ୍ରବେଶ ଯାଇଂ ହୋଇ ।
ହରର ଧନୁ ଗଲ ଜନେକ ଘରେ ଥୋଇଂ । ୧୩୦ ।
ଦେବାସୁର ନରେ ନ ପାରନ୍ତି ତୋଳି ।
ବାମ ଭୁଜେ ଧନୁ ଧଇଲ ଆଞ୍ଜିଲି । ୧୩୧ ।
ଗୁଣ ଚଢ଼ାଇଂଣ ଆମଞ୍ଚିଲେ ଯନ୍ତୁଂ ।
ଦୁଇଖଣ୍ଡ ହୋଇ ଭଜିଲକ ତନ୍ତୁଂ । ୧୩୨ ।
ଦେଖି ଜନେକ ମୁନି ବହୁତ ପ୍ରଶଂସା କଲେ ।
ସୀତ୍ୟା ନାମେ ଝିଅ ଦେବଇ ବୋଇଲେ । ୧୩୩ ।
ପଞ୍ଚ [illegible] ଦେଇଣ ବରଲେ ।
ସେହୁହ[illegible] କ[illegible]ଣି ଲେଉ[illegible]ଲେ । ୧୩୪ ।
ରାମ [illegible] ।
ଫି[illegible] ନ କା[illegible]ଲେ [illegible] । ୧୩୫ ।
[illegible] ।
[illegible] ଅଛୁ । ୩୬ ।
ଶ୍ରୀରାମ ଆ[illegible] ।
ସ୍ୱେ ବଚନ ଶୁଣି କଉଶଲ୍ୟ [illegible] ୧୩୭ ।
ହେ ରାଜା ସ୍ୱୟମ୍ଭା ମୁଁ ନ ମଣଇ ଯତ ।
ରାମକୁଂ ଦେଖି ପ୍ରତେ ଯିବଇଂ କଥତ । ୧୩୮ ।
ଛ ମାସ ହେଲ ଗଲ ମୋହୋର ପୁଅ ।
ସେହୁହନୁ ମୋହର ନ ରହଇ ଜୀବ । ୧୩୯ ।
କହୁ ନ କର ସେ ଶୁଭେ ବ୍ରତ ଥାଉ ।
ସ୍ୱେ ମୋହୋର ଅପୂର୍ବିକ ଅବସ୍ଥା ପ.ର ଯାଉଂ । ୧୪୦ ।

Digitized by srujanika@gmail.com

ଯେତେକ ବୋଲି ଆସି କଲା ଅନର୍ଥାନ ।
ଦେଖି ଦଶରଥ ବ୍ୟାକୁଳ ହୋଇ ମନ । ୧୪୧ ।
ବୋଲଇ ସଖୀ ଆବୋ ନୃହସି ଆରତ ।
ଯେବେ ତୋ ସବୁ ସ୍ୱେଖେ ପାଇଲୁ ବାରତ । ୧୪୨ ।
କାଲି ସ୍ୱଭାବେ ଆମ୍ଭେ ଯାଉଁ ହୋଉଁଅଛୁ ।
ଅଳପ ଦିନେ ପୁତ୍ର ଗୋ ଦେଖିବ ମୃଗାକ୍ଷି । ୧୪୩ ।
ହରଷ ବେଳେ ଗୋ ନକର ଶୋକ ଜାତ ।
ସମସ୍ତେ ମୋହୋର ପ୍ରଶଂସା କରନ୍ତି ବହୁତ । ୧୪୪ ।
ଋଷିସିଦ୍ଧ ମୁନି ସତ୍ୟ ମନେ ଚରୁ ଦେଲ ।
ତେଣୁ ସେ ପୁତ୍ର ମୋହୋର ବିଷ୍ଣୁ ହୋଇଲ । ୧୪୫ ।
କହୁ ଲକ୍ଷ୍ମୀ ଭାଷାରେ ନୃପ ଶିରୋମଣି ।
ବାହାରେ ଅବକାଶ ହୋଇଲାକ ପୁଣି । ୧୪୬ ।
ମର୍ଦ୍ଦନ ମାର୍ଜନା ମୃଣୋହି ବିଧି ସାର ।
ଦିବସ ଶେଷେ ହୋନ୍ତେ ପ୍ରବେଶ ଭିତର । ୧୪୭ ।
କଉଶଲ୍ୟା ପୁରେ ପ୍ରବେଶ ମହୀପାଳ ।
ରଜନୀ ଶେଷେ ଶଙ୍ଖ ଫୁରଇ ଦେବଥାନ । ୧୪୮ ।
ଶେଜ୍ୟା ତ୍ୟଜିଣ ଉଠିଲେ ମହୀପତି ।
ଅବକାଶ ହୋଇଂ ବୋଲନ୍ତି ନୃପତି । ୧୪୯ ।
ବିନ୍ଦୁଡ଼ି ବୁଲାମାନ କଲେ ନିରନ୍ତର ।
ଖୁଣ୍ଟିଆକୁ ରାଇ ବୋଲଇ ନୃପବର । ୧୫୦ ।
ଦେଖେ ବିଭିଡ଼ ତୁ ଭଆଅ ବେଗ ହୋଇଂ ।
ସନ୍ୟ ମୋର ଆସନ୍ତି ବେଗେ ସଜ ହୋଇଂ । ୧୫୧ ।
ଯେତେବୋଲି ଖୁଣ୍ଟିଆ ଆଗ୍ୟା ଘେନିଗଲା ।
ଝମକଆର ନାମ ଧରି ଡାକେ ରାବ ଦେଲା । ୧୫୨ ।
ଶୁଣି ଝମକଆ ଗଲା ଘର କରି ।
ଓଝଶାଳେ ପ୍ରବେଶ ଆନନ୍ଦ ମନ ଧରି । ୧୫୩ ।
ଦଉଡ଼ିରୁ ଫେଡ଼ି କଲା ଓଝ ସଜ ।
ପଲାଣ ଭିଡ଼ଣ କରଇ ତାହା ଉଜ । ୧୫୪ ।
ଝମକ ବାନ୍ଧି ଭିଡ଼ି ଦୃଢ଼କରି ।
ଆପଣେ ଚଢ଼ି ମୁ ହାକିଂ ଦ୍ୱାରାକୁ ଥିମରି । ୧୫୫ ।
ସିଂହଦ୍ୱାରେ ମିଳିଲା ଯାଇଂ ସେ ତତ୍ତ୍ୱ ।
ଦୁଇ ହାଥେ ଧଇଲା ବହଳ ଚମ୍ପାଠ ୧୫୬ ।

Digitized by srujanika@gmail.com

ତୁରୁଙ୍ଗ କରଣ ନିଶାଣେ ପିଟିଲ୍ଲ ନେଇଂ ।
ବାଜନ୍ତି ଝମକ ଘୋର ରବ ହୋଇଂ । ୧୫୭ ।
କି ଜାଣି ଆଷାଢ଼ ମାସରେ ମେଘ ଗାଜେ ।
ବିବିଧ ଛନ୍ଦେଣ ନିଶାଣ ଧ୍ୱନି ବାଜେ । ୧୫୮ ।
ଶୁଣିଲେ ଅଯୋଧ୍ୟା ନଗ୍ର ନର ନାରୀ ।
ରାଜାର ସେବକମାନେ ଆସନ୍ତି ତେଡ଼କରି । ୧୫୯ ।
ରାଜାଙ୍କ ଦର୍ଶନ କଲେ ସେ ଯାଇଂ ଝାଟ ।
ସୁମନ୍ତ୍ର ପାଶ ସେ ଅଇଲ୍ଲ ତତ୍ପର । ୧୬୦ ।
ମନ୍ତ୍ରୀ ମୁଖ୍ୟ ଗୃହ୍ନଂ ବୋଲଇ ଦଣ୍ଡଧାରୀ ।
ଚତୁରଙ୍ଗ ବଳ ମୋର ଆଣ ବେଗେ ସଜକରି । ୧୬୧ ।
ପାତ୍ର ବୋଇଲେ ଦେବ ଭିଆଇଂ ଅଛୁ ଯାହା ।
ସଙ୍ଗେ ଯିବେ ଯେତେବେଳେ ଆଜ୍ଞାଂ ଦେବୁ ତାହା । ୧୬୨
ନୃପତି ଆଜ୍ଞାଦେଲେ ଶୁଣହୋ ସୁମନ୍ତ୍ର ।
ବିଭାର ବିଧାନ ପଦାର୍ଥ ମାନନ୍ତ୍ର । ୧୬୩ ।
ସମସ୍ତ ସଜ କରାଇଂ ଯିବୁ ତୁ ଘେନାଇଂ ।
ସ୍ନେହେନେକ ସମସ୍ତେ ବଶିଷ୍ଠ ହୋନ୍ତୁ ଯାଇଂ । ୧୬୪ ।
ରାଜା ନିତ୍ୟକର୍ମ ସାରିଣ ତତ୍ପର ।
ବଶିଷ୍ଠଙ୍କ ପାଦେ ନମଇଂ ନୃପତି । ୧୬୫ ।
ହେ ମୁନି ମିଥିଳା ପୁରକୁ ଚାଲ ଯିବା ।
ଶ୍ରୀରାମର ମୁଖ କମଳ ଦେଖିବା । ୧୬୬ ।
ଜନକ ଋଷି ଯେବେ ଦୟା ମୋତେ କଲା ।
ଆଜୁ ସେ ଜୀବନ ମୋର ସଫଳ ହୋଇଲା । ୧୬୭ ।
ବଶିଷ୍ଠେ ବୋଇଲେ ତୁ ଶୁଣ ନୃପମଣି ।
ଅଙ୍କା ଦେଖି ଆଗେ ଯାଉ ଆଜ ଆଣି । ୧୬୮ ।
ଜାବାଲି ବାମଦେବ କଶ୍ୟପ ଆସି ମିଳି ।
ପ୍ରବେଶ ହୋଇଲେ ଯାଇଂ ସତ୍ୟାନନ୍ଦ ତପଶାଳୀ । ୧୬୯ ।
ଭରଥ ଶତ୍ରୁଘନ ଅଇଲେ ସଜ ହୋଇ ।
ଗଗନେ ଉଦୟେ ହୋଇଲେ ପ୍ରାଚୀ ସାଇଂ । ୧୭୦ ।
ରଥ ଗଜ ଅଶ୍ୱ ପାଦାନ୍ତି କଟକରେ ।
ହର୍ଷେ ସଜହୋଇ ମିଳିଲେ ସିଂହଦ୍ୱାର । ୧୭୧ ।
ବଜାନ୍ତି ଝମକ ନିଶାଣ ତାଳ ତାଳ ।
ଦମା ଦାଉଡ଼ି ବଜାନ୍ତି ମର୍ଦ୍ଦଳ । ୧୭୨ ।

Digitized by srujanika@gmail.com

ଆଲମ୍ବ ଚମଲ ପାଟଛତ୍ର ମାନ ।
ଯେ ଯାହା ବଳ ଯାଜ୍ଞ ଅଚଳେ ସର୍ବ ଜନ । ୧୭୩ ।
ବଶିଷ୍ଠଙ୍କୁ ଗୃହଂଣ ବୋଲନ୍ତି ନୃପବର ।
ଲଗୁଡ଼ ଘେନାଇଂ ଆଗେ ଯାଅ ନୃପବର । ୧୭୪ ।
ସୁମନ୍ତ ପାତ୍ର ଆଜ ଆଣି ଆଗେ କହଉ ।
ସହସ୍ରେ ରଥ ମୂନ ସୈନ୍ଦ୍ର ସଙ୍ଗେ ଯାଉ । ୧୭୫ ।
ଅନ୍ଧବ୍ରଚେକ ଗଜ ସତୁରି ସହସ୍ର ଅଶ୍ୱ ।
ଦୁଇଲକ୍ଷ ପଦାନ୍ତି ଥାଉ ସୈନ୍ଦ୍ରାର ପାଶ । ୧୭୬ ।
ଆଜ୍ଞା ପାଇ ସୁମନ୍ତ ହୋଇଲେ ବାହାର ।
ରଜାର ବୋଲେ ବଳ ଘେନ ଆଗୁସାର । ୧୭୭ ।
ମନୋରଥ ବୋଲି ରଜାର ଲଗି ଅଶ୍ୱ ।
ତାହା ଆଗେବନ୍ଧିଲେ ମନରେ ହରଷ । ୧୭୮ ।
ନୃପଙ୍କ ଅଶ୍ୱ ଅଛୁ ତାଙ୍କୁ ଦେଇ ।
ସୁମନ୍ତ ଅଶ୍ୱ ବେଗେ ନେଲେକ ଯୋଗାଇଂ । ୧୭୯ ।
କଜାଣି ସେ ଅଶ୍ୱ ଆଦିତ୍ୟ ବାହାନ ।
ଯା ବୋଇଲେ ଯାଇ ପବନ ହୁଂ ବହନ । ୧୮୦ ।
ସର୍ବେ ଶ୍ୱେତ ଲାଂଜ ଶ୍ରେଷ୍ଠ ମୋଟ ବୃକୁ ।
ରତ୍ନମୟେ କାଖର ପଲାଣ ଅଛୁ ତାକୁ । ୧୮୧ ।
ପାଟ ପଟାହାର ଦୁଇବୋଟି ଭିଡ଼ି ।
ବେଗୁ ଆର ବାନ୍ଧି ଚମଦଲା ଦଉଡ଼ି । ୧୮୨ ।
ରଙ୍ଗ ପାଟ ପତନ୍ନ ରଙ୍ଗ ମଣିମାଳେ ।
କୃଷ୍ଣ ଶ୍ୱେତ ଚାମର ହୃଦୟରେ ନଳେ । ୧୮୩ ।
ବାଗର ଉପରେ ସୁବର୍ଣ୍ଣ ଅଛୁ ଘୋଟି ।
କେଜାଣି ବାଟ ଶୁଆଣି ବାହୁକ ଫେରୁ ଟେକି । ୧୮୪ ।
ପଛେ ପଚ୍ଛୁଢର ଘାଘୁରି ଘଣ୍ଟି ଝଜାଂ ।
ଠାବେ ଠାବେ ଝଂଜା ଗଜମୋତି ପୁଞ୍ଜାଂ ପୁଞ୍ଜାଂ । ୧୮୫ ।
ଗଙ୍ଗ ଦସ୍ତୁଣା ଚାମର ପିଠିରେ ପିଠୁଥାଲି ।
ଲାଜଂ ପଶପନ୍ତ୍ର ପଡ଼ିଅଛୁ ଦଳି । ୧୮୬ ।
ଦୁଇ ପାଶରେ ଚାମର ଦୁଇ ଗୋଟା ।
ଷୀର କେଦାର ବାନ୍ଧି ଉର୍ଦ୍ଧେ ମହାଛଟା । ୧୮୭ ।
ସୁରଙ୍ଗଣୀ ପାଟେ ସୁନ୍ଦର ଦିଶଇ ଗଢ଼ ।
ଶଶୀ ବହୁନେ କ ବଜୁଲି ଗଗନେ ଭେଦ । ୧୮୮ ।

Digitized by srujanika@gmail.com

ସୁବର୍ଣ୍ଣର କଣ୍ଢ଼ିଆଳ ଜବରକେ ଖଜା° ।
ଗିର କେଦାର ଲଗି ନ ଦିଶଇ ଆନ ମଝା । ୧୮୯ ।
ଶ୍ରୀକେଶ ଫେଣ୍ଡ଼ିବାର ଘଣ୍ଟାମାନ ଦିଶଇ ।
ସାହଂଲ ସୁନାସୁତା କଣ୍ଠମୂଳେ ବସଇ । ୧୯° ।
ଖିଦ୍ର ଘଣ୍ଟି ଘାଗୁଡ଼ି ବାଜଇ ରୁଣ ଝୁଣ ।
ଶୃଙ୍ଖଳ ପାଟ ଜାଣି ଦିଶଇ ଅଶ୍ୱ ରୋମ । ୧୯୧ ।
ଫରହର ଉଡ଼ାଇ ଦୁଇ ବେଢ଼ ନେତ ।
ଦୁଇଖଣ୍ଡା ତାହିଁ ଅଛଇ ସବୁ ଶ୍ୱେତ । ୧୯୨ ।
ଗୁଣା ଶିକଳ କମେ ଗୁନ୍ଥି ବାନ୍ଧିଲା ।
ରଙ୍ଗ ପାଟ ପତନି ଉପରେ ଢୋଇଲା । ୧୯୩ ।
ଖଞ୍ଜଂଲା ସୁନ ସୁତା ଅଛଇ ଭଲା କରି ।
ସଜକରି ବାନ୍ଧୁକି ଅଛୁ ଅଶ୍ୱ ଧରି । ୧୯୪ ।
ସୁମନ୍ତ୍ରକଇ ଦେଖି ଦାର ଶୁଆଇଲା ଆଣି ।
ଅଶ୍ୱ ଉଦ୍ଭ ହୋଇଲା ବାମପାଖ ଦେଇ ପୁଣି । ୧୯୫ ।
ଦୋସରି ଶିକୁଳି ସୁବର୍ଣ୍ଣ ଆଙ୍କୋଆଣି ।
ବାମ ପାଦ ଦେଲା ତହଂ ମନ୍ତ୍ରୀ ଶିରୋମଣି । ୧୯୬ ।
କ କା ଆସନ ଚଢ଼ି ବସିଲା ଅଶ୍ୱ ପିଠି ।
ଦକ୍ଷିଣ ଅଙ୍କୋଆଣିରେ ଖଞ୍ଜିଲା ଡାହାଣ ପାଦଗୋଟି ।୧୯୭।
ହସ୍ତର ଫିଛ ନେଇଂ ପାଗଡ଼େ ବେଗେ ଦେଲ୍ଲ ।
ଅଂବର ପାଟ ଗୁର୍ବୁକ ସମର୍ପିଲ୍ଲ । ୧୯୮ ।
ଚଳିଲାକ ଅଶ୍ୱ ପବନହୁଂ ବେଗେ ।
ସହସ୍ରେକ ଅଶ୍ୱ ଅଛଇ ତାହାର ସଙ୍ଗେ । ୧୯୯ ।
ପାଟଛତ୍ର ଧରାଇଂ ଚଳିଲା ମନ୍ତ୍ରୀବର ।
ପଛେଣ ବାଜଇ ଟମକ ନିରନ୍ତର । ୨°° ।
ସହସ୍ରେକ ଅଳମ୍ଭ ସହସ୍ରେକ ବଳମ୍ଭ ।
କେଣୁ ଘାସ୍ତେ ନ ଦିଶଇ ଅନ୍ତରାଳ । ୨°୧ ।
ଫଣ୍ଡ଼ିକାର ପାଇକେ ଗହଲେ ଧାଇ ଦ୍ୟନ୍ତି ।
ଖଣ୍ଡା ବୁଲାଇଂ ଫଣ୍ଡ଼ିଶର କରନ୍ତି । ୨°୨ ।
କେ ବାଣ ଟରେ କେ ଦେବାଙ୍କ ଆଣେରହି ।
ଜାହଂଲ ପଟା ଧରି କେ ସକଂ।ଚଣ୍ଡା ଥାଇ । ୨°୩ ।
ଫ ଲା ଧରଣ କେ ସାଗ୍ରାଂମେଣ ଉଠି ।
କେବଣ ପାଇକେ ଖଣ୍ଡା ଛଡ଼ାବନ୍ତି ମୁଷ୍ଟି । ୨°୪ ।

Digitized by srujanika@gmail.com

ତୁରଙ୍ଗ ପାଛକେ କାଣ୍ଡନ୍ତ ପୂରଇ ।
ଆରେ ଆରେ ବୋଲି ଆଗକୁ ଯାନ୍ତି ଧାଇଂ । ୨୦୫ ।
କଟିରେ ଘଣ୍ଟିମାନେ କରନ୍ତି ଶବଦ ।
ଧନୁର ଗୁଣ ଫଣେକ ଠେସ ନାଦ । ୨୦୬ ।
ଅଶ୍ୱଙ୍କର ଝାପୁରେ କମ୍ପଇ ମେଦିନୀ ।
ହଂସାରବ ଘାସ୍ୱେ ଶୁଭଇ ଘୋର ଧ୍ୱନି । ୨୦୭ ।
ହସ୍ତୀଙ୍କର ଗରଜନେ କମ୍ପଇ ମହୀଆଳ ।
ଘଣ୍ଟିମାଳରେ କୁସୁମ ଉଛଳ । ୨୦୮ ।
ସମ୍ଭବ ହୋଇଂ ଚଳଇ ମନ୍ତ୍ରୀବର ।
ସ୍ୱର୍ଗେ ପ୍ରଶଂସା କରନ୍ତି ଦେବାସୁର । ୨ ୯ ।
ଦଶରଥ ରାଜେ ଏଥି ଅନନ୍ତରେ ।
ଆପଣେ ସଜ ହୋଇଲେ ନୃପବରେ । ୨୧୦ ।
ଦିବ୍ୟ ଦେବାଙ୍କ ବାସ ଚନ୍ଦ୍ରା ପିନ୍ଧି ।
ଶିରରେ ହୀର କେଦାର ଠେକ ପାଗ ବାନ୍ଧି । ୨୧୧ ।
ରତ୍ନମୟେ ମୁକୁଟ ଶୋହଇ ସପ୍ତଶାଖା ।
କରଣ ମଣିମୟେ ବିରାଜଇ ସ୍ୱେକୁଂସ୍ୱେକା । ୨୧୨ ।
କର୍ଣ୍ଣେଣ କୁଣ୍ଡଳ କଣ୍ଠେ ରତ୍ନମାଳା ।
ରତ୍ନ ପଦେକ ଲମ୍ବଇ ବକ୍ଷ ସ୍ଥଳ । ୨୧୩ ।
ବାହେଣ ବାହୁଟି ତାଡ଼ ଦିବ୍ୟକାନ୍ତ ।
ଅଙ୍ଗୁଷ୍ଠିରେ ରତ୍ନ ମୁଦ୍ରିକା ବିରାଜନ୍ତ । ୨୧୪ ।
କଟିରେ କଟିମେଖଳା ମୁକୁତା ମଣିହର ।
ବାମେଣ ଛୁରି ନେଇ ରତନ ସେ ଗହ୍ୱର । ୨୧୫ ।
ପଦ୍ମରେ ନେପୁର ଛଟୀ ଉରସଲ ।
ସଜ ହୋଇଲେକ ଅଯୋଧ୍ୟା ମହୀପାଳ । ୨୧୬ ।
ବଶିଷ୍ଠେ ଦେଲେ ନେଇଂ ମଙ୍ଗଳ ଆଳତି ।
ଗୋରଚନା ଚିତା ସୁନ୍ଦରର କୋଠ । ୨୧୭ ।
ଦୂବାଙ୍କୁର ରାସ୍ୱେ ଶିରରେଣ ଧରି ।
ବ୍ରାହ୍ମଣେ ଜନକଇ ନମସ୍କାର କରି । ୨୧୮ ।
ଯାତ୍ରା ସିଦ୍ଧି ନିମନ୍ତେ ଦଧିମାଛ ଅଛି ।
ପୂର୍ଣ୍ଣ କୁମ୍ଭ ନଟାଙ୍ଗାଳ କଦଳୀ ବୃକ୍ଷ ରଖି । ୨୧୯ ।
ଶେତ ପାରୁଆ ରାଜହଂସ ପକ୍ଷୀମାନ ।
ମଙ୍ଗଳ ଅର୍ଥେଣ ଅଛନ୍ତି ଥାନେ ଥାନ । ୨୨୦ ।

Digitized by srujanika@gmail.com

ବନ୍ଦୁ ଜନେ ବେଦ ଆଧ୍ୟାନ କରନ୍ତି ।
ସହସ୍ର ସିଂଶଣା ପାଠ ସୁମରଣ କରନ୍ତି । ୧୨୧ ।
ଭଟ୍ଟକଲ୍ୟେବାର ଆଗେ ଶିବା ବାଣୀ ଘୋଷ ।
ମଙ୍ଗଳା ଅଷ୍ଟକ ଯେ ପଢ଼ନ୍ତି ପାଟ ଜଉଡ଼ଷ । ୧୨୨ ।
ମଂଙ୍ଗଂକାର ନାରୀ ଦଅନ୍ତି ହୁଳହୁଳ ।
ନଶ୍ୱାସ ଖୋଜ ପାଦ ବଢ଼ାଇ ମହାବଳୀ । ୧୨୩ ।
ଶୁଭ ଯୋଗେ ବାହାର ହୋଇଲ ନରନାଥ ।
ସଙ୍ଗରେ ଅଛନ୍ତି ଚାରି ଶତ୍ରୁଘନ ଭରଥ । ୧୨୪ ।
ଗଜ ପିଠେ ଆରୋହଣ କଲାକ ନୃପତି ।
ସୁମନ୍ତ୍ରର ପୁତ୍ର ଚୋଳ ଧଇଲା ପାଟ ଛତି । ୧୨୫ ।
ଭରଥକଇ ରାସ୍ତେ ଆଗ୍ୟା ଦେଲା ରାଇଂ ।
ପଚ୍ଛୁଆଣୀ ଦଣ୍ଡେ ଥାଅସି ଡେନ ଲଇ । ୧୨୬ ।
ଶୁଣିଣ ଭରଥ ଶତ୍ରୁଘନ ବେଗେ ଯାନ୍ତି ।
ମୁଙ୍କ ବାରୁ ଚଢ଼ି ପଛରେ ରହନ୍ତି । ୧୨୭ ।
ଅଙ୍କଳିତ ବଳ ରହିଲେ ତାଙ୍କ ସଙ୍ଗେ ।
ପଛ ପଟୋଆରେ ରହିଲେ ତାଙ୍କ ସଙ୍ଗେ । ୧୨୮ ।
କଉଶଲ୍ୟ କସ୍ୟେକସ୍ୱା ସୁମିତ୍ର ତିନ ରାଣୀ ।
ରାଜା ଆଗ୍ୟା ଦେଲେ ଯେତେକ ତରୁଣୀ । ୧୨୯ ।
ସମସ୍ତେ ହେଂ ଆଜ ଯିବା ମିଥିଳାକୁ ।
ବାଷ କରାଇବା ଯାଇଂ ଶ୍ରୀରାମଙ୍କୁଂ । ୧୩୦ ।
ଶୁଣିଣ ସଜ ହୋଇଲେ ରାଣୀ ହଂସ ।
ରାଜା ଅଗ୍ୟା ଧାଇଣ ସମସ୍ତେ ହରଷ । ୧୩୧ ।
ହାନ୍ଦୋଳସ୍ୱେ ବସି ହୋଇଲେ ବାହାର ।
ବଶିଷ୍ଠ ଚାଳାଣ ଯେ ଅଟନ୍ତି ତାହାଙ୍କର । ୧୩୨ ।
ଲୋକନ୍ତ ଦୂରକର ଦଅନ୍ତି ଭୃଙ୍ଗୁଙ୍ଗି ଆ ।
ଦୂ . ହୋଇଯାଅ ବୋଲି ଡ଼ାକ ଦଆ । ୧୩୩ ।
ପାଶ ପରଜନେ ଗୋଡ଼ାଇ ଅଛନ୍ତି ।
କେ ଶେତ ଚାମର ବଞ୍ଚଣି ବାଞ୍ଚନ୍ତି । ୧୩୪ ।
କଉଶଲ୍ୟ ହାନ୍ଦୋଳାରେ ପଞ୍ଚୁରନ୍ତି ଓହାଡ଼ ।
ସୁବର୍ଣ୍ଣର ରଙ୍ଗ ପତନ୍ନି ଅଛୁ ବେଢ଼ି । ୧୩୫ ।
କୁସୁମ ମାଳନ୍ତି ମଣ୍ଡିଲେ ତହୁଂ ଅଛୁ ।
ଗୁରଗୋଟି ପାଟଛତ୍ର ଅଛଇ ତହୁଂ ପାଖୁ । ୧୩୬ ।

Digitized by srujanika@gmail.com

କସ୍ତେକସ୍ତା ସୁମଇତ୍ରକୁ ଯେ ସ୍ନେସନେ ।
ଆଂଧର ସ୍ତ୍ରୀମାନଙ୍କୁ ଓହ୍ଲାଣ୍ଡି ନାନା ବର୍ଣ୍ଣେ । ୧୩୭ ।
ଦଶ ସହସ୍ର ପାଇକ ପଶ୍ଚିମ ଦ୍ୱାର ରଖିଲେ ।
ଆଣେ ବେଲ ଡାକଲେ ଅନ୍ତପକ୍ଷେ ପାଟଇ । ୧୩୮ ।
ଦୁଇ ସହସ୍ର ଘୋଡ଼ା ପଖା ରଖିଥାଇ ।
ଆଗ ପଛ ହାଥି ଶସ୍ତ୍ରେ ଶସ୍ତ୍ରେ ଥାଇ । ୧୩୯ ।
ବଶିଷ୍ଠ ମହାମୁନି ପାଲକିଂ ଆଗେଇ ।
ସ୍ତ୍ରୀ ହଂସ ଚଲାଇଂ ଆସନ୍ତି ପଛ ହୋଇ । ୧୪୦ ।
ତପସ୍ୱୀ ପଣସ୍ତ୍ରୀଗଣ ଅଛନ୍ତି ସର୍ବବେଢ଼ି ।
ସୁବର୍ଣ୍ଣ ରଙ୍ଗ ପାଲଙ୍କିଂ ଆସନ୍ତି ମୁନି ଚଢ଼ି । ୧୪୧ ।
ସ୍ତ୍ରୀହାଙ୍କର ପଛେ ଆସନ୍ତି ନୃପତ୍ତି ।
ନଘୋଡ଼ ହୋଇଂଛନ୍ତି ସହସ୍ରେକ ହାଥି । ୧୪୨ ।
କେବଣ ହସ୍ତୀ ମୁଖ ନୁଧନ୍ତ୍ର ଭୂଷଣ ।
କେତେଣ ହସ୍ତୀ ଦଶନ ବିଭୂତି ବିଲେପନ । ୧୪୩ ।
କେବଣ ହଂ ଗଜର ବହଇ ମତ ଜଳ ବଳ ।
ଅବଚନେ ଝରୁ ଅଛଇ କର୍ଣ୍ଣ ମୂଳ । ୧୪୪ ।
କେବଳ ମତ୍ତ ଗଜ ଅଛଇ ଜଣ୍ଠାପି ।
ବାହାର ହୋଇଂ ଯାଇ ସେ ସାହାଣେ ନପଶି । ୧୪୫ ।
ସ୍ତ୍ରୀଜା ଚଢ଼ି ଅଛଇ ଶତ୍ରୁ ଜସ୍ତେ କନ୍ଧେ ।
ଅଇରାବତ ଚଢ଼ି କି ଅଇଲା ଦେବ ଇନ୍ଦ୍ର । ୧୪୬ ।
ହାଟ ଗଜ ପଞ୍ଚେକ ଦଶଇ ପଟାନ୍ତର ।
ସର୍ବାଙ୍ଗେ ମଣ୍ଡିଲା ଅଛୁ ଶେତ ଯେ ଚାମର । ୧୪୭ ।
ଖିର ନେତ ଦୃଇ ଉଡ଼ଇ ଦୁଇ ପାଶ ।
ମଣ୍ଡିଲା ଅଛୁ ବିବିଧ ଝୀନ ବାସ । ୧୪୮ ।
ପାଟର ଦଉଡ଼ି ସୁବର୍ଣ୍ଣର ଶିକୁଳି ।
କଂଧା ଘଣ୍ଟି ଉପରେ ରୂପାଅଛୁ ଢାଲି । ୧୪୯ ।
ଲୁହାର ଥେପା ଘଣ୍ଟି ମୂଳରେ ଅଛୁ ଖଙ୍ଗ ।
ହସ୍ତୀର ଚଳନ୍ତେ ଶବଦ କରେ ବାଜି । ୧୫୦ ।
ସ୍ତ୍ରୀଶ ଚରଣେ ଘାଗୁଡ଼ି ମାଳ ମାଳ ।
ପାଦେ ଚଳନ୍ତେ ବାଜଇ ଝଞ୍ଜାଲ । ୧୫୧ ।
ଉପରେ ଘାଗୁଡ଼ି ମାଳ ରୁଣ୍ଟୁଣ ବାଜେ ।
ବରଷା ରଜନୀରେ କି ଦ୍ରେ-ମେଘ ଗର୍ଜେ । ୧୫୨ ।

Digitized by srujanika@gmail.com

ସୁବାସ ଶେତ ଚାମର କର୍ଣ୍ଣ ମୂଳେ ଅଛୁ ।
ସାରଂପାଟ ଲୁହା ଆରେଣି ତେଜ ଲେଖି । ୧୫୩ ।
ସୁଶୋଭନ ଶୋଭବନ ଦିଶଇ ମାତଙ୍ଗ ।
କପୋଳେ ଘଷିଲୁ ଅଛଇ ଅଭଙ୍ଗ । ୧୫୪ ।
କର୍ଣ୍ଣ ପର୍ବତ ପରଯନ୍ତେ କସ୍ତୁରୀ ଲେଖନ ।
ରତ୍ନରେ ଲଲାଟ ପାଟି ଦିଶଇ ଶୋଭବନ । ୧୫୫ ।
ମୁକୁତାର ଝରା ଲମ୍ବଇ ଗଣ୍ଡ ଅଳ ।
ନୀଳା ଗଣି ରଙ୍ଗେ ପୋଯେଲା ମାଳ ମାଳ । ୧୫୬ ।
ଶିରେଣ ସିଞ୍ଚିଅଛୁ ସେବତୀ ପାଖୁଡ଼ି ।
ଗଗନୁ ତାରାମାନେ ପଡ଼ିଲେକ ଝଡ଼ି । ୧୫୭ ।
ନେତର ତୂଳ ପାଡ଼ିଲୁ ଅଛୁ ଗଜ କନ୍ଧ ।
ନିଷ୍ଠଳ କର କଲ୍ପକ ପରିବନ୍ଧ । ୧୫୮ ।
ତହିଂର ଉପରେ ଅଛୁ ରାମେ ବସି ।
ପାଟ କାଛ ଉପରେ ଚରଣ ଦୁଇ ଖୋସି । ୧୫୯ ।
ବାମକରେ ଅରଣ ଡାହାଣକରେ ଅଙ୍କୁଶଇ ।
ସମ୍ମୁର ହୋଇଂଣ ସେ ନୃପତି ତହିଂ ବସଇ । ୧୬୦ ।
ଉଠି ମହାଗଜ ଚଳଇ ଘନ ଘନ ।
ବିକ୍ରମ ଉର୍ଦ୍ଧକଇ କଲ୍ପକ ଗମନ । ୧୬୧ ।
ଦଶନେ ସୁବର୍ଣ୍ଣ ବଳା ଝଟକନ୍ତି ।
ଥୋର ହସ୍ତ ତୋଳଣ ଚଳିଲୁ ପାଟହସ୍ତୀ । ୧୬୨ ।
ସେ ତାହାର ମାହୁନ୍ତ ପାଶେଣ ବସଇ ।
ରାଜାର ପାଖେ ସେ ଖଡ଼ ଧେନ ବାନ୍ଧଇ । ୧୬୩ ।
ଦକ୍ଷିଣ ପାରୁଶରେ ସୁମନ୍ତ୍ରର ବଳା ।
ନାମ ବିଦ୍ୟାଧର ବର୍ଣ୍ଣେଣ ଶାମଳା । ୧୬୪ ।
ବଇରି ବିଖଣ୍ଡକର କନ୍ଧେଣ ବସିଥାଇ ।
ବୀର ଛତ୍ର ଧରଇ ସେ ରାଜାର ଶିରକଇ । ୧୬୫ ।
ବାମେଣ ଯାବାଲି ପୁତ୍ର ଯୋମେଧର ।
ଶତ୍ରୁମର୍ଦ୍ଦନ ନାମେଣ ଚଢ଼ିଛୁ କରିବର । ୧୬୬ ।
ରାଜାକଇ ତାମ୍ବୁଳ ଯୋଗାଣ କରାଉଛୁ ।
ନାଗି କରବଇ ସେ ଯେତେବେଳେ ଇଚ୍ଛୁ । ୧୬୭ ।
ସମତୁଲ ହୋଇଂଣ ଚଳନ୍ତି ଦିନ ଗଜ ।
ମଧ୍ୟେଂ ଶୋଭା ପାଉଛୁ ଅଯୁଧ୍ୟାର ରାଜ । ୧୬୮ ।

Digitized by srujanika@gmail.com

ଆଗେ ପଛେ ସୈନ୍ୟ ଚଳଇ ବହୁତ ।
ଛଦଣ୍ଡ ଛଲ୍ଲଖ ଛଡ଼ଇ ସାରନେତ । ୧୬୯ ।
ଆଲମ୍ବ ପାଟଛତ୍ର ବଲମ୍ବ ପନ୍ତ ପନ୍ତ ।
ରଜା ଗ୍ରୁମୁରେ ସେ ବେଢ଼ି ଧରିଛନ୍ତ । ୧୭୦ ।
ଘଣ୍ଟି ଘରଘର ରଥ ଘୋଷ ଧ୍ୱନ ।
ମୁଖ ରବ ଶବଦେ କମ୍ପିଲ ମେଦନୀ । ୧୭୧ ।
ଢୋଲ ଦମା ଦାଉଡ଼ି ମୃଦଙ୍ଗର ତାଳ ।
ତାଳ କରତାଳ ମହୁରି କଂସାଳ । ୧୭୨ ।
ପିଟା ଘଣ୍ଟ ଶଙ୍ଖ ଗିଡ଼ି ଗିଡ଼ି କାହାଳୀ ।
ରଜାଙ୍କୁ ଦେଖି ନାରୀ ଦଅନ୍ତ ହୁଳହୁଳି । ୧୭୩ ।
ଚରଣ ଧୂଳି ଘାସ୍ୱେ ଗଗନ ନଦିଶି ।
କେ ଜାଣି ଦିବସ ହୋଇଲକ ନଶି । ୧୭୪ ।
ରନ୍ନଙ୍କର ତେଜେ ଦଶୁଅଛୁ ବାଟ ।
ନୋହିଲେଣ ବଣା ହୁଅନ୍ତେନ ଆଟ । ୧୭୫ ।
ସହସ୍ରେକ ଗ୍ଭମର ପଡ଼ଇ ରଜା ଯାନ୍ତେ ।
ଗହଲେ ହସ୍ତୀ ଚଢ଼ି ଚଳନ୍ତ ଅମନାତ୍ୟେ । ୧୭୬ ।
ବାମଦେବ କଶ୍ୟପ ଯାବାଲି ଯେ ଦ୍ୱିଜ ।
ପଛ ପଟୋଆରେ ଭୃଥ ଶତଘନ ରାଇ ବେଜ । ୧୭୭ ।
ସୁଖାସନ ଚଢ଼ି ଅଛନ୍ତ ମନ୍ତ୍ରୀ ବେନ ।
ପଟେ ଆରେ ପଶି ରାଉତେ ଝଲକନ୍ତ ପୁଣି । ୧୭୮ ।
କେ ଖଣ୍ଡା କାଢ଼ନ୍ତ କେ ବୁଲନ୍ତ ଶାବେଲା ।
ଗ୍ଭଟ ଦେଖାଇଂ କେ ଘୋଡ଼ା ଦଅନ୍ତ ଗ୍ଭଲି । ୧୭୯ ।
ହାକ ଧୂଆଇ ତୁରଙ୍ଗ ଚଳାବନ୍ତ ।
ତରକଶ ଭିଡ଼ିଣ କେ କମାଣ୍ଡ ଓଟାରନ୍ତ । ୧୮୦ ।
ଘୋଡ଼ାକେ ନେଇଂଣ ଗଜ ମୁଖେ ଉଭାରନ୍ତ ।
କେବଣ ରାଉତ କାହିଂ ଖୁର କରାବନ୍ତ । ୧୮୧ ।
ଆଠ ଚଳନ୍ତେଣ ନଗ୍ର ନର ନାରୀ ।
ଘୋଡ଼ାଇଂ ଦେଖନ୍ତେଂ କେ ଯେଉକୁ ଆଗସର । ୧୮୨ ।
ରଜାର ଗ୍ରୁମୁରେ ସେ ଅଛନ୍ତ ନଯୋଗି ।
ଯେ ଯାହାର ନଯୋଗ ଜାଣି ଆସନ୍ତ ବେଗି ବେଗି ।୧୮୩।
କେ ରଥେ ବସି କେ ବସଇ ଗଜ ପିଠି ।
କେ ଅଛୁ ଆଗେହିଂ କେ ଆସଇ ବେଗି ବେଗି ଉଠି ।୧୮୪।

Digitized by srujanika@gmail.com

କେ ସୁକାସନ ପାଲଟି ଆରୋହଂ ।
କେହୁ ପର୍ଯ୍ୟଙ୍କାର ଆସଇ ମଜ ହୋଇ । ୧୮୫ ।
ଖଣ୍ଡିଆ ପଢ଼ି ହାସ୍ତି ଲେଙ୍କା ଲମ୍ବ ହତା ।
ସାତ ପାଞ୍ଚ ହୋଇଂ ଆସନ୍ତି କହୁ କଥା । ୧୮୬ ।
ନଟ ଭଟ ବଣିକାଏ ଅଛନ୍ତି ଅପାର ।
ଅଛନ୍ତି ବନୋହାଓ୍ୟେ ଘେନଣ ସମ୍ଭାର । ୧୮୭ ।
ଯୋକାଏକ ଦୂରେ ମାରନ୍ତି ବଜ୍ର ବାଣ ।
ଆଦ୍ୟ ଆଷାଢେକ ଗର୍ଜ୍ଜଇ ମେଘ ଦ୍ରୋଣ । ୧୮୮ ।
ନଜାଣିମା ଲୋକେ ହୋଇଲେ ଆରତ ।
ପୁଣି ବରୁରନ୍ତି କୋଇଣ ଉପତ । ୧୮୯ ।
ଭଣ୍ଡାର ଅଧିକାରୀ ଭଣ୍ଡାର ଘେନ ଚଳ ।
ଦଶ ସହସ୍ର ପାଇକ ରଖନ୍ତି ତାହା ମିଳ । ୧୯୦ ।
ଦଣ୍ଡ ସିଂହାସନ ମୃଦ ହୋଇଂ ଚଳୁଥାଇ ।
ଆବୋର ନେଉଛନ୍ତି କଶ୍ୟପର ଭାଇ । ୧୯୧ ।
ସୁଜାଣ ନାମେଣ ରାଜାର ବିଶ୍ୱାସ ।
ସେ ସେ ସମ୍ଭାଳଇ ଭଣ୍ଡାର ରତ୍ନ କୋଷ । ୧୯୨ ।
ନବ ପଟଚ୍ଛଦ ନୃପବରର ଯେତେ ।
ଆଚ୍ଛାଦଣ ନଅନ୍ତି ସକଳ ସେବାଇତେ । ୧୯୩ ।
ସରଯୁ କୂଳେ ଯାଇଂ ହୋଇଲେ ନୃପବର ।
ଆଠ ସ୍ଥଳକର ପଶିଲେ କନ୍ଦର । ୧୯୪ ।
ସୁମନ୍ତ୍ର ପାଶହୋଇଂ ଅଛନ୍ତି ତହିଂ ରହୁ ।
ଯାବାଳ କ ରାଏ ପଠିଅଇଲେ ବାହୁଡ଼ାଇଂ । ୧୯୫ ।
ତୁମ୍ଭେ ମୋହୋର ବିଶ୍ୱାସ ଗୁରୁ ଅଟ ।
ମୋହୋର ଆସିବା ଯାଏ ରଖିଥାଅ ରାଷ୍ଟ୍ର । ୧୯୬ ।
ଲକ୍ଷେକ ପାଇକ ସହସ୍ରେକ ହାଥୀ ।
ଦଶ ସହସ୍ର ଅଶ୍ୱ ଯେ ଦୁଇଶତ ରଥୀ । ୧୯୭ ।
ଯେତେ ବୋଲି ବିଜୟେ କଲେ ନରନାଥେ ।
ତୁମ୍ଭର ସଙ୍ଗତେ ଯେ ଥିବେ ଅନୁବ୍ରତେ । ୧୯୮ ।
ଯାବାଳ ବାହୁଡ଼ି ଆସଇ ଅଯୁଧ୍ୟା ।
କଟକେ ରକ୍ଷାକର ରହିଲେ ମହାବୁଧି । ୧୯୯ ।
ବୃହସ୍ପତି ସାମାନ୍ୟ ଅଟଇ ଯେବଣ ଦ୍ୱିଜ ।
ବରୁର ଚ୍ଛଡ଼ିଗଲେ ଅଯୁଧ୍ୟା ମହାରାଜ । ୩୦୦ ।

Digitized by srujanika@gmail.com

ଶୁଣସି ପାର୍ବତୀ ମୋ ଦଶରଥ କାହାଣୀ ।
କଣ୍ଟକ ଶୂନ୍ୟ ଯହୁଂ ବଳେ ନୃପମଣି । ୩୦ ।
ନଗ୍ର ବାହାରେ ରାଜା ମନେ ବିଗ୍ଚରିଲା ।
ମୋହୋର ବଳସ୍ତେ ନଗ୍ରଶୂନ୍ୟ ହୋଇଲା । ୩୦୨ ।
କଣ୍ଟକ ରକ୍ଷା ପାତ୍ର ଯେବେ ଚ୍ଛୁଡ଼ଣ ଯିବ ।
ରାଜାଗଣ ମୁଖେ ମୁଂ ବଡ଼ ନିନ୍ଦା ଟି ପାଇବ । ୩୦୩ ।
ଶତ୍ରୁ କଲଣ ଘେନମ ମୋହୋର ପୁର ।
ସେମନ୍ତେ ସମ୍ପଦ ମୋର ହୋଇବ ଛାରଖାର । ୩୦୪ ।
ସେମନ୍ତେ ବୋଲି ରାଜା ମନରେ ବିଗ୍ଚର ।
ଯାବାଲି କ ଗଲା କଣ୍ଟକ ରକ୍ଷାକର । ୩୦୫ ।
ସେଥୁ ଅନନ୍ତରେ ସରଯୂ ପାର ହୋଇ ।
ଉତ୍ତର କୂଳେଣ ପ୍ରବେଶ ନରସାଇଂ । ୩୦୬ ।
ହସ୍ତୀରୁ ଓହ୍ଲାଇ ସେ ପଲଙ୍କେ ବଜେ କଲା ।
ସତ୍ୟାନନ୍ଦଙ୍କୁ ନ ଦେଖି କ୍ଷଣେକ ରହିଲା । ୩୦୭ ।
ସେସନେକ ସମସ୍ତେ ଗଉତମ ତନସ୍ତେ ଆସ୍ତେ ।
ପାଦଗାମୀ ଦେଖି ତାଙ୍କୁ ପଗ୍ଚରଇ ରାସ୍ତେ । ୩୦୮ ।
କମ୍ପାଇଂ ଆରୋହଣ ନ କଲ ବାହନ ।
ଇତର ଲୋକ ପ୍ରାୟେ କଲତ ଗମନ । ୩୦୯ ।
ସତ୍ୟାନନ୍ଦ ବୋଲଇ ରାଜା ମୁହଁ ତପସ୍ବୀ ।
ଚରଣେ ଚ୍ଛଲବାକୁ ଶରଧା ଆମ୍ଭର । ୩୧୦ ।
ରାଜା ବୋଇଲେ ତୁମ୍ଭେ ସୁଖାସନେ ବସ ।
ତେବେତ ମୁନି ମୋତେ ହୋଇବ ସନ୍ତୋଷ । ୩୧୧ ।
ଶୁଣି ସତ୍ୟାନନ୍ଦ ସନମତ କଲା ।
ଦିବ୍ୟ ସୁଖାସନେ ଯାଇଣ ବସିଲା । ୩୧୨ ।
ଭରଥ ଶତ୍ରୁଘନ ପଲ୍ୟଙ୍କ ଆରୋହି ।
ଶୁଭେଣ ସନ୍ୟବଳ ସରଯୂ ପାର ହୋଇ । ୩୧୩ ।
ରାଜା ପସ୍ଚେଣାସ୍ତେ ଦୁଇକୋଶ ଗଲେ ।
ହେହ ସମ୍ଭୁର ଉପରେ ଉହ୍ଲେ । ୩୧୪ ।
ଭୋଜନ ଶୟନ ସାଣଣ ତହୁଂ ଗଲେ ।
ଢନବନେ ଯାଇ ଗଙ୍ଗା ପାର ହୋଇଲେ । ୩୧୫ ।
ଅନୁକ୍ରମେ ଆଠ ସମ୍ଭରେ ଚଳାଯାନ୍ତି ।
ଶ୍ରୋଣିତ ନଦୀ ଜାଣି ବହୁତ ଗମନ୍ତି । ୩୧୬ ।

Digitized by srujanika@gmail.com

ମିଥିଳାରେ ପ୍ରବେଶ ହେ ପାଣ୍ଡବନେ ହୁଅନ୍ତ ।
ହେଥୁ ଅନନ୍ତରେ ଶୁଣ ଗୋ ଭଗବନ୍ତି । ୩୧୭ ।
ବାରତା ପାଇଲ୍ଲ ଜନେକ ମହର୍ଷି ।
ସମ୍ମୁର ହୋଇଣ ପାଛୋଟି ନେଲ୍ଲ ଆସି । ୩୧୮ ।
ଶ୍ରୀରାମ ଲକ୍ଷ୍ମଣ ବିଶ୍ୱାମିତ୍ର ସହିତେ ।
ଦେଖିଣ ଆନନ୍ଦ ହୋଇଲ୍ଲ ରାଜା ଦଶରଥେ । ୩୧୯ ।
ପିତାଙ୍କୁ ନମସ୍କାର କଲେ ବେନି ଭାଇ ।
କୋଳକରି ରାହେ ମୁଖେ ଚୁମ୍ବ ଦେଇଂ । ୩୨୦ ।
ଭରଥ ଶତ୍ରୁଘନ ଶ୍ରୀରାମ ପାଦେ ପଡ଼ି ।
କାରୁଣ୍ୟ ହୋଇଣ ବେନିକର ଯୋଡ଼ି । ୩୨୧ ।
ଲକ୍ଷ୍ମଣ ଲମ୍ଭଇ ଭରଥର ଚରଣେ ।
ଶତ୍ରୁଘନ ଲକ୍ଷ୍ମଣଙ୍କୁ ଭଗତ ବନ୍ଦ୍ୟମାନେ । ୩୨୨ ।
ଜନେକର ପାଦେ ପଡ଼ଇ ଦଶରଥ ।
ସଙ୍ଗେ ଘେନିଅଛି ଶତ୍ରୁଘନ ଭରଥ । ୩୨୩ ।
କଉଶିକ ପାଦେ ଓଳଗଇ ପୁଣି ।
ଭରଥ ଶତ୍ରୁଘନଙ୍କୁ ସଙ୍ଗେ ଘେନି ନୃପମଣି । ୩୨୪ ।
ବିଶ୍ୱାମିତ୍ର ବୋଲନ୍ତି ଶୁଣସିହୋ ରାହେ ।
ଶୁଭେଣ ଅଛନ୍ତି ରାଜା ତୋହୋର ବେନି ତନହେ ।୩୨୫।
ଦେବାର ବେଳେ ମୋତେ ଅପ୍ରତେ କରୁଥିଲୁ ।
ହେବେତ ପୁତ୍ରଙ୍କୁ ତୋର ପ୍ରତକ୍ଷେ ଦେଖିଲୁ । ୩୨୬ ।
ଦଶରଥେ ବୋଇଲେ ତୁମ୍ଭେ ନଧର ମନେ ରୋଷ ।
ତୋହୋରେ ଉଧରି ସେ ହୋଇଲ୍ଲ ମୋହୋର ବଂଶ ।୩୨୭।
ଜନକ ମହାରୃଷି ଦୟା ମୋତେ କଲୁ ।
ହେ ସମ୍ପଦ ମୋର ତୋହୋରେ ସିନା ହେଲୁ । ୩୨୮ ।
ହେଥୁ ଅନନ୍ତରେ ହୋଇଲେ ସର୍ବେ ତୁଣ୍ଡି ।
ଥାଠେ ଗହଳ ସେ ମିଥିଳାର ଦାଣ୍ଡି । ୩୨୯ ।
ଦିବ୍ୟ ଭୁବନେକ ଜନେକ ତୁଚ୍ଛା କଲ୍ଲ ।
ଦଶରଥ ରାଜାଙ୍କୁ ସେ ତହିଂ ବସାଇଲ୍ଲ । ୩୩୦ ।
ସୁମନ୍ତ ପାଶକେଇ ଉଆସେକ ଦେଇଂ ।
ଅବର ଯେତେକ ପରିଜନ ହୋଇ । ୩୩୧ ।
ଯେ ଯାହା ଅନରୂପେ ଆସନମାନ ଦେଲ୍ଲ ।
ଯୋଗାଡ଼ ସମ୍ପାଦେଇ ଗଉରବେ କଲ୍ଲ । ୩୩୨ ।

Digitized by srujanika@gmail.com

ନଗ୍ରତ ଘେନଣ ବଶିଷ୍ଠ ମୁନି ଆସ୍ତେ ।
ଦଶରଥ ବସାସ୍ତେ ପ୍ରବେଶ କରସ୍ତେ । ୩୩୩ ।
ତାହାକୁଇ ଜନେକଂ ପୂଜା ବିଧି କସ୍ତେ ।
ନଗ୍ର ପର ଉଆସ ତୁଚ୍ଛାକର ଦସ୍ତେ । ୩୩୪ ।
ଥାଠ ଗନ୍ଧ ଗନ୍ଧ ପଶିତ ଠାବ ନାହିଂ ।
ମିଥିଲା କଟକେ ଥାଠ ପୂଶଲକ ଯାଇ । ୩୩୫
ହସ୍ତୀ ଘୋଡା ପାଇକ ରଥ ନିରନ୍ତର ।
ମୁଖ ରାବ ଶବଦ ଶୁଭଇ ଅପାର । ୩୩୬ ।
ଦଶରଥ ରାସ୍ତେ ମଧ୍ୟରେ ପରବେଶ ।
ପଶ୍ଚିମ ଦ୍ୱାର ବାଟେ ପଶିଲେ ରାଣୀହଂସ । ୩୩୭ ।
କଉଶଲ୍ୟା କସ୍ତେକସ୍ଥା ସୁମିତ୍ରା ଛନରାଣୀ ।
ସ୍ତେହାନ୍ତ ମୋକ୍ଷକର ସକଳ କାମେଣି । ୩୩୮ ।
ଶ୍ରୀରାମ ଲକ୍ଷ୍ମଣ କରନ୍ତ ନମସ୍କାର ।
ଦେଖି କଉଶଲ୍ୟା ହୋଇଲ୍ୟ ଆନୁସାର । ୩୩୯ ।
ଶ୍ରୀରାମଙ୍କୁ କୋଳ କଲ୍ୟକ ସ୍ନେହ ଭରେ ।
ଲକ୍ଷ୍ମଣଙ୍କୁ ବସାଇଲ୍ୟ ଦକ୍ଷିଣ ପାରୁଶରେ । ୩୪୦ ।
ଦୁହିଂଙ୍କର ମୁଖେ ଦେଲ୍ୟକ ଚୁମ୍ବନ ।
ସ୍ନେହ ଭରେ ଆଖି କଲ୍ୟକ ଥନଥନ । ୩୪୧ ।
ରାମ ମୁଖ ଚ୍ଛୁହିଂ ବୋଲଇ କଉଶଲ୍ୟା ।
ଆଜ ସେ ବାବୁ ମୋର ଦୁଖ କେତେ ଗଲ୍ୟ । ୩୪୨ ।
ହୃଦରେ ସାହାସ ବାବୁରେ ପଶିଲ୍ୟ ମୋହୋର ।
ନଦେଖି ଅଥିର ଯେ ମୋହୋର ଶୋରୀର । ୩୪୩ ।
ଦୁଖୀର ସଂଗାତ ବାବୁରେ ଅନ୍ଧର ନୟନ ।
ତୋତେ ନ ଦେଖି ଥିର ନୋହିଇ ନୟନ । ୩୪୪ ।
ଛମାସ ହୋଇଲଣି ଗ୍ରୁଡ଼ିବାର ତୋତେ ।
ନିରାଶ ହୋଇଂ ମୁଛି ରହିଲୁ କେବଣେହିଂ ମତେ । ୩୪୫ ।
କାହାର କୋଳେ ରହି ବଞ୍ଚିଲୁ ତୁ ରାଣ୍ଡ ।
କେ ତୋହୋର ଅଙ୍ଗରେ ରହିଲ ସଙ୍ଗାଡ । ୩୪୬ ।
ଗ୍ଭଲ କେଣ୍ଟେଁ ଅଇଲୁରେ ସ୍ତେତେ ଦୂରପଥ ।
ଈଶୋର ଧନୁ କେହ୍ନେ ଧହିଲା ତୋର ହାଥ । ୩୪୭ ।
ଅତି କୋମୋଳ ତୋହୋର କର ସ୍ଥଳ ।
ବ୍ୟଥା ପାଇଲୁକି ଧନୁ ଧରବାର ବେଳ । ୩୪୮ ।

Digitized by srujanika@gmail.com

ଈଶ୍ୱର ଧନୁ ସେ ବଜ୍ର ହୁଂ ଅଛି ଆଣ୍ଠ ।
ବଳଙ୍କର ବଳ ଜାଣିମାର କଣ୍ଠ । ୩୪୯ ।
ତାହାକୁ ବାହୁରେ ଘର୍ଷିଲୁ କରେ ଧରି ।
ବ୍ୟଥା ନ ପାଇଲୁନା ତନଯ୍ୱେ ମୋହର । ୩୫୦ ।
ଯେତେ ବୋଲ ଦେଖା ଆଉଂଷନ୍ତ କାଯ୍ୟେ ।
ଆବର ପ୍ରଶଂସା କରନ୍ତ ସବ୍ବମାଯ୍ୱେ । ୩୫୧ ।
ୟେଥୁ ଅନନ୍ତରେ ଶୁଣିମା ଦ୍ରବ୍ୟ ସ୍ତଉ ।
ମାର୍ଜଣା ମୁଖୋଦ୍ଧ ସାରଲ ନୃପତ୍ତି । ୩୫୨ ।
ସେଦିନ ବିଶ୍ରାମ କଲ୍ଲ ନୃପମଣି ।
ୟେଥୁ ଅନନ୍ତରେ ଶୁଣଗୋ ହେମବନ୍ତର ଦୁଲଣୀ । ୩୫୩ ।
ଯହୁଂ ଦଶରଥ ମିଥିଳାରେ ପ୍ରବେଶ ।
ଜନେକ ମହାମୁନି ଅନେକ ହରଷ । ୩୫୪ ।
ଉଚ୍ଚ୍ୟାବଦ ଘନ କଥାନ୍ତ ବିସ୍ମରଲ ।
ବିଶ୍ୱାମିତ୍ରଙ୍କ ସଙ୍ଗେ ଗୃହେ ଗଲେ । ୩୫୫ ।
ଆରଦିନ ସେ ସେ ପେଷିଲେ ଶ୍ୱର ।
ଇକ୍ଷୁମତୀ ନଦୀତୀରେ ସଂକାଂଶନ ବୋଲି ପୁର । ୩୫୬ ।
ତହୁଂର ରଜା ଜନେକଂ ସାନଭାଇ ।
ଅଛି ଧାର୍ମିକଂ ନାମ କୁଶଧ୍ୱଜ ହୋଇ । ୩୫୭ ।
ତ ହାଙ୍କଇ ହକାରି ପେଷିଲେକ ଦୂତ ।
ଲେଖରେ ଲହିଦେଲ୍ ସକଳ ବୃତ୍ତାନ୍ତ । ୩୫୮ ।
ଶ୍ୱର ଆଗେ ସବ୍ବ ବଚନ ହେଲ୍ଲ ।
କୁଶଧ୍ୱଜକଇ ଘେନି ଆସ ହୋ ବୋଇଲ୍ଲ । ୩୫୯ ।
ରଜାର ବଚନେ ଚଳିଲେକ ଦୂତ ।
ସଂକାଂଶନ ନଗରେ ମିଳିଲ୍ଲ ତୁରିତ । ୩୬୦ ।
କୁଶଧ୍ୱଜକଇ ସେ ଲେଖ ନେଇଂ ଦେଲ୍ଲ ।
ଜନେକ ଆଗ୍ୟାଂ ତୁମ୍ଭେ ଆସହୋ ବୋଇଲ୍ଲ । ୩୬୧ ।
ଶୁଣି କୁଶଧ୍ୱଜ ହୋଇଲେକ ସଜ ।
ବାଜଇ ଟମକ ଢୋଲ ମଖାଉଜ । ୩୬୨ ।
ବିମଳ ପାଟଛତ୍ର ନାନା ପରକାର ।
ବହୁତ ସନ୍ୟ ତାର ଅଛଇ ସଙ୍ଗର । ୩୬୩ ।
ଆପଣେ ରଥେକ ଚଢ଼ି କୁଶଧ୍ୱଜ ।
ମିଥିଳାରେ ପ୍ରବେଶ ହୋଇଲ୍ଲ ମହାରାଜ । ୩୬୪ ।

Digitized by srujanika@gmail.com

ବହୁଦେହ ମଣ୍ଡୋଳକୁ ପାଞ୍ଚକୋଶ ବାଟ ।
ଇକ୍ଷୁମତୀ ନଦୀତୀରେ ଅଟଇ ଭାର ଗୃଷ୍ଟ । ୩୬୫ ।
ବାରତା ପାଇଣ ଆସଇ ଖର କରି ।
ହେହ୍ୱଦ୍ୱ ପ୍ରବେଶ ହୋଇଲା ସନ୍ଧ୍ୟାଘଡ଼ି । ୩୬୬ ।
ରଥରୁ ଓହ୍ଲାଇ ସେ ଭିତରେ ପ୍ରବେଶ ।
କରେ ଘେନଅଛୁ ଦେଖ୍ଣି ଦ୍ରବ୍ୟ ବାସ । ୩୬୭ ।
ଜନେକଙ୍କୁ ଦେଖି ଥୋଇଲାକ ତାହା ।
ପ୍ରଲମ୍ବ କରି ଶୋଇଲା ସଂକାଂସନର ନାହା । ୩୬ ।
ଉଠି ଉଭାହୋଇ ସେ ଶିରେ କରଯୋଡ଼ି ।
ସନାଧ୍ୟକୁ ହକରାଇ ଜନେକ ପ୍ରିୟ କରି । ୩୬୯ ।
ସନ୍ନିଧ୍ୟେ ବସାଇ କଲାକ ସନମତ ।
ଆଦ୍ୟ ଅନ୍ତ କଥାମାନ କହିଲା ସମସ୍ତ । ୩୭୦ ।
ଦୁଇଭାଇଙ୍କର ବର୍ଗୃରେ ଯୋଗାଇଲା ।
ଧ୍ୟେଥୁ ଅନନ୍ତରେ ରଜନୀ ପାହିଲା । ୩୭୧ ।
ନିତ୍ୟକର୍ମ ସାରି ଜନେକ ମହୀପତି ।
ସଭା ମଣ୍ଡୋପେ ପ୍ରବେଶ ହୋଇଲା ଧାଇ । ୩୭୨ ।
ଦଶରଥ ତହିଂକ ପେଷିଲା ସତ୍ୟାନନ୍ଦ ।
ଭୁହ ଯାଇଂ ଆନହୋ ଅଯୋଧ୍ୟା ନରେନ୍ଦ୍ର । ୩୭୩ ।
ଶୁଣି ଗଉତମ ସୁତ ବେଗେ ଚଳାଗଲା ।
ଦଶରଥ ଆଗେ ଯାଇଂ ମଣାଇଂ କହିଲା । ୩୭୪ ।
ଶୁଣି ନୃପବର ଅଇଲା ସଜ ହୋଇଂ ।
ଆସ୍ଥାନରେ ପ୍ରବେଶ ହୋଇଲାନ୍ତ ଯାଇଂ । ୩୭୫ ।
ବଶିଷ୍ଠ ବାମଦେବ କଶ୍ୟପ ସୁମନ୍ତ ।
ଆବର ଅଟାନ୍ତ ଅନେକ ସାମନ୍ତ । ୩୭୬ ।
ଦଶରଥ ନାଇଂ ଜନେକଂଙ୍କ ରୂଷ ପାସ୍ରେ ।
ସମୋଧି ହୋଇଂଶେ ସେ ପାଇଲେ ଦେଇ ସାସ୍ରେ । ୩୭୭ ।
ମହାରୁଷିମାନେ ଅଛନ୍ତି ତ ହିଂ ବସି ।
ଭାଷାଏ କହନ୍ତି ଜନେକ ମହାରୁଷି । ୩୭୮ ।
ଶୁଣସି ଦଶରଥ ମୋହର ସୁବାଣୀ ।
ସୀତ୍ୟା ନାମେ ମୋହର ଜେଷ୍ଠଇ ନନ୍ଦନୀ । ୩୭୯ ।
ପୂର୍ବେକାଳେ ମୁହିଂ ସତ୍ୟ କରିଥିଲି ।
ଯେ ଧନୁ ଧରିବ ତାହାକୁ ଦିଅ ଦେବଇଂ ବୋଇଲି ।୩୮୦ ।

Digitized by srujanika@gmail.com

ସେ କଥା ଯେବେ ମୋତେ ପ୍ରାପତ ହେଲା ଆସି ।
ତୋହୋର ଜେଷ୍ଠପୁତ୍ର ସାୟେକ ଆନେଶି । ୩୮୧ ।
ସଙ୍କଳ୍ପ ପୂରଲା ସେ ସରଲା ମୋର ବ୍ରତ ।
ତୋ ପୁତ୍ରକଇ ଦେବ ମୋ ଦୋହିତ । ୩୮୨ ।
ଶ୍ରୀରାମ ସୀତଯା ହୋଇବେ ବେନି ବନ୍ଧ ।
ଚନ୍ଦ୍ର ରୋହେଣୀ ଜାଣି ଦଶିବାକ ଶୋଭ । ୩୮୩ ।
ସୀତ୍ୟାଙ୍କ କନେଷ୍ଟ ଉର୍ମିଳା ନାମେ ବାଳୀ ।
ଲକ୍ଷ୍ମଣଙ୍କୁ ଦେବ ବୋଇଲା ତପଶାଳୀ । ୩୮୪ ।
ଯେ ମୋହୋର ସାନଭାଇ କୁଶଧ୍ୱଜ ।
ସଙ୍କାଂସନ ନଗ୍ର ତହିଁର ଯେ ରାଜ । ୩୮୫ ।
ଯେହାର ଦୋହିତା ଅଛୁ ଅବରାଇ ।
ଭ୍ରଥ ଶତ୍ରୁଘନଙ୍କୁ ଦେବ ତାହାକଇ । ୩୮୬ ।
ରାଜପୁତ୍ରଙ୍କୁ ତୋର ଦେବଇ ଚ୍ଚରହିଁ ଅ ।
ତୁହୋ ମହାରାଜା ପ୍ରସନ୍ନ ମୋତେ ହୁଅ । ୩୮୭ ।
ଯେ ମୋହୋର ସତ୍ୟ ସଭାଜନେ ଶୁଣ ।
ଯେତେ ବୋଲି ପୁଣ ବିଲାପଇ ପୁଣ ପୁଣ । ୩୮୮ ।
ତୁ ପୁନ୍ୟ ସିନ୍ଧୁ ମୁଂ ଅଟଇଂ ମହାନଦୀ ।
ତୋତେ ଆଶ୍ରେ କରତ ମୋହୋର ବୃଦ୍ଧି । ୩୮୯ ।
ଈଶ୍ୱରେ ଯେମନ୍ତେ ଶିରେ ବହିଛନ୍ତି ଶଶୀ ।
ଜଗତ ହିତେ କପାଳି ଗରଳ ସଗ୍ରାସି । ୩୯୦ ।
ତୁହୋ ମହାପତ୍ର ସଂଘରସି ମୋତେ ।
କସ ବୋଲି ଆଉ ବୋଲିବ ଯେ ତୋତେ । ୩୯୧ ।
କୃତାଞ୍ଜଳି ହୋଇ ବୋଲଇ ଜନେକ ।
ଶୁଣିଣ ସାଧୁ ବୋଲି ବୋଲନ୍ତି ସଭା ଲୋକ । ୩୯୨ ।
ଜନେକଂ ନୃପତିକ ପ୍ରଶଂସଇ ଦଶରଥ ।
ତୁହୋ ମହାଋଷ ଅଟସି ମହନ୍ତ । ୩୯୩ ।
ଯେବେ ପ୍ରଶଂସା କରନ୍ତି ମୁନି ତୋତେ ।
କେବଣ ଗୁଣେ ମୁନି ଦୟାକଲୁ ମୋତେ । ୩୯୪ ।
ମୋହୋରତ ପୂର୍ବର ଅଛଇ ବହୁତ ପୁନ୍ୟ ।
ସମ୍ବନ୍ଧ ପାଇଲି ମୁଂ ଜନେକ ରାଜନ । ୩୯୫ ।
ସୂର୍ଯ୍ୟବଂଶ ମୋର ହୋଇଲା ଉଧର ।
ତୁ ଯେବେ ଦୟା ମୋତେ କଲୁ ତପରାଶି । ୩୯୬ ।

Digitized by srujanika@gmail.com

ଶ୍ରୀରାମ ବାଳବତ୍ସ ମୋର ନ ଜାଣଇ କିଛୁ ।
ତୋହୋର ହୃଦେ ତାକୁ ଯେଡ଼େ ଭାବ ଅଛୁ । ୩୯୭ ।
ମୁହିଂ ବୋଲିବ କିସ ମୋହର ତନୟେ ତୋହୋର ।
ପ୍ରସନ୍ନ ହୋଇଂ ଦେଲ ଋଷିସିଂଘ ମୁନୀଶ୍ବର । ୩୯୮ ।
ବଶିଷ୍ଠ କଲ୍ୟାଣେ ଦେଲ ପୁତ୍ର ଗଣ୍ଡ ।
ବଂଶ ଧବଳିଲ ମୋର ବିଶ୍ବାମିତ୍ର ଯଣ୍ଡ । ୩୯୯ ।
ଯେବେ ତୁ ସୁପକ୍ଷ ହୋଇଲୁ ମୁନି ମୋତେ ।
କିସ ଦେଇ ଯେହ୍ନା ଶୁଝିବି ମୁଂ ତୋତେ । ୪୦୦ ।
ଶୁଣିଣ ଜନେକ ହୋଇଲେକ ତୁଷ୍ଟି ।
ସ୍ବର୍ଗରୁ ହୋଇଲନ୍ତ ଶ୍ୟାନ୍ତ ଜଳ ବୃଷ୍ଟି । ୪୦୧ ।
ଯେଥୁ ଅନନ୍ତରେ ବଶିଷ୍ଠ ମହାସନ୍ତ ।
ଜନେକ ଋଷିଙ୍କି ଗୃହିଂ ବଚନ ବୋଲନ୍ତି । ୪୦୨ ।
ଶୁଣ ତୁ ମିଥିଳା ନଗ୍ର ନୃପ ବର ।
ଦଶରଥ ରାଜା ଅଯୁଧ୍ୟା ଈଶ୍ବର । ୪୦୩ ।
ଦେବତାଯେ ପ୍ରଶଂସା କରନ୍ତି ତାହାଙ୍କୁ ।
ଧାର୍ମିକ ଲେଖାଯେ ଗଣନା କରନ୍ତି ଯେହାଙ୍କୁ । ୪୦୪ ।
ବୀର ବଂଶେଣ ଯେ ଅଟଇ ଉତପୋତ ।
ବଡ଼ ଗରିଷ୍ଠ ଯେହାର ଉପରବଂଶ ମାନନ୍ତି । ୪୦୫ ।
ଗୁଣେଣ କୁଶଳ ଅଟଇ ଯେ ସାର ।
ପର ଭୂମି ଯେ ଘେନଇଂ ନିଜ ଭୁଜବଳ । ୪୦୬ ।
ଦାନେଣ ସାଗ୍ର ଯେ ମାନେଣ ମହିଂମା ।
ପ୍ରତାପୀ ଅତି ଗରିଷ୍ଠ ଯେହାର ଗାରିମା । ୪୦୭ ।
ଶୁଣନ୍ତୁ ଜନେକ ହୋ ଉପର ବଂଶ କଥା ।
ଅବତାର ହୋଇଥିଲେ ମହା ମହାରଥା । ୪୦୮ ।
ଆଦ୍ୟ ସମ୍ଭୂତ ଯେ ହୋଇଲେକ ଯହୁଂ ।
ତୋହୋର ଆଗେ ଆମ୍ଭେ ସଞ୍ଚପି ଯେହ୍ନା କହୁଂ ।୪୦୯।
ମହାପ୍ରଳୟ ଯହୁଂ ହୋଇଲେକ କାଳ ।
ଶମ୍ଭୁଳ ସଂସାର ହୋଇଲ ମହାଜଳ । ୪୧୦ ।
ସେ ମହାଜଳରୁ ବୁଦବୁଦା ହୋଏ ଜାତ ।
ତହୁଂ ଡିମ୍ଭେକ ହୋଇଲେକ ଜାତ । ୪୧୧ ।
ପକ୍ଷୀରୂପ ଧରି ଦେବ ନାରାୟଣ ।
ସେ ଡିମ୍ଭ ଗୋଟି ଫୋଡ଼ିଲେ ଲାଞ୍ଜଡ଼େଣ । ୪୧୨ ।

Digitized by srujanika@gmail.com

ସେ ମନ୍ତ୍ର ଭିତରୁ ସ୍ୱରୂପେ ବାହାର ।
ସେ ସେ ଶ୍ରୀହରି ଜଗତ ସଂସାର । ୪୧୩ ।
ସେ ଅଣ୍ଡ କୋଟି ବ୍ରହ୍ମାଣ୍ଡ ହୋଇଲା ।
ଅନେକ ଆଗେ ସେହୁ ବଶିଷ୍ଠ କହିଲା । ୪୧୪ ।
ଯେକଣେ ପୁଷ୍ପେ ଉତ୍ପନ୍ନ ହୋଇଲାକ ଜାତ ।
ତାହାର ନାମ ହୋଇଲା ବିଧାତ । ୪୧୫ ।
ଚଉଦ ଭୁବନର ବ୍ରହ୍ମାଣ୍ଡ ପାତିଲା ।
ଚତୁର୍ବେଦ ଜଳ କେନ୍ଦ୍ରଂଣ ଶୁଭ ଦେଲା । ୪୧୬ ।
ମନୁଷ୍ୟ ନାଗ ମୃଗ ମୁଣ କଲା ଜାତ ।
ବେଦରୁ ପୁଷ୍ପକ ହୋଇଲା ସମ୍ଭୂତ । ୪୧୭ ।
ସେ ସେ ବିଧାତା ଜାଣଇ ବ୍ରହ୍ମଗ୍ୟାନ ।
ବ୍ରହ୍ମା ବୋଲଣ ନାମ ବିଦ୍ୟମାନ । ୪୧୮ ।
ବ୍ରହ୍ମାର ତନୟେ ହୋଇଲାକ ଜାତ ।
ମରୀଚି ନାମ ତାର ଅଟଇ ଜଅତ । ୪୧୯ ।
ମରୀଚର ପୁତ୍ର କଶ୍ୟପ ମହର୍ଷି ।
ଅଶ୍ୱମାଲ ବୋଲି ଅଟଇ ସେହାର ଶିଶି । ୪୨୦ ।
ତେଜ ଗୁଣ ପ୍ରାକମେ ଅଟଇ ଦୃଷ୍ଟାନ୍ତ ।
ଅଶ୍ୱମାଳର ପୁତ୍ର ବଇବସ୍ୱତ ମନୁ । ୪୨୧ ।
ସେହାର ତନୟେ ଇଚ୍ଛା କୁରୁଯେ ।
ଅଯୋଧ୍ୟା ନଗରେ ସେ ଆଦିପାଟ ହୋଏ । ୪୨୨ ।
ରବିତଳେ ସମ ନାହିଁ ଚକ୍ରବର୍ତ୍ତୀ ।
ଇଚ୍ଛା ସ୍ୱଇଚ୍ଛାଏ ଗମଇ ସପ୍ତଦ୍ୱୀପ ପୃଥ୍ୱୀ । ୪୨୩ ।
ଇଚ୍ଛା କୁରୁବଂଶ ହୋଇଲା ଅବତାର ।
ଇଚ୍ଛା କୁରୁବଂଶ ବୋଲନ୍ତି ମୁନିମୁର । ୪୨୪ ।
ଇଚ୍ଛା କୁରୁ ଜନ୍ମେ ବିକୋପ ହୋଏ ଜାତ ।
ଯୁଧାପଣେ ସମ ନାହିଁ ତ୍ରିଜଗତ । ୪୨୫ ।
ଆପଣାର ନାଏ କଟକକ ନାମ ଦେଲା ।
ତେଣୁ ସେ ନଗ୍ର ହେବେ ଅଯୋଧ୍ୟା ହୋଇଲା । ୪୨୬ ।
ବିକୋପର ପୁତ୍ର ପରସାତ ମହୀପତି ।
ଗୁଣ ସମୁଦ୍ର ସେ ଅଟଇ ଚକ୍ରବର୍ତ୍ତୀ । ୪୨୭ ।
କାକୁସ୍ଥ ନାମେଣ ତାହାର ତନୟେ ।
କାକୁସ୍ଥ ବଂଶ ବୋଲି ତେଣୁ ନାମ ବହେ । ୪୨୮ ।

Digitized by srujanika@gmail.com

କାକୁସ୍ଥର ନନ୍ଦନ ଅକ୍ଷୟ୍ୟ ସେନ ବୀର ।
ବଂଶ ପ୍ରଭୁ ବୋଲି ତାହାର କୁମର । ୪୨୯ ।
ସେହାର କୁମର ଅସ୍ୱନା ନୃପତି ।
ସଇଳସ୍ୱ ନାମେଣ ସେହାର ଅଧ୍ୟନ୍ତ । ୪୩୦ ।
ଆବର ବୋଲି ସେ ନନ୍ଦନ ସେହାର ।
ବର୍ତ୍ତି ଦେଇଂ ସେ ହୋଇଲା ସେଥୁ ଅବତାର । ୪୩୧ ।
କୁବଳୟା ଅଶ୍ୱ ତାହାର ତନୁଂ ଜାତ ।
ତ୍ରିଭୁବନେ ଯାହାର ମହିମା ବିଖ୍ୟାତ । ୪୩୨ ।
କୁବଳୟା ଅଶ୍ୱର ହୋଇଲା କୁନ୍ଧାର ।
ସୁକୃତ ସେନ ବୋଲି ତନୟେ ତାହାର । ୪୩୩ ।
ସୁକୃତା ନନ୍ଦନ କୃଶା ମନୁପତି ।
ପ୍ରସନାଜିତ ବୋଲି ସେହାର ସନ୍ତତି । ୪୩୪ ।
ଯସସେନ କୁମର ଜୀବନ ମନ୍ଧାଧର ।
ବଡ଼ାଇ ପ୍ରତାପୀ ଅଟଇ ମନ୍ଧାଧର । ୪୩୫ ।
ସେ ଜୀବନାଶର ହାଦେ ବହୁତ କୀରତି ।
ପୁତ୍ର ନାହିଁ ବୋଲି ଖଳଇ ନୃପତି । ୪୩୬ ।
ଅଷ୍ଟବକ୍ର ମୁନିଙ୍କ ସେ ବାରେ ମଣାଇଲା ।
ଭକତି ଦେଖି ମୁନି ସେ ତାହାକୁ ଦୟାକଲା । ୪୩୭ ।
କାଲି ତୁ ମୋହର ଆଶ୍ରମକୁ ଆସିବୁ ବୋଇଲା ।
ଅନ୍ତେଣ ନୃପନଙ୍କ ଦଣ୍ଡେ ଧନ ଦେଲା । ୪୩୮ ।
ଶୁଣି ନୃପବର ପ୍ରଭାତେଣ ଯାଇ ।
ଅଷ୍ଟାବକ୍ର ଋଷିର ଆଶ୍ରମେଣ ପିଲଇ । ୪୩୯ ।
ଋଷି ବୋଇଲା ତୁ ଶୁଣ ନୃପବର ।
ସେ ମନ୍ତ୍ରାମନ୍ତ୍ର ପାଣି ଦେଖି ଚଳ । ୪୪୦ ।
ମହାଦେଈମାନଙ୍କୁ ବାଣ୍ଟି କରି ଦିଅ ।
ତୋହୋର ସମାନେ ହେ ପୁତ୍ରବେ ପୁଅ । ୪୪୧ ।
ସେତେ ବୋଲି ମୁନି ତପଥାନେ ଗଲା ।
ମନ୍ତ୍ରଂଜଳ ଦେଖି ରାଜା ବାହୁଡ଼ିଲା । ୪୪୨ ।
ଦଇବ ମାୟା ହାଦେ ବୁଦ୍ଧି ନପାଶ ।
ସେ ପାଣି ନୃପତି ହାଦେ ପିଇଲା ପାଶୋର । ୪୪୩ ।
ଆପଣେ ଗର୍ଭବାସ ହୋଇଲା ରାଜନ ।
ଦିନେ ଦିନେ ଉଦରେ ତାର ବଢ଼ିଲା ନନ୍ଦନ । ୪୪୪ ।

Digitized by srujanika@gmail.com

ଅଷ୍ଟବକ୍ର ଋଷି କହିଲେ ପ୍ରଭୁକାର ।
ପେଟ ଚିର ରାଜା ପାଇଲ କୁମର । ୪୪୫ ।
ତେଣୁ ପୁତ୍ର ନାମ ହୋଇଲା ମାନଧାତା ।
ଏହି ମନ୍ତ୍ରୀମଣ୍ଡଳେ ବୁଝାଇଲା କଥା । ୪୪୬ ।
ମାନଧାତା ତହୁଁ ମୁଚୁକୁନ୍ଦ ଜାତ ।
ବାଣ ବୋଲିଣ ହୋଇଲା ତାହାର ପୁତ୍ର । ୪୪୭ ।
ବାଣର ପୁତ୍ର ଅରଣ୍ୟକ ବୋଲି ରାଜ୍ୟେ ।
ରାବଣ ତୁଲେ ସେ ଅନେକ ଯୁଧ କଲ୍ୟେ । ୪୪୮ ।
ହାଗ୍ରାଂମେଣ ବଜସ୍ୱେ ଅଟେ ଦଶଶିର ।
ସଂଗ୍ରାମେ ଜିଣିଲା ସେ ଦେବପୁର ଧରି । ୪୪୯ ।
ରଣଗୋଳ କରଣ ସେ ମାଇଲାକ ବଳେ ।
ପ୍ରାଣ ହାରିଲା ସେ ଅରଣ୍ୟକ ମହୀପାଳେ । ୪୫୦ ।
ସମରେ ପଡ଼ିଣ ସେ ସ୍ୱର୍ଗକଇ ଗଲା ।
ରଣ ଜୟେକର ରାବଣ ବାହୁଡ଼ିଲା । ୪୫୧ ।
ଅରଣ୍ୟର ପୁତ୍ର ବସୁ ନାମେ ବୀର ।
ସେ ଯେ ହୋଇଲେଟି ଅଯୁଧ୍ୟା ଈଶ୍ୱର । ୪୫୨ ।
ସତ୍ୟବ୍ରତ ବୋଲି ସେହାର ତନୟେ ।
କର୍ମେ ତ୍ରିଶଙ୍କୁର ନାମ ତାର ହୋଏ । ୪୫୩ ।
ସେହାର ତହୁଁ ହରିଚନ୍ଦ୍ର ଜାତ ।
ଦାନେ ଖାଣ୍ଡ୍ରେସାଗ୍ର କୀରତ୍ତି ବିଖ୍ୟାତ । ୪୫୪ ।
ତାହାର ତନୟେ ଲୋହିତାକ୍ଷ ହୋଇ ।
ସୁମେରୁ ନାମେ ତାର ପୁତ୍ରେକ ଉପୁଜଇ । ୪୫୫ ।
ସୁରଣୀର ପୁତ୍ର ବସନ୍ତର ନାମେ ରାଏ ।
ଭୃଥ ନ ମେ ତାର ପୁତ୍ରେକ ଉପୁଜାଏ । ୪୫୬ ।
ରାଜ ହୋଇଂ ତାକୁ ନାହିଁ ସମସର ।
ସେକଛତ୍ର ରାଜା ଭୃଥ ଦଣ୍ଡଧାରୀ । ୪୫୭ ।
ଭଥ ପାଳନ୍ତେ ନାମ ଭୃଥଖଣ୍ଡ ମହୀ ।
ସେହଙ୍କଣି ମହାପୁରାଣେ ଅଛି କହି । ୪୫୮ ।
ଅସିତର ନାମେ ଯେ ଭୃଥର ତନୁଜ ।
ସେହାର କୁମର ବାହୁକ ନାମେ ରାଜ । ୪୫୯ ।
ବାହୁକର ତନୟେ ସଗର ନୃପତି ।
ଅଶ୍ୱଯା ବୋଲିକରି ଯେ ସେହାର ସନ୍ତତି । ୪୬୦ ।

Digitized by srujanika@gmail.com

ଅଶ୍ୱସାର ପୁତ୍ର ଅଶ୍ୱବନ୍ତ ହୋଇ ।
ସେହ୍ନାର ପୁତ୍ର ଦଲିପୀ ସାଧଇ ସର୍ବମହୀ । ୪୬୧ ।
ଦିଲପୀର ତନୟେ ଅଟଇ ଭାଗ୍ୟରଥ ।
ସ୍ୱର୍ଗର ଗଙ୍ଗା ଆଣି ବୁହାଇଲା ପୃଥ୍ୱୀ । ୪୬୨ ।
ସେ ଭାଗ୍ୟରଥର ପୁତ୍ର ସୁରସେନ ।
ନାଭ ନାମେଣ ତାହାର ନନ୍ଦନ । ୪୬୩ ।
ନାଭର ନନ୍ଦନ ସିନ୍ଧୁଦ୍ରଗ ହେ ସେ ।
ସିନ୍ଧୁଦ୍ରଗ ପୁତ୍ର କୃତ୍ତ ରାଜା ହୋଏ । ୪୬୪ ।
କୃତ୍ତର ନନ୍ଦନ ଅଖିଳ ନୃପତି ।
ଋତୁପନ ନାମେଣ ସେହ୍ନାର ସନ୍ତତି । ୪୬୫ ।
ସେହ୍ନୁ ଋତୁପନ ନଳକୁ ସମ୍ଭାଳିଲା ।
ଗୃଶଯୁଗେ ତାର କୀରତି ବୁହାଇଲା । ୪୬୬ ।
ଋତୁପନ କୁମର ସକଳ ସମ୍ପଦ ।
ନାହିଁ ପଟାନ୍ତର ତ୍ରିଭୁବନ ମଧ୍ୟ । ୪୬୭ ।
ସେ ନଳ କୁମର ତନୟେ ସଙ୍ଗ ରାଜ ।
ସକଳ ନୃପତି ସେହ୍ନାରେ ପାଇଲେ ସେ ପୂଜା । ୪୬୮ ।
ହୁତସେନ ନାମେ ସଙ୍ଗର ନନ୍ଦନ ।
ପିତାର ଭବେଣ ଅଯୁଧ୍ୟାସେ ରାଜନ । ୪୬୯ ।
ସୁତସେନର ନନ୍ଦନ ଅଗ୍ନିବନ୍ତ ହୋଇ ।
ସିଙ୍ଘଗ୍ରାହ୍ୱା ବୋଲି ସେହ୍ନାର ପୁତ୍ରେକ ଉପୁଜଇ ।୪୭୦।
ସିଙ୍ଘଗ୍ରାହ୍ୱା ନନ୍ଦନ ମନୁ ନାମେ ରାଏ ।
ସୁଗ୍ରିବର ବୋଲିଣ ତାହାର ତନୟେ । ୪୭୧ ।
ଅମଶ୍ୱୀପ ରାଜା ତାହାର ତହିଁ ଜାତ ।
ଅମ୍ବରୀଷ ନନ୍ଦନ ଘୋଷ ନରନାଥ । ୪୭୨ ।
ତପେ ନ ଢୋଷଇ ଇନ୍ଦ୍ରପଦ ପାଇଁ ।
ତାହାର ତନୟେ ଯଯାତି ନାମ ହୋଇ । ୪୭୩ ।
ଯଯାତିର ପୁତ୍ର ନାଭଗ ବୋଲି ରାଏ ।
ସର୍ବକାମ ବୋଲି ସେହ୍ନାର ତନୟେ । ୪୭୪ ।
ନଭଭଦ୍ର ବୋଲି ସର୍ବକାମ ସନ୍ତତି ।
ସେହ୍ନାର ତନୟେ ହୋଇଲ ବାଘ୍ନ ନୃପତି । ୪୭୫ ।
ବାଘ୍ନର ପୁତ୍ର ଦୀର୍ଘ ବାହୁ ହୋଏ ।
ରଘୁ ନାମେଣ ସେହ୍ନାର ତନୟେ । ୪୭୬ ।

Digitized by srujanika@gmail.com

ରଘୁର ମହିମା ଅଟୁଇ ଅଗୋଚର ।
ଯାହାକଇ ପ୍ରଶଂସା କରନ୍ତି ବଜ୍ରଧର । ୪୭୭ ।
ରଘୁକୁ ତନୟେ ଅଜୟେ ମହୀପାଳ ।
ଦଶରଥ ନାମେଣ ତାହାର ଦୁଲାଲ । ୪୭୮ ।
ଯେ ଦଶରଥ ଅଯୋଧ୍ୟାର ରାଯେ ।
ଋଷିସିଙ୍ଗ ଦୟାରେ ଗୃଣପୁତ୍ର ପାଯେ । ୪୭୯ ।
ଶ୍ରୀରାମ ଲକ୍ଷ୍ମଣ ଭରଥ ଶତ୍ରୁଘନ ।
ରୂପ ଗୁଣେ ସୁନ୍ଦର ଗୃଣ ଯେ ନନ୍ଦନ । ୪୮୦ ।
ଦକ୍ଷିଣ କୋଶଳ ରାଜାର ଦୁଲଣୀ ।
କଉଶଲ୍ୟା ନାମେଣ ରାଜାର ପାଟରାଣୀ । ୪୮୧ ।
ତାହାର ଗର୍ଭୁ ଶ୍ରୀରାମ ହୋଯେ ଜାତ ।
ଓହୋକୂଳ ବଂଶୁ ଅଟଇ ବାଖାତ । ୪୮୨ ।
କଇକୟା ନୃପତର ଦୋହିତା ରୂପବନ୍ତା ।
କୟେକଯ୍ୟା ନାମେଣ ଏକଇ ଯୁବତୀ । ୪୮୩ ।
ଦଶରଥ ରାଜାର ସେ ସାନ ମହାଦେଇ ।
ତାହାର ଗର୍ଭୁ ଭରଥ ଉପୁଜଇ । ୪୮୪ ।
ସୁମେଘା ନୃପତର ଦୋହିତା ସୁମିତ୍ରା ।
ଲକ୍ଷ୍ମଣ ଶତ୍ରୁଘନର ଅଟଇ ଯେ ମାତା । ୪୮୫ ।
ଶୁଣ ହୋ ଜନେକ ଦଶରଥ ମହିମା ।
ଆଦିବଂଶ ନୃପତ୍ତ ଅଟର ସତ୍ୟବ୍ରହ୍ମା । ୪୮୬ ।
ଚଉଷଠି ପୁରୁଷରେ ଦଶରଥ ହୋଯେ ଜାତ ।
ମୁହିଂ ଅଟଇ ଯେହାର କୁଳର ପୁରୋହିତ । ୪୮୭ ।
ବଶିଷ୍ଠଙ୍କ ମୁଖରୁ ଯେସନେକ ବାଣୀ ଶୁଣି ।
କୃତ କୃତ ହୋଇଲେ ଜନକମନେ ପୁଣି । ୪୮୮ ।
ବୋଇ ହେ ମୁନି ତୁମ୍ଭେ କହିଲୁ ଯାହା ।
ସର୍ବଗୁଣେ ସୁନ୍ଦର ଯେ ଦଶରଥ ନାହା । ୪୮୯ ।
ତୋହୋର କହନ୍ତେ ଶୁଣିଲି ଯେହାର ବଂଶ ।
ଗତ ପାପମାନ ହୋଇଲା ମୋର ଧ୍ୱଂସ । ୪୯୦ ।
ମୋହେର କୁଳଗୋତ୍ର ଶୁଣିମା ମହାଋଷି ।
ବିଷ୍ଣୁକାଳେ ଅବଶ୍ୟ ଯେହା ଭାଷ । ୪୯୧ ।
ସତ୍ୟାନନ୍ଦ ମୋହୋର କୁଳର ପୁରୋହିତ ।
ଯେହାର ମୁଖରୁ ଶୁଣ ହୋ ମୋହୋର କୁଳଗୋତ୍ର । ୪୯୨ ।

Digitized by srujanika@gmail.com

ଶୁଣି ଅହଲ୍ୟା ସୁତ ବୋଲଇ ଅମୃତ ବାଣୀ ।
ସାବଧାନ ହୋଇ ଶୁଣ ଦଶରଥ ନୃପମଣି । ୪୯୩ ।
ସତ୍ୟାନନ୍ଦ କହଇ ଶୁଣ ମୁନି ବଶିଷ୍ଠ ।
ଇକ୍ଷ୍ୱାକୁରୁ ନାମେ ରାଜା ଅଛଅ ଗରିଷ୍ଠ । ୪୯୪ ।
ନିଦ୍ରାଭ ନାମେଣ ସେହାର ତନୟେ ।
ଗମ୍ଭୀର ସମୁଦ୍ରେ ସେ ହୋଇଲେ ମହାରାୟେ । ୪୯୫ ।
ସର୍ବ୍ୱ ବିଖ୍ୟାତ ସେ ହୋଇଲେ ମହୀପତି ।
ପ୍ରସନ୍ନ ହୋଇଲେ ତାଙ୍କୁ ଶିବଯେ ଶକତି । ୪୯୬ ।
ନିଦ୍ରାଭର ପୁତ୍ର ନମିରାଜା ହୋଇ ।
ସେହାର ତହୁଂ ମୁନି ମିଥିଲା ଉପୁଜଇ । ୪୯୭ ।
ମିଥିଲା ନାମେ ନୃପତି ବଡ଼ାଇ ପ୍ରତାପୀ ।
ଆପଣାର ନାମ ଦେଇଂଣ ପୃଥ୍ୱୀ ଥାପି । ୪୯୮ ।
ତେଣୁ ସେ କଟକ ମିଥିଲା ନାମ ହୋଇ ।
ତାହାକଇ ଶିବ ହାଦେ ଧନୁ ସମର୍ପିଇ । ୪୯୯ ।
ଦେବରାଜା ଧନୁକୁ ବହୁତ ପୂଜା କଲେ ।
ଭୋଗରାଗ କରି ଭଣ୍ଡାରେ ଥୋଇଲେ । ୫୦୦ ।
ଦେବରାଜାର ପୁତ୍ର ବୃହଦ୍ରାଜା ହୋଇ ।
ମହାରାଜା ବିରୁଜା ବୋଲି ତ ହାର ତନଇ । ୫୦୧ ।
ବଡ଼ାଇ ଧାର୍ମିକ ରାଜା ସେ ହୋଇଲେ ।
ଧୀରଚ୍ଛ ବୋଲିକରି ତାର ପୁତ୍ରକ ଉପୁଜିଲେ । ୫୦୨ ।
ହରଶସ ନାମେ ତାହାର ସନ୍ତତି ।
ମରୁତା ନନ୍ଦନ ରାୟେ ସେହାର ପୁତ୍ର ହୋଅନ୍ତି । ୫୦୩ ।
ମରୁତାର ତନୟେ ପସ୍ୱ ମହୀପାଳ ।
ମହକର୍ତ୍ତାର୍ଥ ନାମେ ସେ ଅଟଇ ସେହାର ବାଳ । ୫୦୪ ।
ମହକର୍ତ୍ତାର୍ଥ ତନୟେ ଦେବମିତ୍ର ହୋଇ ।
ବିବଧ ବୋଲିକରି ପୁତ୍ରକ ଉପୁଜଇ । ୫୦୫ ।
ଅନନ୍ତକ ନାମେ ସେହାର ତନୟ ।
ପୀରଛ ବୋଲିକରି ତାହାର ପୁତ୍ର ହୋଏ । ୫୦୬ ।
କଣ୍ଟ ନାମେଣ ସେ ତନୟେ ସେହାର ।
ରୋମ ନାମେ ନୃପତି ସେହୁ ଅବତାର । ୫୦୭ ।
ରୋମନାମର ନନ୍ଦନ ସୋମନାମ ହୋଇ ।
ସହସ୍ରନାମ ବୋଲି ତାହାର ତନଇ । ୫୦୮ ।

Digitized by srujanika@gmail.com

ସହସ୍ରନାମ ରାଜାର ହୋଇଲା ଦେହପୁତ୍ର ।
ଜନେକ କୁଶଧ୍ୱଜ ବୋଲଣ ପବିତ୍ର । ୫୦୯ ।
ସେହୁ ସେ ଜନେକ ଯେ କୁଶଧ୍ୱଜ ବେନ ।
ତୋହୋର ପୁତ୍ରକଇ ଦେବାକ ନନ୍ଦନ । ୫୧୦ ।
ସେହାକଇ ଅନୁଗ୍ରହ କର ଦଶରଥ ।
ମୁହିଂ ସେହାର ଯେ କୁଳର ପୁରୋହିତ । ୫୧୧ ।
ସତାଇଶ ବଂଶ କହିଲି ସେହାର
ଇକ୍ଷ୍ୱାକୁରୁ ବଂଶେ ସେହୁ ଜାତ ନୃପବର । ୫୧୨ ।
ଦେବରାଜା ଠାରୁ ସେହୁ ଧନୁକୁ ପୂଜନ୍ତୁ ।
ଧର୍ମକୁଳ ରାଜା ସେହୁ ଅଟଇ ମହାପନ୍ତ । ୫୧୩ ।
ସୁଧର୍ମା ରାଜା ଯେ ଶୁଣିଲା ଧନୁକଥା ।
ଆପଣା ମାଗି ସେ ଗଲା ମହାରଥା । ୫୧୪ ।
ଜନେକ ତାହାକଇ ନଦେଲା ଶରାସନ ।
ରୋଷେ ଯୁଧ୍ୟ କଲେ ଦୁଇ ଯେ ରାଜନ । ୫୧୫ ।
ଇଶ୍ୱର ଧନୁ ସେ ଲେଉକଣ ନେଇ ଆସେ ।
ଜନେକ ସଙ୍ଗେ ସେ ଅନେକ ଯୁଧ କସେ । ୫୧୬ ।
ସାଗ୍ରାଂମେଣ ଭୁଜ ବାହୁଡ଼ିଣ ଯାସେ ।
ଅଭିମାନେ ମଲା ସୁଧର୍ମା ନାମେ ରାସେ । ୫୧୭ ।
ତାହାର କଟେକ ଯହୁଂ ହେଲା ଶୂନ୍ୟ ।
ବଲେ ଘେନଲା ତାହା ଜନେକ ରାଜନ । ୫୧୮ ।
ସୁଧର୍ମା ରାଜାର ଯେ ପୁତ୍ର ଭାଅ ଥିଲା ।
ଜନେକର ଭୟେ ସେ ଦୂରେ ପଳାଇଲା । ୫୧୯ ।
ଦେଖ ସେହୁ କୁଶଧ୍ୱଜ ଜନେକ ସାନଭାଇ ।
ଶଂକାଂସନ ନଗ୍ରରାଜା ଅଟଇ ହାଦେ ସେହି । ୫୨୦ ।
କୁଶଧ୍ୱଜର ହାଦେ ଅଟଇ ଝିଅ ବେନ ।
ଜନେକର ବୋଲେ ଅଇଲା ଦୁଇ ଦୋହିତାଙ୍କୁ ଘେନ । ୫୨୧ ।
ମାଲୁଣି ନାମେ ସେ ଜେଷ୍ଟ ଯେ ତନଇ ।
ତାହାକଇ ବଶିଷ୍ଟେ ଦେବାକ ଭ୍ରତକଇ । ୫୨୨ ।
ସୁକିତା କନ୍ୟା ଯେ ଶତ୍ରୁଘନ ବିଭାହେବ ।
ସେହାଙ୍କର ସଙ୍ଗେ ସ୍ନେହ ତୋ ରହିବ । ୫୨୩ ।
ଲକ୍ଷ୍ମଣଙ୍କୁ ଉର୍ମିଳା ଶ୍ରୀରାମଙ୍କୁ ସୀତା ।
ଯତନେ ହେ ଜାତ କଲକ ବିଧାତା । ୫୨୪ ।

Digitized by srujanika@gmail.com

ଶୁଣି ସମସ୍ତେ ଯେ ହୋଇଲେ ଆନନ୍ଦ ।
ମୁଖ ପ୍ରକାଶଇ ପୂର୍ଣ୍ଣିମାର ଚନ୍ଦ୍ର । ୫୨୫ ।
ବଶିଷ୍ଠଙ୍କୁ ଚାହିଁ ସେ ବୋଲନ୍ତି ସର୍ବଜନ ।
ହେ ମହାମୁନି ଅନୁକୂଳ ବେଗେ ଘେନ । ୫୨୬ ।
ଜନକ ଦଶରଥ ଦୁହିଁ ବଚନ ଶୁଣି ।
ବଶିଷ୍ଠ ଲଗ୍ନ ଯେ ବିଗ୍ଭରନ୍ତି ମନେ ଗୁଣି । ୫୨୭ ।
ଜେଷ୍ଠ ଶୁକ୍ଳ ଯେ ଦ୍ୱାଦଶୀ ଦିନ ।
ରବିବାର ହସ୍ତା ନକ୍ଷତ୍ର ବିଦ୍ୟମାନ । ୫୨୮ ।
ଶିଦ୍ଧନାମେ ଯୋଗ କରଣ ତୈତ୍ତିଳ ।
ରାତ୍ର ପାଞ୍ଚଘଡ଼ି ସୋମର ଅଟଇ ବେଳ । ୫୨୯ ।
ଧନୁ ଲଗ୍ନେ ଶ୍ରୀରାମ ହୋଇବେ ଯେବେ ବିଭା ।
ସେଦିନ ଶିଦ୍ଧ ନାମେ ଯୋଗ ଅଟଇ ଯେ ପ୍ରଭା । ୫୩୦ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ଅଟଇ ସାଧେକ ତାର ।
ତୃତୀୟ ଚନ୍ଦ୍ର ଯେ ଶୁଭ ଯେ ବିଗ୍ଭର । ୫୩୧ ।
ସୀତାଙ୍କର ତାର ମୈତ୍ର ଯେ ସେଦିନ ।
ଦ୍ୱାଦଶ ଚନ୍ଦ୍ର ଦୋଷକୁ ଦେବା ଶଙ୍ଖ ଦାନ । ୫୩୨ ।
ଦଶମ ଚତୁର୍ଥ ଅଟଇ ମହାପ୍ରୀତି ।
ବର କନ୍ୟାଙ୍କର ଅଟଇ ଦେବତା ଜାତି । ୫୩୩ ।
ଦଶଯୋଗ ଚକ୍ରେ ଦୋଷ ନାହିଁ କିଛି ।
ସପତଶାଳା ରେଖା ଭେଦ ଯେ ଜାଣିଲେ ବ୍ରହ୍ମବିତ୍ତି ।୫୩୪।
ନାଗନାଡ଼ି ଚକ୍ରେ ସେ ହୋଇଲା ବଳମାନ ।
ଯେଡ଼ିକ ସେ ଶୁଭ ରାଜା ବିଭା ସେହିଦିନ । ୫୩୫ ।
ଭରଥ ଲକ୍ଷ୍ମଣ ଶତ୍ରୁଘ୍ନ କ୍ଷମେ ଯେ ଆସଇ ।
ଅଶ୍ଳେଷା କର୍କଡ଼ା ବୋଲି ଯେହାକୁ ଭାଷଇ । ୫୩୬ ।
ମାଳୁଣୀ କନ୍ୟାର ସେ ଅଟଇ ବିଛା ରାଶି ।
ଦୁହେ ବ୍ରହ୍ମା ଅସୁର ଯେଣେ ବିଭା ଆସି । ୫୩୭ ।
ଉର୍ମିଳାର ରେବତୀ ମୀନ ସେ ଜାତିରେ ଦେବତା ।
ଲକ୍ଷ୍ମଣର ଯେଡ଼ିକ ଯେ ହୋଇବେ ବନିତା । ୫୩୮ ।
ସୁକୀର୍ତ୍ତିର ଅଶ୍ଳେଷା ଜାତିରେ ଅସୁର ।
ଶତ୍ରୁଘନ ଯେହାକଇ ମିଳାଇକ ବର । ୫୩୯ ।
ଗ୍ଭରି ବରକଇ ଯୋଗାଇଲା ସେଦିନ ।
ବିଗ୍ଭରି କହିଲେ ବଶିଷ୍ଠ ତପୋଧନ । ୫୪୦ ।

Digitized by srujanika@gmail.com

ଢବସ ପହରେ ଶୁକ୍ରଙ୍କର ବେଳ ।
ମିଥୁନ ଲଗ୍ନ ଯେ ବରଣ ଅନୁକୂଳ । ୫୪୧ ।
କାଲି ନବମୀ ଯେ ହୋଇବ ଶୁକ୍ରବାର ।
ବୁଧର ବେଳ ପହରକ ଭିତର । ୫୪୨ ।
ମିଥୁନ ଲଗ୍ନ ବେଳ ହୀତ୍ୟାଂକୁ ଦେଖୁଣି ।
ସଭାଜନେ ସନ୍ତୋଷ ହୋଇଲେ ତାହା ଶୁଣି । ୫୪୩ ।
ସେଥୁ ଅନନ୍ତରେ ଯେ ମଉଳଇ ଆସ୍ଥାନ ।
ଯେ ଯାହା ନବରକୁ ଚଳିଲେ ରାଜାମାନ । ୫୪୪ ।
ବିବିଧ ନିହେଣ ବାଜଇ ଘାରତୂର ।
ଲୋକ ଗହଗହ ଯେ ଗହଳ ଅପାର । ୫୪୫ ।
ଜନପୁରେ ଜନେକ ଯେ ପ୍ରବେଶ ହୋଇଲା ।
ସତ୍ୟାନନ୍ଦଙ୍କଇ ଯେ ରାଇଣ ବୋଇଲା । ୫୪୬ ।
ନଗ୍ର ମଣ୍ଡଣି ଯେ କରହୋ ଉଚ୍ଛବ ।
ବିଭାର ବିଧାନ ତୁ କର ହୋ ସମ୍ଭବ । ୫୪୭ ।
ଶୁଣି ପୁରୋହିତ ଯେ କଲାକ ସବିଧି ।
ବିଭାଚ ବିଧାନ ଯେ ସକଳ ସମୃଦ୍ଧି । ୫୪୮ ।
ସେଥୁ ଅନନ୍ତରେ ଗୋ ଶୁଣିମା ଶାକେଶ୍ୱରୀ ।
ଯାହା ସେ ଶୁଣିଲେ ଦୂତେ ଛଏ କର । ୫୪୯ ।
ଭୃଥର ମହଲା ଯେ ଯୋଦ୍ଧାଂକୁର ଘାର ।
କମ୍ବେକମ୍ବା ରାଜାର ସେ ଅଟଇ କୁମର । ୫୫୦ ।
ସେ ଆସି ମିଥିଲାରେ ପରବେଶ ହୋଇ ।
ହସ୍ତୀ ରଥ ଗଜ ସନ୍ୟ ବହୁତ ଅଛଇ । ୫୫୧ ।
ଦଶରଥଙ୍କୁ ଦେଖି କରଇ ନମସ୍କାର ।
କର ଯୋଡ଼ିଣ ଯେ ହୁଣ୍ଡି ହୋଇଂ ବୀର । ୫୫୨ ।
ରାଜା ପଚ୍ଛରଇ ଥିଲୁ ତୁହୋ କାହିଂ ।
ଯୁଧାଜିର କହଇ ଶୁଣ ନରସାଇଂ । ୫୫୩ ।
ମୋହୋର ପିତାଏ ଦେବ ଚତୁର୍ଥ କାଳ ହୋଏ ।
ଭରଥଙ୍କ ଦେଖିତେ ଶରଧା କରଇ ରାଏ । ୫୫୪ ।
ମୋତେ ବୋଇଲା ତୁ ଘେନିଆସ ଯାଇ ।
ଦୋହିତାର ନନ୍ଦନଙ୍କୁ ନୟନେ ଦେଖଇ । ୫୫୫ ।
ପିତାର ଆଗ୍ୟାଂରେ ମୁଂ ଅଇଲଇ ଖରେ ।
ସାତଦିନେ ପ୍ରବେଶ ଅଯୁଧ୍ୟା ନଗରେ । ୫୫୬ ।

Digitized by srujanika@gmail.com

ଜାବାଲିଙ୍କୁ ଦେଖି ଯେ ପଚାରିଲି ଯତ୍ନଂ ।
ସେ ସର୍ବ ବିଧାନ କହିଲେ ମୋତେ ତତ୍ତ୍ୱଂ । ୫୫୭ ।
ଶ୍ରେ ଦେବ ମିଥିଳାକୁ ଅହିଲି ତତ୍ତ୍ୱଂ ମୁହିଂ ।
ପିତାର ଆଗ୍ୟାଂ ମୋତେ ଭୃଥକୁ ନେମ ପାଇଂ । ୫୫୮ ।
ଶୁଣି ଦଶରଥ ଯେ ଗଉରେବ କଲ ।
ସେଥୁ ତାଲେ ଦିନ ଯାଆସି ବୋଇଲ । ୫୫୯ ।
ମାର୍ଜଣା ମୁଣୋହିଂ ସେ ସାଉଣ ନୃର୍ପତି ।
ଦିନକଂର ନାଥ ଯେ ମେରୁ ଉହାଡ଼େ ଗମନ୍ତ୍ର । ୫୬୦ ।
ରଜନୀ ପରବେଶ ଯେ ହୋଇଲାକ ଆସି ।
ପାତ୍ରମନ୍ତ୍ରୀ ଘେନି ଯେ ଦଶରଥ ଗୃହେ ବସି । ୫୬୧ ।
ଆନନ୍ଦହୋଇ ଯେ କହଇ ନୃର୍ପବର ।
କାଲି ଦେଖୁଣି ଯେ ପହରକ ଭିତର ୫୬୨ ।
ଏବେ ମନ ମୋର ହୋଇବାକ ସୁସ୍ଥ ।
ଗୋତ୍ର ଧବଳିଲ ମୋର ଜନକ ତପୋବନ୍ତ । ୫୬୩ ।
ଏଣେ ସେ ପୁତ୍ର ମୋର ପବିତ୍ର ହୋଇବେ ।
ଜନକର ଜୁଆଇଂ ବୋଲଣ ବୋଲାଇବେ । ୫୬୪ ।
ବଶିଷ୍ଠେ ବୋଲନ୍ତ୍ର ତୁମ୍ଭେ ଶୁଣ ନୃପବର ।
ରବିତଳେ କୀରତି ରହିଲା ତୋହର । ୫୬୫ ।
ଯାହାର ଶ୍ରୀରାମ ଅଛନ୍ତ୍ର ତନଯେ ।
ତିନି ଭୁବନେ କି ଅଛଇ ତାହାର ଭୟେ । ୫୬୬ ।
ଜନେକ ସେ ପୁଣ୍ୟେଋଷି ସତ୍ୟବାଦୀ ।
ତାହାର ଭାଗ୍ୟ ଯେ ଯଇଲୋକ୍ୟେ ପ୍ରସିଦ୍ଧି । ୫୬୭ ।
ସୁତାପୁତ୍ରଙ୍କୁ ତୋର ସୁଶ ଦିଅ ଦେବ ।
କନ୍ୟାଦାନ ଫଳେ ସେ ସ୍ୱର୍ଗରେ ବସିବ । ୫୬୮ ।
ଘଲେଣି ଭଲନ୍ତେ ଅର୍ଦ୍ଧ ହୋଇଲାକ ରାତି ।
ବଶିଷ୍ଠଙ୍କୁ ଗୃହଂ ଦେଲଇ ନୃପତି । ୫୬୯ ।
ବହୁତ ରଜନୀ ଯେ ହୋଇଲାକ ଆସି ।
ନିଜ ନଗରକୁ ଗଲେ ମହାଋଷି । ୫୭୦ ।
ଶୁଣି ପାତ୍ରମନ୍ତ୍ରୀ ଅମାତ୍ୟଗଣ ଯାନ୍ତ୍ର ।
ନୃପତି ଯାଇଂଣ ବଡ଼ଶେଯରେ ପହୁଡ଼ନ୍ତ୍ର । ୫୭୧ ।
ସୁତପୁତ୍ରଙ୍କୁ ତୋ ନାସ୍ତ ସର୍ବେ ଚଳଯାନ୍ତ୍ର ।
ନୃପତି ଯାଇଂ ନିଜ ଶେଜ୍ୟାରେ ପହୁଡ଼ନ୍ତ୍ର । ୫୭୨ ।

Digitized by srujanika@gmail.com

ଯେଣୁ ଅନନ୍ତରେ ରଜନୀ ପରଖିତେ ।
ଶୀତଳ ଚେନଣ ଯେ ବହଇ ମରୁତେ । ୫୭୩ ।
ଶେଜ୍ୟା ତ୍ୟଜିଣ ଯେ ଉଠିଲେ ନୃପବର ।
ସାରନ୍ତ ନିତ୍ୟକର୍ମ ଯେ ବିଧି ବେଭାର । ୫୭୪ ।
ଯେସନେକ ସମୟେ ଯେ ଜନେକ ଦୂତ ଆସି ।
ସଭାରେ ବିଜେ କରିବ ବୋଲି ଭାଷି । ୫୭୫ ।
ଶୁଣି ଦଶରଥ ଦେବାର୍ଚ୍ଚନ ସାରି ।
ହସ୍ତି ପିଠିରେ ଆରୋହି ଆସଇ ଦଣ୍ଡଧାରୀ । ୫୭୬ ।
ଶିରରେ ଧୀରଛତ୍ର ଉଡ଼ଇ ଫରହର ।
ଚତୁରଙ୍ଗ ବଳ ଯେ ସହିତେ ନୃପବର । ୫୭୭ ।
ଅଶ୍ୱରୁ ଉତୁରି ଯେ ଆସ୍ଥାନେ ପ୍ରବେଶ ।
ଜନେକ ପଦେ ଲମ୍ବଇ ଅଜ ନୃପଶିଷ । ୫୭୮ ।
ବଶିଷ୍ଠ ବିଶ୍ୱାମିତ୍ର ଯେତେକ ଋଷିମାନେ ।
ତାହାଙ୍କୁ ନମସ୍କାର କରଇ ରାଜନେ । ୫୭୯ ।
କଲ୍ୟାଣ କରନ୍ତି ସମସ୍ତ ମହାସନ୍ତ ।
ଗଉରୋବ ପାଇ ବସିଲା ନୃପନ୍ଥ । ୫୮୦ ।
ବଶିଷ୍ଠେ ବୋଇଲେ ଜନେକ ଋଷି ଶୁଣ ।
ସଜ କରାଇଂଣ ତୁ ସୀତାଙ୍କୁ ଆଣ । ୫୮୧ ।
ବୃଧର ବେଳ ଯେ ହୋଇଲାକ ଆସି ।
ଗୁରୁଙ୍କର ଦୁଇଘଡ଼ି ଥିଲା ଯେବେ ବାସି । ୫୮୨ ।
ଗୁରୁଙ୍କର ବାର ଯେ ଆବର ଗୃଶଦଣ୍ଡ ।
ଉଦୟେ ହୋଇଂ ଭୋଗ କଲାତ ମାରତଣ୍ଡ । ୫୮୩ ।
ଯେବେ ଛନଘଡ଼ି ରାତ୍ର ପରବେଶ ହୋଇଲାକ ଆସି ।
ସଜକରି ଆଣ ତୁ ସୀତାସ୍ୱା ଗୃରୁକେଶୀ । ୫୮୪ ।
ଶୁଣି ଜନେକ ଯେ କୃଶଧ୍ୱଜକୁ ରାଇ ।
ସୀତାଙ୍କୁ ବେଗେ ଆଣ ଅଗ୍ୟାଂଦେଇ । ୫୮୫ ।
ଉର୍ମିଳା ସହିତେ ତୋହୋର ଝିଅ ବେନି ।
ସଜ କରାଇଂ ତୁ ଆସ ବେଗେ ଘେନି । ୫୮୬ ।
ଆଗ୍ୟାଂ ପାଇଂଣ ଯେ କୁଶଧ୍ୱଜ ଯାଇଂ ।
ମୃଦୁସ୍ୱରେ ଆଗେ ଯେ ଭିତରକୁ କହିଂ । ୫୮୭ ।
ତୁ ଯାଇଂ କଣାଅ ବେଗେ ଜନେକଂଘ ରାଣୀ ।
ସୀତାଙ୍କୁ ସଜକରି ହିଅ ମୋତେ ଆଣି । ୫୮୮ ।

Digitized by srujanika@gmail.com

ତକ୍ଷଣେ ମୃଦୁସ୍ୱଳ କହିଲେ ଯାଇଂ ।
ସୀତାଙ୍କୁ ସଜକର ଦିଅ ବେଗ ହୋଇଂ । ୫୮୯ ।
ରାଜାର ଅଜ୍ଞାରେ ନେଵ କୁଶଧ୍ୱଜ ।
ଅନୁକୂଳ ହୋଇଲ୍ଲ ବେଗେ କର ସଜ । ୫୯୦ ।
ଶୁଣି ଜନକ ରାଜାର ରାଣୀମାନେ ।
ମୃଦୁସ୍ୱନ୍ମି ବଚନେ ହୁଅନ୍ତ ହରଷ ମନେ । ୫୯୧ ।
ସୁବର୍ଣ୍ଣ ପୀଢାରେ ନେଇ ବସାଇଲେ ସୀତା ।
ବେଢିଣ ଅଛନ୍ତ ଯେ ସକଳ ବନତା । ୫୯୨ ।
ସର୍ବତୀର୍ଥ ଜଳମ୍ୱାନନ୍ତ ଯଜକର ।
ରତ୍ନ ଗରଆରେ ତାହା ନେଇଂ ଭର । ୫୯୩ ।
ଶତେକ ଘଟ ସେ ବସାଇଲେ ନେଇଂ ।
ସୀତସ୍ୱାର ଅଙ୍ଗେ ଯେ ସୁଗନ୍ଧ ତଇଲ ଲେପଦେଇ ।୫୯୪।
ଶରୀରେ ମୂଳପାଚ ନଡ଼ପ ଲଗାନ୍ତ ।
ଢଲ ଅଏଂଳା ଘେନ ଘଟାନ୍ତ ଛଡ଼ାବନ୍ତ । ୫୯୫ ।
ନବରାଂସ୍ନି ଅସ୍ୱେଳା କସ୍ତୁରି ମିଶାଇ ।
ସୀତସ୍ୱାର କେଶେ ଲଗାଇଲେ ତାହା ନେଇ । ୫୯୬ ।
ଅନେକ ଘଣ୍ଟୀ ଘେନ ତଇଲମାନ ଲେପି ।
ସବୁ ହିଁନିବାସ ଘେନ ଶ୍ରୀଅଙ୍ଗେ ଯେ ପେଛୁ । ୫୯୭ ।
ମହା ସୁଗନ୍ଧ ଯେ ଲେପିଲେ ପୁଣ ନେଇଂ ।
ଅଷ୍ଟାଙ୍ଗଶରୀରେ ଯାକରେ ଲଗାଇ । ୫୯୮ ।
ତ୍ରିଥ ଜଳ ଘେନ ପଖାଳିଲେ କେଶ ।
ମଥା ପୋଛନ୍ତ ଯେ ଘେନଣ ହିଁନବାସ । ୫୯୯ ।
ସୁରଙ୍ଗ ହଳଦୀରେ ଟଭାରସ ଭର ।
ପୁଣିହିଂ ସୀତସ୍ୱାର ଶ୍ରୀଅଙ୍ଗେ ନେଇ ବୋଳ । ୬୦୦ ।
ସୁବାସ ପାଣି ଘେନ ପଖାଳିଲେ କାୟେ ।
ବସ୍ତ୍ର ଘେନ ଅଙ୍ଗ ପୋଛିଲେ ସର୍ବମାୟେ । ୬୦୧ ।
ସୁଧ ସୁବର୍ଣ୍ଣ କରଣ ରଧାଣିଲି ଜାଣି ।
ତାହାକୁ ଶତେଗୁଣ ଶୋଭା ଦିଶଇ ଜନେକ ଦୁଲଣୀ ।୬୦୨।
କେଶ ଶୁଖାଇଲେ ବାଷ୍ପଣି ଘେନ ବସ୍ତ୍ର ।
ଗୃଚର ଚକୋର ଦିଶଇ ମହାସନ୍ତ । ୬୦୩ ।
କୃଷ୍ଣ ଗ୍ଭମରୁ ସେ ଦିଶଇ ମହାକଳା ।
ସୁଘଞ୍ଚ କବେଶ ଦିଶି ଭ୍ରମରର ମାଳା । ୬୦୪ ।

Digitized by srujanika@gmail.com

ମୟୂର କଣ୍ଠ ଜାଣି ଝଟଝଟ ଦିଶି ।
କ ଅବା ଗୁଞ୍ଜର ମୁଣ୍ଡେ ଅଛୁ ଖୋସି । ୬୦୫ ।
ଶିଖ ପରଯନ୍ତେ କସ୍ତୁରୀ ଭାବ ନାହିଂ ।
ବସିଲେଣ କେଶ ଲାଗଇ ଯାଇଂ ଭୂମି । ୬୦୬ ।
ଶରଧରେ ବାଳୀ ଦଅଇ କେଶ ଫେଇ ।
ସୁବର୍ଣ୍ଣ କାଠି ଚିରଣି ଘେନ କେଶ ବରୋଲଇ । ୬୦୭ ।
ଭିତରୁ ଓଦା ଗୁଣ୍ଡିଲା ଯହୁଂ କେଶ ।
ଗୁମ୍ଫୁରେ କଲେ ଆଣି ବିବିଧ ନାନା ପୁଷ୍ପ । ୬୦୮ ।
ନାନା ପୁଷ୍ପେ କେଶ ସାଙ୍ଖୋଇକରି ବାଳି ।
ଚମ୍ପା ବକୁଳ ଯେ ସେବତି ନେଇଂ ଭରି । ୬୦୯ ।
ଗୋଟା ନାଗେଶ୍ୱର ଯେ ମରୁଆ କୁରୁବୋଲି ।
ଥୋକାଯ୍କେ ତହିଂ ଯେ ମିଶିଲେ ବସନ୍ତ ମଲ୍ଲୀ ।୬୧୦।
କୁସୁମ ଘେନଲେ ଯେ ସମଭାଗ କରି ।
ଉପରେ ମାଖିଲେ କର୍ପୂର କସ୍ତୁରୀ । ୬୧୧ ।
ସୀତାଙ୍କର କେଶ ଯେ ବରୋଲକରି ଖୋସି ।
ତାରାଗଣ ମଧ୍ୟେ ଉଦୟେ ଯେହ୍ନେ ଶଶୀ । ୬୧୨ ।
ଖୋସା ଖୋସିଲେ ଯେ ଅତିଯତ୍ନ କରି ।
ଉପରେ କେତକୀ ପାଖୁଡ଼ାନ୍ତ ଭରି । ୬୧୩ ।
ପଛକୁ ଓହ୍ଲାଡ଼ ଖୋସା ବସିଲାକ ଯହୁଂ ।
ସୁନ୍ଦର ମୁଖ ଗୋଟି ଶୋଭା ପାଏ ତହୁଂ । ୬୧୪ ।
ବେଲ ବଲଲ ପ୍ରାୟେ ଦିଶିଲା ବଳଣ ।
ସ୍ୱୟଂ ବିଶ୍ୱକର୍ମା ଗଢ଼ି କଲାକ ନିର୍ମାଣ । ୬୧୫ ।
କ ଅବା ଚିତ୍ରକାର ଚିତ୍ରକରି ଲେଖିଲା ।
ସେଂ ଷିଲା ଖୋସା ଯେ ସୀତ୍ୟାଙ୍କୁ ସାଜିଲା । ୬୧୬ ।
ଖୋପାର ଲମ୍ଭ ଯେ ଭ୍ରମର ଛନ୍ଦେ ବୁଲଇ ।
ତହିଂ ଖଂଜିଲେ ନେଇ ଯେ ଫଟିଲା ପଦ୍ମ ଫୁଲଇ ।୬ ୭।
ଦଦ୍ୟ େ ଶନ କରି ଆଣିଲେ ବଗ୍ଗୁର ।
ନେତର ନ୍ଦଣି ଯେ ପତନୀ ପଡ଼ ସାର । ୬୧୮ ।
ତାରା ମଣ୍ଡେ ଲ କଣି କସୁମ ପନ୍ତ ପନ୍ତ ।
ପ ଟରେ ଅଞ୍ଚଲେ ଖଂଜିଲା ଗନ ମେଢ । ୬୧୯ ।
ଯେ ବସ୍ତ୍ର ଉଞ୍ଚୁଲଣ ଯେ ପିନ୍ଧାଇଲେ ନେଇ ।
ରତ୍ନ ପୀଢ଼ରୁ ଦେବୀ ଅଇଲେ ଓହ୍ଲାଇ । ୬୨୦ ।

Digitized by srujanika@gmail.com

ପାଟ ଖରଡ଼ ଉପରେ ଦେବୀ ବସି ।
କେବଣ ଜନନୀ ଯେ ଆସ୍ତେ ଘେନ ଆସି । ୬୨୧ ।
କର୍ଣ୍ଣରେ ଖଂଜିଲେ ଯେ ମୁକୁତାର କାପ ।
ସ୍ୱାମୀର ବଦନ କି ଆଦିତ୍ୟର ଧାପ । ୬୨୨ ।
କେବଣ ଠାବରେ ଯେ ସ୍ୱାମୀର ନାୟେକ ।
କାହିଂ ବସଇ ଯେ ପଦ୍ମରାଗ ମାଣିକ । ୬୨୩ ।
କାହିଂ ପୁଷ୍ପରାଗ କାହିଂ କୁରୁବିନ୍ଦ ।
ଚନ୍ଦ୍ରକାପ ଘଟଣ ଫୁଟିଲ୍ଲ ଅରବିନ୍ଦ । ୬୨୪ ।
ଶବଣ ଶିଖରେ ଯେ ଖଂଜିଲେ ବେଣ୍ଟୁଲ୍ଲ ।
ସରୁ ମୋଟ ଭଲ ତହିଂକ ଘଟିଲ । ୬୨୫ ।
ଉପରେ ନୀଳମଣି ନାଏକ ବସଇ ।
ଶରଦ ମଲ୍ଲୀକ ଲୋଭେ ଭ୍ରମର ଆସଇ । ୬୨୬ ।
ସୀତ୍ୟାର କର୍ଣ୍ଣେ ଯେ କାପ ଶୋଭି ପାନ୍ତ ।
ପୂର୍ବେ କେବଣ ଯେ ତପ କରଣ ଅନ୍ଥନ୍ତ । ୬୨୭ ।
ସୁଘାଘ ନାସିକାରେ ବହଣି ନେଇ ଲଗଇ ।
ପଞ୍ଚ-ଗଜ ମୁକୁତା ତହିଂ ଖଂଜିଲ୍ଲ ଅଛଇ । ୬୨୮ ।
କାର୍ତ୍ତିକ ପୁଂଜା ଯେହ୍ନେ ନୀଳ ମେଘେ ଦିଶେ ।
ସୀତ୍ୟାର ନାସାସ୍ତେ ମଣିରତ୍ନ ତେସନ ଅଭ୍ୟାସେ । ୬୨୯ ।
କଣ୍ଠହାର ତାର ସପତସର ମୋଢ ।
ମାଣିକ୍ୟ ନାୟେକ ଯେ ଅରୁଣ କାଣି ଜୋଡ । ୬୩୦ ।
ତହିଂର ତଳେ ଯେ ଦୋହର ସୁନାସୂତା ।
ମଧରେ ଅଛି ଯେ ଏକଇ ମୁକୁତା । ୬୩୧ ।
ଶୁକ୍ର ଦେବତାର କାରଣ ତାହାର ।
ତହିଂର ପାଶେ ଯେ ନୀଳମଣି ହାର । ୬୩୨ ।
ଚଉଂସରି ମାଳା ମାଣିକ୍ୟ ମୁକୁତା ।
ଯତନ କରିଣ କି ଛିଡ଼ି ସ୍ତୁ ବାଧାତା । ୬୩୩ ।
ଯେକ ଗୋଟି ମୁକୁତା କପୋଳର ମାଳ ।
ଶୋଭା ପାଇଲ୍ଲ ଯେ ଦେବୀର ବକ୍ଷସ୍ଥଳ । ୬୩୪ ।
ରତ୍ନପଦ୍ମେକ ଯେ ଶୋଭାରେ ଭୂଷଣ ।
ଶରଦ ଆଦିତ୍ୟ ହୋଇବ ଦୂଷଣ । ୬୩୫ ।
ବାହେଣ ତାଡ଼ ଯେ ସ୍ୱାମୀର ଫେର କଡ ।
ମଧେଣ ଅଛଇ ଯେ ତାହାର ଗଜମୋଢ । ୬୩୬ ।

Digitized by srujanika@gmail.com

ବେନି ଭୁଜ ମୂଳରେ ରତ୍ନ ବଦମାଳୀ ।
ରଙ୍ଗ ପାଟେଣ ଯେ ଗୁନ୍ଥିଲେ ନେଇ ବାଳୀ । ୬୩୭ ।
କରେଣ କଙ୍କଣ ସୁବର୍ଣ୍ଣ ଶିଙ୍କୁଳୀ ।
ରତ୍ନ ବେନି ଚୂଡ଼ି ବଜୁଳି ଜାଣି ଝଳ । ୬୩୮ ।
ଅଙ୍ଗୁଷ୍ଠିର ମୁଦ୍ର ଗୁଣ ଭିନ୍ନ ଭିନ୍ନ ।
କାହ୍ନଂରେ ତୀରକ କାହ୍ନଂ ମଚ୍ଛ ଚହ୍ନ । ୬୩୯ ।
କଟିରେ କଟିମେଖଳା ଖଂଜିଲେ ଯତ୍ନକର ।
ବସିଲ୍ଲ କାହାର ଯେ କଣ୍ଠକୁ ଆବୋର । ୬୪୦ ।
ଗଜମୋତିମାନେ ଝଳକନ୍ତି ନିରନ୍ତର ।
କ ଜାଣି ପର୍ଣ୍ଣ ଶଶୀ ନୁହଇ ପଟାନ୍ତର । ୬୪୧ ।
ପଦ୍ମରେ ନୂପୁର ରତ୍ନମଏ କମ ।
ଚଳନ୍ତେ ଶବଦ ଯେ କରଇ ଝମଝମ । ୬୪୨ ।
ପାଦରେ ମୁଦ୍ରିକା ଅଙ୍ଗୁଷ୍ଠିରେ ଝଳକନ୍ତି ।
ବିବିଧ ମଣିମାନେ ତହ୍ନଂ ଲଗିଛନ୍ତି । ୬୪୩ ।
ଆବର ଅନେକ ବିବିଧ ହାର ଲଇ ।
ମାତାଙ୍କ ସନଧେ ବିଜଏ ସୁନ୍ଦମୁହ୍ନଂ । ୬୪୪ ।
ଶିରେ ସିମନ୍ତମୀ ଯେ ଖଞ୍ଜିଲେ ମୋତିମାଳୀ ।
ତହ୍ନଂର ତଳେ ତିଳକ ଲଲାଟେ ଅଛୁ ଲୁଳି । ୬୪୫ ।
ତାମ୍ବୁଳ ଭୁଞ୍ଜାଇଣ ରଞ୍ଜିଲେ କଜ୍ଜ୍ୱଳ ।
ସ୍ୱଭାବେ ନୟନ ତାର ନଳ ଯେ ଉତ୍ପଳ । ୬୪୬ ।
କଜ୍ଜ୍ୱଳ ଦିଅନ୍ତେ ଦେଖି ଦିଶିଲ୍ଲ ସୁନ୍ଦର ।
କୁସୁମ ଆବୋର କି ରହିଲ୍ଲ ଭମର । ୬୪୭ ।
ଅଞ୍ଜନ ରଞ୍ଜିଲେ ଅତି ସରୁକରି ।
ଚକ୍ଷୁରେ ଲଗନ୍ତେ ସେ ହୋଇଲ୍ଲ ବିସ୍ତାରି । ୬୪୮ ।
ଦେଖି ମନେ ମନେ ଭାଳନ୍ତି ନାରୀଗଣ ।
ମଦନ ରାଏକି ସନ୍ଧିଲ୍ଲ ତୀକ୍ଷଣ ବାଣ । ୬୪୯ ।
ସରୁ କଜ୍ଜ୍ୱଳ ଯହ୍ନଂ ବ୍ୟାପିଲ୍ଲ ଆଖି ।
ସ୍ୱାମୀର ସହଭାଗୀ ହୋଇବ ଶଶିମୁଖୀ । ୬୫୦ ।
ଏତେବୋଲି କପୋଳେ ଚନ୍ଦନ ବୋଳନ୍ତି ।
ହିଙ୍ଗୁଳ ନେଇ କସ୍ତୁରୀ ଚିତା ଦ୍ୟନ୍ତି । ୬୫୧ ।
ସିନ୍ଦୂର ଚିତା ଯେ ତହ୍ନଂ ମଧେରେ ଶୋହେ ।
କ ଜାଣି ଅରୁଣେ ଚନ୍ଦ୍ରମା ପାଶେ ରହେ । ୬୫୨ ।

Digitized by srujanika@gmail.com

ଅଳତା ରଙ୍ଗେଣ ଯେ ଚରଣ ଚଡ୍ରକଲେ ।
କର୍ପୂର କସ୍ତୁରୀ ମିଶାଇ ଘଷିଲେ । ୬୫୩ ।
ଅଳକା ମଣ୍ଡିଲେ ଯେ ଶ୍ରୀକରେ କେଶ କେଶ ।
ବିକଚ କମଳ କି ଭ୍ରମର ଆବୋର । ୬୫୪ ।
ବଚନ ପାଟେକ ତାହଂ ଉପଗଣ ଭଲେ ।
ଶ୍ରୀଫଳ ଗୋଟାଏ ତାହାଙ୍କ ହସ୍ତରେ ସମର୍ପିଲେ ।୬୫୫।
କୋଳକର ଆସି ଯେ କୃଶଧ୍ୱଜ ଘେନଗଲ୍ଲ ।
ଆଦ୍ରାନ ତଳେ ନେଇଂ ଜନେକ କୋଳେ ଦେଲ୍ଲ ।୬୫୬।
ଦେଖି ଚମତ୍କାର ନାଗିଲ୍ଲ ସବୃନ୍ଦ ।
ଚନ୍ଦ୍ର କି ଖସିଆସି ପଡ଼ିଲ୍ଲକ ପୃଥୀ । ୬୫୭ ।
କେ ବୋଲଇ ଧନ୍ୟ ସ୍ୱେ ଯୁବତୀ ଶିରୋମଣି ।
କେ ବୋଲଇ ସକଳ ଅଟଇ ରୂପଖଣି । ୬୫୮ ।
କେ ବୋଲଇ ଧାତା ସକଳ ଚନ୍ଦ୍ରା ଗୁଡ଼ି ।
ଅନେକ ଯତନେ ଅଛଇ ହାଦେ ସ୍ୱେହା ଗଢ଼ି ।୬୫୯ ।
କେ ବୋଲଇ ସୃଷ୍ଟିରେ ଯେତେକ ଗୁଣ ଥିଲ୍ଲ ।
କ୍ଷଳଣ ପିଡ ମଦ୍ଧ ସ୍ୱେକ ସ୍ଥାନ କଲ୍ଲ । ୬୬୦ ।
କେ ବୋଲଇ ସ୍ୱେ ଯେ ଅଟଇ ଗୁଣନିଧି ।
ସ୍ୱେହାର ତାହଂସିନା ଅଟଇ ଅଷ୍ଟନିଧି । ୬୬୧ ।
କେ ବୋଲଇ ଆହୋ ସ୍ୱେ କେବଣ ଯୁବତୀ ।
ଶାପେ୍ୟ ଅବତାର ହୋଇଅଛୁ ପୃଥୀ । ୬୬୨ ।
କେ ବୋଲଇ ସ୍ୱସ୍ୱେଂ ଅଟଇ କମଳିଣୀ ।
କେ ବୋଲଇ ନିଶ୍ଚେ ଇନ୍ଦ୍ରର ଘରଣୀ । ୬୬୩ ।
କେ ବୋଲଇ ବ୍ରହ୍ମାର ସାବିତ୍ରୀ ଅବା ସ୍ୱେହୁ ।
କେ ବୋଲଇ ପାର୍ବତୀ ବୋଲିଇବ ସ୍ୱେହୁ । ୬୬୪ ।
ସେ ଅବା ମର୍ତ୍ତ୍ୟେ ଆସି ହୋଇଲ୍ଲ ଅବତାର ।
କେ ବୋଲଇ ରତି ସ୍ୱେହୁ ରମଣୀ କନ୍ଦର୍ପର । ୬୬୫ ।
କେ ବୋଲଇ ସ୍ୱସ୍ୱେଂ କନ୍ଦର୍ପ ଘରଣୀ ।
କେ ବୋଲଇ ଗ୍ରସ୍ୱା ସ୍ୱେହାର ସପତଣୀ । ୬୬୬ ।
କେ ବୋଲଇ ସ୍ୱାହା ଅବା ଅଗ୍ନିର ଯୁବତୀ ।
କେ ବୋଲଇ ତାରା ସ୍ୱେ ବୃହସ୍ପତିଙ୍କ ପ୍ରୀତି । ୬୬୭ ।
କେ ବୋଲଇ ଗଙ୍ଗା ସ୍ୱେ ବରୁଣର ରାଣୀ ।
କେ ବୋଲଇ ଯମୁନା ସ୍ୱେ ଯମର ଭଉଣୀ । ୬୬୮ ।

Digitized by srujanika@gmail.com

କେ ବୋଲଇ ସାବତ୍ରୀ ଯେ ବ୍ରହ୍ମାର ବନିତା ।
କେ ବୋଲଇ ସରସ୍ୱତୀ ଧାତାର ଦୁହିତା ୬୬୯ ।
କେ ବୋଲଇ ଅବା ଅଷ୍ଟ ଅପଛରୀ ।
ବନ୍ଧ ନିର୍ମାଣିଲ ଯେ କ ଦେବଜନ । ୬୭୦ ।
କେ ବୋଲଇ ଆହେ। ନ ଦେଖା ପଟ୍ଟାନ୍ତର ।
ଯେହାକ ହେନାହିଁ ତ ଭୁବନ ଭିତର । ୬୭୧ ।
କେ ବୋଲଇ ଅହୋ ହୋଇଲ କ ବାଇ ।
ଯେହାକ ମମକ ବ୍ରହ୍ମାଣ୍ଡେ ଅଛଇ । ୬୭୨ ।
ସ୍ୱୟେଂ ପରମ ଲକ୍ଷ୍ମୀ ଜଗତର ମାତା ।
ଯେହାଙ୍କର ତହିଂ ଜାତ ସକଳ ଦେବତା । ୬୭୩ ।
ତାହାଙ୍କର ନାଶ୍ୱ ଯେହାଙ୍କ ସମ ହୋନ୍ତ ।
ଯେ ସେ ପରମ ଲକ୍ଷ୍ମୀ ସୁନେତ୍ରା ରଘୁକାନ୍ତ । ୬୭୪ ।
କେ ବୋଲଇ ଆମ୍ଭର ଯେ ବେନି ଚକ୍ଷୁ ।
ଅନେକ ନାଶ୍ୱ ସୋରୂପ ଆମ୍ଭେ ଦେଖିଅଛୁ । ୬୭୫ ।
ସୀତ୍ୟାର ସହସେକ ଗୁଣେ ଯେକା ଗୁଣ ।
କେବଣ ରୂପବନ୍ତୀ ନ ବହନ୍ତ ଏ ଲକ୍ଷଣ । ୬୭୬ ।
କେ ବୋଲଇ ଦେହ ସୁବର୍ଣ୍ଣ କାନ୍ତ ଦିଶଇ ।
କୁଙ୍କୁମ ଘଷିବାରେ ଅଧିକ ଦିଶଇ । ୬୭୭ ।
ଛଣପଟ୍ଟ ଫୁଲ ଗୁଡ଼ାଯେ ଯେସନେ ବହ୍ନିକ ।
ଶିରୀଷ-କୁସୁମକୁ କୋମଳ ଭାବ ଭୁଜ । ୬୭୮ ।
କେ ବୋଲଇ ଯୋଡଶ ବୃଷ୍ଟ ପ୍ରାୟେ ଦିଶନ୍ତ ।
କେ ବୋଲଇ ବିଧାତା ଗଢ଼ିଲା ରୂପବନ୍ତୀ । ୬୭୯ ।
କେ ବୋଲଇ ଭଲା ଭଲାଲ୍ଲ ସୁବର୍ଣ୍ଣ ।
ଯହୁଂ ଦେଖିଲେ ଯେ ସୀତ୍ୟାର ଦେହବର୍ଣ୍ଣ । ୬୮୦ ।
ପଳାଇଂ ପଶିଲା ସେ ଯାଇଣ ବନସ୍ତେ ।
ଲଜେ ଲୁଚଲ ସେ ହେମ ପରବତେ । ୬୮୧ ।
ଜମ୍ବୁନଦୀ ଭିତରେ ଗୁପତେ ଅଛୁ ରହି ।
ତେବେ ସେ ଦେବତାଯେ ସ୍ୱର୍ଗେ ସୃଷ୍ଟେଥାଇ । ୬୮୨ ।
ଆପଣାର ମହିମା ଜାଣେଇଂ ଆପଣ ।
ଧନ୍ୟ ଧନ୍ୟ ସୁବର୍ଣ୍ଣ ତୋହୋର ବଡ଼ପଣ । ୬୮୩ ।
ଯେ ଅବା ତୋହେର ଅଂଶେଣ ଅବତାର ।
ଗର୍ବ କରଣ ସେ ଗୁଡ଼ିଲ୍ଲ ବନଘୋର । ୬୮୪ ।

Digitized by srujanika@gmail.com

ତୋହର ଢଆଁଶବା ବୋଲନ୍ତ ନ କଲେ ।
ଚଞ୍ଚଳ ଜଳ ସଙ୍ଗେ ବହ୍ନିଂତ ଅଇଲେ ୬୮୫ ।
ନଗ୍ର ନିକଟରେ ହୋଇଲା ସନ୍ଧ୍ୟା ଆସି ।
ଦୋହୋଗ୍ର ବଳହ୍ନିଂ ଯେ ବୃଧ ତା ନେଲା ପେଷି । ୬୮୬ ।
ସୀତଯ୍ଶା ରୂପକୁ ଯେ ଅହ୍ନନ୍ତା ଭାବ କଶ ।
ନିଜ ସ୍ଥାନ ଛାଡ଼ି ଯେବଣ ହେମଗିଶ । ୬୮୭ ।
ତାହାକୁ ବେଗେ ତୁମ୍ଭେ ଧଶ ଘେନ ଆସ ।
ଯେମନ୍ତେଣ ପାର ତେମନ୍ତେ କଶ ନାଶ । ୬୮୮ ।
ବ୍ରହ୍ମାର ବଳ ପାଇଂ ଧୋଓଗ୍ର ବଳ ଗଲେ ।
ନଦୀଙ୍କର ଭିତରେ ସେ ପଶିଣ ଲେଉଡ଼ିଲେ । ୬୮୯ ।
ଖୋଜି ପାଇଂଣ ସେ ବାନ୍ଧିଲେ ଯତ୍ନକଶ ।
ବ୍ରହ୍ମା ଢଆଁଶଲା ଭଥାନ୍ତ ମନେଧଶ । ୬୯୦ ।
ନଗ୍ରେଣ ପଶିଣ ଭେଟିଲେ ସୁନାଶ ।
ସୁନା ଦହ୍ନିଂବ ବୋଲି ସହସ୍ର ଅଛୁ ଧଶ । ୬୯୧ ।
ତାହାର ଆଗେଣ ଯେ ଯାଇଂଣ ହମ୍ପୀଢ଼ ।
ବୋଇଲେ ତୋହୋର ଆମ୍ଭେ ଧଶଅଛୁ ବାଧୀ । ୬୯୨ ।
ତୁ କସ ବଧାଇ ଦେବୁନି ଆମ୍ଭନ୍ତ ।
ତେବେ ସେ ବଇଶ୍ୱ ସମର୍ପବୁ ତୋତ । ୬୯୩ ।
ଶୁଣି ହେମବୈଶ୍ୱ ଯେ ବୋଇଲା ଦେଖା ଫେଡ଼ି ।
କେତେମାନ ଶତ୍ରୁ ଚିହ୍ନି ମା ନା ବାଶ । ୬୯୪ ।
ଆସ୍ତେ ଅନରୂପେ ଦେବା ନା ବଧାଇ ।
ସ୍ୱେଚ୍ଛେ ଶସୁ ଯେବେ ଦେବା ନା ସଧାଇଂ । ୬୯୫ ।
ଶୁଣି ଧୋଓଗ୍ରଏ ଫେଡ଼ନ୍ତ ସୁବର୍ଣ୍ଣ ।
ବଣିଆର ହସ୍ତେ ଦେଲେ ନେଇଂ ଧନ । ୬୯୬ ।
କରେ ଧଶ ସୁନାଶ ତୁଳକଷ କଲା ।
ଅଗ୍ନିରେ ପୋଡ଼ି ସେ ବକୋଢ଼ କାଟିଲା । ୬୯୭ ।
ଆଣିଲା ରୂପକୁ ଆନ ରୂପ କଶ ।
ବିବିଧ ପଦାର୍ଥ ସେ ଦେଲାକ ସୁନାଶ । ୬୯୮ ।
ସେ ସୁଖ ହେମକାସ୍ତେ ମିଶାଇଲା କଂସା ।
ବେଦାନ୍ତ ବ୍ରାହ୍ମଣ ଯେହ୍ନେ ଶୁଣ୍ଡି ଘରେ ବସା । ୬୯୯ ।
ତମ୍ବା ମିଶାଇଣ ପୁଣିହ୍ନିଂ ଜାଲ ଦେଲା ।
ସୁରପାନେ ଯେହ୍ନେ ବ୍ରାହ୍ମଣ ନାଶଗଲା । ୭୦୦ ।

Digitized by srujanika@gmail.com

ଚକ୍ଷୁ ଅଙ୍ଗରେ ଯେ ପୋଡ଼ନ୍ତି ତାହା ନେଇଂ ।
ଆବର ଅନେକ ଯେ ବିବିଧ କଷ୍ଟ ଦେଇଂ । ୭୦୧ ।
ସୁଧ ସୁବର୍ଣ୍ଣ ସେ ହୋଇଲା ଖୀରକ୍ଷାର ।
ଷାଠିଯେ ବାନ ପୁନା ବର୍ଣ୍ଣୀଯେ ପଣ ବାର । ୭୦୨ ।
ମଦାଶ ଲୁଣ ଦେଇ ଜାଡ଼ ନାଶକଲେ ।
ସାତକୁମ୍ଭ ବୋଲି ନାମକର ଅବଲେ । ୭୦୩ ।
ସୀତଯା ରୂପକୁ ବହିଲେ ଅହଲ୍ୟା ।
ତେଣୁ ନନ୍ଦ ହାଦେ ବହିଲା ବିଧାତା । ୭୦୪ ।
ଶୁକ ହାଟକ ଜାଣିମା ପଣ କଲା ।
ଦେବତାମାନଙ୍କର ଆଭରଣ ହୋଇଲା । ୭୦୫ ।
କେ ବୋଲଇ ମୁଖ ଶରଦଚନ୍ଦ୍ର କାନ୍ତ ।
କ ଜାଣି ଆକାଶେ କ ଉଇଂଲା ନଶାପତ । ୭୦୬ ।
ଦେଖିଣ ଧିକାର କରନ୍ତି ଦେବତାଗଣ ।
ସୀତ୍ୟା ମୁଖ ଗୃହଂମାକୁ ଉଇଂଲୁ କେସନ । ୭୦୭ ।
ଲଜ୍ୟା ନ ପାଇଲୁ ଯେତେ ଲେକ ହୋଇଂ ।
ଦେଖି କେତେମତେ ଅଛୁ ଆଡ଼ ହୋଇଂ । ୭୦୮ ।
ବଡ଼ପଣ ଯେନ ଉଦଯେ ହୋଇଲୁ ।
ସୀତ୍ୟା ମୁଖ ଗୃହଂ ସକୁଂଚ ନ ପାଇଲୁ । ୭୦୯ ।
ଯେ କଥା ତୋହୋର ନ ଯୋଗାଇ ଶଶୀ ।
ଦୁତୀଯା ଚନ୍ଦ୍ରକୁଂ ସର୍ବ ତୁ ନୋହୁସି । ୭୧୦ ।
ସେ ସେ ମହାତ୍ମା ଯେ ଅଟଇ ସାଧୁଜନ ।
ତାହାଙ୍କୁ ନରେ ଦେଖି ଯେ କରନ୍ତି ଧନ୍ୟ ଧନ୍ୟ । ୭୧୧ ।
ନ ଜାଣି ଉଦଯେ ହୋଇଲା ଶଶୀ ଯହୁଂ ।
ମନେ ମନେ ବିଗ୍ରହ ବୋଇଲାକ ତହୁଂ । ୭୧୨ ।
ବୋଇଲା କପାଂଇ ମୁଂ ଉଦଯେ ହୋଇବି ।
ଯେ ମହୀ ମଣ୍ଡଳେ ମ୍ଭୁଂ ଉପହାସ୍ୟ ପାଇବି । ୭୧୩ ।
ସୀତ୍ୟାର ମୁଖ ଯେ ତିନ ଭୁବନେ ମଣ୍ଡିଇଂ ।
ମହାଘୋର ତମିର ସେ ହେଲେଣ ଖଣ୍ଡିଇ । ୭୧୪ ।
ସେ ଯେବେ ଉଦଯେ ହୋଇଛୁ ରବିତଳେ ।
ମୁହିଂ କଂପା ତୁଣ୍ୟ ହୋଇଂ ପାଇବି ବିଫଳେ । ୭୧୫ ।
ଯେତେ ବୋଲି ଚନ୍ଦ୍ର ଯେ ବାହୁଡ଼ିଣ ଗଲା ।
ବାଟେ ଯାଉଂ ବୁଦ୍ଧଦେବଙ୍କୁ ଦେଖିଲା । ୭୧୬ ।

Digitized by srujanika@gmail.com

ଶିବ ପଚ୍ଚରନ୍ତି କାହିଂଥିଲୁ ଶଶୀ ।
ମୋହୋର ଆଗରେ ତୁ ସୋରୂପ କହସି । ୭୧୭ ।
ଶଶୀକର ବୋଲଇ ତୁମ୍ଭେ ଶୁଣ ଶୂଳ ହର ।
ଆକାଶେ ଉଦୟେ ପ୍ରତାପ ମୋହୋର । ୭୧୮ ।
ଜଗତର ଜମନ୍ତେ ଦେଲଇଂ ସନ୍ତୁଂ ଦେଖା ।
ମଲଣ ଭାବ ମୋର ହଶିଲୁକ ଶାଖା । ୭୧୯ ।
ନଗ୍ରେପି ଗୃହିଂଲ ମୁଂ ମନେ ହେତୁ ଜର ।
ସୀତା ଚନ୍ଦ୍ରମୁଖୀ ଅବନୀରେ ଅବତର । ୭୨୦ ।
ତାହାଙ୍କୁଂ ଦେଖି ମୁଂ ଯେ ପଳାଇଲି ଲାଜେ ।
ଆବର ଉଦୟେ ହୋଇବ କେବଣ କାର୍ଯ୍ୟେ । ୭୨୧ ।
ଶୁଣିଣ ମହାଦେବ ଯେ ପ୍ରସନ ମୁଖ ହୋଇଂ ।
ଚନ୍ଦ୍ରଙ୍କୁ ପ୍ରଶଂସା କରନ୍ତି ଉମାସାଇଂ । ୭୨୨ ।
ଧନ୍ୟ ମହିଂମା ହୋ ଅଛୁ ତୁହୋ ଶଶୀ ।
ଆସ ଆସ ମୋହୋର ଶିରେ ଥାଅ ବସି । ୭୨୩ ।
ଏତେ ବୋଲି ଦେବ ଯେ ଧଇଲେ ଶଶୀକର ।
ନାମ ବୋଲାଇଲେ ହର ଚନ୍ଦ୍ରଶିଖର । ୭୨୪ ।
ସନ୍ତୁଂ ସେ ମହାତ୍ମା ମହତ ପଣକଲ୍ଲ ।
ଭବାନୀପତିର ସେ ମଉଳରେ ବସିଲ୍ଲ । ୭୨୫ ।
ଏହୁ ମହୀମଣ୍ଡଳେ ସେ ପୂଜା ଏବେ ପାଇ ।
ଏତେ ବୋଲିଣ ଯେ ତାହାକୁ ବନ୍ଧାଇ । ୭୨୬ ।
ସୋଳହ ଗୁଣେ ସେ ତାହାଙ୍କୁଂ ଅଟେ ବଡ଼ ।
ସୀତାକୁ ଅହଲ୍ୟା କଲୁ ପ୍ରକୃତ କଲୁ ଗାଢ଼ । ୭୨୭ ।
ଏହୁ ମହୀମଣ୍ଡଳେ ପୂଜା ତୁ ନ ପାଅ ।
ଅସୁରଙ୍କ ହାଥରେ ଗଞ୍ଜି ହୋଉଥାଅ । ୭୨୮ ।
ସମସ୍ତେ ଚନ୍ଦ୍ରମା ବୋଲି ନ କରବେ ଆଦର ।
ଧର୍ମ ଭୋଗକର ଦୁଷ୍ଟାତ୍ମା ନଶାକର । ୭୨୯ ।
ଏତେ ବୋଲିଣ ଯେ ସଜଳ ଜନେ ଭାଳି ।
ଚନ୍ଦ୍ରମାର ମୁଖେ ଲଗାଇଲେ କାଳି । ୭୩୦ ।
ତେଣୁ ସେ କଳଙ୍କ ହୋଇଲେ ଶଶଧର ।
ଏସନ ବୋଲି ନରେ କରନ୍ତି ବଗୁର । ୭୩୧ ।
କେ ବୋଲଇ ନସ୍ତନ ମାଳେନ୍ଧୀ ଦଳ ଜାଣି ।
କେ ବୋଲଇ ମୃଗ ତହିଂ ଅଛୁ ଆଣି । ୭୩୨ ।

Digitized by srujanika@gmail.com

ତରଳ ଲୋଚନ ଯେ ତରଳଇ କର୍ଣ୍ଣପାଶେ ।
ଶ୍ୱେତପଦ୍ମ ହେଁ କି ସ୍ପର୍ଦ୍ଧିକି ଥୋପା ପ୍ରାଶେ । ୭୩୩ ।
କେ ବୋଲଇ ନାସିକା ତିଳ ଫୁଲ ସମାନ୍ତ ।
କେ ବୋଲଇ ତହୁଁ ଅଧିକ ତାର କମ । ୭୩୪ ।
କେ ବୋଲଇ ଶଙ୍ଖ ଏହାର କାମଦେବ ଜାଣି ।
ଯେଣେ ଜଗତ ତନୁ ଧରଇ ଆଙ୍କେଣି । ୭୩୫ ।
କେ ବୋଲଇ ଅଧର ବନ୍ଧୁକ ପୁଷ୍ପକୋଢ ।
ଦନ୍ତ ସୁନ୍ଦର କି ତୁଳଇ ଗଜମୋତି । ୭୩୬ ।
କେ ବୋଲଇ ଭ୍ରୂଲତା ମଦନ ଶରାସନ ।
ତହୁଁକି ନାରାଜ ଅଟଇ ବେନି ଯେ ନୟନ । ୭୩୭ ।
ତାହା ପୂରଇ ଯେ ବନ୍ଧିବ ଯଦି ଟାଣି ।
କାମ ଜନକଇଁ ସେ ଯେ ପକାଇବ ହାଣି । ୭୩୮ ।
ସେ ଅସ୍ତ୍ର କାମଦେବ ଈଶ୍ୱରଙ୍କୁ କଲା ।
ହର କୋପାନଳେ ଆପଣେ ନାଶଗଲା । ୭୩୯ ।
ନାରଙ୍କ ଗୁଣେ ପୁଣ ସାଜିଲୁ ଶିବ ତପ ।
ବରଷେ ଚଳିଲ ଉମାର ସମୀପ । ୭୪୦ ।
ଯେବଣଠାରେ କାମ ହୋଇଲା ଭସ୍ମରାଶି ।
କନ୍ଦର୍ପ ସରଯା ରତି ଦେଖିଲା ତାହା ଆସି । ୭୪୧ ।
ଧନୁ ସସ୍ତ୍ରେ ଯେଣେ ବାହୁଡ଼ିଇ ବାଳୀ ।
କାହୁଁ ଥୋଇବ ବୋଲି ମନେ ମନେ ଭାଳି । ୭୪୨ ।
ସ୍ତ୍ରିୟଙ୍କର ସ୍ତ୍ରିୟ ଅଟନ୍ତି ନା ପ୍ରୀତ ।
ସୀତାର ତହୁଁକି ଚଳିଲା ତଡ଼ିତ । ୭୪୩ ।
ଧନୁଶସ୍ତ୍ର ଆଣି ଥୋଇଲାକ ତହୁଁ ।
ତପ କଣଗଲା ଭ୍ରୂଆର ହିତ ପାଇଁ । ୭୪୪ ।
ସୀତସ୍ୱା ସେ ସାଙ୍ଗେକ କଲା ଯହୁଁ ଯନ୍ତ୍ର ।
ଭ୍ରୂଲତାଯେ ରୂପଜେ ଲୁଚଇ ସ୍ତ୍ରିୟ ନେତ୍ର । ୭୪୫ ।
ନୟନର ପାଶେ ଥୋଇଲା ବେଣ୍ଣଶର ।
ଯେସନେକ ବୋଲି ଜରେ କରନ୍ତି ବଗ୍ଭର । ୭୪୬ ।
କପାଳେ ଚନ୍ଦନ ଶୋହଇ ଆଡକେଶ ।
କେକାଣି ଶେତ ଭ୍ରମର ଉଡଇ ଫରହର । ୭୪୭ ।
ଉର୍ଦ୍ଧ କଣ୍ଠେ ସେ କସ୍ତୁରୀ ଚିତାଦେଲା ।
କଳାଣି ପାତାଙ୍ଗ ତହୁଁରେ ଖଂଜିଲା । ୭୪୮ ।

Digitized by srujanika@gmail.com

ସିନ୍ଦୂର ଚିତାଟୋକି ଲଲାଟରେ ଅଛି ବସି ।
କିଅବା ଅରୁଣ ଉଦେ ହୋଇଅଛି ଆସି । ୭୪୯ ।
କେ ବୋଲଇ ଅଳକା ଦିଶଇ ସୁନ୍ଦର ।
ଫୁଟିଲା ପୁଷ୍ପ ଯେସନ୍ତେ ଚୁମ୍ବଇ ଭ୍ରମର । ୭୫୦ ।
କେ ବୋଲଇ ଶିରରେ ଯେ ସୀମନ୍ତିନୀ ମୋତିମାଳ ।
ମେରୁ ଶିଖରୁ କି ଗଙ୍ଗା ପଡ଼ଇ ତଳ । ୭୫୧ ।
କେ ବୋଲଇ ଶଙ୍ଖ ଆକାର କଣ୍ଠ ଦିଶଇ ।
ମଣି ରତ୍ନ ଭୂଷଣେ ସେ ଅଧିକ ବିକାଶଇ । ୭୫୨ ।
କେ ବୋଲଇ ଭୁଜ ପଦ୍ମନାଡ଼ ଜାଣି ।
ଗୁଣ ଗୁଣି ମନେ ବିସ୍ମରନ୍ତ ପୁଣି । ୭୫୩ ।
ଗଜଦନ୍ତ ପ୍ରାୟେ ଦିଶଇ ବେନି ନାଡ଼ି ।
କାମଦେବର କି ସେ ନିଃଶ୍ୱାସ ଧାଉଡ଼ି । ୭୫୪ ।
ସ୍ନେହେ ସେ ଜଗତ ବାନ୍ଧଇ ମନସିଜ ।
ସ୍ନେହେ ସେ ହୋଇଅଛି ସୀତାଙ୍କର ଭୁଜ । ୭୫୫ ।
କେ ବୋଲଇ କର ଅଙ୍ଗୁଳି ଚମ୍ପାକଳି ।
ନଖର ପଦ୍ମାନ୍ତର ଜାଇର ପାଖୁଡ଼ି । ୭୫୬ ।
କରସ୍ଥଳ କାନ୍ତି ସୁନ୍ଦର ମନ୍ଦାର ।
ଊର୍ଦ୍ଧରେଖରେ ସେ ପଙ୍କଜ ମଗର । ୭୫୭ ।
ଯବ ଡାମର ଧ୍ୱଜ ରେଖମାନ ।
ସଧବା ଲକ୍ଷଣ ଆଣ ବିବର୍ଜନ । ୭୫୮ ।
ଅରୁଣ ପତ୍ରଶ ଅଙ୍ଗେଗୀ ତନୁହୋଇ ।
ଦୃଷ୍ଟିରେ ଦେଖୁଣି କଳଙ୍କ କୃଶ କୋଳ । ୭୫୯ ।
ବୋଲଇ ହୃଦୟ ଅଟଇ ବୃଷାଳ ।
ସମଦୀର୍ଘ ଲକ୍ଷଣ ସ୍ନେହାର ଅଟଇ କୁଶଳ । ୭୬୦ ।
କେ ବୋଲଇ ସ୍ତନଯୁଗଳ ଖର ଗରୁ ।
ଭଜ ପଡ଼ଇ ନ ପୁଣ ମଧ୍ୟ ଖଣ୍ଡି ସରୁ । ୭୬୧ ।
କେ ବୋଲଇ ସିଂହ ଲୁଚଲା କେଣେ ଲାଜେ ।
ସ୍ନେହେ ଥିବ ଅବା କେବଣ ହିଂ କାର୍ଯେ । ୭୬୨ ।
ଯେତେବେଳ ସୀତାଙ୍କ ନୋହିଥିଲା ଜାତ ।
ସିଂହ ପ୍ରାୟେ ମଧ୍ୟ ପ୍ରଶଂସନ୍ତି ଜଗତ । ୭୬୩ ।
ତତ୍ତ୍ୱଂ ସବୁ ଅଟଇ ସ୍ନେହାର ଅଣ୍ଟା ।
କେଶରୀ କି ହୋଇଲା ସ୍ନେ ସପତ୍ନୀ କଣ୍ଟା । ୭୬୪ ।

Digitized by srujanika@gmail.com

ତେଣୁ ସେ ମୃଗଇନ୍ଦ୍ର ଗଲାକ ପଳାଇ ।
ଦୁର୍ଗା ତାହାଙ୍କୁ ସମ୍ଭାଳିଲା ନେଇ । ୭୬୫ ।
କେ ବୋଲଇ ଅଛ ବସ୍ତ୍ରର ଗ୍ରୁବନ୍ଧ ।
ବସ୍ତ୍ର ପିନ୍ଧିବାରେ ଆନଙ୍କୁ ସୁଛନ୍ଦ । ୭୬୬ ।
କେ ବୋଲଇ ଜାନୁ ଉଲଟ କଦଳୀ ।
କେ ବୋଲଇ ଅଛ ସୁରଙ୍ଗ ପାଦତଳି । ୭୬୭ ।
କେ ବୋଲଇ ଅଙ୍ଗୁଷ୍ଠି ଚରଣ ସଂଜାତ ।
ଓଣେକର କଡ଼ି ଅଟଇ ଯେବଣ ମତ । ୭୬୮ ।
ଗଜ ମୁକୁତା କ ଦଶଇ ଲକ୍ଷପନ୍ତି ।
ଅଳତା ରଙ୍ଗେଣ ସେ ଦ୍ୱିଗୁଣ ଶୋଭା ପାନ୍ତି । ୭୬୯ ।
ନେପୁର ମୁଦ୍ରିକା ବଜ୍ରଜନ୍ତି ରତ୍ନମାନ ।
ସାଧୁ ସାଧୁ ସୀତାଙ୍କ ସ୍ୱବର୍ଣ୍ଣ କୁନ୍ଦରନ୍ତି । ୭୭୦ ।
ଆଗକୁ ଉଭାର ପଛକୁ ଶୋଭା ଦଶି ।
କେତେ କାଳ ବନ୍ଧ ଗଢ଼ିଲାକ ବସି । ୭୭୧ ।
ଧନ୍ୟ ଧନ୍ୟ ସୁନ୍ଦରୀ ଯେ ଜନକ ଦୋହିତା ।
ଭଲ ଘଟିଅଛୁ ନାମ ଗୋଟି ସୀତା । ୭୭୨ ।
ଶ୍ରୀରାମ ଯେହାଙ୍କୁ ଅନରୂପେ ବର ହୋଇ ।
ଈଶ୍ୱର ଧନୁ ଆନ ଧରି ନ ପାରଇ । ୭୭୩ ।
ବିଧାତା ଯେହାଙ୍କୁ ଗୋ ଭିଆଇଅଛୁ ଆଣି ।
ଦେଲ କାଳ ଯୋଗେ ଭେଟାଇଲା ଆଣି । ୭୭୪ ।
ଯେତେକ ପ୍ରଶଂସା କରନ୍ତି ସଂଭଜନ ।
ମୁହିଁ ତାହା କହିବାକୁ ନୁହଁଇ ଭାଜନ । ୭୭୫ ।
ସୀତାଙ୍କୁ ଦେଖି ହାଦେ ସର୍ବେ ହେଲେ ମୋହ ।
କେ ବୋଲେ ଯେହାଂକୁ ସାମାନ୍ୟ ନୋହେନେହ ।୭୭୬।
ରଜନୀକାଳେ ଯେହ୍ନେ ବେଣ୍ଟ ଯେ ବିପିନ୍ୟେ ।
ଦହୁଡ଼ି ଜଳନ୍ତେ ଯେ ଦେଖନ୍ତି ଜୀବମାନେ । ୭୭୭ ।
ତେସନ ପ୍ରାୟେ ହୋଇଂ ଗୃହାନ୍ତି ସଭାଲୋକେ ।
ଆଗସର ଦେଖନ୍ତି ଯେକକୁ ଆରକେ । ୭୭୮ ।
ବଶିଷ୍ଠେ ବୋଇଲେ ତୁ ଶୁଣ ଦଶରଥ ।
ଯେ ସେ କନ୍ୟା ତୋର ପୁତ୍ରକୁ ପଣପତ । ୭୭୯ ।
ଶୁଣି ନରପତ ଯୋଡ଼ଇ ବେନକର ।
ଦୟାକଲେ ମୋତେ ଜନେକ ମୁନୀଶ୍ୱର । ୭୮୦ ।

Digitized by srujanika@gmail.com

ବିଶ୍ୱାମିତ୍ର ଯୋଗେ ହୋଇଲା ଯେତେ କଥା ।
ତୋହୋର କଲ୍ୟାଣ ଅଟଇ ବ୍ରହ୍ମବେତ୍ତା । ୭୮୧ ।
ଏଥୁଅନନ୍ତରେ ଶୁଣ ଗୋ ପାର୍ବତୀ ।
ସୀତାର କୋଳରେ ବସିଲେ ମହାସୋତି । ୭୮୨ ।
ପଦ୍ମରେ ଜନକର ହୋଇଲେକ ଯତ୍ନଂ ।
ପାଟ ଜଉତୁକ ଜଣାଇଲା ରତ୍ନଂ । ୭୮୩ ।
ନାଡ଼ି ଘଣ୍ଟଆ କଲା ବେଳାର ବିଧାନ ।
ବଶିଷ୍ଠେ ବୋଇଲେ ଶୁଣ ଦଶରଥ ରାଜନ । ୭୮୪ ।
ମାହେନ୍ଦ୍ର ବେଳେ ରାଜା ଦେଖୁଣି ବିଧି ସାର ।
ସୁମନ୍ତ ଆଣିଲା ଯେ ସକଳ ସମ୍ଭାର । ୭୮୫ ।
ବାଜଇ ଟମକ ନିଶାଣ ମହୁରୀ ।
କମ କାହାଳୀ ମର୍ଦ୍ଦଳ ଶଙ୍ଖ ଭେରୀ । ୭୮୬ ।
ତାଳ କଂସାଳ ଡାଉଡ଼ି ଦରଗଲ ।
ବାଉଂଶି ଦୋସରି କାହାଲ ଝଂପାଲ । ୭୮୭ ।
ନଗ୍ର ନରନାରୀ ଅଇଲେ ସର୍ବେ ଶୁଣି ।
ନାଚନ୍ତି ନଟନାରୀ ଗାଆନ୍ତି ଗାୟେଣୀ । ୭୮୮ ।
ଚଉକଣ୍ଠ ଲୋକେ ବେଢ଼ିଣ ଅଛନ୍ତି ।
ସାଧୁ ସାଧୁ ସୀତା ବୋଲି ପ୍ରଶଂସା କରନ୍ତି । ୭୮୯ ।
ସାଟ କଦ୍ୟେବାର କରନ୍ତି ଆଗେ ମିଳି ।
ବେଲକାଣି ନାରୀଏ ଦଅନ୍ତି ହୁଳହୁଳି । ୭୯୦ ।
ମଙ୍ଗଳା ଅଷ୍ଟକ ପଢ଼ନ୍ତି ପାଟ ଜଉତୁକ ।
ବ୍ରାହ୍ମଣେ ସମ୍ମୁଖରେ ଚତୁର୍ବେଦ ଘୋଷ । ୭୯୧ ।
ତପୀ ଜପୀମାନେ କଲ୍ୟାଣ କରନ୍ତି ।
ଅମୃତ ଯୋଗ ହୋଉ ବୋଲିଣ ବୋଲନ୍ତି । ୭୯୨ ।
ଉପହାର ଯୋଗାଡ଼ ସୁମନ୍ତ ନେଇକରି ।
ବଶିଷ୍ଠ ମହାମୁନି ମନ୍ତ୍ର ଉଚ୍ଚରି । ୭୯୩ ।
ନିଜ କରେ ଚନ୍ଦନ ଯେ ଘେନି ଦଶରଥ ।
ନେଇ ଲଗାଇଲା ଜାନକୀର ମାଥ । ୭୯୪ ।
କପାଳ ପାଟୀରେ ଶ୍ରୀକଣ୍ଠି ଶୋହିଲା ।
ଦେଖିଣ ଅମୁଧା ପତି ଆନନ୍ଦ ହୋଇଲା । ୭୯୫ ।
ସୀତାଙ୍କର ମୁଖ ଦେଖିତ କରଇ ମନ ।
ବିସ୍ମରଣ କପୋଳ ଚୈତଇ ରାଜନ । ୭୯୬ ।

Digitized by srujanika@gmail.com

ଲଜେ ମହାସୋଷ୍ଣ ନ ତୋଳଇ ଶିର ।
ଯତନେ ନୁଆଇଲା ମୂର୍ଦ୍ଧନ ତାହାର । ୭୯୭ ।
ମନେ ମନେ ଦଶରଥ ବରଗ୍ର ହସଇ ।
ଚନ୍ଦ୍ରକ ପାତାଳେ ପଶିବା ଦିଶଇ । ୭୯୮ ।
ଚନ୍ଦନ ଲେପିଣ ରାଜା ଶିରେ ପୁଷ୍ପ ଖୋସି ।
କଣ୍ଠେ ରତ୍ନମାଳା ଲମ୍ବାଇ ଅଜଶିଷି । ୭୯୯ ।
ରଙ୍ଗପାଟ ରାଜା ଦୁଇସସ୍ତ୍ର ଦେଲା ।
ଲକ୍ଷେକ ସ୍ୱର୍ଣ୍ଣନେଇ ମାଥେ ନଉଡ଼ିଲା । ୮୦୦ ।
ଜୟ ଜୟ ଶବଦ କରନ୍ତି ସ୍ୱର୍ଗବାସୀ ।
ଆବର ଜନକକନ୍ୟା ସେ ସଜହୋଇ ଆସି । ୮୦୧ ।
ତାହାଙ୍କୁ ଦେଖୁଣି ଏହୁ ବାଧିରେ କଲେ ।
ଘରକଇ ଦୋହତାନ୍ତ ବାହୁଡ଼ାଇ ନେଲେ । ୮୦୨ ।
ଜନେକ ଦଶରଥ ଉଠି ହୋନ୍ତ ଉଭା ।
ଏସନେକ ସମୟରେ ମଉଳିଲା ସଭା । ୮୦୩ ।
ଯେ ଯାହା ମନ୍ଦିରକୁ ସର୍ବଜନେ ଯାଇଂ ।
ଶୁଣ ଗୋ ମହାମାୟା ଶଙ୍କର କହଇ । ୮୦୪ ।
ଏଥୁଅନ୍ତେ ମଧରେ ଏକଦନ ଗଲା ।
ଏକାଦଶୀ ଦିବସ ପ୍ରବେଶ ହୋଇଲା । ୮୦୫ ।
ଶ୍ରୀରାମଙ୍କୁ ବରବ ବୋଲିଣ ଜନେକ ।
ନାନା ଦ୍ରବ୍ୟନ୍ତ ସମାଦ କଲକ ବହୁତ । ୮୦୬ ।
ରୁଚ୍ୟା ମଣ୍ଡୋପେକ କରାଇ ନିର୍ମାଣ ।
ମଧରେ ସୁବର୍ଣ୍ଣର ମଣ୍ଡୋପ ଭିଆଣ । ୮୦୭ ।
ବିବିଧ ବସ୍ତ୍ର ତହିଂ ମଣ୍ଡିଲ ବିତପନ ।
ରତ୍ନେ କରଣ ତହିଂ ଦିଶଇ ଛନ୍ନ ଛନ୍ନ । ୮୦୮ ।
ପାଶେଣ ଗଜମୋତି ଝରାଯେ ଲମ୍ବନ୍ତି ।
ପଞ୍ଚବର୍ଣ୍ଣ କୁସୁମେ ମାଳାରେ ଶୋଭାପାନ୍ତି । ୮୦୯ ।
ଶ୍ୱେତ ଚାମର ଦର୍ପଣ ଠାବ ଠାବ ।
କଳାଣି ପଟାନ୍ତର ପୁରପୁର ଭାବ । ୮୧୦ ।
ସୁବର୍ଣ୍ଣ ମଣ୍ଡୋପ ମଧ୍ୟେ କନକର ବେଦୀ ।
ଶତେକ ଆଙ୍ଗୁଳ ପ୍ରମାଣେ ପ୍ରସିଧି । ୮୧୧ ।
ଚାରକୋଣେ ସୁବର୍ଣ୍ଣ ଗୁର କୁମ୍ଭ ଅଛୁ ।
ଚୂତପତ୍ର ନଟୀକାଳ ରମ୍ଭା ଚାର ଗଛ । ୮୧୨ ।

Digitized by srujanika@gmail.com

ଚନ୍ଦନ କାଷ୍ଠର ପୋଢଲେ ସ୍ତମ୍ଭମାନ ।
ତହିଁ ବେଢ଼ାଇଲେ ବିବିଧ ବସନ । ୮୧୩ ।
ଅଗର କାଷ୍ଠର କରାଇଂ ବୃକ୍ଷ ଶେଣୀ ।
କାଚ କଳସେକ ଅଛଇ ନିବାଣି । ୮୧୪ ।
ଗଣ୍ଡି ଅନାବଣ ରଙ୍ଗପାଟ ଗଣ୍ଡି ।
କତକତା ପଗଡ଼ ହସ୍ତୀଦନ୍ତ କାଠି । ୮୧୫ ।
ନେତବସ୍ତ୍ର ବଳମା ଝଣ୍ଡ୍ରାଶାଳ ମାଢ଼ି ।
ତେଜପତ୍ର ତ୍ରିଇଂଲ୍ଲ ମେଲାଇଂ ପ୍ରଗଡ଼ୀ । ୮୧୬ ।
ଠାବେ ଠାବେ ଚନ୍ଦ୍ରର କଳସ ବସାଇଲେ ।
ଝିନ ବସ୍ତ୍ର ଚଗଲ ଉପରେ ଉହାଡ଼ିଲେ । ୮୧୭ ।
ଦେଖି ଲୋକେ ପ୍ରଶଂସା କରନ୍ତି ଗ୍ରାମୁଡ଼ିଆ ।
ଜାଣି ପଟ୍ଟାନ୍ତର ଯେହ୍ନେ ସୁବର୍ଣ୍ଣ ମଣ୍ଡୁଆ । ୧୮ ।
ପାଶେ ପାଶେ ଝରଇ ମୁକୁତାର ଝରା ।
ଶତେକ ଚାମର ଝଡ଼ଇ ଉଭାସରା । ୮୧୯ ।
ଆସ୍ଥାନର ଆଗାନ୍ତ ଯେ ମକରତର ଶିଳା ।
କର୍ପୂରର ଧୂଳି ତହିଁ ଉପରେ ସିଞ୍ଚିଲେ । ୮୨୦ ।
ସୁବାସ କୁସୁମ ପାଖୁଡ଼ା ବହଳ ।
ମାଣିକ୍ୟର ଦୀପ ଜଳଇ ନିରନ୍ତର । ୮୨୧ ।
ଦେଖିଣ ସନ୍ତୋଷ ହୋଇଲେ ଜନକ ।
ମନ୍ତ୍ରୀଙ୍କ ପ୍ରଶଂସା କରନ୍ତି ଅନେକ । ୮୨୨ ।
କୁଶଧ୍ୱଜକଇ ବୋଇଲେକ ଗୃହିଂ ।
ଦଶରଥ ପୁତ୍ରଙ୍କୁ ହୋ ବଶ ଆଣ ଯାଇ । ୮୨୩ ।
ଶୁଣି ସଜ ହୋଇଲେ ଜନେକ ସାନ ଭ୍ରାଥ ।
ସତ୍ୱର ହୋଇଣ ଚଳିଲେ ସମସ୍ତ । ୮୨୪ ।
ସଙ୍ଗେଣ ବଳ ଚଳିଲେ ଅପାର ।
ଯାଇଣ ପ୍ରବେଶ ଦଶରଥ ସିଂହଦ୍ୱାର । ୮୨୫ ।
ଖୁଣ୍ଟିଆ ପଡ଼ିହାରୀ ରାଜାଙ୍କୁ ଜଣାଇ ।
ଦ୍ୱାରେଣ ଅଛୁ ଜନେକ ସ ନଖାଇଂ । ୮୨୬ ।
ରାମ ଲକ୍ଷ୍ମଣଙ୍କୁ ସଙ୍ଗେ ଘେନି ଯିବ ।
ଶୁଭଯୋଗ ବେଳେ ବରଣ କରିବ । ୮୨୭ ।
ଶୁଣି ଦଶରଥ ହୋଇଲେ ହରଷ ମନ ।
ପୁତ୍ରଙ୍କୁ ସଜକର ବୋଇଲେ ରାଜନ । ୮୨୮ ।

Digitized by srujanika@gmail.com

ଚତୁରଙ୍ଗ ବଳ ଆଣ ମୋର ଭାଇ ।
ଏମନ୍ତ ବୋଲେ ରାଜା ସୁମନ୍ତ୍ରକୁ ଚାହିଂ । ୮୨୯ ।
ଆପଣେ ସଜ ହୋଇଲେ ମହୀପାଳ ।
ରଥ ଗଜ ଅଶ୍ୱ ସାଜିଲେ ସକଳ । ୮୩୦ ।
ପାଇକ ରାଉତ ମାହୁନ୍ତ ସକଳ ମହାରଥୀ ।
ସଜହୋଇ ରାଜା ଆଗ୍ୟାଂରେ ଆସନ୍ତି । ୮୩୧ ।
ବାଜଇ ଝମକ ଯେ ନିଶାଣ ଦମାଭେରୀ ।
ଶଙ୍ଖ ମର୍ଦ୍ଦଳ ଯେ ବାଉଂଶୀ ମହୁରୀ । ୮୩୨ ।
ତାଳ କଂସାଳ ଯେ ହରଗଳ ଢୋଲ ।
ଦାହଣ୍ଡି ବଜାଇଂ ଚାଲନ୍ତି ଗେଲ ଗେଲ । ୮୩୩ ।
ଘଣ୍ଟା ଘଣ୍ଟି କାହାଳୀ ମଉଂରି ସିଙ୍ଘ ବାଜେ ।
ସଇନ୍ୟ ମୁଖରବେ ଗଗନ କି ସାଜେ । ୮୩୪ ।
ଗଜଙ୍କର ଗରଜନ ଅଶ୍ୱଙ୍କର ହ୍ରେସାଂରବ ।
ସିନ୍ଧୁଘୋଷ ଜାଣି ରଥଙ୍କ ଗଡ଼ ରବ । ୮୩୫ ।
ନଟେ ଭାଟେ କଇବାର କରନ୍ତି ସର୍ବେ ମିଳି ।
ଦେଖିତ ଅଇଲେ ଜନେକ ନଗ୍ରଲୋକେ ସର୍ବେ ଭାଳି ।୮୩୬।
ହେଥୁ ଅନନ୍ତରେ ଦଶରଥ ରାୟେ ।
ରେନୁକାପାଣି ଯେନ ଶ୍ରୀରାମଙ୍କୁ ଗାଧୁଆୟେ । ୮୩୭ ।
ତୀର୍ଥଜଳ ଯହୁଂ କଣାକାଲେ ଆଣି ।
ତେଣୁ ସେ ନୀର ହାଦେ ହୋଇଲା ରେନୁକାପାଣି ।୮୩୮।
ବିଷ୍ଣୁର ଚରଣୁ ଝରଇ ସୁରସୁରୀ ।
ରଜନୀ ଭାଗେ ତାହା ଆଣିଲେ ଚତୁରୀ । ୮୩୯ ।
ତହିଂର ନୀର ବୋଲି ନ ଜାଣନ୍ତି ରଘୁନାଥ ।
ତେଣୁ ସେ ରେନୁକାପାଣି ବୋଲନ୍ତି ସମସ୍ତ । ୮୪୦ ।
ଆବର ବିଶେଷେ ଶୁଣ ସ୍ତ୍ରୀରଜନ ।
ରାତ୍ର ଆଉଂ ଆଉଂ ଉଠି ରହିଥାନ୍ତି ଗଗନ । ୮୪୧ ।
ଯେକକୁ ଆରେକ ଅନ୍ତରେ ରାବ ଦ୍ୟନ୍ତି ।
ଉଠିଣ ଆସ ଗୋ ହୋଇଲାଣି ପାହାନ୍ତି । ୮୪୨ ।
ଦେବତାଙ୍କ ଆଳେ ଶୁଭଇ ଶଙ୍ଖ ଧ୍ୱନି ।
କୁକୁଟ ଉଡ଼ିଲେ ନିକଟ ହୋଇଲା ରଜନୀ । ୮୪୩ ।
ପାଣ୍ଡୁର ବର୍ଣ୍ଣ ପ୍ରାୟେ କଟେକ ଦିଶଇ ।
କାକ ନିଦ୍ରାଭଙ୍ଗ ହୋଇଣ ଡାଳେ ବସଇ । ୮୪୪ ।

Digitized by srujanika@gmail.com

ଚନ୍ଦ୍ର ଅସ୍ତ ହୋଇଲା ଘଡ଼ି ଦୁଇ ହୋଏ ।
କେତେବେଳେ ସଜ ହୋଇବେ ଗୋ ପୋଏ ।୮୪୫।
ଏ ବାଣୀ ଶୁଣିଣ ସକଳ ଯୁବତୀ ।
ସାତ ଅହ୍ୟଓ କାଖେ ଘେନଲେ କଳସୀ । ୮୪୬ ।
ନଗ୍ରେ ବୁଲୁଯାନ୍ତି ମଙ୍ଗଳ ଗୀତଗାଇ ।
ଦ୍ୱାରେ ଦ୍ୱାରେ ପାଣି ମାଗନ୍ତି ସେ ଯାଇ । ୮୪୭ ।
ଘରେ ଥାଇଂ ସେ ଜାଣନ୍ତି ତାହାଙ୍କର ବାଣୀ ।
ବଡଘର ଲୋକେ ଅଣିଲେ ତୋଳା ପାଣି । ୮୪୮ ।
ଅହ୍ୟଓ ଯୁବତୀ ଶୁଚବନ୍ତ ହୋଇ ।
ପବିତ୍ର ଜଳ ଆଣି ଦିଅନ୍ତି ବଢ଼ାଇ । ୮୪୯ ।
ସ୍ୱେମନ୍ତ୍ରେଣ ନାଗ୍ରି ଅନେକ ନୀର ନେଲେ ।
ବରଘର ଲୋକେ ଅମୃତ ଘେନଗଲେ । ୮୫୦ ।
ସାତକୁମ୍ଭ ଯହୁଂ ପୂରିଲେକ ପାଣି ।
ବାହୁଡ଼ି ଆସନ୍ତି ସକଳ ତରୁଣୀ । ୮୫୧ ।
ଦ୍ୱାବସେ ନ ଅଣି ଆଣିଲେ ଯହୁଂ ସ୍ରୀଢ ।
ତହୁଂ ଗ୍ରେସ୍ମାପାଣି ବୋଲ୍ଲଣ ବୋଲନ୍ତି । ୮୫୨ ।
ରତ୍ନ ପୀଢ଼ାରେ ନେଇଂ ଶ୍ରୀରାମଙ୍କୁ ବସାଇ ।
ନବଗ୍ରାମ୍ମୀ ଗନ୍ଧ କେଶରେ ଲଗାଇଂ । ୮୫୩ ।
ସେ ଜଳ ଘେନି ଶିରେ ଅଭିଷେକ କଲେ ।
ତଥିର ଉପରେ ସୁଗନ୍ଧ ଲିପିଲେ । ୮୫୪ ।
ସୁବାସ ଜଳେ ରାମଙ୍କୁ ସ୍ନାହାନ କରାଇ ।
କେଶ ପୋଛିଲେ ଝୀନବାସ ଦେଇଂ । ୮୫୫ ।
ଶ୍ରୀଅଙ୍ଗ ପଖାଳି ଝିନବାସ ଘେନ ।
ରାମର ଦେହୁଂ ପାଣି ଛଡ଼ାନ୍ତି କାମେନୀ । ୮୫୬ ।
ଦେବାଙ୍ଗ ପାଟନୀ ପିନ୍ଧାଇଲେ ନେଇଂ ।
ଘରକୁ ଘେନଗଲେ କଠାଉ ମଡ଼ାଇଂ । ୮୫୭ ।
ଜନନୀର କୋଳେ ବସି ରଘୁନାଥ ।
ପଞ୍ଚାମୃତ ଯୋଗାଡ ଭୁଞ୍ଜିଂଲେ ଗୁଡ଼ ଭାତ । ୮୫୮ ।
ଆଗ୍ରେବନ ସାରେ ଭୁଞ୍ଜିଲେ ତାମ୍ବୋଳ ।
ସୁବର୍ଣ୍ଣ ପୀଢ଼ାରେ ବସନ୍ତି ରଘୁବାଳ । ୮୫୯ ।
କଉଶଲ୍ୟା କସ୍ୱେକସ୍ୱା ସୁମିତ୍ରା ମୋହାଦେଈଂ ।
ମାତାଗଣେ ବେଢ଼ି ଅଛନ୍ତି ରାମକଇଂ । ୮୬୦ ।

Digitized by srujanika@gmail.com

ବେଶ ବେସନ କଉତ ବସ୍ତ୍ରରନ୍ତ ନାରୀ ।
ବାଟିଲ ହଳଦୀରେ ତୈଳରସ ଭରି । ୮୬ ।
ଶ୍ରୀରାମର ଅଙ୍ଗେ ଲେପନ୍ତ ନେଇ ତାହା ।
ସ୍ନେହକୁ ଆରେକ ହୋଇଣ ଉଛାହା । ୮୬୨ ।
କେ କରେ ମୁଖେ ନେଇଂ ହଳଦୀ ଯେ ଘଷି ।
କେହୁ ଚରଣେ କେହୁ ପିଠିରେ ନେଇ ଲେପି । ୮୬୩ ।
କେହୁ ବାହାସ୍ଥଳେ କୁଙ୍କୁମ ଛଡ଼ାଇଂ ।
କଳାଦେହ ରାମର ସୁନ୍ଦର ଦିଶଇ । ୮୬୪ ।
ଅରୁଣ ପ୍ରକାଶେ ଯେହ୍ନେ ପୂର୍ବଦିଗ ଦିଶିଲା ।
ମରକତ ପ୍ରତିମାକୁ ସୁନ୍ଦର ଦିଶିଲା । ୮୬୫ ।
ରଘୁନାଥ ଶୋଭାର ତେସନ ପ୍ରକାଶି ।
ନନ୍ଦଘୋଷେକ ଶ୍ରୀ ଜଗନ୍ନାଥ ଛନ୍ତି ବସି । ୮୬୬ ।
କମଳ ପୁଷ୍ପକ ଭ୍ରମର ଚୁମ୍ବିଲା ।
ପୁଷ୍ପରେଣୁ ତାହା ଶୋଭାରେ ଲାଗିଲା । ୮୬୭ ।
ତେସନ ସାଦୃଶ ଦିଶଇ ରାମ କାୟେ ।
ଦେଖିଣ ସାନନ୍ଦ ହୁଅନ୍ତି ରାମମାୟେ । ୮୬୮ ।
କେଶ ସୁଖାବନ୍ତି ଚଉଣୀ ଯେନଚର ।
କୃଷ୍ଣ ଭ୍ରମର ଜାଣି ଦିଶଇ କବେଷ୍ଟ । ୮୬୯ ।
ବିବିଧ କୁସୁମେ ସୁଗନ୍ଧ ଲିପିଲେ ।
କର୍ପୂରଗୁଣ୍ଡି ଉପରେ ସିଞ୍ଚିଲେ । ୮୭୦ ।
ଶ୍ରୀରାମର ବାଳେ ତାହା ମିଶାଇଲେ ନେଇଂ ।
ବିଚିତ୍ର ଗଣ୍ଠି ବାନ୍ଧି ମୁଧୁନ୍ଦରେ ବସାଇଂ । ୮୭୧ ।
ବାହାର କରଣ ଦେଖାଇଲେ କେଶର ।
କି ଜାଣି ଗଗନେ କି ଉଦୟେ ନିଶାକର । ୮୭୨ ।
ଶ୍ରୀରାମ ମୁଖକୁ ଦିଶିଲାକ ଶୋଭା ।
ତାକୁ ଆଦର୍ଶ ଯନ୍ତୁଂ ରହିଲାକ ଗଭା । ୮୭୩ ।
ସରୁ ବହଳ ନୂଆ ବସନ୍ତ ପତନ ।
କଉବନ୍ଧା ଚିତ୍ର ବିଚିତ୍ର ଲେଖନ । ୮୭୪ ।
ତାରି ମଣ୍ଡଳ ପ୍ରାୟେ କୁସୁମ ମୁଖ ଦିଶଇ ।
ଦୀର୍ଘ ପ୍ରସ୍ଥ ଆବର ଉନହାଏ ହୋଇଂ । ୮୭୫ ।
ମଧ୍ୟରେ ସବୁରଙ୍ଗ ଫୁଲ ପଡ଼ିଅଛୁ ।
ସେ ବସ୍ତ୍ର ରାମଙ୍କୁ ପିନ୍ଧାଇଲା କାଛୁ । ୮୭୬ ।

Digitized by srujanika@gmail.com

ଜଳାମେଘେ ଯେହ୍ନେ ବିଜୁଳି ପ୍ରକାଶଇ ।
ଶ୍ରୀରାମ ଦେହକୁ ପୀତବସ୍ତ୍ର ସାଜଇ । ୮୭୭ ।
ହୀରାମୟେ କୁଣ୍ଡଳ ଶ୍ରବଣେ ସାଜନ୍ତି ।
ମୁକୁତା ମୋଣଥା କାନେ ଫୁଲ ଲନ୍ତି । ୮୭୮ ।
ସଂପୂର୍ଣ୍ଣ ଚନ୍ଦ୍ରମା ଯେହ୍ନେ ଭୃଙ୍ଗ ଘୂରୁ ବସଇ ।
ଶ୍ରୀରାମର ମୁଖକୁ କୁଣ୍ଡଳ ତେସନ ଦିଶଇ । ୮୭୯ ।
କଣ୍ଠେଣ ଖଞ୍ଜିଲେ ଯାଉଂଳ ସୁନା ସୂତା ।
ଦୋସର କଣ୍ଠମାଳ ବର୍ତ୍ତୁଳ ମୁକୁତା । ୮୮୦ ।
ନୀଳା ମାଣିକ ଗଜମୋତି ଚଉସରା ।
ରତ୍ନମୟେ ପଦକ ବ୍ରହ୍ମକାନ୍ତି ହାର । ୮୮୧ ।
ବାହେଣ ତାଡ଼ ଯେ ବାହୁଟି ବଦମୁଦ୍ର ।
କଟିରେ କଟିମେଖଳା କରଣ ପ୍ରସିଦ୍ଧ । ୮୮୨ ।
ବାମେତୁଣୀ ଶାରନେତ ଉଡ଼େ ଫରହର ।
ଚରଣେ ଖଞ୍ଜିଲେ ନେଇଂ ମର୍କତ ତେଡ଼ର । ୮୮୩ ।
ନୀଳ ପଦ୍ମମାଳେ ଯେହ୍ନେ ଭ୍ରମର ଦିଶଇ ।
ଶ୍ରୀରାମର ପଦ୍ମରେ ନେପୁର ତେସନ ଦିଶଇ । ୮୮୪ ।
ଶ୍ରୀରାମର ଶ୍ରୀପଦ୍ମରେ ଲେପିଲେ ଅଲତା ।
ତଳପା ଓହ୍ଲଲକୁ ଯେ କନ୍ଦ ହେଲା ରତା । ୮୮୫ ।
ଶ୍ରୀରାମର ରୂପ ବାହ୍ମନ କି ପାରି ।
କୋଟିଏ କାମ ଯାହାର ପାଦକୁ ନୋହେ ସରି ।୮୮୬।
ସ୍ନେହଭରେ ମାଏ ନେଇଂ ବସାଇଲେ କୋଳେ ।
କଜ୍ଜଳ ରଞ୍ଜିଲେ କୋମଳ ଦୁଇ ଡୋଳେ । ୮୮୭ ।
କର୍ଣ୍ଣର ପରଯନ୍ତ୍ରେ ଲଜଂ ଦେଲେ ମେଲି ।
ନୀଳଉତ୍ପଳ କାଣ୍ଡକ ନାଡ଼େ ଅଛି ଫୁଲି । ୮୮୮ ।
କର୍ପୂର କସ୍ତୁରୀ ସିନ୍ଦୂରେ ମିଶାଇଲେ ।
ତାହାନେଇ ରାମ କପୋଳେ ଚିତା ଦେଲେ । ୮୮୯ ।
ବର ମଣ୍ଡୋଳ ବୋଲି ଦେଲେ ଚିତା ।
ଉଚ୍ଛବ କାଳେ ଯେହ୍ନେ ଦିଶଇ ସବିତା । ୮୯୦ ।
ଶିରରେ ଠେକ ପାଗ ବାନ୍ଧିଲେ ଶାରନେତ ।
ଶାରବର ବାନା ଉଡ଼ଇ ଅବିରତ । ୮୯୧ ।
ଶିରରେ ସପତ ଶାଖା ମୁକୁଟ ମଣିମୟେ ।
ଶ୍ରୀରାମର ମସ୍ତକେ ତାହା ବନ୍ଧାଏ । ୮୯୨ ।

Digitized by srujanika@gmail.com

ବରବେଶ କରାଇଂ ଦେଖନ୍ତି ଯୁବତୀ ।
ଅତି ହରଷରେ ନାରୀ ହୁଳହୁଳି ଦିଅନ୍ତି । ୮୯୩ ।
ଭରଥ ଲକ୍ଷ୍ମଣ ଶତ୍ରୁଘନ ତିନି ।
ସେହିମାନ୍ତ ବରବେଶ କରାନ୍ତି କାମିନୀ । ୮୯୪ ।
ମଙ୍ଗଳ ଗୀତ ବାଦେ କରନ୍ତି ଗାୟେଣୀ ।
ହାଥୁଟଣ୍ଡା ଝଡ଼ଇ ମାଇପଙ୍କ ଗୀତ ଧୂନିଶୁଣି । ୮୯୫ ।
ରାମ ଲକ୍ଷଣ ଭରଥ ଶତ୍ରୁଘନ ।
ସଜ ହୋଇଲେ ସର୍ବ୍ବେ ଗୁରୁ ଯେ ନନ୍ଦନ । ୮୯୬ ।
ମଙ୍ଗଳ ଆଳତି ବନ୍ଦାପନ୍ତି ନେଇ ।
ଦୁବ ଅକ୍ଷତ ତଣ୍ଡୁଳ ଶିରରେ ଚଢ଼ାଇଂ । ୮୯୭ ।
ମୁର୍ଦ୍ଧ୍ନ ଆଘ୍ରାଣ କରନ୍ତି ଜନନୀ ।
କେ ଆଗ ହୋଇଛନ୍ତି ଦଧି ମାଛ ଘେନି । ୮୯୮ ।
କେ ଧରିଛନ୍ତି ରାଜହଂସ ପକ୍ଷୀ ।
କାହାର ହସ୍ତରେ ଶେତ ପାରୁଆଯେ ଅଛି । ୮୯୯ ।
କେହୁ ଆଣିଦ୍ୟନ୍ତି ଗୋରୋଚନା ଛତା ।
ହୁଳହୁଳି ଦେଉଛନ୍ତି ଅହୁଅ ବନିତା । ୯୦୦ ।
ମାତୃଙ୍କୁ ନମସ୍କାର କରି ଗୁରୁ ଯାଇ ।
ପୂର୍ଣ୍ଣକୁମ୍ଭ ଦୃତ ନର୍ତ୍ତୀକାଳ ଦେଖିଯାଇ । ୯୦୧ ।
ପିତା ପାଦେ ଯାଇ ଓଳଗନ୍ତି ପୋୟେ ।
ଦେଖି ପରମ ତୋଷ ଦଶରଥ ରାୟେ । ୯୦୨ ।
ବଶିଷ୍ଠଙ୍କ ପାଦରଜ ଗୃହ ପୁତ୍ରେ ଘେନି ।
ପ୍ରଲମ୍ବ କଲେ ପାଦେ ଅଯୁଧ୍ୟା ରାଜା ପୁଣି । ୯୦୩ ।
ବିଶ୍ୱାମିତ୍ର ସହିତେ ଯେତେ ଋଷି ଆସିଥିଲେ ।
ଦଶରଥ ପୋୟେ ତାଙ୍କୁ ନମସ୍କାର କଲେ । ୯୦୪ ।
ବ୍ରାହ୍ମଣଙ୍କ ମୁଖେ କଲ୍ୟାଣ ବାଣୀ ପାଇଂ ।
ପୁତ୍ରନ୍ତି ଘେନି ବଳେ ଅଯୁଧ୍ୟାର ସାଇଂ । ୯୦୫ ।
ବାଜଇ ବାଜଣା ବସନ୍ତ ରାଗେ ଭେଦ ।
ଦେଖି ସର୍ବ୍ବଜନେ ହୋଇଲେ ଆନନ୍ଦ । ୯୦୬ ।
ଲକ୍ଷେକ ଶଙ୍ଖ ସ୍ଫୁରଇ ଘନଘନ ।
ସମ୍ମୁଖ ହୋଇଛନ୍ତି ଚତୁରଙ୍ଗ ସୈନ୍ୟ । ୯୦୭ ।
ଦଶରଥ ରାୟେ ଆରୋହିଲେ ଗଜ ।
ଶତ୍ରୁଜୟେ ଚଳେ ଆରୋହି ମହାରାଜ । ୯୦୮ ।

Digitized by srujanika@gmail.com

ସୁମନ୍ତ୍ର ମନ୍ତ୍ରୀ ଶିରେ ଧଇଲାକ ଛତ୍ର ।
ଆରୋହଣ ଅଛୁ ରଣ ସିଂହ ହାଥ । ୯୦୯ ।
ଜାବାଳିର ତନୟେ ଯୋଗାଇଂ ନେଇ ପାନ ।
ରାମର ଧରିଛନ୍ତି ଆଦର ପାତ୍ରମାନ । ୯୧୦ ।
ଭରତ ମାତୁଳ ସମ୍ମୁଖେ ଦର୍ପଣ ଧରି ।
ଆଗ ହୋଇଲା ସେ ଗଜଇନ୍ଦ୍ର ଚଢ଼ି । ୯୧୧ ।
ସୁମନ୍ତ୍ର ତନୟେ ଧରିଚ ଧୂପକାଠି ।
ବସିଚ ବୈଶ୍ୟ ଶତ୍ରୁଘ୍ନଙ୍କ ପିଠି । ୯୧୨ ।
ବଶିଷ୍ଠ ବିଶ୍ୱାମିତ୍ର ସୁଖାସନ ଚଢ଼ି ।
ପଛ ପଞ୍ଚୁଆରେ ଆସନ୍ତି ସେ ପଣ୍ଡି । ୯୧୩ ।
ସୁବର୍ଣ୍ଣମୟେ ରଥେ ବିଜୟେ ରଘୁନାଥ ।
କୁସୁମ ଧନୁଶର ଧରିଛନ୍ତି ହସ୍ତ । ୯୧୪ ।
ନନ୍ଦିଘୋଷ ରଥେ କି ବାସୁଦେବ ବିଜେ ।
ବରୁଣପୁରକୁ ବିଜୟେ ଲକ୍ଷ୍ମୀ କାର୍ଯ୍ୟେ । ୯୧୫ ।
ଭରତ ଲକ୍ଷଣ ଶତ୍ରୁଘ୍ନ ତିନିଭାଇ ।
ରଥେ ରଥେ ଚଢ଼ି ସେ ରାମର ପାଶେ ଥାଇ । ୯୧୬ ।
ଆଗିଆଣି ଦଣ୍ଡେ ଅଛନ୍ତି ଗୃହ ପୋସ୍ୱେ ।
ମଧ୍ୟେ ବିଜେକଲେ ଦଶରଥ ରାୟେ । ୯୧୭ ।
ପାଟଛତ୍ରମାନଙ୍କରେ ନ ଦିଶଇ ଗଗନ ।
ଆଲମ୍ବ ବଲମ୍ବ ଚାମର ଚନ୍ଦନ । ୯୧୮ ।
ରଥ ଘୋଷ ଘାସ୍ୱେ କମ୍ପୁଅଛି ମେଦିନୀ ।
ଗଜ ଘଣ୍ଟା ହୟର ହ୍ରେଂଷାରବ ଧ୍ୱନି । ୯୧୯ ।
ପାଦାନ୍ତଙ୍କ ମୁଖରବ ପଢ଼ି ଆଶ କରେ ଡ଼ାକ ।
ହେଲ ଦେଖୁଅଛି ସଂସାର ତ୍ରୈଲୋକ୍ୟ ।୯୨୦।
ନଗ୍ର ନରନାରୀ ଦେଖିଣ ଆସନ୍ତି ।
ଯେ ନ ଚହ୍ଲନ୍ତି ଆନ ଦେଖାଇ ଦିଅନ୍ତି । ୯୨୧ ।
ଏଥୁଅନନ୍ତରେ ଲମ୍ବୋପାଦ ରାୟେ ।
ଚମ୍ପାବତୀ ରାଜ୍ୟ ତେଜିଣ ସେହୁ ଅୟେ । ୯୨୨ ।
ଦଶରଥ କହିଲେ ନକଟେ ଅନୁକୂଳ ।
ବାରଚା ପାଇଣ ଅଇଲା ମହୀପାଳ । ୯୨୩ ।
ଆଠେ ପଶିଲା ସେ ସମ୍ଭବ ହୋଇଆସି ।
ଦଶରଥ ଲମ୍ବୋପାଦ ହୋଇଲେ ହସାହସି । ୯୨୪ ।

Digitized by srujanika@gmail.com

ଲମ୍ବୋପାଦ ବସିଅଛୁ ଗଜ ପିଠି ।
ଅଯୁଧ୍ୟା ରାସ୍ତେ ଯାଙ୍କ୍ର ଠାରଦେଲେ ଅଙ୍ଗୁଷ୍ଠି । ୯୨୫ ।
ସହସ୍ରେକ ହସ୍ତୀ ଘେନଣ ସଙ୍ଗେ ସାହା ।
ଅଗିଆଣି ହୋଇଲ୍ଲ ଚମ୍ପାବତୀ ନଗ୍ରନାହା । ୯୨୬ ।
ଦୁଇ ରାଜାଙ୍କର ବାଜିଲ୍ଲ ଝମକ ।
ସକଳ ଭୁବନେ ପଡ଼ିଲ୍ଲ ଜମକ । ୯୨୭ ।
ଲୋକେ ଆନନ୍ଦେ ଧ,ମନ୍ତ୍ର ବର ଦେଖି ।
ଯେ ଯାହାର କାର୍ଯ୍ୟମାନନ୍ତ୍ର ଉପେକ୍ଷି । ୯୨୮ ।
ମାନତ ଗଉରେବ ହୋଇଲେ ମିଶାମିଶି ।
ଯୁବା ଯୁବତୀ ଏ ଥାଟେ ପଶିଯାନ୍ତି ଝାସି । ୯୨୯ ।
କାହା ବାସମାନ ହୋସ୍ତେ ଠିଆ ଟର ।
ଅଞ୍ଚଳ ଟରଗଲ୍ଲ କାହାର ସରୁଶାଢ଼ୀ । ୯୩୦ ।
କାହାର କର୍ଣ୍ଣିକାପ ପଡ଼ିଲ୍ଲକ ତଳେ ।
ଗଜମୋତି ମାନଙ୍କ'ର ତୁଟିଲ୍ଲ ଗହଲେ । ୯୩୧ ।
କେବଣ ସୁନ୍ଦେଶ୍ୱର ତୁଟିଲ୍ଲକ ବାହୁ ।
କାର ନେପୁର ଚରଣୁ ଖସି ଯାଇ । ୯୩୨ ।
କେ ନାସା ବସଣୀ ନାକରୁ କାଢ଼ନ୍ତି ।
ହଜିବ ବୋଲି କେ ତାହା ତୁଣ୍ଡରେ ଧାରନ୍ତି । ୯୩୩ ।
କାହାର ଖୋସା ଫିଟିଣ ବାଳ ମେଲ୍ଲ ।
କେହୁ ଯଉବନ ଧରଣ ଧଇଲ୍ଲ । ୯୩୪ ।
ହସ୍ତୀ ଘୋଡ଼ା ରଥ ଗହଳେଣ ପଶି ।
ଶ୍ରୀରାମଙ୍କୁ ଦେଖିତ ଧାମନ୍ତି ଶୁଭ୍ରକେଶୀ । ୯୩୫ ।
କେ ବୋଲଇ ସଖୀ ଆଗ ହସ୍ତୀରେ କେ ।
ସିତଛତ୍ର ଧରାଇ ଆସଇ କେ ସୁଖେ । ୯୩୬ ।
ଜାଣିମାଦ ଲୋକେ ବୋଲନ୍ତି ହୋ ଶୁଣ ।
ଦଶରଥ ମିତ୍ର ଲମ୍ବୋପାଦ ନୃପରାଣ । ୯୩୭ ।
କେ ବୋଲଇ ରାମ କେବଣ ଠାବେ ଅଛୁ ।
କେ ବୋଲଇ ପଠାଉହୋ ଜାଣିମାନା ପୁଚ୍ଛୁ । ୯୩୮ ।
କେ ବୋଲଇ ଆଗୋ ମଧ୍ୟ ଦଣ୍ଡ ଦେଖ ।
ଗହଳ ହୋଇଣ ଉଡ଼ଇ ଉଲ୍ଲଖ । ୯୩୯ ।
ରତ୍ନମସ୍ତେ ରଥେ କଳସ ବସନ୍ତି ।
ଚଣ୍ଡି ଚରାଳ ଯେ ଫରହର ଉଡ଼ନ୍ତି । ୯୪୦ ।

Digitized by srujanika@gmail.com

ଶ୍ରୀରାମ ଯେ ବନେ କରିଛନ୍ତି ତହିଂ ।
ଡାହାଣେ ଭରଥ ବୀର ଅଟଇ ବର ଭାଇ । ୯୪୧ ।
ଶ୍ରୀରାମର ପ୍ରାୟେ ଦିଶଇ ଦେହବର୍ଣ୍ଣ ।
ଏହାଙ୍କ ରଥ ଗୋ ସୁଧ ଯେ ସୁବର୍ଣ୍ଣ । ୯୪୨ ।
ବାମପାଶେ ଅଛଇ ଲକ୍ଷ୍ମଣ କୁମାର ।
କରେ ଧରିଣ ସେ ଅଛଇ ଅସିବର । ୯୪୩ ।
ନୀଳାମୟେ ରଥ ଏହାଙ୍କ ଶୋହଇ ।
ଚମ୍ପାବର୍ଣ୍ଣ ଶରୀର ଯେ ଜଗତ ମୋହଇ । ୯୪୪ ।
ପଛେ ଶତ୍ରୁଘନ ଲକ୍ଷ୍ମଣ ସାନଭାଇ ।
ଉତ୍ତମ ରଥବରେ ଅଛଇ ଆରୋହି । ୯୪୫ ।
ଜନକ ଝିଅ ଯେବେ କେବଣ ପୁଣ୍ୟକଲା ।
ରୂପ ଅନୁରୂପେ ବର ସେ ପାଇଲା । ୯୪୬ ।
ଧନ୍ୟ ତୁ ସୀତୟା ଗୋ ଧନ୍ୟ ତୋର ତପ ।
ଶ୍ରୀରାମକୁ ବରକରି ବରିଲୁ ସ୍ୱରୂପ । ୯୪୭ ।
ତୁ ସେ ପରମ ଲକ୍ଷ୍ମୀ ଶ୍ରୀରାମ ନାରାୟଣ ।
ଅବନୀରେ ଅବତରିଲ ବିଧାତା ଭିଆଣ । ୯୪୮ ।
ଜନକର ପୁଣ୍ୟ କି କହିବ ସକ୍ଷ ଅଛୁ ।
ଦୋହିତା ପାଇଲା ଜାଣ କମଳାକ୍ଷୀ । ୯୪୯ ।
ଏଥି ଉତ୍ତରେ ଯେ ନାହିଂ ଆନ ତପ ।
ସାଧୁ ସାଧୁ ଜନକ ତୁ ସୀତ୍ୟା ଦେବଙ୍କର ବାପ । ୯୫୦ ।
ଯେସନେକ ବୋଲି ଯେ ପ୍ରଶଂସନ୍ତି ନରନାରୀ ।
କେ ବୋଲଇ ଏଗୋ ଦଶରଥ ଦଣ୍ଡଧାରୀ ।୯୫୧।
କେ ବୋଲଇ ସଖି ଧବଳ ଛତ୍ରମାଳ ।
ହସ୍ତୀଲଗି ହୋଇଅଛୁ ମହୀପାଳ । ୯୫୨ ।
ପାଟଛତ୍ର ଘାୟେ ନ ଦିଶଇ ଗଗନ ।
ଲହେକ ଭ୍ରମର ଯେ ଉଡଇ ଅବଛନ । ୯୫୩ ।
ଏସେ ଦଶରଥ ଶ୍ରୀରାମର ପିତା ।
ଯତନେ ଏହାଙ୍କୁ ଜାତ କଲକ ବିଧାତା । ୯୫୪ ।
ଏହାରେ ସେ ପୃଥିବୀ ହେବାକ ଉଧର ।
ଯହୁଂ ଏହ'ର କୁଳେ ଶ୍ରୀରାମ ଅବତର । ୯୫୫ ।
ଏଥୁଅନନ୍ତରେ ଶୁଣ ଗୋ ଭଗବତୀ ।
ଜନେକ ମନ୍ଦିରେ ରାମ ପ୍ରବେଶ ହୁଅନ୍ତି । ୯୫୬ ।

Digitized by srujanika@gmail.com

ଗଜ ପୃଷ୍ଠରୁ ଉତୁରି ଦଶରଥ ।
ଭୂମିଷ୍ଠ ହୋଇଲେ ଶୁଭ ନରନାଥ । ୯୫୭ ।
ବଶିଷ୍ଠ ବିଶ୍ୱାମିତ୍ର ସୁମନ୍ତ୍ର ଯାବାଲି ।
ବାମଦେବ ସହିତ ଅନେକ ତପଶାଳୀ । ୯୫୮ ।
ଶ୍ରୀରାମ ଲକ୍ଷ୍ମଣ ଭରଥ ଶତ୍ରୁଘନ ।
ସୁଧାଙ୍କୁରୁ ସହିତେ ଲମ୍ବୋପାଦ ରାଜନ । ୯୫୯ ।
ଜନେକ ମୁନି ଆରାଧନା କଲେକ ବହୁତ ।
ଆସ୍ଥାନ ଘେନିଣ ବସିଲେ ସମସ୍ତ । ୯୬୦ ।
ଦଶରଥଙ୍କ କୋଳେ ବସନ୍ତି ଶ୍ରୀରାମ ।
ବ୍ରହ୍ମାଙ୍କର ପାଶେ କି ଅଛଇ କାମ । ୯୬୧ ।
ଲକ୍ଷ୍ମଣ ଭରଥ ଶତ୍ରୁଘ୍ନ ସହିତେ ।
ଦେଖି ସଭାଜନେ ଭାଳନ୍ତି ସମସ୍ତେ । ୯୬୨ ।
କି ଯେ ହରହର ବରିଷ୍ଠ ବଜପାଣି ।
କି ଯେ ଅଗ୍ନି ବରୁଣ ଚନ୍ଦ୍ର ଧନମଣି । ୯୬୩ ।
ମର୍ତ୍ତ୍ୟରେ ଅବତରିଲେ କେବଣ ଗୁଣପାଇଁ ।
ଏ ରବିତଲେ ଆନ ପଟାନ୍ତର ନାହିଁ । ୯୬୪ ।
ବାରୁ ଶ୍ରୀରାମଙ୍କୁ କଳାଘନ ବର୍ଣ୍ଣ ।
ବନ୍ଧୁ ଟିଙ୍କେ କି ପିନ୍ଧିଲା ବସନ । ୯୬୫ ।
କୋଟୀଏ କନ୍ଦର୍ପ ପୁଣ ଏକ ଠାବକଲେ ।
ପାଦକୁ ସମ ଯେ ନୁହଇ ରୂପ ତୁଲ୍ୟେ । ୯୬୬ ।
ଲକ୍ଷେ ଲକ୍ଷଣ ପ୍ରତ୍ୟେକ ପ୍ରାଣ କାୟେ ।
ଧନ୍ୟ ଧନ୍ୟ ଯେହାର ଗର୍ଭଧାରି ମାୟେ । ୯୬୭ ।
ଏଥୁ ଅନନ୍ତରେ ବଶିଷ୍ଠ ମହାଋଷି ।
ଜନେକ ରାଜାକୁ ବଚନ ପ୍ରକାଶି । ୯୬୮ ।
ପ୍ରହରେ ଆସି ହୋଇଲାକ ବେଳ ।
ଅମୃତ ଯୋଗବେଳେ ବରଣ ଅନୁକୂଳ । ୯୬୯ ।
ଆଣ ହୋ ଯୋଗାଡ ସମସ୍ତ ସଜକର ।
ଶୁଭ ଯୋଗେ ଶ୍ରୀରାମ ହେଉ ଆଗେ ବର । ୯୭୦ ।
ଶୁଣିଣ ଜନେକ କୁଶଧ୍ୱଜକଇ ଗୃହିଂ ।
ବରଣ ଯୋଗାଡ଼ ବୋଲାଉଣି ଆଜ୍ଞାଦେଇ । ୯୭୧ ।
ଆଜ୍ଞା ପ୍ରମାଣେ କୁଶଧ୍ୱଜ ଗଲା ।
ଯେ ବିଧି ବିଧାନ ସମସ୍ତ ସାଜିଲା । ୯୭୨ ।

Digitized by srujanika@gmail.com

ବେଦିରେ ଶ୍ରୀରାମଙ୍କୁ ବସାଇଲେ ନେଇଂ ।
ପୂର୍ଣ୍ଣକୁମ୍ଭ ଆଗେ କରି ବସିଲେ ରଘୁସାଇଂ ।୯୭୩।
ପୂର୍ବାଭିମୁଖେ ବସିଲେ ଜନେକ ।
ବଶିଷ୍ଠ ମହାମୁନି କରୁଛନ୍ତି ବାକ୍ୟ । ୯୭୪ ।
ସୁବର୍ଣ୍ଣ କୁମ୍ଭକଇ ବରୁଣ ପୂଜାକଲେ ।
ଇନ୍ଦ୍ରାଦି ଦଶ ଦିଗପାଳନ୍ତ ବରିଲେ । ୯୭୫ ।
ନବଗ୍ରହ ପୂଜା ସାରିଲେ ମହାମୁନି ।
ଦେଶକାଳ ବାକ୍ୟ କରନ୍ତି ବେଦଧ୍ୱନି । ୯୭୬ ।
ଲଗ୍ନ ଯୋଗ କରଣ ନକ୍ଷତ୍ର ସୁମରି ।
ବେଦ ଉକ୍ତ ମନ୍ତ୍ରେ ଯେ ପ ଦ ପୂଜାକରି । ୯୭୭ ।
ବସ୍ତ୍ର ଅଳଙ୍କାର ଶ୍ରୀଫଳ ସହିତେ ।
ଜନେକ ସମର୍ପିଇ ଶ୍ରୀରାମର ହସ୍ତେ । ୯୭୮ ।
ଶିରେ ଚନ୍ଦନ ଲେପିଲେକ ନେଇ ।
ସ୍ୱଧି ସୁବର୍ଣ୍ଣର ପାତ୍ରେକ ସେ ଦେଇଂ । ୯୭୯ ।
ବାସେକ ପିନ୍ଧାଇ ବସ୍ତ୍ରେକ ଉପରଣ ।
କନେକ କୁଣ୍ଡଳ କରନ୍ତି ଆଭରଣ । ୯୮୦ ।
ସୁବର୍ଣ୍ଣର ପଇତା କଣ୍ଠେଣ କଣ୍ଠି ମାଳ ।
ଅଙ୍ଗୁଳିରେ ରତ୍ନମୁଦି ସରଳ ବାହେଣ । ୯୮୧ ।
କୁସୁମ ଶ୍ରୀଫଳ ଦେଇ ରାମକଇ ବରି ।
ଦୋହିତା ଗୋଟି ଦେବ ବୋଲଣ ସତ୍ୟକରି । ୯୮୨ ।
ଗୁରୁ ଭାଇଙ୍କ ବରିଲେ ସ୍ନେହମତେ ।
ବସ୍ତ୍ର ଅଳଂକାର ଶ୍ରୀଫଳ ସହିତେ । ୯୮୩ ।
ଏଥିଅନନ୍ତରେ ଯେ ମଙ୍ଗଳ ବିଧି ।
ସାନନ୍ଦେ କାମେମୀ ବାଟିଲେ ହଳଦୀ । ୯୮୪ ।
ବେଦୀରୁ ଉଠି ଅଧିବାସେ ଗଲେ ବର ।
ଜନେକ ସାରଇ ନାନ୍ଦୀମୁଖି ଶ୍ରାଧବେଭାର । ୯୮୫ ।
ସତ୍ୟାନନ୍ଦଙ୍କୁ ଦେନି ସାରଇ ସବକର୍ମ ।
ପୂଜା କରନ୍ତି ବାସୁକି ନାଗରାଜ । ୯୮୬ ।
ଅଷ୍ଟାକୁଳ ନାଗକଇ ଅର୍ଚ୍ଚନା ବିଧି ସାରି ।
ବୈଶାନର ପୋଡନ୍ତି ଯେ ବ୍ରାହ୍ମଣ ପଞ୍ଚଦ୍ୱାର । ୯୮୭ ।
ଲମ୍ବାବନ୍ତି ମାଳା ପୂର୍ଣ୍ଣକୁମ୍ଭ ନଡ଼ୀକାଳ ।
ବେଦୀର ଉପରେ ଯେ କୁଶର ଚଉଲ । ୯୮୮ ।

Digitized by srujanika@gmail.com

ସ୍ୱେଦଥୁଅନନ୍ତରେ ଅଙ୍ଗ ସ୍ୱର୍ଣ୍ଣମାନେ ।
ଗ୍ରାମଦେବୀ ମଙ୍ଗୁଳି ଆସନ୍ତ ଯେ ବାଧ ବାଧାନେ । ୯୮୯ ।
କେହୁ ଦୂର୍ବାକ୍ଷତ ଧୂପଦୀପ ଘେନ ।
ପଥେ ଯାନ୍ତେ ଗୀତ ଗାବନ୍ତ ତରୁଣୀ । ୯୯୦ ।
ନଗ୍ର ପରମଳ ଯେ ବୁଲନ୍ତ ରାଜବାଟ ।
ଯୁବତୀ ଯିବାରେ ଶୋଭା ପାଉଅଛୁ ରାସ୍ତା । ୯୯୧ ।
ବେଗୀ ପୂଜାସାଉ ନିଜପୁରେ ଆସି ।
ବର ମଙ୍ଗୁଳତ ସଜ ଶୁଭ୍ରକେଶୀ । ୯୯୨ ।
ସୁବର୍ଣ୍ଣ ଖୋରାସ୍ୱେ କୁଙ୍କୁମ ଆଣନ୍ତ ।
ଶ୍ରୀରାମଙ୍କୁ ବେଢ଼ି ଯେ ହୁଳହୁଳ ଦ୍ୟନ୍ତ । ୯୯୩ ।
କେହୁ ହୃଦେ କେହୁ ପୃଷ୍ଠରେ ଲଗାଇ ।
କେ ମୁଖେ ଲଗାନ୍ତ ଆନନ୍ଦେ ସୁଖପାଇଂ । ୯୯୪ ।
କେବଣ ହ୍ୱଂ ନାରୀ ହଳଦୀ ଛଡ଼ାବନ୍ତ ।
ଶ୍ରୀରାମର ଗାଲ କେ ଗେଲେ ଚପିଦ୍ୟନ୍ତ । ୯୯୫ ।
କେ ହସ୍ତ ଧରଣ ଆଣନ୍ତ ଉଚ୍ଛୁଡ଼ି ।
ଆପଣାର କୁଚେ ଲଗାନ୍ତ ନେଇ ଲେଉଡ଼ି । ୯୯୬ ।
କେ ଚରଣ ନେଇ ନିଜ ଜଂଘେ ଲଦ୍ଦ ।
ତଳପା ମର୍ଦ୍ଦିଣ ଲଗାନ୍ତ ହଳଦ୍ଦ । ୯୯୭ ।
କାମଭର ହୋଇଣ କେବଣ ଯୁବତୀ ।
ଶ୍ରୀରାମ ପୃଷ୍ଠରେ ନେଇଂ କୁଚ ଆଉଜାନ୍ତ । ୯୯୮ ।
କେ କୋଳେ କରଦେଇ ପ୍ରେମ ରସଭରେ ।
ହସ୍ତା ଲଗାଇଣ ଭିଡ଼ଇ ଆଣ୍ଠରେ । ୯୯୯ ।
ଶାଳୀ ଶଳା ଖଉଜମାନେ କରନ୍ତ ଚମାଳ ।
କେ ନାସା ଉଚ୍ଛୁଡ଼ି ଦଅନ୍ତ ହୁଳହୁଳ । ୧୦୦୦ ।
ଲଭର ଭିତରୁ କେ ଛଡ଼ାଇ ମଳକୁଟି ।
କେହୁ ଶ୍ରୀରାମର ଫୁଟାନ୍ତ ଅଙ୍ଗୁଷ୍ଠି । ୧ ।
ନାସା ଡ଼ିଆଇଣ କେବଣ ବମୋଷ୍ଠି ।
ଆଖିଲଟା ମାରଣ କେ ରାମଙ୍କୁ ଠାର ଦ୍ୟନ୍ତ । ୨ ।
ଶୂନ୍ୟେ ଶୂନ୍ୟେ ଚୁମ୍ବ ଦେଇଣ ଚାଲନ୍ତ ।
ମଦନ ଖେଳେ ଶାଢ଼ୀ ସମ୍ଭାଳି ନପାରନ୍ତ । ୩ ।
ପ୍ରମୀଭୂତ ହୋଇ ଅଛଇ କେବଣହ୍ୱଂ ନାରୀ ।
ରାମ ରୂପେ କାମଣରେ ଗ୍ୟାନ ହାର । ୪ ।

Digitized by srujanika@gmail.com

କେ ବୋଲଇ ସୀତ୍ୟାକୁ ପାଳବଟି ଭଲେ ।
କୋପ କେବେ ନକରିବ ଦୋଷକଲେ । ୫ ।
ଆବର ବଧୂ ତୁମ୍ଭେ ନୋହୁବନ୍ତି ପୁଣି ।
ଏକଥା ଆମ୍ଭର ଯେ ଅଟଇ ମାଗୁଣି । ୬ ।
ଏ ରୂପେ ପରସ୍ପର ଯତ୍ନ କରନ୍ତି ଯୁବତୀ ।
ଅଳପ ହୋଇଣ ହସନ୍ତି ରଘୁପତି । ୭ ।
ଗୁଣବରଙ୍କର ସଙ୍ଗେ ମଙ୍ଗଳଣ ।
ସୀତ୍ୟାକୁ ମଙ୍ଗୁଳି ଚଳନ୍ତି ନାରୀଗଣ । ୮ ।
କନିଷ୍ଠ ଜନକ ଭଗ୍ନୀ ସହିତେଣ ସତୀ ।
ଯେ ବିଧି ବିଧାନ ସେ ମଙ୍ଗୁଳି ହୁଅନ୍ତି । ୯ ।
ଏଥୁଅନନ୍ତରେ ମୃଦୁଧୂଳିମାନେ ।
କୁଙ୍କୁମ ଘେନିଣ ସେ ରାଜା ସନିଧାନେ । ୧୦ ।
ଭସ୍ମେ ଭରସି ନପାରନ୍ତି ନେଇ ।
ଦଶରଥ ଆପଣେ ବୋଇଲାକ ଗୃହେଁ । ୧୧ ।
ଆଣ ହଳଦୀ ଗୋ ନକର ତୁମ୍ଭେ ଖିଡ଼ ।
ଏ ମୋର ଅଙ୍ଗେ ଲେପରେ ଯୁବତୀ । ୧୨ ।
ପୁତ୍ରକରେ ବଧୂ ଉଚ୍ଛବ ମୋହୋର ।
ହଳଦୀକ ବମୁଖ କ ବସଇ ଶରୀର । ୧୩ ।
ଆଜ୍ଞା ପାଇଣ ମୃଦୁଧୂଳି ମାନେ ।
ରାଜାକୁ କୁଙ୍କୁମ ଲେପନ୍ତି ବହନେ । ୧୪ ।
ସର୍ବାଙ୍ଗେ ବୋଳନ୍ତେ ଦିଶିଲା ସୁନ୍ଦର ।
ସ୍ୱବର୍ଣ୍ଣ ଗୁଣା ଜାଣି ଦାଢି ପଟାନ୍ତର । ୧୫ ।
ପାଚଲା ବାଳରେ ହଳଦୀରସ ମିଶି ।
ଦଶରଥ ରାଜ ର ବଦନ ଶୋଭାଦଶି । ୧୬ ।
ବଶିଷ୍ଠ ବାମଦେବ ବିଶ୍ୱାମିତ୍ର ମୁନି ।
ମଙ୍ଗୁଳି ହୁଅନ୍ତି ଯେ ଅନେକ ଋଷି ଘେନି । ୧୭ ।
ଲମ୍ବୋପାଦ ରାଜା ଯୋଦ୍ଧାଙ୍କୁ ସହିତେ ।
ବରଜାତ ପଣେ ଯାଇଥିଲେ ଯେତେ । ୧୮ ।
ନଗର ନରନାରୀ ମଙ୍ଗୁଳି ହୁଅନ୍ତି ।
ସୁବର୍ଣ୍ଣର ମୟେ ଦିଶିଲାକ ପୃଥ୍ୱୀ । ୧୯ ।
ଦାଣ୍ଡେଣ ହଳଦୀ ହୋଥେକ ବହଳ ।
ମଙ୍ଗଳ ଉଚ୍ଛବ ନଗ୍ରେ ହେଲା ଗୋଳ । ୨୦ ।

Digitized by srujanika@gmail.com

ସ୍ବର ରାଜାଙ୍କର ଯେତେ ବଳ ଥିଲେ ।
ସବୁଙ୍କୁ ହିଂ କୁଙ୍କୁମ ଦାନ ଜନେକହିଂ ଦେଲେ । ୨୧ ।
ସବାରେ ନଡ଼ପ ଘଷିଣ ବରଜାନ୍ତ ।
ନଦୀ ପୋଖରୀକ ସ୍ନାନ କରଯାନ୍ତି । ୨୨ ।
ରାଜା ଦଶରଥ ଲମ୍ବୋପାଦ ସହିତେ ।
ମାର୍ଜଣା ମଣୋହି ସେ ସାରଲେ ତୁରତେ । ୨୩ ।
ଜନେକ ମନ୍ଦିରେ ମିଳିଲେ ସର୍ବେ ଯାଇ ।
ଭୁଞ୍ଜିଣ ବସିଲେ ସେ ଗୌରବ ପାଇଂ । ୨୪ ।
ଦଶରଥ ଲମ୍ବୋପାଦ ଯୋଧ୍ଧାକୁରୁ ସ୍ଵେ ଜନ ।
ସଙ୍ଗେଣ ସକଳ ଅମନାତ୍ୟ ଯେନ । ୨୫ ।
ସନ୍ୟ ଲୋକକୁ ଅନରୂପେ ଠାବଦେଲେ ।
ପତ୍ର ପାଣି ଦେଇ ଅନ୍ନ ପରଷିଲେ । ୨୬ ।
ନାନା ବ୍ୟଞ୍ଜନ ଯେ ଦଅନ୍ତି ଜଣେ ଜଣେ ।
ଦୁଗ୍ଧ ଘୃତର ନାନାଦି ଭିଆଣେ । ୨୭ ।
ପାଣି ପଣା ପଇଡ଼ ମିଷ୍ଟାନ୍ନ କଦଳୀ ।
ଭୂର ଭୋଜନ କରିଦେଲେ ତପଶାଳୀ । ୨୮ ।
ସନ୍ତୋଷ ହୋଇଣ ଉଠିଲେ ସର୍ବଜନ ।
ବାସପାଣି ଘେନି କରନ୍ତି ଆଞ୍ଚୋବନ । ୨୯ ।
କର୍ପୂର କସ୍ତୁରୀ ମିଶାଇ ଭୁଞ୍ଜନ୍ତି ତାମ୍ବୁଳ ।
ଏସନେକ ସମୟେ ଅସ୍ତଗଲ ବେଳ । ୩୦ ।
ରତ୍ନ ମଣ୍ଡୋପ ମଣ୍ଡିଲେ ବହୁଡ଼ ଦୀପଜାଳି ।
ମାଣିକ୍ୟ ପ୍ରଦୀପ ଠାବେ ଠାବେ ତୋଳ ବାଲୀ । ୩୧ ।
ବରବେଶ ହୋଇଣ ବସିଲେ ସ୍ବର ଭାଇ ।
ଶ୍ରୀରାମ ବେଦକାୟେ ବଜେକଲେ ଯାଇ । ୩୨ ।
ଏସନେକ ସମୟେ ଆସଇ ଦେବୀ ସୀତ୍ୟା ।
ହୁଳହୁଳି ଦଅନ୍ତି ସକଳ ବନିତା । ୩୩ ।
ଫଳ ପୁଷ୍ପ ଦେଇଣ ଶ୍ରୀରାମକୁ ନମଇ ।
ହାନ୍ଦୋଳାୟେ ବସି ଅହଙ୍କାଂ ସ୍ଥାନେ ଚଳଇ । ୩୪ ।
ସହସ୍ରେ ଯୁବତୀ ଅଛନ୍ତି ପାଶେ ବେଢ଼ି ।
ଅତି କୋଳାହଳ ହୁଳହୁଳି ପଡ଼ି । ୩୫ ।
ଅହଙ୍କାଂ ସାର ଦେବୀ ଆସଇ ଧାଡକାରେ ।
ଗହଗହ ଲୋକ ଗହଳ ସଙ୍ଗତରେ । ୩୬ ।

Digitized by srujanika@gmail.com

ମଣ୍ଡପରେ ପ୍ରବେଶ ହୋଇଲେ ଦେଖି ଯାଇଂ ।
ଲବଣ ଗ୍ରହମେଶ୍ୱ ସେ ଆରମ୍ଭିଲେ ତହୁଂ । ୩୭ ।
ଏକମନ ହୋଇଣ ପୂଜଇ ଦେବୀ ସ୍ୱସ୍ତି ।
କେତେବେଳେ ଶ୍ରୀରାମ ହେବେ ପତି । ୩୮ ।
ରାଜ କନ୍ୟାଙ୍କୁ ପୂଜନ୍ତି ଶାକାମ୍ଭେରୀ ।
ଯେ ଯାହା ମନ ବାଞ୍ଛା ମନେ ହେଉ କରି । ୩୯ ।
ଅନୁକୂଳ ବେଳ ସେ ହୋଇଲା ନିକଟ ।
ଅଦ୍ଧଗ୍ନ୍ୟ ବିଧାନ ନୀତି ପିବେ ପାଣିଘଟ । ୪୦ ।
ତତକ୍ଷଣେ ହାହୋଲା କରନ୍ତି ବେଗେ ସଜ ।
କୋଳକରି କନ୍ୟାକୁ ଆଣଇ କୁଶଧ୍ୱଜ । ୪୧ ।
ଆଲ୍ଲୋଳକରି ଦେବୀ ଚଣ୍ଡୁଲ ଧରିଥିଲା ।
ଶ୍ରୀରାମର ଉପରକୁ ବର୍ଷଣ ପକାଇଲା । ୪୨ ।
ବର ଉପରେ ଉହାଉଲେ ବାସ ।
ମନେ ମନେ ଶ୍ରୀରାମ ହୋଇଲେ ହସ ହସ । ୪୩ ।
ଶ୍ରୀରାମ ଉପରେ ଦେବୀ ବର୍ଷଣ ତଣ୍ଡୁଲ ।
ଅଦ୍ଧଗ୍ନ୍ୟ ବିଧାନେ ଦେବୀ ଗଲେ ନବୀକୂଳ । ୪୪ ।
ମଣ୍ଡପରେ ପ୍ରବେଶ ହୋଇଲେ ଦେବୀ ସୀତ୍ୟା ଯାଇଂ ।
ଶ୍ରୀରାମଙ୍କୁ ଅଲପ ଅଡ଼କରି ରହିଂ । ୪୫ ।
ଏଥୂଅନନ୍ତରେ ଶୁଣ ଗୋ ମାହେଶ୍ୱରୀ ।
ତୃତୀଅ ଘଡ଼ି ଚହୁଂ ହୋଇଲା ଉମିର । ୪୬ ।
ବେଦୀରେ ଶ୍ରୀରାମ ବରବେଶ ହୋଇ ।
ଦଶରଥ କେ ଲେ ବସିଲେ ରଘୁସାଇଂ । ୪୭ ।
ଦୁଧ ପଇଡ଼ ସେ ନେଇଣ ପୂର୍ଣ ଢାଳ ।
କନ୍ୟାର ଭାଇ ଦାଅଇ ପାଣି ତୋଳ । ୪୮ ।
ପସ୍ମରତକେ ସୁବର୍ଣ୍ଣ ଖୋରା ଦେଇଂ ।
ପାଦ ଉଦକ ସେ ଧଇଲେକ ତହୁଂ । ୪୯ ।
ବାମନ ଅବତାରେ ଯେବଣହୁଂ ପାଦ ।
ପଖାଳି ନପାରି ବ୍ରହ୍ମା ହୋଇଲା ବିଷାଦ ୫୦ ।
ଚଉରାଶି କୋଟି ଗଙ୍ଗା ଜ ଅଣିଲା ଧୋଇ ।
ସେ ପାଦ ଉଦେକ ଶଙ୍କରେ ନପାଇ । ୫୧ ।
ସେ ବିଷ୍ଣୁ ଚରଣ ପଖାଳି ଜନେକ ।
ପୂର୍ବରେ ତପ ଯହୁଂ କଲାକ ଅନେକ । ୫୨ ।

Digitized by srujanika@gmail.com

ଏଥୁଅନନ୍ତରେ ଯେ ବିଭାର ବିଧାନ ।
ପୁନରପି ପୁଷ୍ପବୃଷ୍ଟି କରନ୍ତି ବିପ୍ରଜନ । ୫୩ ।
ଗଙ୍ଗାପାଣି ଧେନୁ ଅର୍ଘେ ଯେ ଦିଅନ୍ତି ।
ମନ୍ତ୍ର ପଢ଼ିଣ ଯେ ଆଚମନ କରାନ୍ତି । ୫୪ ।
ଧୂପ ଆରୋପଣ ମଧୁପର୍କ କରି ।
ତାମ୍ବୁଲ ଦେଇଣ ଯେ ବେଦ ମନ୍ତ୍ର ଉଚ୍ଚାରି । ୫୫ ।
ଏଥୁଅନନ୍ତରେ ବ୍ରାହ୍ମଣ ଭୋଜନ ।
ଡାକହାକ ଦିଅନ୍ତି ଭାଟ ବନ୍ଦିଜନ । ୫୬ ।
ସୀତାଙ୍କୁ ଆଣିଲେ କନ୍ୟାବେଶ କରି ।
ଶିରରେ ମୁକୁଟ ଗଳାରେ ମାଳଭରି । ୫୭ ।
ପିତାର କୋଳରେ ବସିଲେ ଦେବୀ ଆସି ।
ଦେଖିଣ ସମସ୍ତେ ବୋଲନ୍ତି ପ୍ରଶଂସି । ୫୮ ।
ସାଧୁ ସାଧୁ ସୀତା ଶ୍ରୀରାମଙ୍କୁ ବରଇ ।
ଏହା ରୂପକୁ ଶ୍ରୀରାମ ପଟାନ୍ତର ଘଟଇ । ୫୯ ।
ଧନ୍ୟ ଧନ୍ୟ ଶ୍ରୀରାମ ହୋ ସର୍ବାଙ୍ଗସୁନ୍ଦର ।
ସୀତାର ରୂପକୁ ଅନୁରୂପେ ବର । ୬୦ ।
ଜନକର କୋଳେ ଅଛଇ ଦୁଲଣୀ ।
ବରୁଣ ବସିଲେକ ଯେହ୍ନେଣ କମଳାଣୀ । ୬୧ ।
ଶ୍ରୀରାମ ଅଛନ୍ତି ଦଶରଥ କୋଳେ ।
ନାହିଂ ପଟାନ୍ତର ସେ ମହୀମଣ୍ଡଳେ । ୬୨ ।
ବିଭାଲଗ୍ନ ବେଳ ହୋଇଲାକ ସହୁଂ ।
ସ୍ୱର୍ଗରେ ଦୁନ୍ଦୁଭି ବାଜିଲାକ ତହୁଂ । ୬୩ ।
ବ୍ରହ୍ମା ସହିତେଣ ଇନ୍ଦ୍ରାଦି ଦେବଗଣ ।
ମାତଲିକି ରାଇଂ ହେ ବୋଲନ୍ତି ବଚନ । ୬୪ ।
ତୁ ଯାଇଂ ଶ୍ରୀରାମର ବିଭା ଦେଖି ଆସ ।
ଶୁଣିଣ ମାତଲି ହୋଇଲା ହରଷ । ୬୫ ।
ବୈଦେହୀ ମଣ୍ଡଳେ ପ୍ରବେଶ ହେଲା ଆସି ।
ବିଶ୍ୱାମିତ୍ର ସନ୍ନିଧେ ଗୌରବ ପାଇ ବସି । ୬୬ ।
ଶୁଣ ପାର୍ବତୀ ଗୋ ଏଥୁଅନନ୍ତରେ ।
କୁଳ ଗୋତ୍ର ଉଚ୍ଚରିଲେ ବଶିଷ୍ଠ ମୁନୀଶ୍ୱରେ । ୬୭ ।
ଦେଶକାଳ ମହା ବାକ୍ୟନ୍ତ ଉଚ୍ଚରି ।
ଶ୍ରୀରାମ ଦକ୍ଷହସ୍ତ ଆଣି ଧରି । ୬୮ ।

Digitized by srujanika@gmail.com

ସୀତ୍ୟାର ଦକ୍ଷିଣ କରସ୍ଥଳେ ନେଇ ।
ମନ୍ତ୍ର ପଢ଼ି କୁଶ ରଜ୍ଜୁରେ ବାନ୍ଧଇ । ୬୯ ।
ଶଙ୍ଖେ ପାଣି ଆଣି ଜନେକ ବୃଷ୍ଟି ଦେଲା ।
ଶ୍ରୀରାମଙ୍କୁ ନିଜ ଦୋହିତା ସମର୍ପିଲା । ୭୦ ।
ହୁଳହୁଳି ଧ୍ୱନି ଶୁଭଇ ଅପାର ।
ବିବିଧ ଶବଦେ ବାଜଇ ବୀର ତୂର । ୭୧ ।
କୋଟୀଏକ ଶଙ୍ଖ ସ୍ଫୁରଇ ଘନଘନ ।
ସୁସ୍ୱର ସ୍ୱରେ ଯେ କରନ୍ତି ଗାୟନ । ୭୨ ।
ଦେବେ ଆନନ୍ଦ ଯେ ସ୍ୱର୍ଗପୁରେ ଥାଇ ।
କୁସୁମ ବରଷନ୍ତି ବରକନ୍ୟା ଶିରେ ନେଇଂ । ୭୩ ।
ଶ୍ରୀରାମ ସୀତାଙ୍କୁ ପରିଗ୍ରହ କରି ।
କୁଙ୍କୁମ ନାଇଲକ ମର୍କତ ପୋଖରୀ । ୭୪ ।
କନ୍ୟାଦ ନ ଦେଇ ଦକ୍ଷିଣା ମୁନିଦେଲା ।
ଲକ୍ଷେକ ଶୁଦ୍ଧ ସୁବର୍ଣ୍ଣ ସମର୍ପିଲା । ୭୫ ।
ଲକ୍ଷେକ ସୁବର୍ଣ୍ଣ ଶ୍ରୀରାମର ଶିରେ ।
ଆନନ୍ଦେ ନିଉଛାଳିଲା ଜନେକ ମୁନିମ୍ବରେ । ୭୬ ।
ବିବିଧ ଅଳଂକାର ଦେଲେକ ବହୁତ ।
ରୂପାସୁନା ଯୋଗାଡ଼ ବିବିଧ ପଦାର୍ଥ । ୭୭ ।
ଗଡୁ ଗରିଆ ନାଲୁଆ ରତ୍ନଝରି ।
ଗୋଡ଼ଧୁଆ ହାତଧୁଆ ପାଇଂ ଯେ ଡ଼ାବୁରି । ୭୮ ।
ମଣ୍ଡା ଛାଟିଆ ମୁଖ ଦରପଣ ।
ଝଣ୍ଡା ଶାବେଳୀ ଯେ ଖୀର କମାଯୁଣ । ୭୯ ।
ଲକ୍ଷେକ ଗଜ ନିଘୋଡ଼କରି ସାଜି ଆଣି ।
ଯୋଧା ସହିତେଣ ଅଛନ୍ତି ଆଡ଼େଣି । ୮୦ ।
କୋଟୀଏ ଅଶ୍ୱ ସଲକ୍ଷଣ ସହିତେ ।
ଆଡ଼ବାଖର କରି ସାଜିଣ ରହିତେ । ୮୧ ।
ଲକ୍ଷେକ ଗୋରୁ ଯେ ସମବତ୍ସା କରି ।
ଲକ୍ଷେକ ପରିବାରି ଅଳଙ୍କାର ଭରି । ୮୨ ।
ଲକ୍ଷେକ ଦେଲା ରାଜା ଶୁଦ୍ଧ ଗୁରୁମାଳା ।
ଲକ୍ଷେକ ହାରୀ ଯେ ବେନି ଲକ୍ଷ ପୋଏଲା । ୮୩ ।
ଅଗିବ୍ରତେକ ରଥ ରଥିଙ୍କ ସହିତେ ।
ରତ୍ନମୟ କରି ମଣ୍ଡିଲେ ଶ୍ୱେତନେତେ । ୮୪ ।

Digitized by srujanika@gmail.com

ଲକ୍ଷେକ ଭ୍ରମର ଲକ୍ଷେକ ପାଟଛତ୍ର ।
ଲକ୍ଷେକ ଦେଲା ରାଜା ସୁରଙ୍ଗଣୀ ପାଟ । ୮୫ ।
ଲକ୍ଷେକ ମୁକୁତା ଚନ୍ଦ୍ରକାନ୍ତ ଜାଣି ।
ଲକ୍ଷେକ ଦେଲେ ରାଜା ପଦ୍ମରାଗ ମଣି । ୮୬ ।
କଠାଉ ବଞ୍ଚଣି ସବୁ ରତ୍ନମୟେ ।
ରତ୍ନ ପଲଙ୍କରେ ନେତ ତୁଳି ଶୋହେ । ୮୭ ।
ରଙ୍ଗ ପାଟରେ ନିର୍ମିତ ମୁତୁଲି ।
ହାଥୀଦନ୍ତ ପଗଡ଼ ଖଟ ଦୋଳି । ୮୮ ।
ରତନ ଚନ୍ଦ୍ରୁଆରେ ସୂଚୀ କମଟେର ।
ରତ୍ନ ସିଂହାସନେ ମୁକୁତାର ଝରା । ୮୯ ।
ତାଡ ବାହୁଟି ବଦ ମୁଦ୍ର ଶିକୁଳି ।
ଚରଣେକଇ ତୋଡ଼ର କଟୀରେ ମେଖଳା । ୯୦ ।
ଅଙ୍ଗୁଷ୍ଠିକ ମୁଦ୍ରିକା ଭୁଜକୁ କଙ୍କଣ ।
ଭୁଜକଇ ବଳୟ ମ୍ରକତ ରସାଣ । ୯୧ ।
ହୃଦକୁ ପଦେକ କଣ୍ଠକୁ ହବ୍ୟହାର ।
କର୍ଣ୍ଣକୁ କୁଣ୍ଡଳ ବିବିଧ ପ୍ରକାର । ୯୨ ।
ସମ୍ପତ୍ତି କରି ରାଜା ଦେଲା ଯଉତୁକ ।
ଦେଖିଣ ଆନନ୍ଦ ହୋଇଲେ ସର୍ବଲୋକ । ୯୩ ।
ଭଣ୍ଡାର ସହିତେ ସମର୍ପିଲା ଆଣି ।
ଚତୁରଙ୍ଗ ବଳ ଦେଲା ଶଙ୍ଖେ ଯେନ ପାଣି । ୯୪ ।
ଅସ୍ଥାନୁ ଉଠି ରାଜା ଯୋଡ଼ଇ ବେନି କର ।
ଦଶରଥ ରାଜା ଅଯୁଧ୍ୟା ଈଶ୍ୱର । ୯୫ ।
ଯଉତୁକ ଦେବାକୁ ମୁଁ ନୁହଇ ଭାଜନ ।
ଦେଶ ଘୋଷ ନାହିଁ ମୁଁ ନୁହଇ ରାଜନ । ୯୬ ।
ଏ ମୋର ଦୋହିତା ସୀତା ନାମେ ବାଳୀ ।
ରୂପଗୁଣେ ସମାନ ନାହିଁ ମହୀଆଳୀ । ୯୭ ।
ଦଶରଥ ପୁତ୍ରଙ୍କୁ ଦୋହିତା ମୋର ଦେଲି ।
ରଘୁନାଥ ବଂଶକୁ ମୁଁ ସମର୍ପି ହୋଇଲି । ୯୮ ।
ଶୁଣି ଦଶରଥ ବୋଇଲେକ ଥାଇଂ ।
ହୋଇଲ ସିନ୍ଧୁ ମୁ ତୁମ୍ଭେ ବନ୍ଧୁ ନରସାଇଂ । ୯୯ ।
ତୋହୋର ଦୋହିତା ମୋ ପୁତ୍ରକଇ ଦେଲୁ ।
ଅଯୁଧ୍ୟାରେ ଜାରେଣୀ ରୁ ଆଜନ୍ହୁଂ ହୋଇଲୁ । ୧୦୦ ।

Digitized by srujanika@gmail.com

ଏଥି ଜନେକ ଯେ ବସଇ ତୋଷହୋଇ ।
ଇଷ୍ଟବନ୍ଧୁ ଲୋକେ ଯଉତୁକ ଦେଇ । ୧୦୧ ।
କନ୍ୟାର ମାତା ଉତ୍ସୋଣୀ ଖଣ୍ଡିଆଇ ।
ବନ୍ଧାଇ ଯଉତୁକ ଦଅନ୍ତି ମୁଖଗୃହ୍ଣ । ୧୦୨ ।
ଅର୍ଦ୍ଧ୍ୟନାରୀ ମିଳି ଚଣ୍ଡୁଲେ ଚନ୍ଦ୍ରୋପନା ଶାଢ଼ୀ ।
ହସ୍ତ ବନ୍ଧଣି କୁଶଗଣ୍ଠି ଫେଡ଼ି । ୧୦୩ ।
ଅଗ୍ନି ସ୍ଥାପନ ଯେ କଲେନ୍ତି ବନ୍ଧୁଜନ ।
ଇଷ୍ଟ ହୋମେଣ ପୂଜନ୍ତି ହୁତାଶନ । ୧୦୪ ।
ଭୁଆ ହୋମ ବୋଲି ଅଛନ୍ତି ଯେ ପୁଣି ।
ଗଙ୍ଗୁର ହୋମ ଯେ ଆଚରନ୍ତି ଆଣି । ୧୦୫ ।
ଲଜା ହୋମକଲେ ତଥିର ଉପରେ ।
ଘୃତରେ ତୋଷ ହୋଇଲେ ଅଗ୍ନି ବଶାନରେ । ୧୦୬ ।
ହୋମର ଧୂମ ଉର୍ଦ୍ଧ ଧାଇଁ ଯାଇ ।
ସୀତାଙ୍କର ମୁଖ ସନ୍ନିଧ୍ୟେ ଯାଇପାଇ । ୧୦୭ ।
ଫୁଟିଲା ପଦ୍ମରେ ଯେହ୍ନେ ଭ୍ରମର ଆଣକତ ।
ମଧୁର ଲୁବ୍ଧେ ହୋଇଣ ପ୍ରମତ୍ତ । ୧୦୮ ।
ହୋମ ପୂର୍ଣ୍ଣେଣ ଦକ୍ଷିଣା ବିଧି ସାର ।
ଆଶିଷ ଦଅନ୍ତି ଯେ ସକଳ ତପସ୍ବୀ । ୧୦୯ ।
ଆଦ୍ୟତ୍ୟ ଦୋହତା ପଢ଼ନ୍ତି ବଶିଷ୍ଠ ।
ପୂର୍ବର ଉଆଣ ଅଛଇ ଯେହ୍ନୁ ପାଠ । ୧୧୦ ।
ଅର୍ଦ୍ଧ୍ୟ ମୁକ୍ତାସ୍ତେ ଆସନ୍ତି ବନ୍ଧାଇ ।
ଏକନ୍ତୁ ଆରେକ ଯେ ଆଗସର ଧାଇଂ । ୧୧୧ ।
ଚଉଷଠି କାଣ୍ଡି ବିଖ୍ୟର ମନ୍ତ୍ରବେଦ ।
ବଶିଷ୍ଠ ସୁମରଣା କଲେ ପଦେ ପଦ । ୧୧୨ ।
ହେନ୍ତୁ ବେଦୀରେ ଯେ ଭୂଥକୁ ବିଶ୍ୱାକର ।
ମାଳୁଣୀ ନାମେ କୁଶଧ୍ୱଜ କୁମାରୀ । ୧୧୩ ।
ଜନେକ କନ୍ୟାକୁ ସମର୍ପଣ କଲା ।
ଅନେକ ବିଧିମତେ ଯଉତୁକ ଦେଲା । ୧୧୪ ।
ଲକ୍ଷ୍ମଣ ବୀର ଯେଥୁଅନନ୍ତରେ ।
ବରବେଶ ହୋଇ ବସିଲେ ବେଦୀପରେ । ୧୧୫ ।
ସୀତାର କନିଷ୍ଠ ଉର୍ମିଳା ନାମେ ବାଳୀ ।
ଜନେକ ରାଜାର ସେ ଅଛଇ ଦୁଲାଳୀ । ୧୧୬ ।

Digitized by srujanika@gmail.com

ତାହାଙ୍କଇ ଲକ୍ଷ୍ମଣ ହୋଇଲେକ ବଶ ।
ଚନ୍ଦ୍ର ରେହୋଣୀ ଜାଣି ଦିଶିଲେକ ଶୋଭ । ୧୧୭ ।
ଲକ୍ଷ୍ମଣ କନିଷ୍ଠ ନାମ ଶତ୍ରୁଘନ ।
ଦଶରଥ ରଜାର ସେ କୋଡ଼ର ନନ୍ଦନ । ୧୧୮ ।
ଜନେକର କୋଳେ ଅଛି ଭାଇର ତନଇ ।
ଦଶରଥର କୋଳେ ଅଛି ଲକ୍ଷ୍ମଣର ଭାଇ । ୧୧୯ ।
ସୁକିର୍ତ୍ତି ନାମ ଯେ ଅଟଇ ତାହାର ।
ରୂପେ ତୁଳାଇତ ନାହିଂ ପଟାନ୍ତର । ୧୨୦ ।
କୁଶଧ୍ୱଜ ବିଅ ମାଳତି ତହିଂ ସାନ ।
ତାହାଙ୍କଇ ବଶ ହୋଇଲେ ଶତ୍ରୁଘନ । ୧୨୧ ।
ଗୁଣବନ୍ତଙ୍କର ପାଶେ ଗୁଣକନ୍ୟା ।
ନାହିଂ ତୁଳାଇତ ଆନ ଯେ ପ୍ରତିମା । ୧୨୨ ।
ଅନ୍ୟ ନାରୀମାନେ ବନ୍ଦାପନ୍ତ ଆସି ।
ବର କନ୍ୟା ଯେ ଜନେକ ମନ୍ଦିରେ ଯାଇବସି । ୧୨୩ ।
ସୀତାର ପଛେ ଆସନ୍ତି ଶ୍ରୀରାମ ।
ରଥକ ଗୋଡ଼ାଇଅଛି କବା କାମ । ୧୨୪ ।
ଜନକ ଅନ୍ତପୁରେ ଯାଇ ସର୍ବେ ମିଳି ।
ଆସିଣ ବେଢ଼ିଲେ ସକଳ ଯେ ବାଳୀ । ୧୨୫ ।
ନେତ ତୁଳରେ ବସନ୍ତି ବରକନ୍ୟା ।
ଯୁଅ ଖେଳନ୍ତି ବିବିଧ ରଞ୍ଜନା । ୧୨୬ ।
ସୁବର୍ଣ୍ଣର କଉଡ଼ି କୁଡ଼ାବନ୍ତି ନେଇ ।
ବାଳୀଯେ ବାଛନ୍ତି ବରକନ୍ୟାଙ୍କର ପାଇଂ । ୧୨୭ ।
ଦୁଇବାଳୀ ମିଶାଇ ସୀତାର ହସ୍ତେ ଦେଲେ ।
ଖେଳ ହାର ଜିତାକୁ ପଣକା ପୁଣ କଲେ । ୧୨୮ ।
କନ୍ୟାଙ୍କର ଲୋକେ ବୋଲନ୍ତି ତହିଂ ଆଜ୍ଞ ।
ଶ୍ରୀରାମର ପଣହିଂ ଅନ୍ୟ ଆମ୍ଭର ନାହିଂ । ୧୨୯ ।
ବର ପାଶ ଲୋକେ ବୋଲନ୍ତି ତୁମ୍ଭେ ଶୁଣ ।
ସୀତା ଯେବେ ଆମ୍ଭେ ନେବୁ ଦନ ନଷ୍ଟେ ଜାଣ । ୧୩୦ ।
ଆନ ଯୁବତୀ ନୋହିବୁ ଆମ୍ଭେ ବଶ ।
ପରନାରୀ ନ ହରିବୁ ପାଳିଲୁ ଆମ୍ଭେ ଏହା । ୧୩୧ ।
ଦୁଇକୁଳ ଯହିଂ ହୋଇଲେ ସନମତ ।
କଉଡ଼ି ପାଡ଼ଇ ଦେବୀ ଜନେକ ଦୋହିତ । ୧୩୨ ।

Digitized by srujanika@gmail.com

ସୀତାର ପାଳ ପଡ଼ିଲାକ ସନ୍ତୁଂ- ।
ନାରୀମାନେ ହୁଳହୁଳି ଦେଲେ ତହୁଂ । ୧୩୩ ।
ଆମ୍ଭେ ଜିଣିଲୁ ବୋଲି ବୋଲନ୍ତି କନ୍ୟାଲୋକେ ।
ପୁଣି ବସ୍ତ୍ରର କରନ୍ତି ତହୁଂ ଥୋକେ । ୧୩୪ ।
ଆବରବେଳେ ଏବେ ଶ୍ରୀରାମ ପାଡ଼ୁ ପାଳି ।
ତେବେ ସେ ମଣିମାନ ଆମ୍ଭେ ସରିକର । ୧୩୫ ।
ଏକାବେଳେକେ ଯେ ନ ବୁଝିଲୁ ସନ୍ଧି ।
ସମସ୍ତେ ବୋଇଲେ ବୁଝ ଏ ଏବଧି । ୧୩୬ ।
ସୀତାର କରୁ ଯେ କଉଡ଼ି ଯେ ନଗଲେ ।
ନାଗରୀ ନାରୀ ନେଇ ଶ୍ରୀରାମ କରେ ଦେଲେ । ୧୩୭ ।
ଶ୍ରୀରାମ ସଞ୍ଚିଣ ପାଡ଼ିଲେକ ବାଳୀ ।
ପୁଣିହିଂ ଜିଣିଲ ଯେ ଜନେକର ବାଳୀ । ୧୩୮ ।
କନ୍ୟାଙ୍କ ଲୋକେ ହୁଳହୁଳି ଦିଅନ୍ତି ।
କୋପଲର ହୋଇ ଶ୍ରୀରାମ କହନ୍ତି । ୧୩୯ ।
ଏବେ ଯେ ହାରଇ ସେ ତାହାର ସେବକ ।
ସାକ୍ଷୀ ହୋଇଥିବ ତୁମ୍ଭେ ସର୍ବଲୋକ । ୧୪୦ ।
ଶୁଣିଣ ସମସ୍ତେ ସନ୍ତୋଷ ହୁଅନ୍ତି ।
ଶ୍ରୀରାମ କଉଡ଼ି ତୋଳଣ ଅଛନ୍ତି । ୧୪୧ ।
କନ୍ୟାଙ୍କ ଲୋକେ ବୋଲନ୍ତି ତୁମ୍ଭେ ଗୁଡ଼ ।
ଏଥର ହୋଇବ ଆମ୍ଭର ଯେ ପୀଢ଼ । ୧୪୨ ।
ସୀତା ପକାଇବ ଆମ୍ଭେ ସର୍ବେ ଜାଣି ।
ତୁମ୍ଭେ କଉଡ଼ି କଂପା ଅଛ ଆଣି । ୧୪୩ ।
ହସିଣ ଶ୍ରୀରାମ ଯେ କଉଡ଼ି ଛାଡ଼ିଦେଲେ ।
ଯୁବତିମାନେ ନେଇ ଜାନକୀ ହସ୍ତେ ଦେଲେ । ୧୪୪ ।
ପାଳି ବାଳୀଧର ଝଁମକ ଇ ସ୍ତ୍ରୀ ।
ଅଳପ ହସିଣ ସେ ହୋଇଣ ତୋଷ ମତି । ୧୪୫ ।
ପକାନ୍ତେ ହେଂ ପଡ଼ିଲା ପୁଣ ସୀତା ପାଳି ।
ଜଗତଜିତାକୁ ଜିଣିଲ ଜନେକଦୁଲାଳୀ । ୧୪୬ ।
ଏଥୁଅନନ୍ତରେ ମୁଥର ବଧସାର ।
ବନ୍ଦାଇ ଆସନ୍ତି ଜନେକ ନଗ୍ରନାରୀ । ୧୪୭ ।
ଦୁର୍ବା ଅକ୍ଷତ ଯେ ଶ୍ରୀରାମ ଶିରେଦିଅନ୍ତି ।
ପରିହାସ ଲୋକେ ନାସିକା ଉଡ଼ୁଡ଼ନ୍ତି । ୧୪୮ ।

Digitized by srujanika@gmail.com

ଗହଳେ ହୁଲହୁଳି ପଡ଼ଇ ନିରନ୍ତର ।
ଲକ୍ଷ୍ମୀ ନାରାୟଣ ବିଜୟେ ଜନେକ ମନ୍ଦିର । ୧୪୯ ।
ବନ୍ଦାପନା ବିଧି ସରିଲାକ ଯହୁଂ ।
ଭୁଞ୍ଜିବାକୁ ପୁଣି ଠାବ କଲେ ତହୁଂ । ୧୫୦ ।
ଏକଇ ସୁବର୍ଣ୍ଣ ଥାଳ ଆଣି ଦେଲେ ।
ବରକନ୍ୟା ଏଥି ଭୁଞ୍ଜସି ବୋଇଲେ । ୧୫୧ ।
ରତ୍ନଝରରେ ଦିଅନ୍ତି ପାଣି ତୋଳି ।
ଅନେକ ଯୁବତୀ ଅଛନ୍ତି ତହିଂମିଳି । ୧୫୨ ।
ଜନେକର ଘରଣୀ ପରଷଇ ଅନ୍ନ ।
ବାଣମୁଖି ଅନ୍ନ ମୁକୁତାର ବର୍ଣ୍ଣ । ୧୫୩ ।
ଲବଣ ଗୁଣ୍ଡି ଯେ ବସିଲ ଘିଅ ଦେଲା ।
ଜମ୍ବିଲ ଦେଇ ଅଦାରସ ସମର୍ପିଲା । ୧୫୪ ।
ମୁଗ ପଇଡ ଯେ ସୁବର୍ଣ୍ଣ କାନ୍ତିକାଣି ।
ଆନନ୍ଦ ଚିତ୍ତେ ତାହା ଭୁଞ୍ଜନ୍ତି ରଘୁପପାଣି । ୧୫୫ ।
ସୀତଯ୍ୟା କରେଯେ ଅନ୍ନକୁ ବଢ଼ାଇଲା ।
ରତ୍ନଚୂଡ଼ରେ ଶ୍ରୀରାମ ରୂପ ଯେ ଦିଶିଲା । ୧୫୬ ।
ପୀତ ବସନ ଯେ ମୁକୁଟ କୁଣ୍ଡଳ ହାର ।
ଶିଖୀକଣ୍ଠ ପ୍ରାୟେ ବିରାଜଇ ଶରୀର । ୧୫୭ ।
ଦେଖିଣ ଜାନକୀ ନ କାଢ଼ଇ ହସ୍ତ ।
ଏହୁ ସେ ମୋହୋର ଯେ ଅଟଇ ପ୍ରାଣନାଥ । ୧୫୮ ।
ଅନେକ ତପେଣ ପାଇଲି ଏହୁ ବର ।
ଧନ୍ୟ ଶ୍ରୀରାମ ତୁମ୍ଭେ ସର୍ବାଙ୍ଗସୁନ୍ଦର । ୧୫୯ ।
ଏତେ ବିଗ୍ରହ ଦେବୀ ନିରେପଇ ପୁଣ ପୁଣି ।
ଦେଖି ହସନ୍ତି ସକଳ ତରୁଣୀ । ୧୬୦ ।
କେ ବୋଲଇ କମ୍ପା ଗୋ ନ ଭୁଞ୍ଜଇ ସତୀ ।
କେ ବୋଲଇ ଆଗ ଭୁଞ୍ଜିଲେ ବୋଲି ପତି । ୧୬୧ ।
ଉଚ୍ଛିଷ୍ଟ ବୋଲି ଅବା ନ କଲେ ଆହାର ।
ବଶର କାଳେ ମାଗୋ ଏସନେକ ବେଭାର । ୧୬୨ ।
କେ ବୋଲଇ ଅବା ଆମ୍ଭକୁ ଲାଜକଲା ।
ବହୁତ ଲୋକ ଦେଖି ଅନ୍ନ ନ ଭୁଞ୍ଜିଲା । ୧୬୩ ।
ଚାଲ ଏହାଙ୍କ ଆଗୁଂ ଆମ୍ଭେ ଉଠିଯିବା ।
ହିନକ ଉପାସିଏ ସ୍ବାଙ୍କ ସନ୍ନିଧ୍ୟେ ନଥିବା । ୧୬୪ ।

Digitized by srujanika@gmail.com

ବିସ୍ମୟ ହୋଇ ବୋଲନ୍ତି ସେ ଯୋକାଏ ସ୍ତ୍ରୀଗଣ ।
ଆମ୍ଭେ ଜାଣିଲୁନ ସୀତାଙ୍କର ମନ । ୧୬୫ ।
ଅନ୍ନ ଭୁଞ୍ଜିତ ସେ ବଢ଼ାଇଲା ହସ୍ତ ।
ରହୁ ତାଙ୍କରେ ସେ ଦେଖିଲେ ପ୍ରାଣନାଥ । ୧୬୬ ।
ସ୍ୱାମୀର ବଦନ ଦେଖିଣ ସୁନ୍ଦେଶ୍ୱ ।
ଅନ୍ନ ନ ଭୁଞ୍ଜି ସେ ଅଛୁ ଲଜ୍ଜେକଣ । ୧୬୭ ।
ହସ୍ତ କାଢ଼ିଦେଲେ ନଦେଖିବେ ନାହା ।
ତେଣୁକଣ ଦେବୀ ନ ଗୁଲଇ ବାହା । ୧୬୮ ।
ଘଟ୍ଟଂ ଗୁପଚ ସେ ପ୍ରସଙ୍ଗ ହୋଇଲା ।
ଏକାନ୍ତର କଥା ସେ ଜଗତ ଜାଣିଲା । ୧୬୯ ।
ତେଣୁକଣ ବେଗେ ଭୁଞ୍ଜିଲେ ସୀତା ଖତ ।
ବିବିଧ ବ୍ୟଞ୍ଜନ ସ୍ୱସ୍ୱାଦ ପଦାର୍ଥ । ୧୭୦ ।
ଝୁଡ଼ାବଡ଼ା ଖଇଣ ଛଡ଼ରସ ବିଧି ।
ନଳବିଧି ରନ୍ଧଣା ହୋଇଛୁ ପ୍ରସିଦ୍ଧି । ୧୭୧ ।
ଘୃତରେ ପକ୍ୱ କଣ୍ଟକନ୍ତ ଆମ୍ବିଳ ।
ଦୁଧ ଖଣ୍ଡ ଗୋଟିକା ପରଷନ୍ତ ଅମୂଲ୍ୟ । ୧୭୨ ।
ଶ୍ରୀରାମ ଭୁଞ୍ଜିଣ ପଶଂସା କରନ୍ତି ।
ଦଧି ଲଡ଼ୁ ଛେନାନାଡ଼ୁ ମନୋହର ଶ୍ରୀରାମ ଭୁଞ୍ଜନ୍ତି ।୧୭୩।
ଖିର ଖିରସା ଆଣି ପରଷନ୍ତି ଅପାର ।
ସର ପାପୁଡ଼ ଛେନା ପିଠା ଶାକର । ୧୭୪ ।
ବଡ଼ କାକରା ନାନାବର୍ଣ୍ଣ ପୁଲି ।
ରସକୋରା ଖଣ୍ଡଖଜା ସ୍ୱେ ସୁଆଳି । ୧୭୫ ।
ଡାଲିମ୍ବ ଆମ୍ବ ପାଚିଲା ପନସ ।
ଫୁଟି କାକୁଡ଼ି ନାନା ଫଳରସ । ୧୭୬ ।
ପଇଡ଼ ସଂଗତରେ ନବାତ ଗୋଳଦେଇ ।
ମରିଚ କର୍ପୂର ତହିଁ ଅଛନ୍ତି ମିଶାଇ । ୧୭୭ ।
ଗଙ୍ଗବାସ ପାଣି ସଙ୍ଗତେ ତାହା ଦେଲେ ।
ଅମୃତ ପାଣି କଦଳୀ ନେଇ ପରଷିଲେ । ୧୭୮ ।
ମୁଣୋହ୍ୱ ସାରଣ ସନ୍ତୋଷ ବର ସ୍ୱର ।
ଏଥୁଅନନ୍ତରେ ଆଚ୍ଛୋଦନ ସାର । ୧୭୯ ।
ଶ୍ରୀମୁଖ ପୋଛିଣ ଭୁଞ୍ଜନ୍ତି ଗୁଆପାନ ।
ଶଯ୍ୟନ ମନ୍ଦିର ମଣ୍ଡନ୍ତି ନାରୀମାନ । ୧୮୦ ।

Digitized by srujanika@gmail.com

ଗଜଦନ୍ତ ପଲଙ୍କେ ସୁବର୍ଣ୍ଣ ପିତୁଳ ।
ରତ୍ନମୟେ କମ ଛଡ଼ବନ୍ଧେ ଅଙ୍ଗତାଳ । ୧୮୧ ।
ତହିଂର ଉପରେ ପାଟତୁଳୀ ପନ୍ତ ।
ଉପରେ ବିଛାଇଲେ ଶୁକଳ ପାଛୁଡ଼ି । ୧୮୨ ।
ନେତର ମୁଚୁଳି ମୁଚଳା ଆନରୂପ ।
ପାଶେ ମୋନାନଲେ ଅଗ୍ର ଧୂଆଁ ଧୂପ । ୧୮୩ ।
ସେଜରେ ବିଞ୍ଚିଲେ ନେଇ ପାଖୁଡ଼ା ସେବତୀ ।
କର୍ପୁର ଧୂଳ ତହିଂ ଛିଞ୍ଚାଡ଼ି ପକାନ୍ତି । ୧୮୪ ।
ଉପରେ ଚନ୍ଦ୍ରୁଆ ଗଗନ ପଟାନ୍ତର ।
ତାରାଗଣ ଯେହ୍ନ ଉଦୟେ ଶଶଧର । ୧୮୫ ।
ଠାବେ ଠାବେ ପଦ୍ମ ଅଛଇ ଉଲୁଟି ।
ମାଣିକ୍ୟ ମୁକୁତା ମର୍କତ ମଣି ଜଡ଼ି । ୧୮୬ ।
ସବୁ ପତଳ ବସ୍ତ୍ର ଚନ୍ଦ୍ରକାନ୍ତ ଫେରା ।
ଚାମର କୁସୁମରେ ଲୁଲେ ମୁକୁତାର ଝରା । ୧୮୭ ।
ଦିବ୍ୟ ପଲଙ୍କ ମଣ୍ଡିଲେ ସହୁଂ ନାରୀ ।
ତହିଂ ଶ୍ରୀରାମ ବିଜୟେ ଯାଇ କରି । ୧୮୮ ।
ସୀତାଙ୍କୁ ବେଶ କରିବନ୍ତି ନାରୀ ।
ବହୁତ ଚଟାଆନ୍ତି ସେ ପୂର୍ବର କଥାପର । ୧୮୯ ।
ତୁଗୋ ଜାନକୀ ଗୋ ଅମ୍ଭର ବୋଲକର ।
ଶ୍ରୀରାମ ତୋହୋର ଗୋ ଅଟନ୍ତି ଯେ ବର । ୧୯୦ ।
ତୁ ଆଜ ରଜନୀ ମନାଇଂମୁ ତାହାନ୍ତ ।
ଯେ କଥା ଦେବୀ ତୋତେ ଅଟଇ ଗୋ ହିତ । ୧୯୧ ।
ସେ ଯେବେ ମନେ ନ ଧରଇ ଗୋ ଆନ ।
ତେବେହେଁ ସେବାକରି ହାରିବୁ ଗୋ ମନ । ୧୯୨ ।
ପ୍ରଥମ କାଳେ ଯେବେ ସ୍ୱାମୀକି ସେବିପାରି ।
ଦେହଥିବା ଯାଏ ସୁଖ ଭୋଗକରି । ୧୯୩ ।
ପ୍ରଥମେ ସ୍ୱାମୀଙ୍କି ଯେବେ ଉପୁଜଇ ରୋଷ ।
ହେବଦା ସେ ନାରୀ ଗୋ ଦୁଅନ୍ତି ବିରସ । ୧୯୪ ।
ତୁ ସର୍ବ ସୁଲକ୍ଷଣୀ ତୁ ଜାଣୁ ସର୍ବ ଭେଦ ।
ଯେସନେକେ ଗୁରୁସ୍ଥ ନବହଇ ଖେଦ । ୧୯୫ ।
ସେ ମନେ ଯେତେବେ କରିବେ ଯାହାଇଚ୍ଛା ।
ତୁହ ପୂରେଇବୁ ଗୋ ତାହାଙ୍କ ମନବାଞ୍ଛା । ୧୯୬ ।

Digitized by srujanika@gmail.com

ସେ ତୋହୋର ସ୍ୱାମୀ ତୁ ତାହାଙ୍କର ନାରୀ ।
ଯେକ ଦେହ ଯେହ୍ନା କେ ବେଗଳ କରିପାରି । ୧୯୭ ।
ଯେତେବେଳେ କୁଶଳଙ୍କୁ ବାନ୍ଧିଲେ ଦ୍ୱିଜବର ।
ସେତେବେଳୁ ଶ୍ରୀରାମ ହୋଇଲେ ତୋ ପ୍ରାଣଈଶ୍ୱର ।୧୯୮।
ତୁ ତାହାର ଦାସୀ ଅଟୁ ଶରଦ ଚନ୍ଦ୍ରମୁଖୀ ।
ଶ୍ରୀରାମ ପ୍ରସାଦେ ତୁ ହୋଇବୁ ପରମ ସୁଖୀ । ୧୯୯ ।
ଯେ ନବଯଉବନ ବଧାଂସିଂବେ ରାମ ।
ତୁଇଲେକେ ଆନ କେ ନୋହଇ ଗୋ କ୍ଷମ । ୨୦୦ ।
ଯେ ତୋହୋର ଅଧର ଚୁମ୍ବିବେ ରଘୁନାଥ ।
ତେଣେ ସେ ତୋତେ ଗୋ ଅଟଇ ପୁରୁଷାର୍ଥ । ୨୦୧ ।
ଶ୍ରୀରାମ ହୃଦରେ ଯେବେ ତୋ ଯଉବନ ଲାଗଇ ।
ତେବେ ସେ ଜାଣିମା ହୋ ତୋହର ସୁହାଗଇ । ୨୦୨ ।
ରଘୁନାଥର ସଙ୍ଗେ କରିବୁ ଯେବେ କେଳି ।
ତେବେ ସେ ଜୀବନ ସ୍ୱାର୍ଥକ ମହାସ୍ଥଳୀ । ୨୦୩ ।
ତୁ କସ ନଜାଣୁ ତୋତେ ଉଅଶବ୍ରୁ କସ ।
ସର୍ବ କୁଶଳ ଚଞ୍ଚଳା ସ୍ୱରୂପ । ୨୦୪ ।
ଯେତେ ବୋଲଣ ସେ ସକଳ ନାରୀଗଣ ।
ସୀତାଯ୍ଙ୍କୁ ନେଲେ ଶ୍ରୀରାମ ଶୟନ ମନ୍ଦିରେଣ । ୨୦୫ ।
ଲାଜ ଲାଜକରି ସେ ଗ୍ଭଲଇ ଦେବୀ ଧୀରେ ।
ଆଗେ ଯୁବତୀଯେ କଢ଼ାଇ ଅଛଇ ହଧୀରେ । ୨୦୬ ।
କେ ବୋଲଇ ମାଯେ ଗୋ ନଧର ମନେ ଆନ ।
ଅସ ଆସ ସୁନ୍ଦେରୀ ଯୁବତୀ ମୋକ୍ଷପାନ । ୨୦୭ ।
କଢ଼ାଇନେଇଂ କଲେ ଶ୍ରୀରାମର ପାଶ ।
ଶେଯ୍ୟାରେ ବଜେ କରିଅଛନ୍ତି ପୀତବାସ । ୨୦୮ ।
ସୀତ୍ୟାଙ୍କୁ ଦେଖି ପରମ ତୋଷ ମନ ।
ପଲଙ୍କ ତଳେ ଉଭା ହୋଇଲା ଯାଇଂ ସୋଣା । ୨୦୯ ।
ଅନେକ ଯୁବତୀ ଅଛନ୍ତି ତାହାଙ୍କର ମେଳେ ।
ଶ୍ରୀରାମଙ୍କୁ ଉଆରଣ କରନ୍ତି କୁତୁହୋଳେ । ୨୧୦ ।
ତୁମ୍ଭେ ରଘୁନାଥ ପୁରୁଷଙ୍କ ଉତ୍ତମ ।
ସୀତ୍ୟା ଅଗ୍ୟାନ ଯେହ୍ନାର ଦୋଷ ନ ଘେନ । ୨୧୧ ।
ଜନେକ ରଜାର ଅଲ୍ପଅଳ ଜେମା ।
ଦାଶଦୋଷ ଅପ୍ରାଧ କରିବା ଯେହ୍ନାର କ୍ଷମା । ୨୧୨ ।

Digitized by srujanika@gmail.com

ୟେ ବାଳୁତ କୁମାରୀ ନ ଜାଣଇ କିଛୁ ।
ପାଳି ବଇଭୋଗ କର ୟେ ମୃଗାକ୍ଷି । ୨୧୩ ।
ସାଙ୍ଗୁଡ଼ିଅ ଗୋଟି ୟେ ଅଳପ ବୟସ ।
ତୁମ୍ଭଙ୍କୁ ସେବା ୟେ ଜାଣିମଟି କସ । ୨୧୪ ।
ଅବୋଧ ସୁନ୍ଦରୀ ୟେ ନୁହଇ ଛିଣ୍ଡା'ଳ ।
ତୁମ୍ଭର ସଙ୍ଗେ କସ କରିବ ଢ଼ମାଲ । ୨୧୫ ।
ତୁମ୍ଭେ ମହତ ନ କରିବ ରୋଷ ।
ସଭିବେ ସ୍ତ୍ରୀଶଙ୍କର ବହୁତ ମନେ ରୋଷ । ୨୧୬ ।
ତୁମ୍ଭେତ ନାଗର ଆମ୍ଭେ କ ବୋଲିବୁ ଆଉ ।
ଯେସନେକେ ବାମା ମନେ ନଧରଇ ଆଉ । ୨୧୭ ।
ନିର୍ଗୁଣ ନକର କର ତୁମ୍ଭେ ଭୋଗ ।
ବିଧାତା ଆଣି ଯେବେ କଲା ଏହେନ୍ନେକ ଯୋଗ ।୨୧୮।
ତୁମ୍ଭର ଆୟେ ତୁମ୍ଭଙ୍କୁ ସମର୍ପିଲୁ ।
ବଧାଇ ବୋଲିତ ଆନ ନ ମାଗିଲୁ । ୨୧୯ ।
ସୀତୟାଙ୍କୁ ପାଳିଲେ ସବୁହିଁ ଯେ ହେଲା ।
କେବଣ ନାଗେଶ୍ୱରୀ ୟେତେ କହିଗଲା । ୨୨୦ ।
କେ ବୋଲଇ ସଖି ହଦ ମୋତେ ମାଡ଼ଇ ।
କେହାର ହିଁଗଡ଼େ ଗୋ ଅବସ ନଗ୍ରଡ଼ଇ । ୨୨୧ ।
ହାଇ ଘନ ଘନ ଶୋଇବି ମୁହିଁ ଯାଇ ।
ଅନିଦା ହୋଇଲା ଗେ. ନପାରଇ ମୁହିଁ ରହି । ୨୨୨ ।
ୟେତେ ବୋଲି ବାଳୀୟେ ଢ଼ାଳ ଦେଇଗଲା ।
ସଙ୍ଗେ ସଖିୟେକ ହସ୍ତ ଧରିନେଲା । ୨୨୩ ।
ଆରେକ ଯୁବତୀ ୟେ ବୋଇଲା କ୍ଷଣେ ରହି ।
ଶ୍ରୀରାମଙ୍କୁ ପ୍ରବୋଧି କଥାୟେକ କହି । ୨୨୪ ।
କେ ବୋଲଇ ଆମ୍ଭେ କହିଲେ କସ ହୋଇ ।
ଯେ ଯାହାର ଆୟେ ସେହି ସେ ରଖଇ । ୨୨୫ ।
ଢଆରବା କଥା ପାଳଇ କେତେକାଳ ।
ତୁମ୍ଭେ କିଛୁ ୟେହା ଗୋ ମନରେ ନଭାଳ । ୨୨୬ ।
ଆସ ଆସ ଯିବା ବୋଲିଣ ଠରାଠରି ।
ୟେକକୁ ଆରେକ ହୋଇଣ ଧରାଧରି । ୨୨୭ ।
ଧାଡ଼କାରେ ହୋଇଂଣ ସର୍ବ ନାରୀ ଗଲେ ।
ବାହାର କଳଣି ଭର କବାଟ କଲିଲେ । ୨୨୮ ।

Digitized by srujanika@gmail.com

ସଖୀ ଗଣ ଗଲେ ସୀତା ଗୃଢ଼ ।
ସୀତା ପଣନ୍ତ ରାମ ଧଇଲେ ଉଚ୍ଛୁଡ଼ । ୧୨୯ ।
କୋଳ କରନେଇ ବସାଇଲେ ଶେଜେ ।
ବଧୂଙ୍କ ଓଷ୍ଠ ଗୋଟି ଧଇଲେ ଶ୍ରୀଭୁଜେ । ୧୩୦ ।
ସ୍ଫୁଟ ବଚନ କଥା କହିଲେ ବହୁତ ।
କମ୍ପାଇଂ ବସ୍ତ୍ରଏ ତୁ ଧରୁଅଛୁ ଚଉ । ୧୩୧ ।
ମୁହିଂ ତୋହୋରଂଦେହ ତୁ ମୋହୋର ପ୍ରାଣ ।
ଏ କଥା ନିଶ୍ଚଏ ତୁ ତଥ୍ୟ କରି ଜାଣ । ୧୩୨ ।
ତୁ ମୋହୋର ସଖୀ ମୁ ତୋହୋର ସଙ୍ଗାତ ।
ନକର ଶୋଚନା ଗୋ ମୋହୋର ପଞ୍ଚଭୂତ । ୧୩୩ ।
ତୁ ରାଜକୁମାରୀ ମୁହିଂ ରାଜପୁତ୍ର ।
ବିମନ ମୋରେ ଗୋ ନଧର ସଙ୍ଗାତ । ୧୩୪ ।
ତୋହୋର ମୋହୋର ହୋଇଲାକ ଯୋଗ ।
ଏ ନବ ଯଉବନ କରିବ ମୁହିଂ ତୋର ଭୋଗ । ୧୩୫ ।
ତୁହି ବାଳୁତ ମୁହିଂ ଯେ ବୟସରେ ସାନ ।
ତୁହିରେ ହିନାସ୍ତି ମୋତେ ନ ଧର ମନେ ଆନ । ୧୩୬ ।
ମୁହିଂ ତୋତେ ବଶ ହୋଇବାରେ ସହି !
ଏକାନ୍ତ କଥା ହାଦେ ତୋତେ ସେ କହଇ । ୧୩୭ ।
ଏ ତୋହୋର ମୁଖ ଫୁଟିଲ୍ଲ କମଳ ।
ମୁହିଂ ଏଥକୁ ସଖି ଅଟଇ ଭ୍ରମର । ୧୩୮ ।
ଆସ ଆସ ସଖିରେ ଆଲିଙ୍ଗନ କର ।
ଭୁଜେ ଭୁଜ ଭିଡ଼ି ଲଗାଅସି ଉର । ୧୩୯ ।
ଅଧରେ ଅଧରପ ନ ଦିଅରେ ପ୍ରାଣସଖି ।
ତୁହି ଶାଲୀଅନ୍ନ ମୁଂ ଉପବାସୀ । ୧୪୦ ।
ଭୋଗକଲେ ତୋତେ ହୋଇବ ପ୍ରାଣ ଥିର ।
ମୁହିଂ ଚାତକ ତୁ ଆକାଶର ନୀର । ୧୪୧ ।
ପୃଥ୍ୱୀର ଜଳ ମୁଂ ନକରଇ ଗ୍ରାସ ।
ସର୍ବଦା ସଖି ତୋତେ ଅଟଇ ମୋହୋର ଆଶ । ୧୪୨ ।
ତୁ କାଳ ଗରଳ ମୁଂ ଅଟଇ ସଦାଶିବ ।
ତୋହୋର ମୋହୋର ସେ ଅଟଇ ସଦଭାବ । ୧୪୩ ।
ତୁହି ବେଦ ପୋଥି ମୁହିଂ ଅଟଇ ବେଦପାଣି ।
ଆନକ ତୋହର ଗୁଣଗ୍ରାମ ଜାଣି । ୧୪୪ ।

Digitized by srujanika@gmail.com

ମୁହିଁ ସୁରପତି ତୁ ଅଟୁ ସୁଧାରସ ।
ଆନନ୍ଦେ ଭର୍ଜନ ତୋତେ ହରପାରେ ଗ୍ରାସ । ୧୪୫ ।
ମୁହିଁ ଅଗସ୍ତି ତୁ ସପତ ସାଗର ।
ତୁହିଁ କୁମୁଦ ମୁଁ ଯେ ଅଟଇ ନିଶାକର । ୧୪୬ ।
ତୋତେ ଦେଖିଲେ ମୋହୋର ଆନନ୍ଦ ହୋଏ ପ୍ରାଣ ।
ତୁ ସଖୀ ପଦ୍ମ ମୁଁ ତୁହ୍ୟାର ରମଣ । ୧୪୭ ।
ମୁହିଁ କାମଦେବ ତୁହି ସେ ଅଟୁ ରତି ।
ତୋହୋର ସ୍ୱରୂପକୁ ମୁଁ ଅନୁରୂପେ ପତି । ୧୪୮ ।
ଯେ ତୋହୋର ନୟନ ପଞ୍ଚମଶର କାଣି ।
ଯେଣେ ସଖି ମୋହୋର ହୃଦୟ ଅଛୁ ହାଣି । ୧୪୯ ।
ହସି କଥା କହ ରଖୁ ଜନା ପ୍ରାଣ ।
ତୁ ସେ ଲକ୍ଷ୍ମୀ ମୁଁ ଯେ ଅଟଇ ନାରାୟଣ । ୧୫୦ ।
ଅସୁର ନିବାରିବ ଦେବଙ୍କର ହିତେ ।
ମୃତ୍ୟୁପୁରେ ଜାତ ହେ ଇଲୁ ଏଥି ନିତେ । ୧୫୧ ।
ମୁହିଁ ଦଶରଥ ଘରେ ଅବତର ।
ତୁ ସଖୀ ହୋଇଲୁ ଜନେକ କୁମାରୀ । ୧୫୨ ।
ସ୍ୱାମୀର ମୁଖରୁ ଏସନ ବଚନ ଶୁଣି ।
ଗତ ଜନ୍ମ ସୁମରିଲ ନୟନ ହରଣୀ । ୧୫୩ ।
ଶ୍ରୀରାମ ପାଦପଦ୍ମେ କଲାକ ନମସ୍କାର ।
ପୁଣ ପୁଣ ବୋଲଇ ନମଇଂ ଶତେବାର । ୧୫୪ ।
ତୁମ୍ଭେ ମୋର ସ୍ୱାମୀ ଅଟ ପ୍ରାଣନାଥ ।
ସଦୟା କର ମୋତେ ହୋଇଲେ ଯେ ବେଳା । ୧୫୫ ।
ଯେତେକାଳ ଥିବ ତୁମ୍ଭେ ନୋହିବ ଆନ ନାରୀ ।
ତେତେକାଳ ମୋତେ ଥିବ ଦୟାକରି । ୧୫୬ ।
କୋଟୀଏ ମୁବତୀର ଧରିବ ତୁମ୍ଭେ ହାଥ ।
ତେତେବେଳେ ଦାସୀ ଛାଡ଼ିବ ପ୍ରାଣନାଥ । ୧୫୭ ।
ସପତଣୀ ମୋତେ ବୋଲିବେ ମାଦବାଣୀ ।
ତୁମ୍ଭେହେଂ କୋପ ଯେ କରିବ ତାହା ଶୁଣି । ୧୫୮ ।
ସେକାଳ କଥା ତୁମ୍ଭେ ଛାଡ଼ିବ ପ୍ରାଣନାଥ ।
ଜେଷ୍ଟ ଖରଜା ହୋଇଂ ମୁଁ ହୋଇବି ଅନାଥ । ୧୫୯ ।
ମାୟା ସଂସାର ଯେ ଦେଖୁ ଦେଖୁ ଆନ ।
ଥୋକାଏକ ସମୟେ ମୋର ଯିବ ଯଉବନ । ୧୬୦ ।

Digitized by srujanika@gmail.com

ଯୁବା କନ୍ୟାନ୍ତ ଦେଖିଲେ କରିବ ତୁମ୍ଭେ ପ୍ରୀତି ।
ମୋତେ ଅଭିମାନ ଦେବ ରଘୁପତି । ୧୬୧ ।
ଯେବେ ବନାକେଟିତ ହୋଇବ ସଉଭାଗୀ ।
ସେହୁ ଦେହେ ପୁଣ ହୋଇବ ଅଭାଗୀ । ୧୬୨ ।
ଲେକଣ ଲଜ କଥା ସ୍ୱାମୀ ଆପଣାକୁଂ ବ୍ୟଥା ।
ସେତେ ବୋଲି ଶ୍ରୀରାମ ଚରଣେ ଦେଲି ମଥା । ୧୬୩ ।
ଥନ ଥନ ନୟନ କରଣ ଚନ୍ଦ୍ରମୁଖୀ ।
ହେ ପ୍ରାଣନାଥ ମୋତେ ସଦୟା ଭାବ ରଖି । ୧୬୪ ।
ସେ ମୋହୋର ପ୍ରାଣର ତୁମ୍ଭେ ଅଟ ଅଧିକାଂଶୀ ।
ଶୁଣିଣ ସତୀଙ୍କ ରାମ ପ୍ରବୋଧନା କରି । ୧୬୫ ।
ତୁ ଯାହା ବୋହିଲୁ ସେ ଅଟଇ ତଥ୍ୟ ବାଣୀ ।
ମୋହୋର ଦେହେଂ ତୋତେ ନକରିବ ସପତ୍ନୀ ।୧୬୬।
ନୋହିବ ଅନ୍ୟ ବଶ ନ ଛୁଇଂମି ଅନ୍ୟ ନାରୀ ।
ଆଜହୁଂ ମାତୃସମ ମୋର ଅଟଇ ପରନାରୀ । ୧୬୭ ।
ତୋତହୁଂ ରମଣୀ ମୁଂ ନକରିବ ଆନ ।
ଆଉ ଯୁବତୀକି ମୁଂ ନଧରିବ ମନ । ୧୬୮ ।
ମୋହୋର ଥାନ୍ତେ ଯେବେ ହରାଇବୁ ପ୍ରାଣ ।
ତଥାପି ଅବା ନକରିବ ସ୍ତ୍ରୀ ଯେ ରମଣ । ୧୬୯ ।
ତୋହୋର ନାମ ଦେଇଂ ସୁବର୍ଣ୍ଣ ପ୍ରତିମା ।
ପତ୍ନୀଭ୍ରଷ୍ଟ ଜନମନ୍ତ୍ରକୁ ହୋଇଥିବ ବାମା । ୧୭୦ ।
ଆନ ସ୍ତ୍ରିରୀ ଘେନି ନକରିବି ରତ ।
ସେ ମୋହୋର ସତୀରେ ଅଲଙ୍ଘିତ ବ୍ରତ । ୧୭୧ ।
ସତ୍ୟ କରୁଅଛୁ ମୁଂ ଯେ କୁଳଦୀପ ଛୁଇଂ ।
ତୁ ଅବା ମୋତେ ଛାଡ଼ୁ ଗୋ ଶରଦ ଚନ୍ଦ୍ରମୁହିଂ ।୧୭୨।
ସ୍ତ୍ରିରୀ ଚଞ୍ଚଳା ଚିତ୍ତ ଯେ ଅଥିର ।
ମନ ପ୍ରକୃତି ଥିର ନୁହଇ ତାହାଙ୍କର । ୧୭୩ ।
ଭ୍ରୁଆ ଯଦ୍ୟପିରେ ଜାଣନ୍ତି କାମକଳା ।
ବିଦ୍ୟାବନ୍ତ ପଣେ ହୋଇବ କୁଶଳା । ୧୭୪ ।
ନିରମଳ ବଂଶେ ଅଟଇ ଅବତାର ।
ଯୁବା ବୟସ ଯେ ଅଟଇ ତାହାର । ୧୭୫ ।
ଅବଛିନ୍ନେ ଦାମୀ ଧନେଣ ଗରିଷ୍ଠ ।
ଅପକ୍ଷ ସମ୍ପଦ ଯେହୁ କୁଳଗୋତ୍ର ଶେଷ୍ଠ । ୧୭୬ ।

Digitized by srujanika@gmail.com

ସ୍ତ୍ରିୟାଙ୍କି ଶୃଙ୍ଗାରେ ପାରଇ ତୋଷକରି ।
ପ୍ରାଣରୁ ଅଧିକକରି ଘେନଥାନ୍ତି ନାରୀ । ୧୭୭ ।
ସେସନେଙ୍କଂ ଭୁଥାନ୍ତିଂ ତେଜନ୍ତି ଯୁବତୀ ।
ଅନ୍ୟ ପୁରୁଷେ ସେ ଯେ କରଇ ମେଳମତି । ୧୭୪ ।
ତେଣୁକରି ତୋ'ତେ ଛଥାରଇ ମୋ ସତ୍ତ୍ୱ ।
ସେ ବଚନ ଶୁଣି ବୋଲଇ ବଇଦେହୀ । ୧୭୯ ।
ମୋ ନାଥ ଶ୍ରୀରାମ ତୁ ମୋହର ପ୍ରାଣପତି ।
ତୋ ତହୁଂ ଆନେ ଯେ ମୋହର ନବଳଇ ମତି ।୧୮୦।
ଯଦ୍ୟପି ମୋତେ ଯେବେ ବଳେ ନେବ ଆନ ।
ସେହିଦିନୁ ସ୍ୱାମୀ ମୁଂ ତେଜିବଇଂ ଅନ୍ନ । ୧୮୧ ।
ନ ଖାଇବ ପାଣି ନ କହିବ କଥା ।
ନରହିବ କାର ସଂଗେ ନ ଟେକିବ ମଥା । ୧୮୨ ।
ବେଶ ବେସନ ଯେ ଛୁଡ଼ିବ ସୁଖ ଭୋଗ ।
ପୁଣି ଯେତେବେଳେ ହୋଇବ ତୋର ଯୋଗ । ୧୮୩ ।
ତେତେବେଳେ ସ୍ନାହାନ ଭୋଜନ କରିବ ।
ସେ ତୋହୋର ଚରଣେ ସେବା କରିଥିବ । ୧୮୪ ।
ସେ ମୋହୋର ସତ୍ୟ କୁଳଦୀପ ଅଛୁ ।
ସେତେ ବୋଲି ଅଗ୍ନି ଛୁଇଂଲା ମୃଗାକ୍ଷି । ୧୮୫ ।
ସୀତ୍ୟାର ବଚନକୁ ଶ୍ରୀରାମହିଂ ପ୍ରତେ ଗଲେ ।
ରାମ ବଚନକୁ ସୀତ୍ୟାହିଂ ପ୍ରତେ ଗଲେ । ୧୮୬ ।
ଯହୁଂ ପତି ପତ୍ନୀ ହୋଇଲେ ଏକ ମନ ।
ଗଜଦନ୍ତ ପଲଙ୍କେ କରନ୍ତି ଶୟନ । ୧୮୭ ।
ସୀତ୍ୟା ଶୋଇଲା ଯେ ଶ୍ରୀରାମଙ୍କୁ ପିଠି ଦେଇ ।
ତାହାଙ୍କର ପଛେ ଯେ ଶୋଇଲେ ରଘୁସାଇଂ । ୧୮୮ ।
ରାମହିଂ ସୀତ୍ୟାଙ୍କୁ ଯେ ଶୋଇଲେ ପଛକରି ।
ଜଦେ ଅଚେତନ ଯେ ଜନେକ କ୍ରମାରି । ୧୮୯ ।
ଶ୍ରୀରାମ ଗୃହିଂଣ ଅଛନ୍ତି ଭିନହୋଇ ।
ନଦ୍ରା ବୋଲି ତାହାର ଅ ଲସହିଂ ନାହିଂ । ୧୯୦ ।
ଶ୍ରୀରାମ ସୀତ୍ୟାରୂପ ହୃଦୟରେ ଧରି ।
କଡ଼ ଲେଉଟାଇ ଲେଡ଼ନ୍ତି କୋଳକରି । ୧୯୧ ।
ପୁଣିହିଂ ସଙ୍କୋଚେ କରନ୍ତି ଲଜ ଲଜ ।
ସୀତସ୍ୱାର ହୃଦେ ଦେଲେ ନେଇ ଭୁଜ । ୧୯୨ ।

Digitized by srujanika@gmail.com

ଥୋକାଏକେ ବେଳେ ବଖାଣେ ଖେଳହୋଇ ।
ସଖୀ ସଖୀ ବୋଲି କଡ ଲେଉଟାଇ । ୨୯୩ ।
ଅଧ ଗାଢ଼େ ଗ୍ରମ ଭଜନ୍ତି କୋଳକର ।
ନିଦ୍ରାଭଗ୍ନ ହୋଇଲ୍ନି ଜନେକ କୁମାରୀ । ୨୯୪ ।
ଲଜ୍ୟା ଗ୍ଭଡ଼ଣ ଯେ ଶ୍ରୀଗ୍ରମଙ୍କୁ କୋଳକଲ୍ନି ।
ମୁଖେ ମୁଖ ଲଗାଇ ହୃଆକୁ ହୃଆ ଦେଲ୍ନି । ୨୯୫ ।
ଯତ୍ନେଂ ଜାନକୀର ଖଞ୍ଜିଲ୍ନି ସଙ୍କୁଚ ।
ଶ୍ରୀଗ୍ରମ ଶ୍ରୀକରେ ଧଇଲେ ତାଙ୍କ କୁଚ । ୨୯୬ ।
ମୁଖେ ଚୁମ୍ବ ଦେଇ ଅଧର ପାନ କଲେ ।
ଚରଣେ ଚରଣ ଲଗାଇ ଛନ୍ଦିଲେ । ୨୯୭ ।
ଯତ୍ନେଂ ବେନିଜନେ ଏକମନ ହୋନ୍ତି ।
ବିବିଧ ବିଶେଷେ କରନ୍ତି ପୀରତି । ୨୯୮ ।
ଏଥୁ ଅନନ୍ତରେ ରଜନୀ ହୋଏ ଶେଷ ।
ଦେବତାଙ୍କ ଆଳେ ଶୁଭିଲ୍ନି ଶଙ୍ଖ ଘୋଷ । ୨୯୯ ।
ବେଣୁ ବୀଣା ବାଦ୍ୟ ଯେ ତାଳ କଂସାଳ ଗୀତଗାନ୍ତି ।
ଢୋଲ ଦମା ଟମକ ନିଶାଣ ବାଜନ୍ତି । ୩୦୦ ।
ଶ୍ରୀଗ୍ରମ ସୀତ୍ୟା ବିଷାଦ ମନେ ହୋଇ ।
ଆଜର ରଜନୀ ତ ଅଳପରେ ସରଇ । ୩୦୧ ।
ସାଧ ନ ସରିଲ୍ନି ନୋହିଲ୍ନି କିଛି କଥା ।
ଏଥୁଅନନ୍ତରେ ଦଶରଥ ମହାରଥା । ୩୦୨ ।
ଶେଯ୍ୟା ଗ୍ଭଡ଼ିଣ ଯେ ଉଠିଲେ ତତ୍ପର ।
ଦମାଲି ହାଥ ଆଗ୍ୟାଂ ଦେଲ୍ନି ମହୀପତି । ୩୦୩ ।
ସନ୍ୟ ସଜକର ବୋଲିଣ ବୋଇଲ୍ନି ।
ଆଗହୋଇ ଆପଣେ ଷଟକର୍ମ ସାରିଲ୍ନି । ୩୦୪ ।
ଲକ୍ଷ୍ମଣ ଶତ୍ରୁଘନ ଭ୍ରାଥ ଯେ ଶ୍ରୀଗ୍ରମ ।
ଟମକ ଶୁଣିଣ ସାରନ୍ତି ନିତ୍ୟକର୍ମ । ୩୦୫ ।
ଶେଜ୍ୟା ଗ୍ଭଡ଼ିଣ ଉଠନ୍ତି ଭ୍ରାଥ ଗ୍ଭର ।
ଯେ ବିଧି ନିତ୍ୟକର୍ମ ସାରିଲେ ଯେ ଯାହାର । ୩୦୬ ।
ଆଏ ଅଳଙ୍କାର ଦ୍ରବ୍ୟ ବେଶହୋଇ ।
ସୀତ୍ୟାର ସନ୍ନିଧେ ମିଳିଗଲେ ଯାଇଂ । ୩୦୭ ।
ଏଥୁଅନନ୍ତରେ ଜନେକ ମହାଋଷି ।
ଦଶରଥ ପାଶେ ମିଳିଲେକ ଆସି । ୩୦୮ ।

Digitized by srujanika@gmail.com

ସମ୍ବୋଧ ଯୋଗାଡ଼ ବସ୍ତ୍ର ଅଲଂକାର ।
ରଥ ଗଜ ହସ୍ତ ଅନେକ ସମ୍ଭାର । ୩୦୯ ।
ଶ୍ରୀରାମର ପିତାଙ୍କୁ ଚନ୍ଦନ ଗନ୍ଧ ଦେଇ ।
ବୋଲଇ ଜନକ ଯେ କୃତକୃତ ହୋଇ । ୩୧୦ ।
ତୁ ଯେ ଦଶରଥ ସୂର୍ଯ୍ୟବଂଶେ ରାଜା ।
ସକଳ ନୃପତି ତୋତେ କରନ୍ତି ପାଦପୂଜା । ୩୧୧ ।
ସ୍ୱର୍ଗେ ପ୍ରଶଂସା ଯେ କରନ୍ତି ସୁରନର ।
ଯେ ତୋହୋର କୋଳେ ଉପୁଜିଲେ ଚାରି ଯେ କୁମର।୩୧୨।
ଧାର୍ମିକ ପଣ୍ଡିତ ଅତି ଯେ ସୁରବନ୍ତ ।
ଶ୍ରୀରାମ ତୋହୋର ଅଟଇ ଜ୍ୟେଷ୍ଠ ପୁତ୍ର । ୩୧୩ ।
ତାହାଙ୍କ ମହିମା ଯେ ତିନ ଭୁବନେ ବିଖ୍ୟାତ ।
ସୁରବନ୍ତ ଗୁଣବନ୍ତ ଅଟଇ ପବିତ୍ର । ୩୧୪ ।
ଈଶ୍ୱର ଧନୁ ଯେ ବଳେ ଆମଣ୍ଡିଲା ।
ଶତ୍ରୁର ଦର୍ପ ହେଳହେଳନୁ ଘୁଞ୍ଚିଲା । ୩୧୫ ।
ଧନୁ ଧରନ୍ତେଣ ପୂରିଲା ମୋର ବ୍ରତ ।
ରାମଙ୍କୁ ବରିଣ ଦେଲି ମୋହର ଦୁହିତ । ୩୧୬ ।
ଆବର ତିନ ପୁତ୍ରଙ୍କୁ ତିନ ଝିଅ ଦେଲି ।
ତୋହୋର ବଂଶ ମୁ ଯେ ସମର୍ପି ହୋଇଲି । ୩୧୭ ।
ତୁହେ ମହାରାଜା ରାଜାର ମକୁଟ ।
ତୋତେ ଆଶ୍ରେ କରି ମୁଂ ହୋଇଲି ବିଖ୍ୟାତ । ୩୧୮ ।
ଯେ ମୋହୋର ଦୁହିତାଙ୍କର ଯେତେ ଅବଗୁଣ ।
ତୁ ତାହା ନ ଘେନିମୁ ମୋହୋର ବୋଲ ଶୁଣ ।୩୧୯।
ଯେ ତୋହୋର ପୁତ୍ରଙ୍କର ଅଟନ୍ତି ସେ ଦାସୀ ।
ଭୋ ରାଜା ତାହାଙ୍କୁ ଥିବୁଟି ଆଶ୍ୱାସି । ୩୨୦ ।
ଯେ ମୋହୋର ଭଗତି ତୁ ଘେନ ନୃପବର ।
ଦୁହିତାଙ୍କର ଦୋଷ କ୍ଷମାଯେକ କର । ୩୨୧ ।
ଯେତେ ବୋଲି ଯାଇ ଧରଇ ଦୁଇହସ୍ତ ।
ଆପଣେ କୋଳକଲେ ରାଜା ଦଶରଥ । ୩୨୨ ।
ଜନକ ଚରଣେ ପଡ଼ଇ ମହୀପତି ।
ବ୍ରହ୍ମାର ଚରଣୁ ତୁ ଅଟୁ ଉତପତି । ୩୨୩ ।
ତୋହୋର କଲ୍ୟାଣେ ସେ ପୁତ୍ର ବର୍ଦ୍ଧମାନ ।
ସୁଖ ଭୋଗ ଧନଧାନ୍ୟ ଅରଜ ସେ ଯେମାନ ।୩୨୪।

Digitized by srujanika@gmail.com

ଧର୍ମବନ୍ତ ସୁରବନ୍ତ ହୋଇବେ ମହାବୀର ।
ଏତେ ତୋହୋର ପରମ ଦୟା ମୁନିବର । ୩୨୫ ।
ଦଶରଥ ଯହୁଂ ହୋଇଲେ ତୃପତ ।
ଲୋମପାଦ ପାଶେ ଚଳି ଜନେକ ମହୀପତି । ୩୨୬ ।
ଧନବସ୍ତ୍ର ଅଳଂକାର ବହୁତ ବିଧିକଲି ।
ସମର୍ପି ହୋଇଣ ଯେ ଅନେକ ବୋଇଲି । ୩୨୭ ।
କଏକସ୍ୱା ରାଜାର ତନଏ ଯୋଧାଙ୍କୁ ।
ଏଥେ ବିଧିରେ ପୂଜା କଲି ଯେ ତାହାଙ୍କୁ । ୩୨୮ ।
ଦିବ୍ୟ ବସନଏ ଆଭରଣ କାଏ ।
ଦେଇଣ ମହାମୁନି ପ୍ରବୋଧନା କଏ । ୩୨୯ ।
ଷଡ଼ଅର୍ଘ୍ୟ ଦେଇ ବଶିଷ୍ଠଙ୍କୁ ପୂଜାବିଧି କରି ।
ସମର୍ପି ହୋଉଛୁ ବୋଲି ବେନିକର ଯୋଡ଼ି । ୩୩୦ ।
ବିଶ୍ୱର ବିଧାନ ରାଜା କଲିକ ଅକ୍ଷତ ।
ଜାବାଳୀ ବାମଦେବ ଆବର ସୁମନ୍ତ୍ର । ୩୩୧ ।
ଏମାନଙ୍କୁ ଆବର ଗଉରବ କଲି ।
ଧନବସ୍ତ୍ର ଦେଇ ପ୍ରବୋଧି କହିଲା । ୩୩୨
ବିଶ୍ୱାମିତ୍ରଙ୍କୁ ବହୁତ କଲି ପୂଜା ।
ଉପହାର ଦେଇ କୋଳ କଲିକ ରାଜା । ୩୩୩ ।
ତୁ ସେ ମହାଋଷି ଦୟା ମୋତେ କଲୁ ।
ଦଶରଥ ସଂଗେ ସମ୍ମୁଖି ଭିଆଇଲୁ । ୩୩୪ ।
ଏ ସମ୍ପଦରେ ଅନ୍ତସି କାରେଣୀ ।
କଉଶିକ ତୋଷ ହୋଇଲି ଏହା ଶୁଣି । ୩୩୫ ।
ଆବର ଯେତେକ ଥିଲେ ବରଜାତି ।
ଅକ୍ଷତ ଦେଇଣ ତୋଷିଲେ ମହାଯତି । ୩୩୬ ।
ଋଷିମାନଙ୍କୁ ସେ ବହୁତ ପୂଜାକଲି ।
ପରିବାର ସେବକନ୍ତ ବଧାଇ ବିଧି ଦେଲି । ୩୩୭ ।
ହୋଇଲେ ତ୍ରିପୁତି ସକଳହିଂ ଜନ ।
ତହୁଂ ଚଳିଗଲେ ଜନେକ ରାଜନ । ୩୩୮ ।
ନିଜ ମନ୍ଦିରେ ସେ ହୋଇଲେ ପରବେଶ ।
ଆସିଣ ମିଳିଲେ ସକଳ ରାଣୀହଂସ । ୩୩୯ ।
ସୀତାଙ୍କୁ ଡାଆଣି କହନ୍ତ ବସାଇ ।
ତୁ ମୋହୋର କୁଳର ଉଦ୍ଧାରଣ ଆଇ । ୩୪୦ ।

Digitized by srujanika@gmail.com

ପ୍ରାଣର ଧାରଣା ଅଟୁସି ଗୋ ମାଏ ।
କସ ବୋଲିଣ ମୁ ଉଆରିବ ତୋଏ । ୩୪୧ ।
ଶ୍ରୀରାମଙ୍କୁ ତୋତେ ବିଭାଏଣ ଦେଲି ।
କନ୍ୟାଦାନ ଫଳ ଧରମ ଅରଜିଲି । ୩୪୨ ।
ଯେତେ କାଳ ତୁ ଗୋ ଥିଲୁ ମୋହୋର କଢ ।
ସେ ବେଳେ କଥା ଯେବେ ନୁହଇଂଟି ଗୋ ସଢା ।୩୪୩।
ଶଶୁର ଘରକଇ ଯିବୁ ଆଜହୁଂ ରେ ବାମା ।
ତହୁଂରେ ତୁ ନକରିବୁ ଯେଠାରୁ ଗାରିମା । ୩୪୪ ।
ଶାଶୁଙ୍କୁ ଦେଖିଲେ ତୁ ଆସନୁ ଉଠିବୁ ।
ନମସ୍କାର କରିଣ ଛିଡ଼ା ହୋଇଥିବୁ । ୩୪୫ ।
ବିଟଳତ କଥା ଗୋ ନକହିବୁ କିଛୁ ।
ଅକାରଣେ ହାସ୍ୟ ନକରିବୁ ମୃଗାଖି । ୩୪୬ ।
ସାବତ ଶାଶୁଙ୍କୁ ଗୋ ଥିବୁ ସେବାକରି ।
ଜ୍ୟେଷ୍ଠା ଦେଖିଲେ ଗୋ ଉଠିବୁ କରଯୋଡ଼ି । ୩୪୭ ।
ଦାସୀଙ୍କର ସଙ୍ଗେ ନୋହିବୁ ମେଳଗଢ ।
ଅନୁବ୍ରତେ ହୋଇଥିବୁ ପତିରେ ଭଗତ । ୩୪୮ ।
ଗାରିମା ପଣ ମାଗୋ ନକରିବୁ ସ୍ୱାମୀ ପାଶ ।
ଯେସନେକେ ସ୍ୱାମୀ କରନ୍ତି ବିଶ୍ୱାସ । ୩୪୯ ।
ସେ କଥା ପରିମାଣି ଗୋ ଥିବୁ ସେବାକରି ।
ସଙ୍କୁଚ ଚିତ୍ତେ ହଲଜତ ମନେ ଧରି । ୩୫୦ ।
ଯିସ ଆଜ୍ଞା ତୋତେ ଦେବ ଭରଥାରଇ ।
ତାହାଙ୍କର ବୋଲ ତୁ ଯେ ନକରିବୁ ନାହିଂ । ୩୫୧ ।
ଅପୂର୍ବ କଥାଏ ତୁ ଗୋ ଦେଖିଲେ ନ ମାଗିବୁ ।
ରାତ୍ର ଦିବସ ତହିଂକ ବିନୟ ହୋଇଥିବୁ । ୩୫୨ ।
ସ୍ୱାମୀର ଶରଧା ବେଳେଣ ହୁଆଏ ।
ତାହା ଯତନକରି ଗୋ ଭୁଆଇ ଗୋ ମାଏ । ୩୫୩ ।
ଯେସନେକ କୋପ ନକରନ୍ତି କାନ୍ତ ।
ତେସନେକେ ସେବା କରିଥିବୁଟି ତାହାନ୍ତ । ୩୫୪ ।
ପତିଭକ୍ତି କଲେ ଇହଲୋକ ଯଶ ପାଇ ।
ଅନ୍ତେ ସ୍ୱର୍ଗ ଭୁବନେ ବସଇ ହାଦେ ଯାଇ । ୩୫୫ ।
ମୁଂ କସ ଉଆରିବ ନଜାଣୁ କସ ପୁଣ ।
ଭ୍ରଥା ସେବା ମାଗୋ କର ଯେକ ମନ । ୩୫୬ ।

Digitized by srujanika@gmail.com

ସ୍ନେହ କରି ଅଙ୍କେ ରାଜା ବସାଇଲେ ଯାଇଁ ।
ମଧୁର ବାଣୀ ପୂର୍ବ କଥାନ୍ତ ଦେଖାଇ । ୩୫୭ ।
ସୀତାଙ୍କର ଭୁଜ ଧରଇ ଜନେକ ।
ଶ୍ରୀରାମଙ୍କ ସମ୍ମେ ଧନା କଲେକ ଅନେକ । ୩୫୮ ।
ତୁମ୍ଭେ ସେ ଦଶରଥ ସୁତ ରଘୁନାଥ ।
ଈଶ୍ୱର ଧନୁବଳେ କଲ ହସ୍ତାସ୍ତ । ୩୫୯ ।
ତେଣୁ ଯେ ମୋ ଦୁହିତାକୁ ବଶ ଯେବେ ଦେଲି ।
ଚଡ଼ ବୁଲି ବୋଲି ମୁଁ ସମର୍ପ ହୋଇଲି । ୩୬୦ ।
ଯେ ସୀତା ବାଳୁତ ନ ଜାଣଇ ସେବା ।
ଯେହ୍ୱାର ଦୋଷ ଯେ ଅପ୍ରାଧ ମୋତେ ଦେବା ।୩୬୧।
ପୃଥ୍ୱୀରୁ ଜାତ ହୋଇଲା ଯେ ଯଜ୍ଞକାଳେ ।
ଯେତେକ ବରଷ ରାମ ବଢ଼ିଲା ମୋ କୋଳେ । ୩୬୨ ।
ପ୍ରାଣୁ ଅଧିକ କରି ପାଳିଲଇ ଯେହ୍ୱା ।
ପୂର୍ବର କର୍ମବଳେ ପାଇଲା ତୁମ୍ଭନ୍ତ ନାହା । ୩୬୩ ।
ଯେହ୍ୱାକଇ ତୁମ୍ଭେ ଦୟା କରିଥିବ ।
ଅପ୍ରାଧ କଲେ ଯେ ଦୋଷ ମୋତେ ଦେବ । ୩୬୪ ।
ମୋହୋର ଘରେ ଯେହ୍ନ ଦୁଲଣା ପଣେ ଥିଲା ।
ବାଳୁତ ରୂପେ ଯେତେ କାଳ ବହିଗଲା । ୩୬୫ ।
ଯେବେ ଯେ ତୁମ୍ଭର ହୋଇଲାକ ଦାସୀ ।
ଯେତେ ବୋଲି କ୍ରୋଧ କରଇ ମହାଋଷି । ୩୬୬ ।
ସୀତାଙ୍କର ନୟନୁ ବହଇ ଅଶ୍ରୁ ଜଳ ।
ଜନକ ରାଣୀ ଯେ କରଇ ହାହାକାର । ୩୬୭ ।
ଘୃତ ଚଞ୍ଚୁ ଦେଇ ପାଳିଲୁ ଗୋ ତୋତେ ।
ପରକରି ଦେଲୁ ସଭୁରି ସନମତେ । ୩୬୮ ।
ଆଜହୁଁ ଦଶଦିଗ ହୋଇଲାକ ଶୂନ୍ୟ ।
ତୋହୋର ମୁଖ ଚନ୍ଦ୍ରମାର କଲୁ ଯେବେ ପୂନ୍ୟ । ୩୬୯।
ତୋହର ମନ ଆମ୍ଭେ ରଖିଥିଲୁ ନିତ୍ୟ ।
ତୁ କେହ୍ନେ ପରମନ ରଞ୍ଜିବୁ ଗୋ ସ୍ୱତୀ । ୩୭୦ ।
ପୁରୁଷ ଅଲାଗି ଗୋ ଧରନ୍ତି ଅବଗୁଣ ।
ମିଛେହେଁ କୋପ ସେ କରନ୍ତି ଅକାରଣ । ୩୭୧ ।
ଯେ ବଚନ ଶୁଣି ସେ ହସନ୍ତି ଦାଶରଥି ।
ଜନକ ଦୋହିତା ନେଇଣ ସମର୍ପନ୍ତି । ୩୭୨ ।

Digitized by srujanika@gmail.com

ଆବର ସେ ଛନ ଦୋହଡ ସମର୍ପିଲା ।
ଛନ ଦୋହଡାଙ୍କୁ ବହୁଡ ଉଆଭିଲା । ୩୭୩ ।
ସେଥୁଅନନ୍ତରେ ଗଇଂଣୁାଲ ହୁଅନ୍ତି ।
ଅବୁଅ ନାରୀମାନେ ବନ୍ଦାଇ ଆସନ୍ତି । ୩୭୪ ।
ସୁକାସନ ମଣ୍ଡିଆ ଦେଲେ ସଜକର ।
ଛତ୍ରିଂ ବସେ ରାମ ସୀତା ଭୁଜ ଧର । ୩୭୫ ।
ଭରଥ ଲକ୍ଷ୍ମଣ ଶତ୍ରୁଘନ ଛନ ।
ସୁକାସନ ଚଢ଼ିଲେ ସେ ଯାହା କନ୍ୟା ଘେନ । ୩୭୬ ।
ଉପରେ ପାଟଛତ୍ର ଆଲମ୍ବ ନିରନ୍ତର ।
ପଞ୍ଚ ଶବଦ ସେ ବାଜଇ ନିରନ୍ତର ଗାରଭୁର । ୩୭୭ ।
ରାଛ ମେଲଣ ସେ ଯାନ୍ତି ବରଗୃର ।
ବେଢ଼ି ହୁଲହୁଲ ଦିଅନ୍ତି ନରନାରୀ । ୩୭୮ ।
ସୀତସ୍ବାର ସଖି ଗୋଡ଼ାଇଣ ଛନ୍ତି ।
ହାଟବାଟ ରାଜ ପଣମଲ ଯାନ୍ତି । ୩୭୯ ।
ଅକ୍ଷତ ଦେଇଣ ସେ ବନ୍ଦାନ୍ତି ଘରେ ଘର ।
ପ୍ରବେଶ ହୋଇଲେ ଯାଇ ଦଶରଥ ନବର ଦ୍ୱାର ।୩୮୦।
ଦୋଲାରୁ ଓହ୍ଲାଇଣ ଭିତରକୁ ଗଲେ ।
ନିଜ ମାତାଙ୍କୁ ଦେଖି ନମସ୍କାର କଲେ । ୩୮୧ ।
ଘରେ ପଶନ୍ତେ ସେ ଶୁଭଇ ହୁଲହୁଲ ।
ପ୍ରଳୟ କାଳ ଜାଣି ସାହେବରହୁଳୁଲ । ୩୮୨ ।
ଶ୍ରୀରାମଙ୍କୁ ଦେଖି ଆନନ୍ଦ ହୋଇଲେ ।
ପୁତ୍ରବଧୂ ଦେଖି ଉଷଡ କଉଶୁଲେ । ୩୮୩ ।
ଶ୍ରୀରାମ ସୀତା ସେ ବସନ୍ତ ତାର ଢୋଲେ ।
ଆବତ୍ୟର କୋଳେକ ଶଚୀଗୁର ପାଲେ । ୩୮୪ ।
ପୁତ୍ରବଧୂ ମୁଖ ଗ୍ରହିଂଣ ଜନନୀ ।
ପୂଜା କଲୀକ ସେ ଲକ୍ଷେ ସୁବର୍ଣ୍ଣ ଘେନ । ୩୮୫ ।
ମୁଖେ ଚୁମ୍ବ ଦେଇଣ ଶରୀର ଆଉସଇଂ ।
କୁଳର ଅଳୀ ହଂସ ବୋଲଣ ପ୍ରଶଂସଇ । ୩୮୬ ।
ସେସନେକ ସମୟେ ସେ ଆଇଲା ମହୁଡ଼ି ।
ପରହଂସ ଗୀତ ଯେ ଗାଇଲା ଗବକର । ୩୮୭ ।
ବଗର ବଧୁସେ ସେ ଅଛଇ ପୂର୍ବବାଣୀ ।
ଶ୍ରୀରାମ କୋପ ସେ କଲେ ତାହାଶୁଣି । ୩୮୮ ।

Digitized by srujanika@gmail.com

ମାତାର କୋଳରୁ ସେ ଉଠିଲେ ଧାଇଁକାର ।
ପାଦ ପଡ଼ୁଥିଲେ ମନ୍ଥରାଙ୍କ ଉପର । ୩୮୯ ।
କୁଜ ପିଠିରେ ପଡ଼ିଲା ଯନ୍ତୁ ପାଦ ।
ଲାଜପାଇ ଦାସୀ ସେ ହୋଇଲା ଭବନ୍ଦ । ୩୯୦ ।
ଶ୍ରୀରାମଙ୍କର ସେ ଗୃହ୍ୟାନ୍ତ ଜଗତି ।
ରକ୍ତବର୍ଣ୍ଣ ହୋଇଲା ବେନି ଆଖି ଗୋଟି । ୩୯୧ ।
ଶ୍ରୀରାମ ବୋଇଲେ କେ କସ ମୋତେ ଗୁନ୍ତୁଂ ।
ଗୁରୁସ୍ଥାନେଣ ତ ବହିଲତ କନ୍ତୁ । ୩୯୨ ।
ପୁଣି ମାରବେ ବୋଲି କହିଲେ ରଘୁପତି ।
ମାତାମାନେ ଯାଇ ରାମଙ୍କୁ ଧରନ୍ତି । ୩୯୩ ।
ପଳାଇ ମନ୍ଥେରା ସେ ପଶିଲା ଭିତରେ ।
ଶୁଣିମା କାହାଣୀ ସେ ଯେଥୁ ଅନନ୍ତରେ । ୩୯୪ ।
କୈକେୟୀ ସୁମିତ୍ରା ସେ ଆବର ବେନି ନାରୀ ।
ପୁତ୍ରବଧୂ ଅଛନ୍ତି ନିଜ କୋଳେ ଧରି । ୩୯୫ ।
ସୀତା ରୂପ ଗୁଣ ସେ ବାହୁନନ୍ତି ବେଢ଼ି ।
କେତେ କାଳ ବସି ବ୍ରହ୍ମ ଯେହ୍ୱାକୁ ସେ ଗଢ଼ି । ୩୯୬ ।
ସର୍ବ ଜନଙ୍କର ଯେତେ ସୁନ୍ଦର ପଣ ଥିଲା ।
ଆଳଣ ପିତାମହ ଯେକଠାବ କଲା । ୩୯୭ ।
ଶୁଦ୍ଧ ସୁବର୍ଣ୍ଣ ରସ ମିଶାଇଲା ନେଇ ।
ପରଶ ପଥରେ ତାହା ବାଟିଲା ମିଶାଇ । ୩୯୮ ।
ମିଶାଇକର ତାହା ଗଢ଼ିଲା ପ୍ରତିମା ।
ନଖ ମୁଖ ନାସିକା କଲାକ ଉପାମା । ୩୯୯ ।
ଚନ୍ଦ୍ର ମଣ୍ଡଳ ଜାଣିଣ ବଦନ ଗଢ଼ିଲା ।
ତିଳ ପୁଷ୍ପ ପ୍ରାୟେକ ନାସିକା ଠଣାକଲା । ୪୦୦ ।
କୁରଙ୍ଗୀର ଚକ୍ଷୁ ସାଦୃଶେ ନେତ୍ର ଦୁଇ ।
ମଦନ ଧନୁବାଣ ସେ ଭ୍ରୂଲତା କରଇ । ୪୦୧ ।
କୃଷ୍ଣ ଚାମର ହ ଗୁଣେ ଯେ କେଶ ପଞ୍ଝ ।
ଯମ ବରୁଣ ଫାଶି ଶର୍ବଣ ଦୁଇ ଛଟ । ୪୦୨ ।
ଅଧର ଡ଼ାଳମ୍ବ କୁସୁମର ବର୍ଣ୍ଣ ।
ସିନ୍ଦୂର ଗଜମେ ତ ଜାଣି ଦଶଇ ଦଶନ । ୪୦୩ ।
ଡ଼ାହାଣ ବ୍ରଂତକ ଙ୍ଗେ ପ୍ରାୟେ କଣ୍ଠ ଦିଶି ।
ବସ୍ତାର ହୃଦୟେ ସେ କୁଚ ଦୁଇ ବସି । ୪୦୪ ।

Digitized by srujanika@gmail.com

ସୁବର୍ଣ୍ଣ ହସ୍ତୀର ଯେ କୁମ୍ଭ ସ୍ତନ ବେନ ।
ଅମୃତ ପରାଇଣ ଅଛୁ ସେଥି ଅଣି । ୪୦୫ ।
କି ଅବା ମଦନ ରାଜାର ଭଣ୍ଡାର ।
ସ୍ୱୟେଂ ବିଶ୍ୱକର୍ମା କଲକ ଢାଆଣ । ୪୦୬ ।
ଚଉଷଠି ବନ୍ଧ ଭିତରେ ଥୋଇଥିଲେ ।
ନୀଳାର ଢାଙ୍କେଣି ଉପରେ ଘୋଡ଼ାଇଲେ । ୪୦୭ ।
କସ୍ତୁରୀ ସଙ୍କେକ କଲେ କମ ମୁଦ ।
ଗଜ ମୁକୁତା ଉପରେ ଅଛୁ ଲଦ । ୪୦୮ ।
କିଅବା ମାଉଙ୍ଗ ପାଚିଲେ ଶ୍ରୀଫଳ ।
ତେସନେକ ଦିଶୁଅଛୁ ଉରଜ ଯୁଗଳ । ୪୦୯ ।
ପଦ୍ମନାଳ ଜାଣି ଦିଶଇ ବାହୁ ବେନ ।
ବିରହୀ ଜନନ୍ତ କାମ ସାଧଇ ଯାହା ଘେନ । ୪୧୦ ।
ବଦ ମୁଦ ବାହୁଟି ଯେସନେ ଶୋଭା ଦିଶଇ ।
ଚମ୍ପାକଢ଼ି ପ୍ରାୟେ ଅଙ୍ଗୁଳି ପ୍ରକାଶଇ । ୪୧୧ ।
ଛାଇ କୁସୁମ ଯେ ଶୋଭା ଜାଣି ଲଖ ।
ଘଟଣ କମ ପ୍ରାୟେ ଶିଖର ମହାଶିକ୍ଷ ।୪୧୨ ।
ସରୁ ଅଣ୍ଟା ଗୋଟି ଗୋ ତାହାକୁ ଶୋହିଲେ ।
କଟି ଦେଖି ସିଂଘବନକୁ ପଳାଇଲେ । ୪୧୩ ।
ପିମ୍ପୁଡ଼ି ପେଟ ପ୍ରାୟେ ମଧ୍ୟା ଯେ ଦିଶଇ ।
ତହିଂର ଉପର ଯେ କୁଚ ଭର ଦିଶଇ । ୪୧୪ ।
ଗୁଲନ୍ତେଣ ଟଳ ଟଳ ହେଉଥାଇ ଅଙ୍ଗ ।
ଭଙ୍ଗି ପଡ଼ଇ ନ ଜାଣି ମାନସ୍ୟେତେ ରଙ୍ଗ । ୪୧୫ ।
କମ୍ପା ବିଧାତା ଯେ କଲେ ସେସନେକ ବିଧି ।
ଲହୁଣୀ ଦେହେ ପଥରମାନ ଲଦ । ୪୧୬ ।
କେତେବେଳ ଯାଏ ସେଥେ ସ୍ନେହ ରହି ।
କୋନ୍ତ ମୁନରେ କି ପର୍ବତ ଥିବ ବହି । ୪୧୭ ।
ସୁନ୍ଦରିଂ ନାସା ଗୋଟି ଦଖିଣକୁ ଫୁଲଇ ।
ରୋମ ରାଜିବ ଯେ ଦଯ୍ୟେଣା ଗଛ ତୁଲଇ । ୪୧୮ ।
କଟୀଭାଗ ନିତମ୍ବ ଦିଶଇ ମହାଶୋଭା ।
କେ ଜାଣେ ମରକତ ସିଂଘାସନ ଶୋଭା । ୪୧୯ ।
ପିନ୍ଧନ୍ତେଣ ସୁନ୍ଦର ଦିଶଇ ସରୁ ଶାଢ଼ୀ ।
କଟୀ ମେଖଳା ଯେ ଉପରେ ଅଛୁ ଭିଡ଼ି । ୪୨୦ ।

Digitized by srujanika@gmail.com

ସୁନ୍ଦର ସୁବଳିତ ଜାନୁ ଯେ ସୁବଳ ।
ଆଣ୍ଠୁ ଗଣ୍ଠି ପିଠି ସବୁ ହୁ ସମାନ । ୪୨୧ ।
ସୁବର୍ଣ୍ଣର ପାଷାଣ ପ୍ରାଏକ ଉଚ୍ଛ ଜଙ୍ଘ ।
କାମଦେବର ଜାଣି କନକର ଖମ୍ଭ । ୪୨୨ ।
ଉଲଟ କଦଣ ଅଛଇ ତାହା ଢେର ।
କଟକଇ କାଚଲ ଥିବ ସଜ କର । ୪୨୩ ।
ପାଦର ତଳପା ଅରୁଣ ରଙ୍ଗବର୍ଣ୍ଣ ।
ଐସେକ କହି ଚରଣ ଅଙ୍ଗୁଷ୍ଠିମାନ । ୪୨୪ ।
ସେବତୀ ପାଖୁଡ଼ା ପ୍ରାୟେକ ଲଖେ ପନ୍ତ ।
ଅଲତା ରଙ୍ଗେ ଯେ ବହୁତ ଶୋଭା ପାନ୍ତ । ୪୨୫ ।
କଞ୍ଚା ହଳଦୀ ପ୍ରାୟେ ଦେହ ତାର ଦିଶଇ ।
ପୁଞ୍ଜ ପୁଞ୍ଜ ହୋଇ ରୋମାବଳୀ ଦିଶଇ । ୪୨୬ ।
ଲକ୍ଷେକ ଲକ୍ଷଣ ଯେ ପୂରିତ ଶରୀର ।
ଅଣ୍ଡିର କୋକିଳକ ଅଣିଲ ତାର ସ୍ୱର । ୪୨୭ ।
ମତ୍ତଗଜ ଗୁଲ ସ୍ୱେହ୍ନାର ତହ୍ନୁଂ ଦେଲ ।
ନାନା ରୂପ ଗୁଣ ସ୍ୱେକଠାବ କଲ । ୪୨୮ ।
ଅନେକ କାଳ ଯେ ନବାଡ଼ିଲ୍ଲ ବସି ।
ପ୍ରାଣ ପାଇଲ ଅମୃତ ସଞ୍ଜିବନୀ ପଶି । ୪୨୯ ।
ଅପୂର୍ବ ଦ୍ରବ୍ୟ ଶ୍ରୀରାମଙ୍କୁ ଆଣି ଦେଲ ।
ତେବେ ସେ ବ୍ରହ୍ମାର ବ୍ରହ୍ମପଦ ଚହଲ । ୪୩୦ ।
ସ୍ୱୟଂ ଲକ୍ଷ୍ମୀ ଯେ ଅଛଇ ଅବତରି ।
ଶ୍ରୀରାମ ପ୍ରତକ୍ଷେ ଅଟନ୍ତି ଚକ୍ରଧାରୀ । ୪୩୧ ।
ସେ ମହୀମଣ୍ଡଳେ ଯେ ଅନେକ ଲୋକ ଅଛୁ ।
ସେ ଦୁହିଁଙ୍କ ଦେଖିଲେ ଆନରୂପ ଲେଛୁ । ୪୩୨ ।
କନ୍ୟାକୁ ସେ ବର ବରକୁ ସେ କନ୍ୟା ।
ବିଧାତା ଘଟଣା କଲ୍ଲୁକ ରଚନା । ୪୩୩ ।
ଶ୍ରୀରାମଙ୍କୁ ମାତାଗଣେ ପ୍ରଶଂସନ୍ତି ବହୁତ ।
ଦେଶୀ ପରଦେଶୀ ଦେଖନ୍ତି ଲୋକନ୍ତ । ୪୩୪ ।
ଧାଇ ମୃଦୁମୁଳ ଅନେକ ଝଡ଼ାଜଣ ।
ହରେପି ଗୃହାନ୍ତି ସୀତା ରୂପ ଗୁଣ । ୪୩୫ ।
ଅଯୋଧ୍ୟା ଯିବାକୁ ଦଶରଥ ସଜ ।
ବିବିଧ ଛନ୍ଦେଣ ଯେ ବଜାଇ ତୁର ବାଦ୍ୟ । ୪୩୬ ।

Digitized by srujanika@gmail.com

ସ୍ୱର ବର ଗ୍ୱର କନ୍ୟାଙ୍କ ଘେନ ଆସି ।
ମଣ୍ଡିଲ ରନୁ ଷେ-ସିଂଘାସନେ ବସି । ୪୩୭ ।
କଉସ୍ୱଲ କୈକୟୀ ସୁମେନ୍ଦ୍ରା ସଦ୍ଧତେ ।
ହାନ୍ଦୋଳା ଆରୋହଣ କରନ୍ତି ସମସ୍ତେ । ୪୩୮ ।
ଆବର ଯେତେ ରାଣୀହଂସ ମାନ ।
ସଜ ହୋଇ ବସିଲେ ଯେ ଯାହାର ଯାନ । ୪୩୯ ।
ରାମ ଦଶରଥ ପାଲଙ୍କିରେ ବଜେ ।
ଉନ୍ମବର ଚଢ଼ି ଲୋମପାଦ ରାଜେ । ୪୪୦ ।
ବଶିଷ୍ଠେ ବଶ୍ୱାମିତେ ସୁକାସନେ ବସି ।
ଲଗୁଡ ଚଲଇ ଯେ ବଜେ କର ଆସି । ୪୪୧ ।
ଭ୍ରଥର ମଉଳା ଯେ ଚଲଲକ ହାଥୀ ।
ସୁମନ୍ତ୍ର ରଜାକୁ ତୋଳ ଧଇଲକ ଛତ୍ରୀ । ୪୪୨ ।
ସୁଜାଣ ନାମେଣ ଗଜ ପିଠିରେ ବସିଥାଇ ।
ଶେତ ଛନ୍ଦ ଧଶ ମନ୍ତ୍ରୀବର ଚଲଯାଇ । ୪୪୩ ।
ଜାବାଲ ବାମଦେବ ସେହୁ ସୁକାସନ ।
ଆବର ଯେତେକ ପାତ୍ର ଅମନାତ୍ୟଗଣ । ୪୪୪ ।
ରଥ ଗଜ ଅଶ୍ୱ କେ ଚଢ଼ିଣ ବମାନ ।
ଯେ ଯାହା ଇଚ୍ଛାସ୍ୱେ ଆରୋହଲେ ଯାନ । ୪୪୫ ।
ଲୋକର ଗହଲେ ଯାଇତ ବାଟ ନାହିଂ ।
ମିଥିଲାର ନରନାରୀ ଯାଉଛନ୍ତି ଗୋଡାଇଂ । ୪୪୬ ।
ସୀତା ସଙ୍ଗତେଣ ଦଙ୍ଗାତୁଣୀ ଦାସୀ ।
ଶ୍ରୀରାମ ସୁକାସନ ଦୁଇ ପାଶେ ବସି । ୪୪୭ ।
ଗୋଡାଇ ଅଛନ୍ତି ଯେ ସ୍ନେହଭର ହୋଇ ।
ବହୁତ ଶ୍ରୀରାମଙ୍କୁ ଦେଖିବାର ପାଇଂ । ୪୪୮ ।
ମୁଗ୍ଧା ଯୁବତୀ ଯେ ମଦନ ଶରେ ବାଇ ।
ସ୍ନେହଭରେ କେ ଶ୍ରୀରାମଙ୍କୁ କୁଚେ ଆଉଜାଇ । ୪୪୯ ।
କେ ହାତ ଧରେଣ କେ ଦର୍ପଇ ସୀତା ।
ଆଜହୁଂ ସୀତାର ରାମ ପିତା ମାତା । ୪୫୦ ।
ସ୍ନେମନ୍ତେ ସୁଦେଷୀ ହୋଅନ୍ତି କାମରେ ଭୋଳ ।
ଜାନକୀର ସଙ୍ଗରେ ରାମଙ୍କୁ କରନ୍ତି କୋଳ । ୪୫୧ ।
ସଖି ବୋଲି କେ ରାମକୁ ଚୁମ୍ବ ଦେଇ ।
ବାଳସ ଦୃଷ୍ଟିରେ ଯେ ଜଘନ ଆଉଜାଇ । ୪୫୨ ।

Digitized by srujanika@gmail.com

ଲଜ୍ୟା ଛାଡ଼ିଲେ ସେ ମିଥିଳାର ନାରୀ ।
ଭୟ ଶଙ୍କା ନାହିଂ ମନେ ତାହାଙ୍କର । ୪୫୩ ।
ସୀତା ଶ୍ରୀରାମ ବୋଲନ୍ତି ବାହୁଡ଼ିଣ ଯାଅ ।
କ୍ଷେମେ କଲ୍ୟାଣ ହୋଇଣ ଘରେ ଥାଅ । ୪୫୪ ।
ବାହୁଡ଼ିବ ସତ ନ ବଳଇ କାହାର ।
ଝରଝର ନୟନୁ ବହଇ ସଭଙ୍କର ବାର । ୪୫୫ ।
କେହୁ ବୋଲେ ଯେ ଅରୁଣ ବର୍ଣ୍ଣ ମୁଖ ।
ବାହୁଡ଼ି ଯିବାକୁ ମଣଇ ମହାଦୁଃଖ । ୪୫୬ ।
ସୀତା ବୋଲଣ କେ ଆଉଂସଇ ରାମ ପେଟ ।
ଯାଉଅଛୁ ବୋଲଣ କେ ଦେଖାନ୍ତି କୁଚକଣ୍ଠ । ୪୫୭ ।
ଆଖି ମାରଣ କେ ନାସିକା ଢ଼ୁଆଇଂ ।
ଯାଉ ଯାଉ କେହୁ ବାଟରୁ ବାହୁଡ଼ଇ । ୪୫୮ ।
ରାମଙ୍କୁ ବୋଲନ୍ତି ସୀତାଙ୍କୁ ଭଲେ ପାଳ ।
ଶୁଣିଣ ହସନ୍ତି ଯେ ଦଶରଥ ବାଳ । ୪୫୯ ।
ବାହୁଡ଼ି ଯାଅ ନ ଆସ ଦୁଃଖପାଇ ।
କେତେହେକ ଦୂରଥିବ ଯେ ଗୋଡ଼ାଇ । ୪୬୦ ।
କେ ବୋଲଇ ଆମ୍ଭର ଘରେ ନାହିଂ କାର୍ଯି ।
ତୋହୋର ସଙ୍ଗେରେ ଥିବୁ ରଘୁରାଜ । ୪୬୧ ।
ଦାସୀପଣେ ଥିବୁ ତୋତେ ସେବାକରି ।
ତେବେ ସେ ଆମ୍ଭର ସକଳ ଦୁଃଖ ସରି । ୪୬୨ ।
ଶ୍ରୀରାମ ବୋଇଲେ ଯେ ନୋହଇନା କଛି ।
ବାହୁଡ଼ି ଯାଅ ଥୋକାଏ ଦୁଃଖ ତହିଂ ଅଛି । ୪୬୩ ।
କୁଳବଧୂ ହୋଇ ଯେ ଘରଛାଡ଼ି ଆସ ।
ଇଷ୍ଟ କୁଟୁମ୍ବ ତୁମ୍ଭର ବୋଲବେଟି କସ । ୪୬୪ ।
ନାରୀଣ ବଚନ ବୋଇଲେ ଯହୁଂ ରାମ ।
ଯୁବତୀଙ୍କ ବୁକୁ ହୋଇଲ୍କ ଦମ ଦମ । ୪୬୫ ।
ନାରୀଣ ହୋଇଣ ବାହୁଡ଼ିଣ ଯାନ୍ତି ।
ଥୋକାଏକ ଦୂରୁଂ ଲେଉଟି ଗୁହାନ୍ତି । ୪୬୬ ।
ପ୍ରାଣ ଯିବାବେଳେ ଯେହ୍ନେ ଶରୀର ବିକଳ ।
ମିଥିଳା ନରନାରୀ ତେସନ ସକଳ । ୪୬୭ ।
ଯେହ୍ନେ ଅନନ୍ତରେ ଦଶରଥ ରାଏ ।
ମିଥିଳା ନଗରରୁ କଟକାଇ ଯାଏ । ୪୬୮ ।

Digitized by srujanika@gmail.com

ବିବିଧ ଛନ୍ଦେଣ ଯେ ବାଜଇ ବୀରତୂର ।
ଆଲମ୍ବ ଚାମର ଯେ ଉଡ଼ଇ ଫରହର । ୪୬୯ ।
ପାଟଛତ୍ର ଯାହେ ନ ଦିଶଇ ଗଗନ ।
ହୁଳହୁଳି ଶବଦ ଶୁଭଇ ଘନଘନ । ୪୭୦ ।
ପୁଷ୍ପର ବର୍ଷଣୀ ଚନ୍ଦନର ଛେରା ଦେଇ ।
କେହୁ ନବରତ୍ନ ବୃଷ୍ଟି କରି ଯାଇ । ୪୭୧ ।
ହସ୍ତୀଙ୍କର ରାବ ଯେ ଘୋଡ଼ାଙ୍କର ଗର୍ଜ୍ଜନ ।
ଘଣ୍ଟି ଘାଘୁଡ଼ି ଯେ ବାଜଇ ବାଦ୍ୟମାନ । ୪୭୨ ।
ପାଇକଙ୍କର ଫେରି ରାବ ଗୁଣଙ୍କର ଟଙ୍କାର ।
ରଥଘୋଷ ଯାତ ଅନ୍ତ ଅଗୋଚର । ୪୭୩ ।
ସ୍ତ୍ରୀଙ୍କର ହୁଳହୁଳି ବ୍ରାହ୍ମଣଙ୍କର ବେଦ ।
ଆବର ବାଜଇ ବୀରତୂର ବାଦ୍ୟ । ୪୭୪ ।
ସର୍ବରାବ ହୋଇ ଏକରାବ ହୋଇ ଉଠଇ ।
ଧୂଳି ଉଡନ୍ତେଣ ଯେ ଗଗନ ଘୋଟଇ । ୪୭୫ ।
ବରୁଣ ପୁରୁ ଯେହ୍ନେ ଲକ୍ଷ୍ମୀ ଜାଆନ୍ତି ହରି ।
ସୀତାଙ୍କୁ ଶ୍ରୀରାମ ଜାଆନ୍ତି ତେହ୍ନେ ଧରି । ୪୭୬ ।
ମିଥିଲା କଟକରୁ ସେ ହୋଇଲେ ବାହାର ।
ବାଟେ ରାଜାମାନେ ଦିଅନ୍ତି ଉପହାର । ୪୭୭ ।
ସେ ଦିନେ ବୈଶାଳୀ ପୁରେ ରହିଲେ ।
ରଜନୀ ପ୍ରଭାତେଣ ତହୁଁ ଚଳିଗଲେ । ୪୭୮ ।
ସୁରନଦୀ ଜଣି ବିପୁଳ ବନେ ପାଇ ।
ସେଦିନ ନିଶି ତହୁଁ ବିଶ୍ରାମିଲେ ଯାଇ । ୪୭୯ ।
ସିଦ୍ଧବନେ ଯାଇ ଚିହ୍ନିଲେ ଆରଦିନ ।
ବିଶ୍ୱାମିତ୍ରଙ୍କ ଆଶ୍ରମ ସେ ଅଟଇ ବିତପନ । ୪୮୦ ।
ଚଉଠି ସମ୍ଭାର ବିଧି ତହୁଁ କଲେ ।
ନିଶି ପ୍ରଭାତରୁ ତହୁଁ ଚଳିଗଲେ । ୪୮୧ ।
ସେ ଦିନ ଦଶରଥ ଦେଖିଲେ ବିପରୀତ ।
ପର୍ବତ ଉପରେ ପଡ଼ିଲା ବଜ୍ରଘାତ । ୪୮୨ ।
ବାମନୟନ ଯେ ସ୍ଫୁରଇ ଘନ ଘନ ।
ଗୃଧ୍ରପକ୍ଷୀ ଉପରେ ଉଡ଼ଇ ପୁନ ପୁନ । ୪୮୩ ।
ମନୁଷ୍ୟ ଶରୀର ଉପରେ ବସଇ ଆସି କାକ ।
ଉପସର୍ଗ ବି ଯେ ବୋଲନ୍ତି ଅନେକ ଲୋକ । ୪୮୪ ।

Digitized by srujanika@gmail.com

ଶ୍ରୀରାମର ଅଗରେ ଶୃଗାଳ ରାବ ଦ୍ୟନ୍ତି ।
କୁହୁଡ଼ି ହୋଇଣ ଆକାଶେ କୁହୁ ଝଟକନ୍ତି । ୪୮୫ ।
ସୂର୍ଯ୍ୟଙ୍କର କିରଣ ହୋଇଲା ମଉନ ।
କି ଜାଣି ଦିନକର ପୃଥ୍ୱୀମୀର ଜହ୍ନ । ୪୮୬ ।
ଧୂମକେତୁ ଉଦୟେ ହୋଇଲା ଗଗନେ ।
ଦିବସେଣ ଉଦେ ହୋଇଲା ତାରାମାନେ । ୪୮୭ ।
କୁହୁଡ଼ି କଲା ପ୍ରାୟେ ନ ଦିଶଇ ଦିବସ ।
ପ୍ରବଳ ହୋଇଣ ଯେ ବହଇ ବତାସ । ୪୮୮ ।
ଦଶରଥ ଚିତ୍ତରେ ଉପସର୍ଗ କଥା ।
ବଶିଷ୍ଠଙ୍କୁ ରାଇ ବିଚାରେ ମହାରଥା । ୪୮୯ ।
ଯେ ଶକୁନ୍ୟ ମାନ ଯେ ବିପରୀତ ଦିଶଇ ।
ମୋହୋର ମନକୁ ଯେ ଶୁଭ ନ ଆସଇ । ୪୯ ।
ଅବଶ୍ୟ ବିପରୀତ ହୋଇବାକ ଆଜ ।
ପ୍ରମାଦ ହୋଇବ ଯେ ମୋହୋର ଯେତେ ଶୁଭକାର୍ଯ୍ୟ।୪୯୧।
ମୁନିଯେ ବୋଇଲେ ହୋ ଆନ ନାହିଁ କିଛି ।
ଯେ କଥାଯେକ ଭ୍ରାନ୍ତ ତୋର ଅଛି । ୪୯୨ ।
କ୍ଷତ୍ରୀଙ୍କର ଅରିଣ ଯେ ଅଟଇ ପର୍ଶୁ ରାମ ।
ସିଦ୍ଧବନେ ଯେତୁ କରିଅଛଇ ଆଶ୍ରମ । ୪୯୩ ।
ସେ ନ ପୂଣ ହୋ ଭେଟ ନ ପଡ଼ୁଯାଇ ଆଜ ।
ତାହାକୁ ଦେଖିଲେ ଯେ ହୋଇବ ମନ୍ଦକାର୍ଯ୍ୟ । ୪୯୪ ।
ଯେତେବୋଲି ଚଳିଂ ଯେ କରନ୍ତି ଗମନ ।
ଧ୍ୟାନେ ବସିଥିଲା ଯେ ରେଣୁକା ନନ୍ଦନ । ୪୯୫ ।
ଧ୍ୟାନ ଗୁଚିଲା ଯେ ପର୍ଶୁ ରାମ ମୁନି ।
ସମାଧି ଭାଙ୍ଗିଲା ଯେ ଖରତୂର ଶୁଣି । ୪୯୬ ।
ମନେ ବିଚାରଇ ସେ କାହା ଯେ ଶବଦ ।
ଶବଣ୍ଡକୁ ଶୁଭଇ ସେ ଖରତୂର ବାଦ୍ୟ । ୪୯୭ ।
ଆବର କି ଖାରେ ଅଛନ୍ତି ଦେହଧେନ ।
ଖାରନ୍ତି ମାର ଶୂନ୍ୟ କଲଇ ମେଦନୀ । ୪୯୮ ।
ପୁଣି ଖାରତୂର ଶୁଭିଲକ ମୋତେ ।
କେବଣ ଖାର ପ୍ରତାପୀ ହୋଇଲା ଜଗତେ । ୪୯୯ ।
ପୂର୍ବର କଥାମାନ ନାହିଁଙ୍କ ସେ ଶୁଣି ।
ଖାରତୂର ବଜାଇ ଯେ କେବଣ ଗୁଣଧେନ । ୫୦୦ ।

Digitized by srujanika@gmail.com

ବୀରଦର୍ପ ଗଂଜନ ମୁଂ ବୀରଙ୍କର ନାଥ ।
ଯେ ବୀର ବୋଲିବ ଛେଦଇ ତାର ମାଥ । ୫୦୧ ।
ବୀର ବୋଲି ମୁଂ ଯେ ନ ଥୋଇଲି ସୀମା ।
ଯେତେବୋଲି କୋପକଲେକ ପ୍ରଶୁରାମା । ୫୦୨ ।
ନିଃଶ୍ୱାସ ଖରତର କାଳସର୍ପ ଜାଣି ।
ଘନ ଘନ କୋପ ଯେ କରଇ ପ୍ରଶୁମଣି । ୫୦୩ ।
ବନସ୍ତରୁ ବାହାର ହୋଇ ଦଶିଲେକ ରୁଷି ।
କଳ ମେଘ ବଦାଶକ ବାହାର ହୋଏ ଶଶୀ । ୫୦୪ ।
ଶିରରେ ନାଗବନ୍ଧ ପିଙ୍ଗଳବର୍ଣ୍ଣ ଜଟ ।
ଶର୍ବଣେ କୁଣ୍ଡଳ କଟିରେ କାଛଟ । ୫୦୫
କଣ୍ଠେଣ ତୁଳସୀ ରୁଦ୍ରାକ୍ଷମାଳ ସାଜ ।
ପୁଙ୍ଗଂ ଗୁନ୍ଧଆ ମାଳ ହୃଦରେ ବସଜ । ୫୦୬ ।
କୃଷ୍ଣାଜିନ ଗ୍ରଲ କଟୀରେ ଓହାଡ଼ ।
ଅଣ୍ଟାୟେଣ ତାହାର ଅଛଇ ଯେ ଭଡ଼ । ୫୦୭ ।
କଷାବସ୍ତ୍ର ପରିହରଣ କଟିରେ କାଛଣୀ ।
ପବିତ୍ର ଉତ୍ତରୀ କରଣ କୁଶଗଣ୍ଠି । ୫୦୮ ।
ଯାଗ ଯଗ୍ୟଂ ପାଉଂଶ ବଲେପନ ଅଷ୍ଟଧାର୍ଘ ଦାଢ଼ି ।
ଫରହର ନଶ ଅଛଇ ହାଦେ ଉଡ଼ି । ୫୦୯ ।
ପିଠିରେ ପକାଇ ଅଛଇ ବ୍ୟାଘ୍ର ଗ୍ରଲ ।
କପୋଳେ ଛିନ୍ନଖଣ୍ଡ କରିଅଛି ଖାଲ । ୫୧୦ ।
ଶ୍ରୋହା ପ୍ରୋକ୍ଷଣୀ ଯେ କୃଶମନ୍ତ ପୋଥି ।
କାଖ ମୂଳରେ ଯେ ଅଧାର ଗୋଟି ଅଛି । ୫୧୧ ।
ବେଦ କର୍ଣ୍ଣି ଉଦୁବାଳେକ ବଟୁ ।
ଖଣିତ୍ର କମଣ୍ଡଳ ବ୍ରହ୍ମଚର୍ଯ୍ୟ ଦୀକ୍ଷା । ୫୧୨ ।
ବାମକରେ ଧନୁ ଡାହାଣେ କୋଠାର ।
କଣ୍ଠତଟେ ଶୋହୁଂ ଅଛି ଦ୍ରୋଣଭାର । ୫୧୩ ।
ବୈଷ୍ଣବୀ ନାମେ କୋଦଣ୍ଡେ ଗୁଣ ଦେଇ ।
ପଇତା ଛନ୍ଦେଣ ଯେ ଅଛଇ ତା ଗ୍ଲଛଂ । ୫୧୪ ।
ନୟନର ତେଜକ୍ଷ ମିଥୁନର ବିଜୁଳୀ ।
ଯେତେଣେ ସେ ଗୃହାଇଂ ତେତେଣେ ଅଗ୍ନି ଜଳି । ୫୧୫ ।
ନିଃଶ୍ୱାସ ବହନ୍ତେ ହଲଇ ନାଶାର ବମ୍ବର ।
ପ୍ରେମ ଟାଙ୍କୋରଇ ଓଷ୍ଠ ଥରହର । ୫୧୬ ।

Digitized by srujanika@gmail.com

ସମୋଦ୍ରକୂଳେ କି ଅଗସ୍ତି ଆସି ହୋସ୍ମେ ।
ଦେଖିଣ ସନ୍ୟନ୍ତଂ ଯେ କଲେ ମହାଭସ୍ମେ । ୫୧୭ ।
ପ୍ରଳୟ ଅନଳ ପ୍ରାସ୍ତେଜ ଦଶଇ ।
ସୂର୍ଯ୍ୟ ଦେବତାକ ମେଦନୀକ୍କ ଆସର । ୫୧୮ ।
ସଇନ ପଳାଇ ଯାଇ କହିଲେ ନୃପବର ।
ବଳ ଓଗାଳିଣ ଅଛଇ ଦେବ ପ୍ରଶୁ ଧର । ୫୧୯ ।
ଶୁଣି ଦଶରଥର ଉଡ଼ିଇ ସାହାସ ।
ଶରୀର କମ୍ପଇ ଖର ନଶୁଆସ । ୫୨୦ ।
ବନ୍ଧୁ ସୁମର କପୋଳେ ହାଥ ମାରଇ ।
ବଶିଷ୍ଠ ମୁଖଗ୍ରହିଂ ଶୋକ ଯେ କରଇ । ୫୨୧ ।
ଂଭେ ମୁନି ଶୁଣିଲକି ବିପରୀତ ବାଣୀ ।
ଆଗେ ଓଗାଳିଣ ଅଛଇ ପ୍ରଷ୍ଟୁ ମଣି । ୫୨୨ ।
କମ୍ପା ଅଇଲେ ସେ କାରଣ ସ୍ୱେଥେ କସ ।
ସ୍ୱେଥକୁ ଉପାସ୍ନେ ମୋତେ କହ ବ୍ରହ୍ମଋଷି । ୫୨୩ ।
ବେଷଭର ହୋଇ ଅଛଇ ପୁଣ ଆସି ।
ସ୍ନେ ମୋହୋର ପୁତ୍ରଙ୍କୁ ନ ପୂଣ ଯାଇ ନାଶି । ୫୨୪ ।
କି ବୁଧି କରବ କହସି ବଗୃର ।
ଶୁଣିଣ ବୋଲଇ ବଶିଷ୍ଠ ତପସ୍ୱୀ । ୫୨୫ ।
ପ୍ରଶୁ ଅଇଲକ ବୀରତୂର ଶୁଣି ।
ଗ୍ଧଳ ପ୍ରବୋଧ କରିବା ନୃପମଣି । ୫୨୬ ।
ଯେବଣ ଉପସର୍ଗ ଦେଖିଲୁ ତୁ ଆଜ ।
ପ୍ରତକ୍ଷେ ଆସି ତୋତେ ଫଳିଲା ମହାରାଜ । ୫୨୭ ।
ମୁହିଂ ଯେ ବୋଇଲି ପ୍ରଶୁ ସ୍ୱଥେ ଥାଇ ।
ତାହାକୁ ସ୍ୱେଥେ ଭେଟ ନୋହିଲେ ଭଲହୋଇ ।୫୨୮।
ଦଇବର କଥା କେ କରିବ ଆନ ।
ଗ୍ଧଳ ପ୍ରବୋଧିବା ରେଣୁକା ନନ୍ଦନ । ୫୨୯ ।
କଥା ହୁଅନ୍ତେଣ ମିଳିଲେ ପ୍ରଶୁ ଧାସ୍ତି ।
କାଳଦଣ୍ଡ ପ୍ରାୟେକ ଅଛଇ କୋଠାର । ୫୩୦ ।
କୋପ କରିଣ କାମୋଡ଼ଇ ଅଧର ।
ସରେଗେଣ ଦେହ କମ୍ପଇ ଥରହର । ୫୩୧ ।
ଦେଖି ଦଶରଥ ଯାନରୁ ଉତୁରି ।
ଭୃଗୁପତି ଚରଣେ ନମସ୍କାର କରି । ୫୩୨ ।

Digitized by srujanika@gmail.com

ପୁଣ ଉଠଇ ପୁଣ ପାଦେ ପଡ଼ଇ ।
କାର୍ମୁକ ହୋଇଣ ବେନିକର ଯୋଡ଼ଇ । ୫୩୩ ।
ଭୋ ମୁନି ଦର୍ଶିଲ ସ୍ୱେ ମୋହର ପୁନ୍ୟ ।
ଯହୁଂ ଦେଖିଲି ମୁଂ ଯମଦଗ୍ନିର ନନ୍ଦନ । ୫୩୪ ।
ଭୃଗୁକୁଳ ମଣ୍ଡନ ତପୀଙ୍କର ଶ୍ରେଷ୍ଠ ।
ଋଷିଙ୍କର ସମ ତପେଣ ଗରିଷ୍ଠ । ୫୩୫ ।
ପ୍ରାକର୍ମେଣ ସାକ୍ଷ ଗରିଷ୍ଠେ ଈଶ୍ୱର ।
ବଳେଣ ଅକଳାତ କୋପେଣ କୃପାର । ୫୩୬ ।
ଦାକ୍ଷାଣ୍ୟେଣ ଧର୍ମ ସହନ୍ତେଣ ମେଦନୀ ।
ଜୟ ଜୟ ପ୍ରର୍ଶୁଧର ମହିମା ତୋର ଧନି । ୫୩୭ ।
ଯେତେକ ଯେ ପାପ ଥିଲା ସ୍ୱେ ମୋହୋର ଅଙ୍ଗେ ।
ତୋତେ ଦେଖିଣ ଯେ କଲି ଗଙ୍ଗେ । ୫୩୮ ।
ବ୍ରହ୍ମେଣ ବ୍ରହ୍ମ ତୁ ଯୋଗେଣ ଯୋଗେଶ୍ୱର ।
କ୍ଷତ୍ରୀବୃତ ପଣେ ଅଟୁ ତୁ ଚକ୍ରଧର । ୫୩୯ ।
ମୋହୋର ଉତ୍ସବ ଯେ ପୁତ୍ରଙ୍କର ବିଭା ।
ଦୟାକର ଦେଖି ଅଇଲୁ ତୁ ଅବା । ୫୪୦ ।
ଶୁଣି ରୋଷଭରେ ହସଇ ପ୍ରଶୁପାଣି ।
ସ୍ୱେଅକୁଟି ଅଇଲି ବୀରତୂର ଶୁଣି । ୫୪୧ ।
ସ୍ୱେ ମହୀମଣ୍ଡଳେ ତୁ ଅଟୁ ମହାରାଜା ।
ମୋହୋର ଆଗେ ଆସି ବଜାଇଲୁ ବାଜା । ୫୪୨ ।
ତୋ ତହୁଂ କ୍ଷତ୍ରୀକେ ଅଛୁ ଆହ୍ୱ ଅନ ।
ଅଣବଡ଼ ରାଜା ତୁ ଅଯୋଧ୍ୟା ରାଜନ । ୫୪୩ ।
ଯେତେକ ରାଜା ଥିଲେ ମୃତ୍ୟୁପୁରେ ।
ସବୁହୁଂ ଉତ୍ତମ ତୁ ଅଟୁ ନୃପବରେ । ୫୪୪ ।
ବୀରତୂର ବଜାଇ ସାଧୁଅଛୁ ମହୀ ।
ରବିତଳେ ସମ ନୋହିବେ ତୋତେ କେହି । ୫୪୫ ।
ଆଜ ପରୀକ୍ଷ କରିବା ନା ତୋହୋର ସ୍ୱେ ବଳ ।
ପ୍ରଶୁଘାତ୍ୟେ ମୁଣ୍ଡ ହୋଇବ ବେନିଫାଳ । ୫୪୬ ।
ତେବେ ସେ ବୋଲିବା ତୁ ହୋ ବଡ଼ାଇ ନୃପତି ।
ସ୍ୱେହାହୁଂ ସାମାନ୍ୟ ନାହିଂ କେହି କ୍ଷତ୍ରୀ । ୫୪୭ ।
ସଦାଶିବର ଧନୁ ଭାଙ୍ଗିଲା ଯେବଣ ହିଂ ପୁତ୍ର ।
ସେ ତୋହୋର କାହିଂ ବୋଲି ବୋଇଲେ ଭୃଗୁଗୋତ୍ର ।

Digitized by srujanika@gmail.com

ତାହାର ବଳେ ସେ ବଳାଇ ବୀରତ୍ତର ।
କାହ୍ନିଂଅଛୁ ପୁନି ତୋ ଦେଖିବା ନୃପବର । ୫୪୯ ।
ଯେତେବୋଲି ପ୍ରଭୁ ଦଣ୍ଡେ ଯାଇ ପଶଇ ।
ଯେଣେ ଯିବ ତେଣେ ଦଣ୍ଡଭଗ୍ନ ଦିଶଇ । ୫୫୦ ।
ରଥ ଗଜ ଅଶ୍ୱେ ପାଇକେ ପଳାନ୍ତି ।
ଦୃଷ୍ଟି ପସର ଯାଏ କେହି ନ ରହନ୍ତି । ୫୫୧ ।
କେ ବୋଲଇ କୋଠାର ନ ପିଟଇ ପୁଣି ।
କେ ବୋଲଇ ନ ପୁଣ ପକାଇ ଶିର ହାଣି । ୫୫୨ ।
କେ ବୋଲଇ ନ ପୁଣ ନୟନେ ଦହଇ ଦଣ୍ଡ ।
କେ ବୋଲଇ ପୁଣ ନ କାଟଇ ମୁଣ୍ଡ । ୫୫୩ ।
କେ ବୋଲଇ ଆହ୍ମୋ ଆଜ ନେବ ପ୍ରାଣ ।
ଭେଟ ପଡ଼ିଲୁ ଯହିଁ ଦୁଷ୍ଟାସ୍ତ୍ର ଯମରାଣ । ୫୫୪ ।
ପଳାବନ୍ତି ସଇନ ପଛକୁ ନ ଚାହିଁ ।
ଝାଡ଼ବାଡ଼ ଓହାଡ଼େ ରହୁଛନ୍ତି ଯାଇ । ୫୫୫ ।
ବଶିଷ୍ଠ ବିଶ୍ୱାମିତ୍ର ଦଶରଥ ରାଏ ।
ଯେଣେଯାଏ ପ୍ରଭୁ ତେଣେ ସେ ଗୋଡ଼ାଏ । ୫୫୬ ।
ଶ୍ରୀରାମ ସନଧେ ମିଳିଲେ ଯାଇଂ ।
ପ୍ରଭୁ ଉଚ୍ଚରିଲେ କୋପମୁଖ ହୋଇ । ୫୫୭ ।
ଦଶରଥ ରାଜା ହୋଇଲେ ଆଗ ।
ହେ କ୍ଷତ୍ରିବର ତୁ ଛାଡ଼ ଛାଡ଼ ରାଗ । ୫୫୮ ।
ଅପୂର୍ବିକ ପୁତ୍ର ମାରିବ କେବଣ ସଧେ ।
ନିନ୍ଦା ପାଇବନା ତ୍ରୈଲୋକ୍ୟର ମଧେ । ୫୫୯ ।
ସୂର୍ଯ୍ୟବଂଶ ତୋତେ ନୁହଇ ନା ଦୋଷୀ ।
କମ୍ପାଇ ପୁତ୍ରକୁ ମୋର ପକାଇବୁ ନାଶି । ୫୬୦ ।
ସେହି କୁ ମାଇଲେ ସେଠାରୁ ବଂଶ ସରଇ ।
ଏତେବୋଲି ରାଜା ପ୍ରଭୁ ପାଦେ ପଡ଼ଇ । ୫୬୧ ।
ଦନ୍ତେ ତୃଣ ଧରି କରଇ ଦାଇନ ।
ବେଳେକ ରକ୍ଷାକର ମୋତେ ବ୍ରହ୍ମମୁନି । ୫୬୨ ।
ପୁଅନ୍ତ ଛାଡ଼ ମୋତେ ପକା ମାର ।
ମୋର ଦୋଷ ନାହିଂ ତୋତେ ତପସ୍ୱୀ । ୫୬୩ ।
ରାଜାର ପ୍ରବୋଧ ନ ଘେନଇ ଋଷି ।
ପୁଣି ଶ୍ରୀରାମ ଛାମୁରେ ମିଳେ ଆସି । ୫୬୪ ।

Digitized by srujanika@gmail.com

କୋପେଣ ବୋଲଇ ତୁ ଶୁଣ ରଘୁନାଥ ।
ଈଶ୍ୱର ଧନୁ କେମନ୍ତେ କଲୁ ହତ । ୫୭୫ ।
ଇନ୍ଦ୍ରହିଁ ତୋଳି ନ ପାରଇ ତାହା ।
ସମାନ୍ୟ ବଳ କି ତହେଁ ତୋର ବାହା । ୫୭୬ ।
ମେରୁହିଁ ଗର୍ବ ନଯେ ବଜ୍ରହିଁ ଆଣ୍ଡ ଅଛନ୍ତି ।
ସ୍ନେ ତୋର ଭୁଜ ଲାଗି ସେ ଧନୁ ତୁଟଇ । ୫୭୭ ।
ଯେବଣ ଧନୁରେ ତ୍ରିପୁର ପ୍ରାଣହାର ।
ତାହା ହାଦେ ଭାଙ୍ଗିଲୁ ତୁ ଦୁଇଖଣ୍ଡ କର । ୫୭୮ ।
ଦଶରଥ ବୋଲନ୍ତି ତୁ ଶୁଣସି ଶ୍ରୀରାମ ।
ପ୍ରଭୁ ଧରନ୍ତି ହରିଙ୍କର ତମ । ୫୭୯ ।
ଏହାଙ୍କ ଚରଣେ ତୁ ନମସ୍କାର କର ।
ଏହା କଲ୍ୟାଣେ ତୋତେ ଐଶ୍ୱର୍ଯ୍ୟ ଅପାର । ୫୮୦ ।
ଶୁଣିଲେ ଶ୍ରୀରାମ ପିତାଙ୍କର ସ୍ନେହନେକ ବାଣୀ ।
ସୁକାସନୁ ଓହ୍ଲାଇ ଅଇଲେ ରଘୁମଣି । ୫୮୧ ।
ଶ୍ରୀରାମ ସୀତାଙ୍କୁ ଚୂଳ ତଳେ ହୋଇ ହୁଅନ୍ତି ।
ଭୃଗୁ ପ୍ରଭୁ ରାମ ବୋଲନ୍ତି ବୋଲନ୍ତି । ୫୮୨ ।
ଅପାର କାଳର ତ ପୁରାତନ ଋଷି ।
ଶୁଣୁଥିଲୁ ଆମ୍ଭେ ଦେଖିଲୁ ନ ଆସି । ୫୮୩ ।
କେବଣ କାରଣେ ଅଇଲ ତପୋବନ୍ତ ।
କହସି କଥା ତୋର ଶୁଣିମାକ ତଥ୍ୟ । ୫୮୪ ।
ପ୍ରଭୁରାମ ବୋଇଲେ ତୁ ଜନେକର ଘରେ ।
ଶିବଧନୁ ଭାଙ୍ଗିଲୁ ସୀତା ସମ୍ବେମ୍ବରେ । ୫୮୫ ।
ସେ ଧନୁର ମହିମା ନ ଜାଣୁ ତୁ କିଛି ।
ମୋହୋର ତହିଁ ତୁ ଶୁଣ ରଘୁବଚ୍ଛ । ୫୮୬ ।
ବିଶ୍ୱକର୍ମା ଦୁଇ ଧନୁ ନିର୍ମାଇଲା ।
ଏକ ରୁଦ୍ର ଏକ ବିଷ୍ଣୁକଇ ସମର୍ପିଲା । ୫୮୭ ।
ଦୁଇ ଧନୁ ଦୁଇଗୁଣ ଦେଇ ଧର ।
ମୋହୋର ବଡ଼ ଧନୁ ବୋଲି ବୋଇଲେ ଦେବହର । ୫୮୮ ।
ଶଙ୍କର ବୋଇଲେ ତୋହର ଶରାସନୁ ।
ଅଙ୍ଗୁଳିବଳ ଯେ ବହଇ ମୋରଧନୁ । ୫୮୯ ।
ବିଷ୍ଣୁ ବୋଇଲେ ତୁ ଶୁଣ ଶୂଳପାଣି ।
ତୋହୋର ଶାସ୍ତ୍ରେକୁଁ ବଳ ଅଛଇ ମୋହର କୋଦଣ୍ଡପାଣି ।

Digitized by srujanika@gmail.com

ଶୁଣି ମହେଶ୍ୱର ବୋଲଇ କୋପକରି ।
ଗର୍ବକରୁ ତୁ ଯେ ନିର୍ବଳ ଧନୁ ଧରି । ୫୮୧ ।
ସେ ମୋହୋର ଶରାସନ ଅକଳନ୍ତ ବଳ ।
ନାରାଜ ସନ୍ଧିଲେ ଦଗ୍ଧ ହୋଇବେ ସକଳ । ୫୮୨ ।
ସଦାଶିବର ବଚନେ ହସିଲେ ମଧୁହାସ ।
ଅଗ୍ୟାଂନ ପଣେ ତୁ ଯେ କହୁ ତ୍ରିପୁରାରି । ୫୮୩ ।
ସେ ମୋହୋର ଧନୁରେ ତୀକ୍ଷବାଣ ସନ୍ଧି ।
ଆକର୍ଣ୍ଣ ପରଯନ୍ତେ ପୂରାଇ ଯେବେ ବନ୍ଧି । ୫୮୪ ।
ବ୍ରହ୍ମାଣ୍ଡ ନ ରହଇ ସୁରାସୁର ସହିତେ ।
ଶୁଣିଣ କୋପେ ଯେ ବୋଲନ୍ତି ଶୂଳହସ୍ତେ । ୫୮୫ ।
ଦୁଇକୁଳ ସହୁଂ ଉଚ୍ଚବାଚ ବାଣୀ ।
ଦେବତାମାନେ ବୋଇଲେ ହୋ ପରୀକ୍ଷ ଅଛୁ ପୁଣି । ୫୮୬ ।
କଳି ନ କର ହୋ ତୁମ୍ଭେ ତ ଯୁଧ କର ।
ଜାଣିମା କାହାର ଧନୁ ଅଟଇ ବଳିଆର । ୫୮୭ ।
ସୁରଗଣମାନଙ୍କର ଶୁଣିଣ ସମ୍ବାଦ ।
ହରିହର ବେନି ଆରମ୍ଭିଲେ ବାଦ । ୫୮୮ ।
ଧନୁ ଧରିଣ ଯେ ନାରାଜ ବିନ୍ଧନ୍ତି ।
ଏକକୁ ଆରେକ ଅନ୍ୟୋଅନ୍ୟେ ହାନ୍ତି । ୫୮୯ ।
ସହୁଂ ରଣଗୋଳ ବାଜିଲା ଦୁହିଂଙ୍କର ।
ଥରହର ହୋଇଣ କମ୍ପିଲା ବସୁନ୍ଧରା । ୫୯୦ ।
ସମୋଦ୍ର ଲହରୀ ହୋଇଲାକ ଥିର ।
ମେରୁ ଆଦିକରି ଚଳିଲା ଗିରିବର । ୫୯୧ ।
ପବନ ଅସ୍ଥିଲା ନ ବହଇ ଖରେ ।
ଚନ୍ଦ୍ର ସୌରୂପ ଯେ ହୋଇଲା ହିନକରେ । ୫୯୨ ।
ଅରିଷ୍ଟି ହୋଇଲା ଦେବେ ତୁଷ୍ଟି କଲେ ।
ସେ ତୁମ୍ଭର ଯୁଦ୍ଧ ବିଶ୍ରାମ ବୋଇଲେ । ୫୯୩ ।
ସେଣେ ଆମ୍ଭର ନାହିଂ ପ୍ରୟୋଜନ ।
ସେ ତୁମ୍ଭର ଯୁଧ ଦେଖିବାକୁ ନୋହିଲୁ ଭାଜନ । ୫୯୪ ।
ଗୁଣ ନାଦ ଘାୟେ କମ୍ପ ଅଛୁ ମହୀ ।
ପଡ଼ିବ ରସାତଳେ ନ ପାରିବ ସହି । ୫୯୫ ।
ତୁ ହୋ ଶଙ୍କର ନକର ମନେ ରୋଷ ।
ବାସୁଦେବର ଧନୁ ଦଲେ ଗରୁ ହଂସ । ୫୯୬ ।

ଯେ ଯେ ଉତ୍ତମ ସେ ନୋହଇ କନିଷ୍ଠ ।
ଯେହୁ କନିଷ୍ଠ ସେ ନୁହଇ କେବେ ଜେଷ୍ଠ । ୫୯୭ ।
ବିଷ୍ଣୁ ସେ ଅଶେଷ ବ୍ରହ୍ମାଣ୍ଡର ପତି ।
ତାହାର ଆୟୁଧ ଅଟଇ ବଳ ଅତି । ୫୯୮ ।
ଜେଷ୍ଠ କନେଷ୍ଠ ଯେ ସବୁଠାରେ ଜାଣି ।
ବ୍ରହ୍ମା ଅବଗ୍ରହ କର ଶୂଳପାଣି । ୫୯୯ ।
ଯେହୁ ଶ୍ରେଷ୍ଠ ହାଦେ ଅଟଇ ଚକ୍ରପାଣି ।
ବ୍ରହ୍ମାଇ ଅବଗ୍ରହ କରୁ ଶୂଳପାଣି । ୬୦୦ ।
ଦେବତାମାନଙ୍କର ଯେସନ ବଚନ ପାଇ ।
ଦୁଇ ଦେବତାଯେ ରହିଲେ ତୋଷ ହୋଇ । ୬୦୧ ।
ସେ ଧନୁ ଘେନିଣ ଦେବ ଶୂଳଧାରୀ ।
ନିପୁର ଦଇତେ ପ୍ରାଣଘାତ କରି । ୬୦୨ ।
ଦଇତ ନିବାରଣ ଦେବରାଜ ତହିଁ ।
ଅତି ଯତନେ ଧନୁ ଥୋଇଲକ ନେଇ । ୬୦୩ ।
ବିଷ୍ଣୁର ଶରାସନ ରୁଚିକ ମୁନି ହାତେ ।
ଥୋଇଲେ ଚକ୍ରଧର ଅତି ଯତ୍ନମତେ । ୬୦୪ ।
ରୁଚିକର ତନଯେ ଯମଦଅଗ୍ନି ଋଷି ।
ସହସ୍ର ଅର୍ଜ୍ଜୁନ ମୋ ପିତାକଇ ନାଶି । ୬୦୫ ।
ସେ କୋପଂକରି ମୁଂ ସଂସାର ନାଶକଲି ।
ବାଳବୃଦ୍ଧା ଚୁଡ଼ି ମୁଂ ସକଳ ମାଇଲି । ୬୦୬ ।
ହଇ ହଇ ବଂଶେ ସହସ୍ରା ଅର୍ଜ୍ଜୁନ ।
ଅଦୋଷେ ପିତାକୁ କଲକ ନିଧନ । ୬୦୭ ।
ତେଣୁକରି କ୍ଷତ୍ରୀଙ୍କର ମୁହିଂ କାଟିଲଇଂ ଶିର ।
ଯେତେବେଳେ ନୃହଇଟି ଯେକୋଇଶ ବାର । ୬୦୮ ।
କ୍ଷତ୍ରିଙ୍କ ରକତେ ମୁଂ କରଇ ତର୍ପଣ ।
ତେଣେ ସେ ଶାନ୍ତ ମୋର ହୋଇଲେ ପିତୃଗଣ । ୬୦୯ ।
ଯେ ତୋହୋର ପିତା ଅଟଇ ଦଶରଥ ।
ସୂର୍ଯ୍ୟବଂଶ ବୋଲି ଯେହାର ନ ଛେଦିଲି ମାଥ । ୬୧୦ ।
ଦଶରଥ ରାଜା ଅପୁତ୍ରିକ ହୋଇଥିଲ ।
ତେତେବେ ମୋହୋର ଦୟା ଯେ ବସିଲା । ୬୧୧ ।
ଯେହାର ପୁତ୍ର ହୋଇ ଈଶ୍ୱର ଧନୁ ଭାଙ୍ଗି ।
ବୀରତ୍ତୁର ବଢାଇ ଆବର ମୋତେ ଗଞ୍ଜି । ୬୧୨ ।

Digitized by srujanika@gmail.com

ଯେବେ ମୋହୋର ଧନୁ ଯେନସି ତୋହୋର କରେ ।
ତୋହୋର ବଳ ଆଜ ଜାଣିମା ସେହିଠାରେ । ୬୧୩ ।
ପଛେ ଯୁଦ୍ଧ କରିବା ଜାଣିମାନା ପରୀକ୍ଷ ।
ଡ଼ରିଲେ କାର୍ପୁନ୍ୟ ତୁ ହୁଅ ରଘୁବଛ । ୬୧୪ ।
ଜନେକ ଝିଅ ଆଣିଲୁ ବଭାହୋଇ ।
ଯେବେ ମହୀମଣ୍ଡଳେ ମହିମା ଦେଖାଇ । ୬୧୫ ।
ଯେ ଭୁଜ ଯୁଗଳେ କରିବୁ ଆଲିଙ୍ଗନ ।
ତେଣେ ସେ କଣ୍ଠକାଇ ହୋଇଲା ଆବରଣ । ୬୧୬ ।
ମୁକୁତାମାଳ ଅଛୁ ହାର ହୋଇ ।
ତେଣୁ ସେ ଗଳାକୁ ଦିଶଇ ଶୋଭାପାଇ । ୬୧୭ ।
ଆଜ ଦୁଇକଥା ବୁଝାଇବାକ ଯେବେ ।
ପରଶୁଧାରେ ଯେବେ ନ ଛାଡ଼ଇ ବେକ । ୬୧୮ ।
ତେଣେ ସେ ସୀତାକୁ ନେଇଣ ଭୋଗକର ।
ନବ ଯଉବନ ଆବର ରତ୍ନହାର । ୬୧୯ ।
ରାମ ବୋଇଲେ ଶୁଣ ଭୃଗୁପତି ।
କରସି ଯେ ଅବା ତୋହୋର ମିଳଇ ଯୁଗତି । ୬୨୦ ।
ଯେବେ ମୋହୋର ଶିର ଛେଦିବୁ ତୋଠାରେ ।
ତୋତେ କୋପମନ ନାହିଁ ମୋର ପ୍ରଶୁଟରେ । ୬୨୧ ।
ଗୋରୁ ବ୍ରାହ୍ମଣେ ମୁଁ ନ କରଇ ରୋଷ ।
ତେଣୁ ସେ କୋପ ତୋତେ ନାହିଁ ଅମରାଷ । ୬୨୨ ।
ଯାହା ବୋଲିବୁ ତାହା ପାଳିବଇଂ ଆଜ୍ଞା ।
ଅଳପମାନେ ମୁଁ ନ କରିବ ଅବଜ୍ଞା । ୬୨୩ ।
ଶ୍ରୀରାମର ବଚନ ଯେସନ ଆର୍ତ୍ତି ଶୁଣି ।
ଧନୁ ବଢ଼ାଇ ଦେଲେ ଭୃଗୁମଣି । ୬୨୪ ।
ଯେବେ କୋଦଣ୍ଡେ ଯେବେ ଦେଇପାରୁ ଗୁଣ ।
ଜାଣିମା ତୋହେର କେତେ ଅଛୁ ପ୍ରାଣ । ୬୨୫ ।
ଶରାସନ ଥିଲା ପ୍ରଶୁରାମର ହସ୍ତେ ।
ଦକ୍ଷିଣ ଭୁଜେ ତାହା ନେଲେ ରଘୁନାଥେ । ୬୨୬ ।
ବାମ ଭୁଜେ ଧରି ନଦିଲେ ବାମ ପାଦ ।
ଗୁଣ ଦିଅନ୍ତେ ପଶୁରାମ ହୋଇଲେ ତବଦ । ୬୨୭ ।
ସୀତା ଗୃହଂଥିଲେ ସୁକାସନେ ବସି ।
ପୁଣ ତ ସପତଣୀ ହୋଇଲା ମୋତେ ଆସି । ୬୨୮ ।

Digitized by srujanika@gmail.com

ମୋହୋର ଶିଅର ସେ ଧନୁ ସମର୍ପିଲା ।
କୋଦଣ୍ଡ ଆମଞ୍ଚନ୍ତେ ମୋତେ ବାଖିକଲା । ୬୨୯ ।
ଯେବେ ତ ଯେ ଋଷି ହୋଇ ଶରାସନ ।
ନୃପ ଆମଞ୍ଚିଲେ ଦେବ କନ୍ୟାଦାନ । ୬୩୦ ।
ମାସେ ପଖେ ହେ ନୋହିଲା ମୋତେ ସ୍ୱସ୍ତ ।
ପୁଣିତ ସପତଣୀ ବହିଲା ବଧାତ । ୬୩୧ ।
ଶ୍ରୀରାମ ସତ୍ୟ କଲେ ଅଗ୍ନି ଛୁଇଂ ।
କଷ୍ଟଯେ ସପତଣୀ ମୋତେ ନ କରବାର ପାଇଂ । ୬୩୨ ।
ଯେବେ ତ ଧନୁ ରାମ ଧରନ୍ତ ଆଗୁସାର ।
ଅସତ୍ୟ ପୁରୁଷଙ୍କର ଯେମନ୍ତ ବେଭାର । ୬୩୩ ।
ଯେମନ୍ତ କଥା ସତ୍ତା ମନେ ବିଗ୍ରହଲେ ।
ବହୁ ଯାହା ଲହୁ ଅଛଇ ବୋଇଲେ । ୬୩୪ ।
ଯେଥୁଅନନ୍ତରେ ଶ୍ରୀରାମ ଧନୁଧର ।
ଦକ୍ଷିଣ କର୍ଣ୍ଣ ପରଯନ୍ତେ ଆଣିଲେ ଉଚ୍ଛୁଡ଼ି । ୬୩୫ ।
ପ୍ରଶୁ ନାରାଜେ ଦେଲେକ ବଢ଼ାଇ ।
ଚାହିଁ ରଘୁନାଥ ଗୁଣରେ ବସାଇ । ୬୩୬ ।
ହସିଣ ବୋଲନ୍ତ ପ୍ରଶୁ ବାନ୍ଧବା କାହିଂକ ।
ଇହଲୋକ ପରଲୋକ ବୋଲବ ଯହିଂକ । ୬୩୭ ।
ଭୃଗୁପତି ବୋଇଲା ପରଲୋକେ ଭେଦ ।
ଯେ ମୋହୋର ଦୁସ୍ତର ପାପଭାର ଛେଦ । ୬୩୮ ।
ବ୍ରହ୍ମଣ ହୋଇଣ ମୁଂ କ୍ଷତ୍ରିୟେ ବଧକଲି ।
ଅହନ୍ତାଯେ ଅନେକ ମନୁଷ୍ୟ ମାଇଲି । ୬୩୯ ।
ସ୍ୱର୍ଗକୁ ଗଲେ ମୋତେ ନର୍ଗବ ଅବଶ୍ୟ ପାପ ।
ରୁ ସେ ଶ୍ରୀରାମ ହର ମୋନହାର ତାପ । ୬୪୦ ।
ପରଲୋକ ମୋର ଭେଦ ରଘୁସାଇଂ ।
ଯେମନ୍ତେ ସ୍ୱର୍ଗପୁରେ ନ ପଶଇ ମୁହିଂ । ୬୪୧ ।
ଶୁଣିଣ ଶ୍ରୀରାମ ପେଷିଲେକ ଶର ।
ବେଗେ ଛେଦ ପକାଇଲେ ପ୍ରଶୁ ପାପଭାର । ୬୪୨ ।
ହୁଙ୍କୁଡ଼ବାର ଘାଯେ ଭଜିଲା କୋଦଣ୍ଡ ।
ମଧ୍ୟ ଠାବରୁ ସେ ହୋଇଲା ବେନଖଣ୍ଡ । ୬୪୩ ।
ସୋର୍ଗେ ଦେବତାଯେ ହୋଇଲେ ଆନନ୍ଦ ।
ହୁଳହୁଳି ଦଅନ୍ତ ଅପସ୍ସରାବୃନ୍ଦ । ୬୪୪ ।

Digitized by srujanika@gmail.com

 

ପୁଷ୍ପ ବୃଷ୍ଟି କଲେ ଦୁହିଁଙ୍କର ଶିରେ ।
ଦୁନ୍ଦୁଭି ବଜାଇଲେ ବିବିଧ ପ୍ରକାରେ । ୬୪୫ ।
ଯହୁଁ କ୍ଷୀଣବୀ ହୋଇଲା ପ୍ରଶୁଧର ।
ଶ୍ରୀରାମଙ୍କୁ ପ୍ରଶଂସା କଲକ ଅପାର । ୬୪୬ ।
ତୁହି ସେ ନାରାୟଣ ହୋଇଅଛୁ ଜାତ ।
ବିଷ୍ଣୁ ନୋହିଲେ କ ଯେହ୍ନେକ ସାମରଥ । ୬୪୭ ।
ଭାର୍ଗବଙ୍କ ମା ବିବାର ଶୁଣିଲି ଯେବଣ ଧନ ।
ବୋଇଲି ଅବତାର ହୋଇଲେ ଭଗବାନ । ୬୪୮ ।
ଯହୁଁ ରକ୍ଷା କଲ ଯାଗ ବିଶ୍ୱାମିତ୍ର ।
ତହୁଁ ଜାଣିଲି ମୁଂ ଶ୍ରୀରାମ ପଦ୍ମନେତ୍ର । ୬୪୯ ।
ଧାଇଁଲଗି ଯହୁଁ ଅହଲ୍ୟା ହୋଇଲା ମୋକ୍ଷ ।
ବିଶ୍ୱଶିଲ ଶ୍ରୀରାମ ପ୍ରତକ୍ଷେ ଶ୍ରୀବତ୍ସ । ୬୫୦ ।
ଶିବଧନୁ ଯହୁଁ କଲୁ ଆମଞ୍ଚନ ।
ବୋଇଲି ଅବତାର ହୋଇଲେ ମଧୁସୋଦନ । ୬୫୧ ।
ଯେବେ ଦେଖିଲି ପ୍ରତ୍ୟକ୍ଷେ ବେନି ଡୋଳେ ।
ତୁ ସେ ପରମବ୍ରହ୍ମ ଦଶରଥ ବାଳେ । ୬୫୨ ।
ନିଶ୍ଚୟେ ଜାଣିଲୁଁ ବିଷ୍ଣୁ ଅବତାର ।
ତୋହୋରେ ସେ ଉଶ୍ୱାସ ହୋଇବ ମେଦିନୀର ଭାର ।୬୫୩।
ପ୍ରଶୁରାମର ମୁଖୁଁ ଯେସନେକ ଶୁଣି ।
ଆନନ୍ଦେ ଉତ୍ତସଲ୍ୟ ରଘୁକୁଳମଣି । ୬୫୪ ।
ଭୃଗୁପତିର ପାଦେ କରନ୍ତି ନମସ୍କାର ।
ପୁଣ ପୁଣ ପ୍ରଶଂସା କରନ୍ତି ଶତେବାର । ୬୫୫ ।
ବୋଲେ ପ୍ରଶୁରାମ କର ମୋତେ ଦୟା ।
ପୂର୍ବର ତପ ଦେଖିଲି ସୁନ୍ଦର ତୋର କାୟା । ୬୫୬ ।
ତୁ ସେ ବ୍ରହ୍ମବେତ୍ତା ଯମଦଗ୍ନି ସୁତ ।
ପୁଣ ପୁଣ ପ୍ରଶଂସା ରାମ କରନ୍ତି ବହୁତ । ୬୫୭ ।
ବୈଷ୍ଣବାଧନୁ ବିଷ୍ଣୁ ଦେଇଥିଲେ ।
ଭୃଗୁଙ୍କ ମୁନିମୁଖ ଯାହା ସମର୍ପିଲେ । ୬୫୮ ।
ସେ ରୂପ ପ୍ରଶୁରାମ ଶ୍ରୀରାମଙ୍କୁ ଦେଇ ।
ଦିବ୍ୟ ଅସ୍ତ୍ର ଅକ୍ଷୟେ ତ୍ରୋଣ ସମର୍ପଇ । ୬୫୯ ।
ଯେହ୍ନା ଘେନି ରାମ ତୁ ଯେ କର ଦେବକାର୍ଯ୍ୟ ।
ଯେତେବୋଲି ବାହୁଡ଼ିଇ ଯମଦଗ୍ନିର ତନୁଜ । ୬୬୦ ।

Digitized by srujanika@gmail.com

ତପସ୍ଥାନକଇଂ ଚଳିଲ୍ଲ ଯାନ ପାଇଂ ।
ଶ୍ରୀରାମର ହସ୍ତେ କ୍ଷତ୍ରୀବୃଦ୍ଧ ଦେଇ । ୬୬୧ ।
ସେସନେକ ଦେଖି ଦଶରଥ ହୋଏ ଆନନ୍ଦ ।
ମୁଖ ବିକାଶଇ ପୂର୍ଣ୍ଣମୀର ଚନ୍ଦ୍ର । ୬୬୨ ।
ବଶିଷ୍ଠ ବିଶ୍ୱାମିତ୍ର ହୋଇଲେ ଠାଠାର ।
ପ୍ରଶୁରାମ ଜାଣିଲ୍ଲ ପ୍ରତେକ୍ଷ ମଧୁହାସ । ୬୬୩ ।
ସେଥୁ ଅନନ୍ତରେ ରାମ ସୁକାସନେ ବସି ।
କୋଳେ ଧଇଲେ ସେ ସୀତା ଶୁଭ୍ର କେଶୀ । ୬୬୪ ।
ଦଶରଥ ରାଜା ରାଜ ଆରୋହଣ କଲ୍ଲ ।
ସାଇତୁର ବଜାଇ ଆନନ୍ଦେ ଚଳିଗଲ୍ଲ । ୬୬୫ ।
ସଇନର ତେଜ କେ ପାଶବାକ କହିତ ।
ଯାହୁଂ ଜଣିଲ୍ଲ ସେ ରେଣୁକାର ସୁତ । ୬୬୬ ।
ସେହ୍ନ ରହିଲେ ଅଗମ୍ୟ ବନେ ଯାଇଂ ।
ଆରଦିନେ ଗଲେ ଗଙ୍ଗା ପାର ହୋଇ । ୬୬୭ ।
ସେଦିନ ଗୋମତୀ ନଦୀରେଣ ରହିଲେ ।
ରଜନୀ ପ୍ରହରୁ ତହୁଂ ଚଳିଗଲେ । ୬୬୮ ।
ଅଯୁଧ୍ୟା ଲୋକାସ ଜାବାଳୀ ହୋଇଥିଲ୍ଲ ।
ବାରତା ପାଇଣ ନଗ୍ର ଉଛବ ସେ କଲ୍ଲ । ୬୬୯ ।
ଘରେ ଘରେ ସୁବର୍ଣ୍ଣ କଳସ ବସାନ୍ତି ।
ନେତର ଚାମର ସେ ଉଡ଼ନ୍ତି ପନ୍ତି ପନ୍ତି । ୬୭୦ ।
ଦୁଆରେ କଦଳୀ ଦୁଇ ଦୁଇ ଗଛ ।
ପୂର୍ଣ୍ଣକୁମ୍ଭ ଚୂତ ପତ୍ର ଶ୍ରୀଫଳ ଦଧିମାଛ । ୬୭୧ ।
ବିଚିତ୍ର ବସନ ମଣ୍ଡିଲେ ଘରେ ଘର ।
ନାନା ପୁଷ୍ପମାନେ ଲମ୍ବନ୍ତି ନିରନ୍ତର । ୬୭୨ ।
ଠାବେ ଠାବେ ସବୁ ରତ୍ନର ଦର୍ପଣ ।
ଜାଣି ପଟାନ୍ତର ରବର କରଣ । ୬୭୩ ।
ଚିତ୍ର ବିଚିତ୍ର ସେ ଲେଖ୍ନ ଘରମାନ ।
ଦାଣ୍ଡେ ପଦ୍ମଂରଣ ସିଞ୍ଚିଲେ ଚନ୍ଦନ । ୬୭୪ ।
କର୍ପୂର ଜାଳିଡ଼ାଇ ବିଞ୍ଚନ୍ତି ଗନ୍ଧପୁଷ୍ପ ।
ଖାଲ ଟିକର ସେ ସମତୁଲ ସାହାସ । ୬୭୫ ।
ସେସନକ ସମସ୍ତେ ଶୁଭିଲ୍ଲ ଟମକ ।
ହରଷ ହୋଇଲେ ଅଯୁଧ୍ୟା ସର୍ବଲୋକ । ୬୭୬ ।

Digitized by srujanika@gmail.com

କେ ବୋଲଇ କକଟେ ଶୁଭଇ କଣାଣ ।
ସୀତା ଘେନ ରାମ ଆସିବେ ସେହିକ୍ଷଣ । ୭୭୭ ।
ସେସନେକ ସମୟେ ଦଶିଲ ଆଗିଆଣି ।
ରଥଗଜ ଅଶ୍ୱ କେ ପାଇବାକ ଗଣି । ୭୭୮ ।
ଲୋମପାଦ ରାୟେ ଯେ ଆପଣେ ହସ୍ତୀ ଚଢ଼ି ।
ଆଗଦଣ୍ଡେ ଅଛୁ ସେ କରେ କୋଦଣ୍ଡ ଧରି । ୭୭୯ ।
ସରଯୂ ପାରି ହୋଇଲେ ସନ୍ୟବଳ ।
କଟକେ ପଶନ୍ତେ ଅଥଅ ଚହଲ । ୭୮୦ ।
ନଗ୍ର ନରନାରୀ ଦେଖୁଣ ଅଛନ୍ତି ।
ସେସେ ଲୋମପାଦ ବୋଲୁଣ ବୋଲନ୍ତି । ୭୮୧ ।
ଥୋକାସେକ ବେଳେ ଦଶିଲେ ଦଶରଥ ।
ଆରୋହଣ କରିଅଛନ୍ତି ଦିବ୍ୟରଥ । ୭୮୨ ।
କରେ କାଣ୍ଡ କୋଦଣ୍ଡ ସେ ଦନ୍ୟବେଶ ହୋଇ ।
ଶେତଛତ୍ର ଧରିଇଂ ସେ ଆସଇ ନରସାଇଂ । ୭୮୩ ।
ଲକ୍ଷେକ ଶେତ ଚାମର ତାହାଙ୍କୁ ପଡଇ ।
ପାଟଛତ୍ର ଘାୟେ ସୂର୍ଯ୍ୟ ଓହ୍ଲାଡ଼ଇ । ୭୮୪ ।
ଗଜ ଅଶ୍ୱରଥ ପାଇକ କରନ୍ତର ।
ସମ୍ମୁର ହୋଇଣ ଯେ ପ୍ରବେଶ ନୃପବର । ୭୮୫ ।
ଯାବାଲ କଲ୍ୟାଣ କଲ୍ପ ଆସି ବାଟେ ।
ଶ୍ରୀରାମ ଦଶିଲେ ପଚ୍ଛଆଣି ଆଠେ । ୭୮୬ ।
ଭରଥ ଲକ୍ଷ୍ମଣ ଶତ୍ରୁଘନ ଭାଇ ଚାରି ।
ରତ୍ନବରେ ବସି ଆସନ୍ତି ନଗ୍ର ଫେରି । ୭୮୭ ।
ଶ୍ରୀରାମର କୋଳେ ଅଛଇ ଦେବୀ ସୀତା ।
ବସ୍ତ୍ରର ପାଶେ ସେ ବସ୍ତ୍ରର ବନିତା । ୭୮୮ ।
ଲକ୍ଷ୍ମଣ ପଛ ପତ୍ନୀ କ ହର ଯେ ପାବତୀ ।
ଶତ୍ରୁଘନ ବରକନ୍ୟା ସ୍ୱରୂପେ କାମରତି । ୭୮୯ ।
ଭରଥ କ ଇନ୍ଦ୍ର ସେ ଶଚୀ ତାର ନାରୀ ।
ସ୍ୱୟେଂ ନାରାୟଣ ଯେ ଚତୁର୍ଧା ମୂର୍ତ୍ତି ଧରି । ୭୯୦ ।
ନଗ୍ରଲୋକେ ଦେଖି ପ୍ରଶଂସା କରନ୍ତି ।
ଆନନ୍ଦ ଭରେ ବାମା ହୁଳହୁଳି ଦ୍ୟନ୍ତି । ୭୯୧ ।
ଦୂବାକ୍ଷତ ଦେଇ ପୂଜନ୍ତି ବର ଚାରି ।
ସୀତାକୁ ପ୍ରଶଂସା କରନ୍ତି ନରନାରୀ । ୭୯୨ ।

Digitized by srujanika@gmail.com

ବାବୁ ସୁନ୍ଦେଖି ସେ ଜନେକ ଦୁଲାଳୀ ।
ରାମଙ୍କୁ ବର ସେଥି ଥିଲ କାହିଂ ବାଳୀ । ୬୯୩ ।
ରାଇ ଭଣ୍ଡେଣୀ ଜାଣି ଦଶନ୍ତ୍ର ବରକନ୍ୟା ।
ପୂର୍ବର କଥା ସେ ଦଇବ ରଞ୍ଜନା । ୬୯୪ ।
ନଗ୍ର ପଣମଳ ବାଜଣା ବାଜଇ ।
ନିଜ ନଗରେ ପ୍ରବେଶ ହୁଅନ୍ତ ଯାଇ । ୬୯୫ ।
ଦଶରଥ ରାଜାର ମହାଦେଈ ମାନ ।
ଶୁଭଯୋଗେ ଯାଇଂ ହୋଇଲେ ନିଜସ୍ଥାନ । ୬୯୬ ।
ଗୃହବଧୂ ଯାଇଂ ପ୍ରବେଶ ଅନ୍ତପୁରେ ।
ହୁଲହୁଲି ଧୁନି ପଡ଼ଇ ନିରନ୍ତରେ । ୬୯୭ ।
ଦଶରଥ ରାଜା ନବରେ ବଜସ୍ତେ ।
ବିଶ୍ୱାମିତ୍ର ମୁନିଙ୍କି ବହୁତ ପୂଜାକସ୍ତେ । ୬୯୮ ।
ହେ ମୁନି ତୋହୋରେ ମୁଂ ଯେ ହୋଇଲି କୃତାର୍ଥ ।
ତୋହୋର ସେ ହେଲ ସକଳ ପୁରୁଷାର୍ଥ । ୬୯୯ ।
ତୁ ସେ ବ୍ରହ୍ମଋଷି ବିଦ୍ୟାନ୍ତ ଅଛେସିଲୁ ।
ଜପତପ ମନ୍ତ୍ର ବିଦ୍ୟାନ୍ତ ସାଧିଲୁ । ୭୦୦ ।
ମୋତେ ପ୍ରସନ୍ନ ହୋଇଲୁ ତପସ୍ୱୀ ।
ରାମକଇ ଅନୁଗ୍ରହ କଲୁ ମନ୍ତ୍ରଧାରୀ । ୭୦୧ ।
ବିଶ୍ୱାମିତ୍ର ବୋଇଲେ ଶୁଣ ଦଶରଥ ।
ଶ୍ରୀରାମ ପ୍ରତକ୍ଷେ ଅଟନ୍ତ ବିଷ୍ଣୁନାଥ । ୭୦୨ ।
ଦଇତ ନିବାରଣେ ଦେବ ମଧୁହାର ।
ଅବତାର ହୋଇଲେ ମାନେବ ତନୁଧର । ୭୦୩ ।
ସୀତା ପରମ ଲକ୍ଷ୍ମୀ ଚଞ୍ଚଳା ସ୍ୱରୂପ ।
ରୁଦ୍ର ଅବତାର ସୁମୈନ୍ଦାର ସୁତ । ୭୦୪ ।
ଭୁଥ ଶଙ୍ଖ ଶତ୍ରୁଘନ ଚକ୍ର ଅଟଇ ।
ସେ କଥା କହଣିକ ରାଜାକୁ ପ୍ରଘଟଇ । ୭୦୫ ।
ସେତେ ବୋଲି ମୁନି ଦଶରଥ ହସ୍ତଧର ।
ହରଷମନେ କରି ଉଠିଲେ ତପସ୍ୱୀ । ୭୦୬ ।
ନିଜ ଆଶ୍ରମକୁ ଯିବଇଂ ରାସ୍ତେ ଆସ୍ତେ ।
କୁଶଳ ହୋଇ ରାସ୍ତେ ବ୍ରଜଥାଅ ତୁମ୍ଭେ । ୭୦୭ ।
ସେତେ ବୋଲି ମୁନି ନବରୁ ବାହାର ।
ପାଛୋଟି ଆସଇ ଦଶରଥ ନୃପବର । ୭୦୮ ।

Digitized by srujanika@gmail.com

ସରଯୂ କୂଳେ ନହିଇ କଉଶିକ ।
ରଜାକୁଂ ବାହୁଡ଼ାଇଂ ପଠାଇ ଯାଗନିକ । ୭୦୯ ।
ମୁନିର ଚରଣେ ରଜା ନମସ୍କାର କରି ।
ଦଶରଥ ରଜା ଆସଇ ବାହୁଡ଼ି । ୭୧୦ ।
ନିଜ ନଗରେ ରଜା ପ୍ରବେଶ ହୋଇଲା ଯାଇଂ ।
ପୁତ୍ରବଧୂ ଦେଖି ହରଷ ମନ ହୋଇଂ । ୭୧୧ ।
ବିଭାର ବିଧାନ ଯେତେକ ସେ ଥିଲା ।
ପ୍ରାଶ୍ଚିତ କରଣ ରତ୍ନେ ସକଳ ପୂରେଇଲା । ୭୧୨ ।
ହିନାସ୍ବର ଅନ୍ତେ ଯେ ଭରଥକୁ ହକାରି ।
କୋଳେ ବସାଇଣ ବୋଲନ୍ତି ଦଣ୍ଡଧାରୀ । ୭୧୩ ।
ତୋହୋର ମଉଳା ଯେ ଯୋଧାକୁରୁ ଅଇଲା ।
ତୋତେ ନେବବୋଲି ମୋର ଆଗରେ କହିଲା । ୭୧୪ ।
ଅଜା ତୋତେ ଦେଖିବେ ବୋଲି ଶରଧା କରିଛନ୍ତି ।
ଯୋଧାକରୁ ସଙ୍ଗତେ ଚଳନ୍ତୁ ନଡ଼ିତ । ୭୧୫ ।
ଶୁଣି ଭରଥବୀର ହୋଇଲାକ ସଜ ।
ସଙ୍ଗେ ଘେନିଣ ଅଛଇ ଲକ୍ଷ୍ମଣ ଅନୁଜ । ୭୧୬ ।
ଦୁଇଭାଇ ଆନନ୍ଦେ ଉତସଲ୍ୟ ହୋଇ ।
ପିତାମାତାଙ୍କୁ ସେ ଓଳଗ ମେଲାଇ । ୭୧୭ ।
ଶ୍ରୀରାମ ଚରଣେ କରନ୍ତି ନମସ୍କାର ।
ବିନୟ ଭରତ ହୁଅନ୍ତି ସୀତଙ୍କାଙ୍କ ପୟର । ୭୧୮ ।
ରଥବରେ ବସି ଅଯୁଧ୍ୟାରୁ ଗଲେ ।
ପାତଦିନେ ଯାଇଂ ପ୍ରବେଶ ହୋଇଲେ । ୭୧୯ ।
କଇକଇ ରଜା ସେ ବାରତା ପାଇଲା ।
ଭରଥ ଆସିବା ଶୁଣି ନଗ୍ର ମଣ୍ଡାଇଲା । ୭୨୦ ।
ଯୋଧକୁରୁ ସହିତ ପ୍ରବେଶ ହୋଇଲେ ଝାଡ଼ ।
ଦେଖିଣ ଆନନ୍ଦ ଯେ ହୋଇଲା ନୃପତି । ୭୨୧ ।
ଭରଥକଇ କୋଳେ ଘେନିଲେ ନୃପମଣି ।
ଶତ୍ରୁଘନକଇ ଜାନୁରେ ବସାଇଲେ ଆଣି । ୭୨୨ ।
ମୁଖରେ ଚୁମ୍ବଦେଇ କରଇ ପ୍ରଶଂସା ।
ତୁ ସେ ଭରଥ ମୋର ଜୀବନର ଆଶା । ୭୨୩ ।
ଆଜ ସେ ଦୁଃଖ ବାରୁ ଗଲା ମୋର ପାର ।
ନୟନେ ଦେଖିଲି ଆଜ ଦୁହିତାର କୁମର । ୭୨୪ ।

Digitized by srujanika@gmail.com

ରାମ ଲକ୍ଷ୍ମଣଙ୍କର ପୁଚ୍ଛଇ ବାରତା ।
କୁଶଳେ ଅଛନ୍ତି ନା ରାଜା ଦଶରଥା । ୭୨୫ ।
ରାଣୀହଂସ ନୃପତ୍ତ ସାମନ୍ତ ପାତ୍ର ।
ଯେମାନେ ସମସ୍ତେ କୁଶଳେ ଅଛନ୍ତି ନା ଭ୍ରଥ । ୭୨୬ ।
ଯେସନେକ ସମସ୍ତେ ରାଜା ଭିତରକୁ ଯାଇ ।
ଭ୍ରଥକୁ କୋଳକଲେ ଦେଖିଣ ତାର ଆଈ । ୭୨୭ ।
ମୁଖ ଚୁମ୍ବ ଦେଇଣ ଭୁଂଜାଇଲେ ଭାତ ।
ଶୁଭେ ଭ୍ରଥବାର ରହିଲେ ବରଷ ସାତ । ୭୨୮ ।
ଅଯୁଧ୍ୟା ପୁରେ ଦଶରଥ ରାଯେ ।
ଅନେକ ସୁସ୍ତେ ରାଜ୍ୟ ପାଳି ଆଯେ । ୭୨୯ ।
ଶ୍ରୀରାମ ସୀତା ଘେନିଣ ଭୋଗକର ।
ଈଶ୍ବରେ କହନ୍ତି ଗୋ ଶୁଣ ଶାକେମ୍ବସ୍ତ । ୭୩୦ ।
ଯେ ସେ ଆଦ୍ୟକାଣ୍ଡ ସାମବେଦୁଂ ଜାତ ।
ଯାହା ସେ ବ୍ରହ୍ମା କଲାକ ସମ୍ଭୂତ । ୭୩୧ ।
ବାଲମ୍ଭିକ ମହାମୁନି ପ୍ରସନ ହୋଇଲା ।
ତେଣୁ ସେ ଯେ ଗ୍ରନ୍ଥ ମୋତେ ପ୍ରସନ ହୋଇଲା । ୭୩୨ ।
ଯେଣେ ସେ ସଂସାର ହୋଇଲା ମୁକତ ।
ମୁଂ ଯେହା ଶରଧା କଲି ସୁମରତ । ୭୩୩ ।
ଚର୍ମ ନୟନେ ଯନ୍ତୁଂ ଦେଖିଲି ଜଗନ୍ନାଥ ।
ତେଣୁ ସେ ବଖାଣିଲି ଆଦ୍ୟକାଣ୍ଡ ଗ୍ରନ୍ଥ । ୭୩୪ ।
ଶୁଣିମା ସୁଜ୍ଞଜନେ ନ ଧରିବା ଦୋଷ ।
ମୁଂ ଛାର କେତେ ଯେ ଗ୍ରନ୍ଥ କରିବି ଉପଦେଶ । ୭୩୫ ।
ବଳରାମ ଦାସ ମୁଂ ଜଗନ୍ନାଥ ପ୍ରସନେ ।
ଜଗମୋହୋନ ରାମାୟଣ ସୁମରିଲି ମନେ । ୭୩୬ ।

ଶ୍ରୀ ଜଗମୋହନ ରାମାୟଣ ଆଦ୍ୟକାଣ୍ଡ ସଦାଜସ୍ୟେ ସମ୍ପୂର୍ଣ୍ଣ ।



Digitized by srujanika@gmail.com

# ପରିଶିଷ୍ଟ

| ପୃଷ୍ଠା | ପଦସଂଖ୍ୟା | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୪ | ୪୯ | ମାନବ | ମାନବେ |
| ୬ | ୮୮ | ଉମାଥ | ଚଉମାଥ |
| ୬ | ୮୯ | େ ।ଇଲେ | ହୋଇଲେ |
| ୭ | ୯୧ | ପୁଚ୍ଛନ୍ତ | ପୁଚ୍ଛନ୍ତ |
| ୭ | ୧୦୮ | ଆଜଂ | ଆଜୁଂ |
| ୮ | ୧୧୭ | ପ୍ରସ୍ତବାଣୀ | ପ୍ରିସ୍ତବାଣୀ |
| ୧୦ | ୧୬୩ | ଗଜକଇ | ଗଜାକଇ |
| ୧୨ | ୧୮୨ | ସରମୁନ | ସ୍ୱରମୁନ |
| ୧୩ | ୧୯୯ | ପୁ | ପୁଣ |
| ୧୩ | ୨୦୨ | ରଣୀ | ରଣୀ |
| ୧୪ | ୨୦୯ | ଯେଥିରେ | ଯେ୍ୱଥିରେ |
| ୧୪ | ୨୧୩ | ପତ୍ରନ୍ତ | ପାଦନ୍ତ |
| ୧୪ | ୨୧୭ | ସହସେ | ସହସ୍ରେ |
| ୧୫ | ୨୨୫ | ପାଲନ | ପାଲଣ |
| ୧୫ | ୨୩୫ | ନମେଣ | ନାମେଣ |
| ୧୭ | ୨୬୮ | ନବସୃଷ୍ଟି | ନବସୃଷ୍ଟି |
| ୧୯ | ୩୦୦ | ପୁତପର୍ଣୀଲେ | ଭପର୍ଣୀଲେ |
| ୨୨ | ୩୩୫ | ଅ ତା | ଅଳତା |
| ୨୪ | ୩୬୮ | ବାରସତୀ | ବାରସ୍ୱ |
| ୨୭ | ୪୨୮ | ବସସ୍ତ | ବସନ୍ତ |
| ୨୯ | ୪୫୪ | ଅଏଁ ଲ | ଅଏଁ ଲ |
| ୩୧ | ୪୭୯ | ଭୋଭୋ | ଭୋଭୋ |
| ୩୨ | ୪୯୮ | ବାହୁଂ | ବାହୁଁ |
| ୩୩ | ୫୨୦ | ଓଲବନ୍ତ | ଓହ୍ଲାବନ୍ତ |
| ୩୪ | ୫୩୭ | ବେଲେ | ଭଲେ |
| ୩୫ | ୫୫୫ | ସିଂଘ | ସିଂଙ୍ଘ |

Digitized by srujanika@gmail.com

| ପୃଷ୍ଠା | ପଦସଂଖ୍ୟା | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୩୮ | ୬୦୪ | ର | ସର |
| ୩୯ | ୬୧୨ | କେବଳ | କେବଣ |
| ୪୧ | ୬୪୨ | ଅଦ୍ଧାର୍ତ୍ତିକ | ଆଦ୍ଧାର୍ତ୍ତିକ |
| ୪୬ | ୭୨୮ | ଟେଗ୍ରପାଢ଼ି | ଟେଗ୍ରପାଢ଼ୁ |
| ୪୯ | ୭୬୭ | ନଝର | ନର୍ଝର |
| ୫୦ | ୭୮୩ | ଉଠ | ଉଠି |
| ୫୦ | ୭୮୪ | ବରପତ୍ର | କରପତ୍ର |
| ୫୧ | ୮୧୦ | ଋଷ | ଋଷିଂ |
| ୫୨ | ୮୧୪ | ବୃଷ୍ଟ | ବୃଷ୍ଟି |
| ୫୨ | ୮୧୮ | ନପବର | ନୃପବର |
| ୫୪ | ୮୫୬ | ବଢ | ବର୍ଦ୍ଧି |
| ୫୪ | ୮୫୮ | ଅମନାସ୍ଥ | ଅମାନାତ୍ୟ |
| ୫୬ | ୮୬୮ | ଋଷଣ୍ଙ୍ଗ | ଋଷିଣ୍ଙ୍ଗ |
| ୫୬ | ୮୮୬ | ଋଷଣ୍ଙ୍ଗ | ଋଷିଣ୍ଙ୍ଗ |
| ୫୮ | ୯୧୯ | ପଢଙ୍କ | ପଢଙ୍କି |
| ୫୮ | ୯୨୩ | ଜନ | ଜନା |
| ୫୯ | ୯୩୪ | ସାହାଶର | ସାହାଣରେ |
| ୫୯ | ୯୩୫ | ସାଥୀ | ସାରଥୀ |
| ୬୦ | ୯୪୪ | ଧୁର୍ମକେତୁ | ଧୂମକେତୁ |
| ୬୦ | ୯୫୪ | ନୋହଲ୍ | ନୋହଲକ |
| ୬୧ | ୯୪୭ | ଅଶ୍ର | ଅଶ୍ରୁ |
| ୬୧ | ୯୫୭ | ଅନେ | ଅନେକ |
| ୬୧ | ୯୫୭ | ହୁଂ | ତହୁଂ |
| ୬୬ | ୧୦୬୭ | ଦ୍ଧସ୍ରେଦ୍ଧ | ସଦ୍ଧସ୍ରେକ |
| ୬୮ | ୧୦୮୦ | ଜଜତ | ଜର୍ଜିତ |
| ୭୦ | ୧୧୦୭ | ଚୂ | ଚୁମ୍ବ |
| ୭୧ | ୧୧୨୭ | ବଦନ | ବଦନ୍ନ |
| ୭୨ | ୧୧୩୮ | ବ୍ରହ୍ମଘଣ୍ଟ | ବ୍ରହ୍ମଘଣ୍ଟ |
| ୭୨ | ୧୧୪୦ | ପାଇବାର | ପାଇବଇଁ |
| ୭୪ | ୧୧୬୫ | କର | କରୁ |

Digitized by srujanika@gmail.com

| ପୃଷ୍ଠା | ପଦସଂଖ୍ୟା | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୭୪ | ୧୧୭୫ | ମୃତ | ମୃକ |
| ୭୫ | ୧୧୯୪ | ମଢଲ | ମର୍ଢଲ |
| ୭୭ | ୧୨୦୫ | ପାଦ୍ୱ | ପାଙ୍କ |
| ୭୭ | ୧୨୦୭ | ବ୍ଦାସ୍ୱେ | ବଜସ୍ୱେ |
| ୭୭ | ୧୨୨୬ | ପିତା | ପିଚ୍ଛା |
| ୭୮ | ୧୨୩୦ | ଘଷ୍ଟୁଲେ | ପିଷ୍ଟିଲେ |
| ୭୮ | ୧୨୩୯ | ମେଲମେଳ | ମେଲ୍ଲମେଲ୍ଲ |
| ୭୮ | ୧୨୪୩ | ଚଢ଼ଙ୍ଗ | ଚୁଢ଼ଙ୍ଗ |
| ୭୯ | ୧୨୫୦ | ଦ୍ୱାରଦ୍ୱାବଂଶ | ଦ୍ୱାରଦ୍ୱାଦଶ |
| ୭୯ | ୧୨୬୦ | ଘାଏ | ଘ୍ରାଏ, |
| ୮୧ | ୧୨୮୬ | ଅନ୍ତ୍ରହୋଳ | ଅନ୍ଧହୋଳ |
| ୮୨ | ୧୩୦୨ | ବତ | ବ୍ରତ |
| ୮୨ | ୧୩୦୮ | ଗ୍ମଲ | ମଳ |
| ୮୩ | ୧୩୧୯ | ଆଜ୍ଞ | ଆଢ |
| ୮୪ | ୧୩୨୬ | ତ୍ୱର | ତୁର |
| ୮୬ | ୧୩୬୩ | ଟ୍ୱେସ୍କ | ଟ୍ୱିସ୍ୱେକ |
| ୮୬ | ୧୩୬୪ | ଋଷିଙ୍କ | ଋଷିଙ୍କି |
| ୮୮ | ୧୩୯୦ | ଲକ୍ଷ୍ମୀଙ୍କ | ଲକ୍ଷ୍ମୀଙ୍କି |
| ୯୧ | ୧୪୦୪ | ସ୍ୱଗଭୋଗ | ସ୍ୱର୍ଗଭୋଗ |
| ୯୨ | ୧୪୧୦ | ପଶୁଗ୍ରାମ | ପ୍ରଶ୍ନଗ୍ରାମ |
| ୯୨ | ୧୪୫୬ | ଦ୍ୱେଲ | ଦ୍ୱେଲା |
| ୯୨ | ୧୪୫୬ | ଆନେକ | ଆନକେ |
| ୯୫ | ୧୫୦୨ | ସ୍ଥଳ | ସଳ |
| ୯୫ | ୧୫୦୬ | ନପଢ | ନୃପଢ |
| ୯୫ | ୧୫୦୯ | ଉଠଲେଣ | ଉଠିଲେଣ |
| ୯୬ | ୧୫୧୬ | ସ୍ରବଇ | ସ୍ରୁବଇ |
| ୯୬ | ୧୫୨୨ | ଖୋଜଲେ | ଦେଖି |
| ୯୬ | ୧୫୩୧ | କ୍ଷେଣେ | ତକ୍ଷଣେ |
| ୧୦୫ | ୧୬୬୨ | ଅଚର | ଅଗର |
| ୧୦୬ | ୧୬୯୩ | ବାନ୍ଧୁଲେ | ବାନ୍ଧିଲେ |

Digitized by srujanika@gmail.com

| ପୃଷ୍ଠା | ପଦସଂଖ୍ୟା | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧୦୮ | ୧୭୧୩ | ସ୍ୱକା | ସୂତା |
| ୧୧୬ | ୧୮୪୧ | ଗ୍ଣେ | ରଣେ |
| ୧୧୬ | ୧୮୬୧ | ତୋହ୍ୱର ବୋଲ | ତୋହ୍ୱର ବୋଲ ଘେନ (ପ୍ରାନ୍ତ) |
| ୧୧୭ | ୧୮୭୧ | ଯାଗା | ଯାଗ |
| ୧୧୯ | ୧୮୮୦ | ଜନକଉ | ଜନକଇ |
| ୧୨୦ | ୧୯୦୩ | ବଚଦେ | ବଚନେ |
| ୧୨୨ | ୧୯[illegible] | ଦ୍ୱଣ | ଦରଡ଼ା |
| ୧୨୩ | ୯୪୫ | ରୋ!ଲଣ | ଗଲଣ |
| ୧୨୩ | ୧୯୫୨ | ଷ୍ୟପିକ | ପୋଷାପିକ |
| ୧୨୩ | ୧୯୫୪ | ତେଣ୍ଡ୍ରୋଇ | ତେଣ୍ଡୋଇ |
| ୧୨୪ | ୧୯୬୪ | କଇବତ୍ତା | କଇବ୍ରତ୍ତା |
| ୧୨୪ | ୧୯୭୦ | ଝଁରଣ | ଝଁରଣ |
| ୧୨୪ | ୧୯୭୨ | ଥୋକପ୍ୱେକ୍ଷ | ଥୋ!କାପେକ୍ଷ |
| ୧୨୬ | ୧୮ | ବାହ୍ମଣେକ | ବ୍ରାହ୍ମଣେକ |
| ୧୨୭ | ୨୨ | ତାମ୍ବୁଲ | ତାମ୍ବୁଳ |
| ୧୩୨ | ୧୦୨ | ଧରନ୍ତୁ | ଧୁରନ୍ଧୁଂ |
| ୧୩୪ | ୧୩୫ | ପାଥ୍ୱବ | ପାର୍ଥିବ |
| ୧୩୫ | ୧୪୨ | ସମପଲେ | ସମର୍ପିଲେ |
| ୧୩୬ | ୧୫୬ | ବଜ | ବଜ୍ର |
| ୧୩୬ | ୧୫୭ | ପାଇଲ୍ଲ | ପାଇ |
| ୧୩୬ | ୧୬୨ | ଧାଛନାର | ବାବନାର |
| ୧୪୮ | ୩[illegible]୯ | ନାସ୍ତ | ନାସ୍ତି |
| ୧୪୮ | ୩୫୪ | ସାଧ | ସାଧୁ |
| ୧୬୧ | ୫୬୬ | ଘଣ | ନାଶ |
| ୧୬୮ | ୬୬୬ | ଦେବର | ଦେବଇଂ |
| ୧୬୮ | ୬୬୯ | ଲ | ଜଲ୍ |
| ୧୬୮ | ୬୭୨ | କାପଣ୍ୟ | କାର୍ପଣ୍ୟ |
| ୧୬୩ | ୬୪୭ | ପ | ପତ |
| ୧୭୯ | ୮୪୫ | ପାସ୍ୱେ | ପସ୍ୱେ |
| ୧୮୪ | ୯୨୪ | ଦେବେଶର | ଦେଶର |

Digitized by srujanika@gmail.com

| ପୃଷ୍ଠା | ପଦ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧୮୪ | ୯ ୫ | ଦକ୍ଷିଣେର | ଦକ୍ଷିଣେରେ |
| ୧୮୪ | ୯୩୪ | ସ୍ପର୍ଯାବଂଶ | ସୂର୍ଯ୍ୟବଂଶ |
| ୧୮୫ | ୯୪୦ | ଆସି | ଥାସି |
| ୧୯୭ | ୧୩୦ | ଦତ୍ୟ | ଦୈତ୍ୟ |
| ୧୯୭ | ୧୩୬ | ହରତ | ହୃଶତ |
| ୨୦୫ | ୨୫୪ | ଦବ୍ୟ | ଦ୍ରବ୍ୟ |
| ୨୦୭ | ୨୯୩ | ବୋଲେ | ନୋହେ |
| ୨୧୦ | ୩୪୫ | ସାକ୍ଷାଦେ | ମାକ୍ଷାତେ |
| ୨୧୨ | ୩୭୬ | ଶାସ୍ବନ | ଗାସ୍ବନ |
| ୨୧୩ | ୩୮୫ | ଥିବେ | ଥିବାରେ |
| ୨୧୩ | ୩୮୬ | ସ୍ୱେକତେ | ସ୍ୱେକେତ |
| ୨୨୦ | ୫୦୩ | ଶସ୍ତ | ଶସ୍ତ୍ର |
| ୨୨୫ | ୫୮୩ | ଧନରେ | ଧନ |
| ୨୩୬ | ୭୫୬ | ଜାଗତ | ଜଗତ |
| ୨୪୦ | ୮୧୬ | ପୁଷଲ | ମୃଷଲ |
| ୨୪୧ | ୮୩୪ | ଯୋଗୋ | ଯୋଗେ |
| ୨୬୦ | ୨୯୯ | ଜର୍ବଣ | ଜର୍ବାଣ |
| ୨୭୦ | ୩୦୫ | ହୋମ | ହେମ |
| ୨୭୧ | ୩୧୩ | ପାର୍ବତୀର | ପାର୍ବତୀରୁ |
| ୨୭୩ | ୩୫୭ | ଆନେକେ | ଆନକେ |
| ୨୭୫ | ୩୮୫ | ଦେବାଙ୍କ | ଦେବାଙ୍ଗ |
| ୨୮୧ | ୪୮୦ | ବଲବାର୍ଯ୍ୟ | ବଲବୀର୍ଯ୍ୟେ |
| ୨୮୧ | ୪୮୧ | କଏ | କସ |
| ୨୮୨ | ୪୯୬ | ବାମନେ | ବା[illegible]ନ |
| ୨୮୭ | ୫୮୦ | ଲୁବ୍ଧାକୋ | ଲୁବ୍ଧା[illegible]ାନ୍ତ |
| ୨୮୮ | ୫୮୨ | ଚୋଟସ | ବଚାରେ |
| ୨୯୬ | ୭୧୪ | ତସ୍ବା | ସୀତସ୍ବା |
| ୩୦୪ | ୮୪୧ | ଯେବେନ୍ଦ୍ର | ଯେଦେବେନ୍ଦ୍ର |
| ୩୦୪ | ୮୫୦ | ଜନେଣ | ଦାନେ[illegible] |
| ୩୧୭ | ୫୪ | ବାଘ୍ବଣ | ନାଘ୍ବଣ |

Digitized by srujanika@gmail.com

| ପୃଷ୍ଠା | ପଦ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୩୨୧ | ୧୧୮ | ଚରୁସ୍ୱର | ଚରୁସ୍ୱଂ |
| ୩ ,୨ | ୧୩୩ | ସ୍ୱଂଅ | ସ୍ୱୈଅ |
| ୩୨୮ | ୨୨୩ | ମଂସ୍ୱଂକାର | ସସ୍ୱଂକାଶ |
| ୩୨। | ୨୨୭ | ଭଅ | ଭ୍ରୁଅ |
| ୩୨୮ | ୨୨୮ | ସଙ୍ଗେ | ଚୂଲେ (୧ମପାଦ) |
| ୩୨୮ | ୨୨୮ | ତାଙ୍କ ସଙ୍ଗେ | ପିଚ୍ଛାବେଲେ (୨ୟପାଦ) |
| ୩୨୮ | ୨୨୯ | ସୁମୈତ୍ର | ସୁମେତ୍ରା |
| ୩୨୮ | ୨୩୨ | ହ୍ୱାନ୍ଦୋଳସ୍ୱେ | ହ୍ୱାନ୍ଦୋଳାସ୍ୱେ |
| ୩୨୮ | ୨୩୭ | ମଣ୍ଡିଲେ | ମଣ୍ଡିଲ |
| ୩୨୯ | ୨୪୧ | ପଣସ୍ୱଇଣ | ପଣସ୍ୱଇତା |
| ୩୨୯ | ୨୪୩ | ନୂନ୍ଦୁର | ସିନ୍ଦୁର |
| ୩୩୦ | ୨୫୩ | ସ୍ୱଙ୍ଗପାଟ | ରଙ୍ଗପାଟ |
| ୩୩୦ | ୨୬୧ | ବିଜମ | ବିଜମି |
| ୩୪୪ | ୪୮୯ | ବୋଇ | ବୋଇଲ |
| ୩୪୮ | ୫୪୯ | ଶାକେଶ୍ୱଶ୍ୱ | ଶାକେମ୍ବଶ୍ୱ |
| ୩୪୯ | ୫୫୮ | ଅହ୍ଲଲ | ଅଇଲ |
| ୩୫୯ | ୫୬୧ | ଅମନାତ୍ୟ | ଅମନାତ୍ତ୍ୟ |
| ୩୬୧ | ୬୯୫ | ପାଚ | ପାଗ |
| ୩୫୧ | ୫୯୫ | ଘଟାନ୍ତ | ଘଟାନ୍ତ |
| ୩୫୩ | ୬୨୯ | ଆଭ୍ୟାସେ | ଆଗ୍ରସେ |
| ୩୫୪ | ୬୪୧ | ପର୍ଣ୍ଣ | ପୂର୍ଣ୍ଣ |
| ୩୫୪ | ୬୪୩ | ଲାଗଛନ୍ତ | ଲାଗିଛନ୍ତି । |
| ୩୯୧ | ୭୫୭ | ପଙ୍ଖଚକ | ଶଙ୍ଖଚକ |
| ୩୬୭ | ୮୪୮ | ବଦ୍ୟେର | ବରଘର |
| ୩୭୨ | ୯୩୩ | ଧାରନ୍ତ | ଧରନ୍ତ |
| ୩୯୨ | ୨୫୮ | ମାଦବାଣୀ | ମଦବାଣୀ |
| ୪୦୫ | ୪୫୭ | କଣ୍ଟ | ବେଣ୍ଟ |

---

Digitized by srujanika@gmail.com